# ସମୟର ସଂଳାପ

(ଆତ୍ମ କଥା)

ଲେଖକ: ଡ଼. ଫକୀର ମୋହନ ସାହୁ
ପ୍ରକାଶକ: ଆଶ୍ରା ପ୍ରକାଶନୀ/ଏଲିଟ୍ ପବ୍ଲିକେସନ୍
ପ୍ରଥମ ସଂସ୍କରଣ: ୨୦୧୮

ମୁଦ୍ରଣ:
ଏଲିଟ୍ ପ୍ରେସ୍,
୫୧/ବି, ମଞ୍ଚେଶ୍ୱର, ଭୁବନେଶ୍ୱର - ୭୫୧୦୧୦
ପ୍ରଚ୍ଛଦ: ଶ୍ରୀ ସୁଧାଂଶୁ ସାମନ୍ତରାୟ

---

# Samayara Sanglap

(Atma Katha)

Written by:- Dr. Fakir Mohan Sahoo

**Published by:**
ASHRA Prakashani / Elite Publications

First Publication : 2018
**Printed at:**
Elite Press,
51, Mancheswar,
Bhubaneswar-751010
Cover Design: **Sri Sudhansu Samantaray**

Price: **Rs. 350/-**

ISBN.
ISBN 8185531793

**Available at:**
ASHRA Prakashani
Sai Chhaya
VIM-99, Sailashree Vihar
Bhubanewar - 751 021
Phone : (0674) 2743835

ଜୀବନ ରାସ୍ତାରେ ମୋ ସହିତ ଚାଲିବା ବେଳେ
ଯିଏ ଖରାର ଧାସ ବେଶି ଖାଇଛି, ଝଡ଼ବର୍ଷାର ଛିଟା
ଅଧିକ ପାଇଛି, ଏବଂ କଣ୍ଟାର କ୍ଷତ ସବୁବେଳେ ସହିଛି
ସେଇ ପତ୍ନୀ ଅଞ୍ଜୁ (ରୀତା) ହାତରେ

# ଅଗ୍ରଲେଖ

ବ୍ୟକ୍ତି ଓ ବସ୍ତୁର ଛବିକୁ ସାଇତି ରଖି ଆଗାମୀ ପିଢ଼ି ପାଖରେ ଉପସ୍ଥାପନ କରିବାର ବହୁ ଉପାୟ ଅଛି। କିନ୍ତୁ ସମୟର ସ୍ରୋତ ଓ ଘଟଣାସବୁର ଘାତ ପ୍ରତିଘାତର ପ୍ରତିବିମ୍ବକୁ ଧରି ରଖିବା ଖୁବ୍ କଷ୍ଟ। ଆତ୍ମଜୀବନୀ ଏ କ୍ଷେତ୍ରରେ ଏକ ପ୍ରୟାସ ମାତ୍ର। ପୁଣି ସମସାମୟିକ ପିଢ଼ି ଅପେକ୍ଷା ଉତ୍ତର ପୁରୁଷ ନିକଟରେ ମୋର ପ୍ରତିବଦ୍ଧତା ଅପେକ୍ଷାକୃତ ଅଧିକ। ଏହା ହିଁ ଜୀବନୀ ଲେଖିବାର ମୂଳ ପ୍ରେରଣା।

ମନସ୍ତତ୍ତ୍ୱବିତ୍ ହିସାବରେ ମୁଁ ପୂର୍ଣ୍ଣ ସଚେତନ ଯେ ନିଜର କଥା, ନିଜ ସମୟର କଥା ଲେଖିବା ବେଳେ ବ୍ୟକ୍ତିଗତ ପକ୍ଷପାତିତା ପ୍ରବେଶ କରିପାରେ। ଅତୀତ ଘଟଣାର ସ୍ମରଣ ପୂରାପୂରି ନିର୍ଭୁଲ ନ ହୋଇପାରେ। ଏପରି ତ୍ରୁଟି ବିଚ୍ୟୁତି ପାଇଁ ମୂଳରୁ କ୍ଷମା ମାଗି ନେଉଛି। ବାସ୍ତବତାର ବିଚ୍ୟୁତି ଏବଂ ସ୍ଥାନ ପାଇ ନଥିବା କୌଣସି ଘଟଣା ମୋ ଦୃଷ୍ଟିକୁ ଆଣିଲେ ମୁଁ ନିଶ୍ଚୟ ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରିବି।

ବିଶିଷ୍ଟ କବି ଓ ପ୍ରକାଶକ ଶ୍ରୀ ଗିରିଜା ବଳୀୟାରସିଂହ ବହୁଦିନରୁ ଏପରି ଏକ ପୁସ୍ତକ ଲେଖିବା ପାଇଁ ପରାମର୍ଶ ଦେଇଛନ୍ତି। ମୁଁ ତାଙ୍କୁ ଏ ସଦିଚ୍ଛା ପାଇଁ ଧନ୍ୟବାଦ ଜଣାଉଛି।

ଶ୍ରୀ ଗୁଣ୍ଡିଚା

ଜୁନ୍ ୨୫ ୨୦୧୭


**ଫକୀର ମୋହନ ସାହୁ**

ସାଇଛାୟା

ଭି.ଆଇ.ଏମ୍.୯୯, ଶୈଳଶ୍ରୀ ବିହାର

ଭୁବନେଶ୍ୱର-୨୧

# ସୂଚୀ

## ମଧ୍ୟ ଯୌବନ



## ଉତ୍ତର ଯୌବନ



❖❖❖

(୧)

# ଅଭିପ୍ରେରଣାର ଅନ୍ତଃସ୍ୱର

ଜୀବନର କଥା ଓ ସମୟର କଥା ଭିନ୍ନ ଓ ପୃଥକ୍ ନୁହେଁ। ଗୋଟିକରୁ ଅନ୍ୟଟି ବାହାର କରିନେବା ସହଜ ନୁହେଁ। ତଥାପି ନିଜ ଜୀବନର କଥା କହିବାକୁ ଆରମ୍ଭ କଲାବେଳେ ମନରେ ପ୍ରଶ୍ନ ଆସେ। କାହିଁକି ମୋ ଜୀବନର କଥା କହି ଅନ୍ୟକୁ ଭାରାକ୍ରାନ୍ତ କରିବି? ଅନ୍ୟର ସମୟ ନଷ୍ଟ କରିବି? ବ୍ୟକ୍ତି, ବସ୍ତୁ ଓ ଘଟଣା ପ୍ରତି ଲୋକଙ୍କର ମନୋଭାବ ଗଠନ କରିବାରେ କିମ୍ବା ପରିବର୍ତ୍ତନ କରିବାରେ କାହିଁକି ଇଚ୍ଛାକୃତ କିମ୍ବା ଅନିଚ୍ଛାକୃତ ପ୍ରୟାସ କରିବି?

ଏପରି ସବୁ ପ୍ରଶ୍ନରେ ଛନ୍ଦି ହେଉଥିବା ସମୟରେ ଭିତରୁ ଅନ୍ତଃସ୍ୱର ଶବ୍ଦାୟିତ ହୋଇଉଠେ। ଏହି ସ୍ୱରମାନଙ୍କ ମଧ୍ୟରୁ ଗୋଟିଏ ବଳିଷ୍ଠ ସ୍ୱର ହେଉଛି ଶ୍ରଦ୍ଧାଜ୍ଞାପନର ସ୍ୱର, କୃତଜ୍ଞତାର ସ୍ୱର। ମୋର ବର୍ତ୍ତମାନର ସ୍ଥିତି ଯାହା ହେଉନା କାହିଁକି ତାହା ପଛରେ ଅସଂଖ୍ୟ ବ୍ୟକ୍ତିବିଶେଷଙ୍କ ଅବଦାନ ରହିଛି। ହୁଏତ ସମସ୍ତଙ୍କର ନାମ ମୁଁ ଏ ମୁହୂର୍ତ୍ତରେ ମନେପକାଇ ପାରିବି ନାହିଁ। କିନ୍ତୁ ମୋର ଜନ୍ମ ସମୟରେ ଏନ୍ତୁଡ଼ିଶାଳରେ କାଠିକୁଟାରେ ଅଗ୍ନି ସଂଯୋଗ କରି ମୋତେ ଓ ମୋ ବୋଉକୁ ଉତାପ ଦେଇଥିବା ଧାଇଠାରୁ ଆରମ୍ଭ କରି ମୋର ବୌଦ୍ଧିକ ଜୀବନରେ ମୋତେ ଗବେଷଣାର ଶୈଳୀ ଶିଖାଇଥିବା ପ୍ରଫେସର୍ ବେରୀ ପର୍ଯ୍ୟନ୍ତ ବହୁତ ଲୋକଙ୍କଠାରେ ମୁଁ ଋଣୀ।

ବଞ୍ଚି ରହିବା, ସଂସାରରେ ଚାଲିବା ଏବଂ ଦୌଡ଼ିବା ମୂଳରେ ବହୁ ଲୋକଙ୍କ ହାତତାଳି ନିଃଶବ୍ଦରେ ଶୁଣାଯାଏ। ସେମାନଙ୍କ ମଧ୍ୟରୁ ବହୁତ ଲୋକଙ୍କୁ ଔପଚାରିକ ଭାବରେ ମୋର କୃତଜ୍ଞତା ଓ ଅନ୍ତରରୁ ଶ୍ରଦ୍ଧା ଜଣାଇ ପାରିନାହିଁ। ସମ୍ଭବତଃ ଏ ବହିଟି ସେ କୃତଜ୍ଞତା ଜ୍ଞାପନର ଏକ ଅନୌପଚାରିକ ପତ୍ରଗୁଚ୍ଛ।

ଜୀବନ ପଛଭୂମିର ଦ୍ୱିତୀୟ ସ୍ମାରକଟି ହେଉଛି ପରିବର୍ତ୍ତନର ସ୍ୱର। ସଂସାର କେତେ କ୍ଷିପ୍ର ଗତିରେ ବଦଳି ଯାଉଛି ସତେ! ମୋର ତିନି ବର୍ଷର ନାତୁଣୀ ତା'ର କାନରେ ହାତର ପାପୁଲି ରଖି ଫୋନ୍ କରିବାର ଅଭିନୟ କରୁଥିବା ସମୟରେ ମୋ ଶୈଶବର ସ୍ମୃତି ଉଙ୍କିମାରେ। ଆମ ଘର ଆଖପାଖରେ ଫୋନ୍ ନ ଥିଲା। ରାତିରେ ଫୋନ୍ ସଂଯୋଗ କରି ନ ପାରି ଚିକିତ୍ସାଳୟରୁ ଆମ୍ବୁଲାନ୍ସ ଆସି ନ ପାରିବାରୁ ମୋ ବୋଉକୁ ମୃତ୍ୟୁମୁଖରୁ ରକ୍ଷା କରାଗଲା ନାହିଁ। ସମୟ କେତେ ଦ୍ରୁତ ଗତିରେ ଦୌଡୁଛି, ତାହା ଜାଣିବାର ଅଧିକାର ପ୍ରତ୍ୟେକ ବ୍ୟକ୍ତିଙ୍କର ରହିଛି।

ଏହିପରି ଏକ ସାମାଜିକ ପ୍ରତିବଦ୍ଧତାର ପ୍ରେରଣା ମୋତେ ଲେଖିବା ପାଇଁ ସକ୍ରିୟ କରୁଛି। ସ୍ୱାଧୀନତା ପରବର୍ତ୍ତୀ ସମୟର କଥା, ବିଂଶ ଶତକର ଶେଷଭାଗ ଏବଂ ଏକବିଂଶ ଶତାବ୍ଦୀର ଅନୁଭବସବୁ ଜୀବନ୍ତ ନାୟକ ନାୟିକା ସାଜି ପାଖରେ ଧାଡ଼ି ବାନ୍ଧିଛନ୍ତି। ଏମାନଙ୍କର ଉପସ୍ଥିତିକୁ ଅସ୍ୱୀକାର କରିବା ଜୀବନକୁ ଅସ୍ୱୀକାର କରିବା ସହିତ ସମାନ। ପ୍ରେରଣାର ଦ୍ୱିତୀୟ ସ୍ରୋତ ରୂପେ ମୋତେ ଏହା କ୍ରିୟାଶୀଳ କରିଛି। ବିଭିନ୍ନ ପିଢ଼ିର ଲୋକମାନଙ୍କ ମଧ୍ୟରେ କିପରି ସବୁ ପରିବର୍ତ୍ତନ ଘଟି ଯାଇଛି, ତାହା ପ୍ରତ୍ୟେକ ବ୍ୟକ୍ତି ଜାଣିବା ଉଚିତ୍। ସମୟ ପ୍ରବାହର କ୍ଷିପ୍ରତାକୁ ଠିକ୍ ଭାବେ ଆକଳନ କରି ନ ପାରିଲେ ନିଜର ଦୁଇଗୋଡ଼କୁ ଏ ପୃଥିବୀରେ ସ୍ଥିର କରି ରଖିହେବ ନାହିଁ।

ସୁତରାଂ ଜଣେ ପର୍ଯ୍ୟବେକ୍ଷକ ରୂପେ, ଜଣେ ଭାବନାପ୍ରିୟ ବ୍ୟକ୍ତି ହିସାବରେ ପରିବର୍ତ୍ତନର ଏହି ଦୃଶ୍ୟପଟକୁ ଅନ୍ୟମାନଙ୍କ ପାଖରେ ଟେକି ଧରିବାର ପ୍ରୟାସ କରିଛି।

ତୃତୀୟ ପ୍ରେରଣାଟି ସବୁଠାରୁ ଅଧିକ ଶକ୍ତିଶାଳୀ। ତାହା ହେଉଛି ଭଗବତ୍ ବିଶ୍ୱାସ ଓ ଈଶ୍ୱରାନୁଭୂତି। ଜୀବନ ବିକାଶରେ କିପରି ଏହାର ଉନ୍ମେଷ ହେଲା ଏବଂ କିପରି ବିକଶିତ ହେଲା, ତାହା ହୁଏତ ସଠିକ୍ ଭାବେ ଲେଖିବା କଷ୍ଟକର।

ମାତ୍ର ସତ୍ୟପାଠର ଏକ ବିଶେଷ ଅଂଶ ରୂପେ ସ୍ୱୀକାର କରିବାକୁ ହେବ ଯେ ଈଶ୍ୱରବାଦିତା ଜୀବନର ବହୁ ଦିଗକୁ ପ୍ରଭାବିତ କରିଛି। ବିଶ୍ୱାସ-ଆଧାରିତ ଜୀବନ ଯାପନ କରିବା ସମୟରେ ଯେଉଁ କେତେକ ଜୀବନ ସିଦ୍ଧାନ୍ତର ସମ୍ମୁଖୀନ ହୋଇଛି ତାହାକୁ ନ ବାଣ୍ଟିଲେ ଗଭୀର ଅତୃପ୍ତି ରହିଯିବ। ବାପ ମା ଯେତେବେଳେ କୌଣସି ଲୋଭନୀୟ ପଦାର୍ଥ ଦେଖନ୍ତି, ତାହା ନିଜର ପୁତ୍ରକନ୍ୟାଙ୍କ ପାଇଁ ନେଇ ଆସନ୍ତି। ଇଚ୍ଛାଥାଏ ଯେ ସେମାନେ ଯେଉଁ ଆନନ୍ଦ ପାଇଛନ୍ତି, ପୁତ୍ରକନ୍ୟା (ଅଥବା ଅନ୍ୟ ପ୍ରିୟଜନ) ସେପରି ଆନନ୍ଦ ପାଆନ୍ତୁ। ତାହା ପ୍ରିୟ ଖାଦ୍ୟ ପଦାର୍ଥ ହୋଇପାରେ କିମ୍ବା ଅନ୍ୟ କୌଣସି ଉପଭୋଗର ବସ୍ତୁ ହୋଇପାରେ। ଠିକ୍ ସେହିପରି ବ୍ୟକ୍ତିଗତ ଅନୁଭବ ମଧ୍ୟରେ ଯେଉଁସବୁ "ଦର୍ଶନ"ର ସୌଭାଗ୍ୟ ମିଳିଛି, ତାହାକୁ ମୋର ପ୍ରିୟ ଭାଇଭଉଣୀମାନଙ୍କ ମଧ୍ୟରେ ନ ବାଣ୍ଟିବାର ଅତୃପ୍ତି ସହ୍ୟ କରିବା କଷ୍ଟକର। ସେଥିପାଇଁ ଜୀବନ ଯାତ୍ରାର ଭ୍ରମଣାନୁଭୂତି ପ୍ରକାଶ କରିବା ପାଇଁ ଆଗ୍ରହ ରହିଛି, ବ୍ୟାକୁଳତା ରହିଛି ଏବଂ ପ୍ରତିବଦ୍ଧତା ରହିଛି।

❖

(୨)

# ପୃଥିବୀର ପ୍ରଥମ ଆଲୋକ

ଅନାଦି କାଳରୁ ପୃଥିବୀ ଆଲୋକିତ। କିନ୍ତୁ ମୋ ପାଇଁ ପ୍ରଥମ ଆଲୋକ ହେଉଛି ମୋର ଜନ୍ମ ମୁହୂର୍ତ୍ତ। ବର୍ଷ, ମାସ, ଦିନ ଓ ସମୟ କହିପାରିବି ନାହିଁ କାରଣ ମୋର ପିତାମାତା ତାହା ଲିପିବଦ୍ଧ କରି ନ ଥିଲେ। ଏହା ଅନିଚ୍ଛାକୃତ ନୁହେଁ, ଇଚ୍ଛାକୃତ। ମୋର ଜେଜେମା' କହନ୍ତି ଯେ ମୋର ଦୁଇଜଣ ବଡ଼ ଭାଇ ଥିଲେ। ସେମାନେ ଖୁବ୍ ଅଳ୍ପ ବୟସରେ ମୃତ୍ୟୁ ବରଣ କରିଥିଲେ। ସୁତରାଂ ମୋର ଜେଜେମା ଓ ବାପମା' ସନ୍ତାନର ଆଶା ଛାଡ଼ି ଦେଇଥିଲେ। ମୋର ଜନ୍ମ ସମୟରେ ମୋର ଦୀର୍ଘ ଜୀବନ ପାଇଁ ବିଶେଷ ଆଶା ନ ଥିଲା। ସେ ଦୃଷ୍ଟିରୁ "ଜାତକ" ତିଆରି ପାଇଁ କୌଣସି ପ୍ରୟାସ ନ ଥିଲା କି ସଠିକ୍ ସମୟ ଲେଖି ରଖିବାର ଇଚ୍ଛା ନ ଥିଲା।

ମୁଁ ବଡ଼ ହେବା ପରେ ବାପାଙ୍କୁ ଜନ୍ମର ଆନୁମାନିକ ସମୟ ପଚାରିଛି। ସେ କୁହନ୍ତି ନଭେମ୍ବର ମାସ। ଦୀପାବଳିର ଅଳ୍ପଦିନ ପୂର୍ବରୁ (ସମ୍ଭବତଃ ଏକାଦଶୀ ଦିନ) ମୋର ଜନ୍ମ। ଦୀପାବଳିର ବାଣଫୁଟିବା ଶବ୍ଦରେ କାଳେ ନବଜନ୍ମିତ ଶିଶୁ ଭୟଭୀତ ହେବ, ଏଥିପାଇଁ ବୁଲି ବୁଲି ପଡ଼ୋଶୀମାନଙ୍କୁ ସବିନୟେ ଅନୁରୋଧ ଜଣେଇବାର ସ୍ମୃତିକଥା ବାପା କୁହନ୍ତି।

ମୋର ନାମ କାହିଁକି "ଫକୀର" ଦିଆଗଲା, ଏହା ସହଜରେ ଅନୁମେୟ। ମୋର ପରିବାରଟି ବଡ଼ ନ ଥିଲା; ଜେଜେମା', ବାପା ଓ ବୋଉକୁ ନେଇ ପରିବାର। ପରିବାରର ବିଶ୍ୱାସ ଥିଲା ଯେ 'ଫକୀର' ନାମଟି ଯମ ପାଇଁ ଲୋଭନୀୟ ହେବ ନାହିଁ, ତା'ର ଦୃଷ୍ଟି ଏଡ଼ାଇ ଯିବ। ମୋର ବାପମା' ପୁଣି ବିଶ୍ୱାସ କରୁଥିଲେ ଯେ ସେମାନେ ମୋର ପାଳନକର୍ତ୍ତା ନୁହନ୍ତି। ସେଥିପାଇଁ ସେମାନେ ଈଶ୍ୱରଙ୍କ ନାମ ଉଚ୍ଚାରଣ କରି ମୋତେ ତଳେ ଗଡ଼ାଇ ଦେଇଥିଲେ। ସେମାନଙ୍କ ଭାଷାରେ କହିଥିଲେ "ଆମେ ଭଗବାନଙ୍କ ପାଦ ତଳେ ସମର୍ପି ଦେଉଛୁ।"

ପରିଣତ ବୟସରେ ମୁଁ ବୁଝିଛି ଏପରି ସମର୍ପଣର ଭାଷା ପ୍ରକୃତରେ ଶରଣାଗତି ନୁହେଁ। ପୂର୍ଣ୍ଣାଙ୍ଗ ଶରଣାଗତି ଏକ ଶୀର୍ଷ ଅନୁଭୂତି। ଏହା କଠିନ ସାଧନାର ପରିଣତି। ସେଇ ଶରଣାଗତିର ମାନସିକତା ପାଖରେ ସେମାନେ ପହଞ୍ଚି ପାରି ନ ଥିଲେ।

ତଥାପି ତାହାର ପ୍ରତୀକକୁ କିଛି ମାତ୍ରାରେ ମୋର ବାପମା' ଓ ଜେଜେମା' ଧରି ରଖିଥିଲେ। ବାହାରେ ଚାଲିବା ପାଇଁ ମୋର ଦକ୍ଷତା ଆସିବା ପରେ ବର୍ଷରେ ଗୋଟିଏ ଦିନ ମୋତେ ଫକୀର ବା ଭିକାରୀ ରୂପେ ପୋଷାକ ପିନ୍ଧାଇ ଦିଆଯାଏ। ମୁଁ

ହାତରେ ଭିକ୍ଷାଥାଳୀ ଧରି ଦଶ ବାଟଟି ଗୃହକୁ ଭିକ୍ଷା କରିବାକୁ ଯାଏ। ପରିପ୍ରେକ୍ଷାଟି ଠିକ୍ ସୂଚାଇ ଦେବା ପାଇଁ ସାଙ୍ଗରେ ମୋର ଜେଜେମା' ଯାଇଥାଆନ୍ତି। ଏପରି ପ୍ରତୀକଧର୍ମୀ ଉପଚାର ପ୍ରାୟ ମୋର ପ୍ରାଥମିକ ଶିକ୍ଷା (ପଞ୍ଚମ ଶ୍ରେଣୀ)ଶେଷ ପର୍ଯ୍ୟନ୍ତ ଚାଲିଥିଲା।

ସଂଗୃହୀତ ଚାଉଳ, ପନିପରିବା ଓ ସାମାନ୍ୟ ପରିମାଣର ଅର୍ଥ ସହିତ ଆଉ କିଛି ପଇସା ମିଶାଇ ଆମେ ଗୋଟିଏ ଦିନ କଟକର ଦରଘା ବଜାରସ୍ଥିତ କଦମ୍ ରସୁଲ୍‌କୁ ଯାଉ। କଦମ୍ ରସୁଲ୍ ଜଣେ ମୁସ୍‌ଲିମ୍ ସନ୍ଥଙ୍କ ମହାସମାଧିର ପୀଠ। ଏହା ଏକ ପବିତ୍ର ପୀଠ। "ଫକୀର" ଶବ୍ଦର ଉତ୍ପତ୍ତି ମୂଳରେ ହିନ୍ଦୁ ଓ ମୁସ୍‌ଲିମ୍ ବିଶ୍ୱାସର ସମନ୍ୱୟ ରହିଛି। ଫକୀର ଶବ୍ଦଟି ପବିତ୍ର କୋରାନ୍ ଗ୍ରନ୍ଥରେ ରହିଛି ଏବଂ ଆଲ୍ଲାଙ୍କର ବିଶିଷ୍ଟ ଗୁଣ ମଧ୍ୟରୁ ଅନ୍ୟତମ ଗୁଣ ରୂପେ ବର୍ଣ୍ଣନା କରାଯାଇଛି। କଦମ୍ ରସୁଲ୍ ଯାଇ ସେଠାରେ ପୂଜାର୍ଚ୍ଚନା କରିବା ପରେ ଆମେ ନେଇ ଯାଇଥିବା ଚାଉଳ, ପନିପରିବା, ଅର୍ଥ ଓ ମିଷ୍ଟାନ୍ନକୁ ସେଠାରେ ଉପସ୍ଥିତ ଥିବା ଭିକ୍ଷୁକମାନଙ୍କୁ ବଣ୍ଟନ କରାଯାଏ। ଅନ୍ତତଃ ବର୍ଷରେ ଗୋଟିଏ ଦିନ ମୋତେ ଅନୁଭବ କରିବାର ସୁଯୋଗ ଦିଆଯାଏ ଯେ, ମୁଁ ଦୁଃଖୀଦରିଦ୍ରଙ୍କ ମଧ୍ୟରୁ ଜଣେ ମାତ୍ର। ଏହି ପାରିବାରିକ ପ୍ରଥା ପ୍ରାୟ ପ୍ରାଥମିକ ଶିକ୍ଷାର ଶେଷ ପର୍ଯ୍ୟନ୍ତ ଅବ୍ୟାହତ ଥିଲା।

ମୋର ପିତାଙ୍କର ନାମ ପଦ୍ମନାଭ ସାହୁ ଏବଂ ମା'ଙ୍କର ନାମ ଦୁର୍ଗା ଦେବୀ। ଜେଜେମା'ଙ୍କର ନାମ ଥିଲା ମୌନାବତୀ। ସାହି ପଡ଼ିଶାରେ ବଡ଼ମାନେ ତାଙ୍କୁ "ମଇନା" ବୋଲି ଡାକୁଥିଲେ। ସେ ଉଜ୍ଜ୍ୱଳ ଗୌରକାନ୍ତି ସମ୍ପନ୍ନ ଥିଲେ। ପରବର୍ତ୍ତୀ କାଳରେ ମୋର ପତ୍ନୀ ତାଙ୍କୁ ଦେଖିଲା ପରେ ଥଟ୍ଟା କରି କହିଲେ, "ଏ ଇଉରୋପୀୟ ମହିଳା ଓଡ଼ିଶାକୁ ଆସିଲେ କିପରି? ଏ ଶ୍ୱେତାଙ୍ଗ ଜିନ୍ ଏଠାକୁ ଚାଲି ଆସିଲା କିପରି?"

ଆମ ଘରଟି କଟକ ସହର ପୂର୍ବାଞ୍ଚଳ ସହରତଳି ଅଞ୍ଚଳ "ଚାଉଳିଆଗଞ୍ଜ"। ସେହିଠାରେ ହିଁ ମୋର ଜନ୍ମ। ଲୋକମାନେ କୁହନ୍ତି ଯେ ଇଂରାଜୀ ଶାସନ ସମୟରେ ଏହା ଚାଉଳ କାରବାରର ଏକ କେନ୍ଦ୍ର ଥିଲା। ସେଇଥିପାଇଁ ସମ୍ଭବତଃ ଏପରି ନାମକରଣ ହୋଇଛି। ଏହାର ମଝିରେ ଥିବା ମୁଖ୍ୟ ଛକରେ ଏକ ସୁନ୍ଦର ଲକ୍ଷ୍ମୀନାରାୟଣ ମନ୍ଦିର ରହିଛି। ଏହାର ପୂର୍ବ ଦିଗକୁ ଲମ୍ବି ଯାଇଥିବା ବଡ଼ ରାସ୍ତାଟି ନୂଆ ବଜାରକୁ ସଂଯୁକ୍ତ କରୁଛି। ଏହି ରାସ୍ତାର ଦୁଇ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ହେଉଛି ଥଟାରୀ ସାହି। ଲକ୍ଷ୍ମୀନାରାୟଣ ମନ୍ଦିରର ନିକଟବର୍ତ୍ତୀ ଥଟାରୀ ସାହିରେ ଆମର ଘର।

ଏହି ସାହିରେ ବସବାସ କରୁଥିବା ଅଧିକାଂଶ ଲୋକ ହେଉଛନ୍ତି ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକ। ବହୁଲୋକ କୌଳିକ ବୃତ୍ତି କରି (କଂସାବାସନ) ଜୀବିକା ନିର୍ବାହ କରନ୍ତି। ଅବଶ୍ୟ ମୋ ବାପାଙ୍କର ଭିନ୍ନ ଧରଣର ଜୀବିକା। ଆମେ ଥଟାରୀ ସାହିରେ

ରହୁଥିଲେ ମଧ୍ୟ ଅଟ୍ଟାରୀ ନ ଥିଲୁ। ସେ କଟକ ସହରର ରାଣୀହାଟରେ ଥିବା "ମଣିନାଥ ବିସ୍କୁଟ ଓ ଲଜେନ୍ସ" କାରଖାନାର ଜଣେ ଛୋଟକାଟିଆ ମ୍ୟାନେଜର ଥିଲେ। କାରଖାନା ପ୍ରସ୍ତୁତ ଜିନିଷ ନେଇ ଭ୍ୟାନ୍‌ରେ ଖୋର୍ଦ୍ଧା, ଜଟଣୀ, ଢେଙ୍କାନାଳ ଓ ପୁରୀ ଇତ୍ୟାଦି ସହରକୁ ଯାଇ ଛୋଟ ଛୋଟ ବେପାରୀମାନଙ୍କୁ ଦେଇ ଆସୁଥିଲେ।

ମୋର ଜନ୍ମର ଦୁଇ ବର୍ଷ ପରେ ମୋର ସାନ ଭାଇ ଅଚ୍ୟୁତାନନ୍ଦର ଜନ୍ମ। ଆମର ଘରଟା ଥିଲା ଖୁବ୍ ସାଧାରଣ। ଦୁଇ ବାସୋପଯୋଗୀ କୋଠରି ଏବଂ ଗୋଟିଏ ବାହାର ଘର। ଗୋଟିଏ କୋଠରିକୁ ଲାଗି ଛୋଟ ରୋଷାଇ ଘରଟି ଥିଲା। ଆମ ଘର ସାମନାରେ ଯେଉଁ ଗୋଟିଏ ବଡ଼ ଘର ଥିଲା ତାହାର ଗୃହକର୍ତ୍ତାଙ୍କୁ ଆମେ ବଡ଼ବାପା ବୋଲି ଡାକୁଥିଲୁ ଏବଂ ତାଙ୍କର ପତ୍ନୀଙ୍କୁ ବଡ଼ମା' ଡାକୁଥିଲୁ। ସେମାନେ ଖୁବ୍ ସ୍ନେହୀ ଥିଲେ। ମୋର ଜେଜେମା' କୁହନ୍ତି ଯେ ଆମର ବାସସ୍ଥାନର ଜମିଟି ଏହି ବଡ଼ବାପାଙ୍କର ଥିଲା। କୌଣସି ଏକ ଦୁର୍ଦ୍ଦିନରେ ସେ ଏ ଜମିକୁ ବିକିବାକୁ ଚାହିଁଲେ ଏବଂ ମୋର ବାପା ମାତ୍ର ଚାଳିଶ ଟଙ୍କାରେ ତାହା କିଣିଥିଲେ। ଚାଳିଶ ଟଙ୍କା ସେ ସମୟର ନଗଣ୍ୟ ନ ଥିଲେ ମଧ୍ୟ ଜମି କିଣା ପରିପ୍ରେକ୍ଷୀରେ ଏହା ପ୍ରାୟତଃ ମାଗଣା ଥିଲା ବୋଲି ବିଚାର କରାଯିବ। ସେଥିପାଇଁ ଆମର ପରିବାର ବଡ଼ବାପାଙ୍କ ପାଖରେ କୃତଜ୍ଞ ରହିଥିଲୁ।

ମୋର ଜେଜେମା' କୁହନ୍ତି ଯେ ତାଙ୍କର ମୂଳ ବାସଭୂମି ହେଉଛି ଚୌଦ୍ୱାର। ବିବାହର ଅଳ୍ପ ବର୍ଷ ମଧ୍ୟରେ ସେ ତାଙ୍କର ପତିଙ୍କୁ ହରାଇ ବସନ୍ତି। ମୋ ଜେଜେବାପାଙ୍କ ନାମ ଥିଲା ମଧୁସୂଦନ ସାହୁ। ସେ ସମୟରେ ମୋ ବାପାଙ୍କ ବୟସ ମଧ୍ୟ କମ୍। ସ୍ଥାବର ସମ୍ପତ୍ତି କମ୍ ନ ଥିଲେ ମଧ୍ୟ ତା'ର ରକ୍ଷଣା ବେକ୍ଷଣ ପାଇଁ କେହି ପ୍ରାୟ ନ ଥିଲେ। ଅନ୍ୟମାନଙ୍କ ଚକ୍ରାନ୍ତରେ ସେ ସମ୍ପତ୍ତି ହରାଇ ବସିଲେ।

ବାପା ଟିକିଏ ବଡ଼ ହେବା ପରେ ଜଣେ ଦୂର ସମ୍ପର୍କୀୟ ବ୍ୟକ୍ତିଙ୍କ (ଶ୍ରୀ ଶ୍ୟାମ ସାହୁ) ପରାମର୍ଶରେ ଜେଜେମା' ମୋର ବାପାଙ୍କୁ ନେଇ ଜାମସେଦ୍‌ପୁର ଚାଲିଗଲେ। ସେଠାରେ ଶ୍ୟାମ ସାହୁଙ୍କର ବ୍ୟବସାୟ ଥିଲା। ସେ ବାପାଙ୍କୁ ଚାକିରି ଦେଲେ। ବାପାଙ୍କ କୈଶୋର ଓ ପ୍ରାକ୍-ଯୌବନ ସେହି ଟାଟା ନଗରରେ ହିଁ କଟିଥିଲା। କାହାର ପ୍ରରୋଚନାରେ ସେ କଟକ ସହର ଆସିଲେ ଏବଂ ଚାଉଳିଆଗଞ୍ଜକୁ ବାସସ୍ଥାନ ରୂପେ ବାଛିନେଲେ, ତାହାର ଇତିହାସ ମୋତେ ଜଣା ନାହିଁ।

ଚାଉଳିଆଗଞ୍ଜ ଅଞ୍ଚଳଟି କେତେକ ଦୃଷ୍ଟିରୁ ଭଲ ଥିଲା। ବିଭିନ୍ନ ସ୍ଥାନରେ ମନ୍ଦିର ଏବଂ ବର୍ଷର ବିଭିନ୍ନ ସମୟରେ ଯାନିଯାତ୍ରା ଜୀବନକୁ କୋଳାହଳମୟ ରଖୁଥିଲା। ଛକରେ ଥିବା ଲକ୍ଷ୍ମୀନାରାୟଣ ମନ୍ଦିରରୁ ଯେଉଁ ରାସ୍ତାଟି ପୂର୍ବପଟେ ନୟାବଜାର

ପର୍ଯ୍ୟନ୍ତ ଲମ୍ବି ଯାଇଛି, ସେ ରାସ୍ତାର ଶେଷ ପାର୍ଶ୍ୱରେ ଶ୍ରୀ ମଦନମୋହନ ମନ୍ଦିର ଏବଂ ତା'ର ଅଳ୍ପ ଦୂରରେ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିର ରହିଛି। କାର୍ତ୍ତିକ ପୂର୍ଣ୍ଣିମା, ଚନ୍ଦନଯାତ୍ରା, ଦୋଳଯାତ୍ରା ଓ ଶିବରାତ୍ରୀ ସମୟରେ ଏ ଅଞ୍ଚଳ ଉତ୍ସବ ମୁଖର ହୋଇଉଠେ।

ଛକରୁ ପଶ୍ଚିମ ଦିଗକୁ ଲମ୍ବି ଯାଇଥିବା ରାସ୍ତାଟି ଓ.ଏମ୍.ପି. ଛକ ପାଖାପାଖି ପାଞ୍ଚନମ୍ବର ଜାତୀୟ ରାଜପଥକୁ ସଂଯୋଗ କରୁଛି। ଏହା ହେଉଛି ମଠସାହି। ମଠ ସାହିରେ ଅବସ୍ଥିତ ଶ୍ରୀ କାମେଶ୍ୱର ମନ୍ଦିର ଏବଂ କୁଞ୍ଜବିହାରୀ ମନ୍ଦିର ମଧ୍ୟ ଧାର୍ମିକ ରୀତିନୀତିର କେନ୍ଦ୍ର ରୂପେ କାର୍ଯ୍ୟ କରିଥାଏ। ଛକର ଉତ୍ତର ଦିଗକୁ ଯାଇଥିବା ଛୋଟ ରାସ୍ତାର ସାହିଟି ହେଉଛି ତଳସାହି। ଏ ରାସ୍ତା ଓ.ଏମ୍.ପି. ଛକରୁ ପାରାଦୀପକୁ ଯାଇଥିବା ରାସ୍ତାକୁ ସଂଯୁକ୍ତ କରୁଛି। ସେହିପରି ଛକରୁ ଦକ୍ଷିଣ ଦିଗକୁ ଯାଇଥିବା ଛୋଟ ରାସ୍ତାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ହେଉଛି ମଙ୍ଗଳା ସାହି। ଏହି ରାସ୍ତାଟା ଛକରୁ ଗଡ଼ିଯାଇ ତାଳଦଣ୍ଡା କେନାଲ କୂଳରେ ଶେଷ ହୋଇଛି।

ଚାଉଳିଆଗଞ୍ଜର ଭୌଗୋଳିକ ସୀମାରେଖା ମଧ୍ୟରେ ଧାର୍ମିକ ବାତାବରଣର ସ୍ପର୍ଶ ମୂଳରୁ ଦେହରେ ଓ ପ୍ରାଣରେ ଲାଗୁଥିଲା। ଟିକିଏ ବଡ଼ ହେବା ପରେ ବିଭିନ୍ନ ବର୍ଗର ପିଲାମାନେ ଏକାଠି ହୋଇ ଖେଳୁଥିଲୁ, ମଜା କରୁଥିଲୁ। ଧୀରେ ଧୀରେ ବଡ଼ ହେବା ପରେ ଗୋଟିଏ ଅଭାବବୋଧ ଆଖିରେ ପଡ଼ିଲା। କିଛି ଲୋକଙ୍କ ଆର୍ଥିକ ଅବସ୍ଥା ବ୍ୟବସାୟ ଯୋଗୁଁ ଖୁବ୍ ସ୍ୱଚ୍ଛଳ ହେବା ସ୍ଥଳେ ଅନ୍ୟ କେତେକଙ୍କର ଦୁରବସ୍ଥା ଏକ ବୈଷମ୍ୟର ଆବାହାଓ୍ୱା ଆଣିଥିଲା। ତେଣୁ ବାହାରର ଆଚରଣ ନେଇ ବିଭେଦ ନ ଥିଲେ ମଧ୍ୟ ଅନ୍ତଃସ୍ରୋତରେ କିଛିଟା ତିକ୍ତତା ରହିଥିଲା।

ବହୁ ଦୃଷ୍ଟିରୁ ଆମ ପରିବାରଟି ଭାଗ୍ୟବାନ। ଘର ଆଗରେ ବଡ଼ବାପା ଓ ବଡ଼ମା'ଙ୍କ ସ୍ନେହ ଶ୍ରଦ୍ଧା ଆମକୁ ଯେପରି ଆନନ୍ଦ ଦେଉଥିଲା, ଆମ ଘରର ଅନ୍ୟ ପାର୍ଶ୍ୱରେ ଛୁଆ ବା' ଓ ଛୁଆମା'ଙ୍କ ମମତାମୟ ବ୍ୟବହାର ସେତିକି ସୁଖ ଦେଉଥିଲା। ବଡ଼ବା', ଛୁଆବା'ଙ୍କ ପରିବାର ଜମିଦାର ଶ୍ରେଣୀୟ ପରିବାର। କିନ୍ତୁ ସେମାନଙ୍କ ଜମିଜମାର ବିସ୍ତୃତି ଅପେକ୍ଷା ସେମାନେ ସ୍ନେହର ବିସ୍ତାର ଆମ ଦୁଇ ଭାଇଙ୍କର ଜୀବନକୁ ଶୈଶବରେ ଆଚ୍ଛନ୍ନ କରି ରଖିଥିଲା।

❖

(୩)

# ପ୍ରଥମ ପାଠ ଚାଟଶାଳୀରେ

ବର୍ଷ, ମାସ ଓ ତାରିଖ ଜାଣିବାର ଉପାୟ ନାହିଁ। ମୋର ବୟସ କେତେ ହୋଇଥିଲା ତାହା ମଧ୍ୟ ଜାଣିନାହିଁ। ତେବେ ହାତରେ ସ୍ଲେଟ ଧରି ଏବଂ ମୁଣ୍ଡାଏ ଖଡ଼ି (ଚକ୍ ନୁହେଁ) ଜେଜେମା'ଙ୍କ ସଙ୍ଗରେ ଚାଟଶାଳୀ ଯାଇଥିଲି। ଚାଳଘର, ଉଚ୍ଚ ପିଣ୍ଡା। ବଡ଼ ସନ୍ତର୍ପଣରେ ପିଣ୍ଡା ଉପରକୁ ଉଠିଲି। ଜାଣିଥିଲି ଯେ ଏଇଟି ଗୋବିନ୍ଦ ଅବଧାନଙ୍କ ଚାଟଶାଳୀ। ମନରେ ପ୍ରଚୁର ଭୟ। ଶୁଣିଥିଲି ଗୋବିନ୍ଦ ମାଷ୍ଟ୍ରେ ବେତ ପ୍ରହାର କରି ପିଲାମାନଙ୍କୁ ମାଡ଼ ଦିଅନ୍ତି।

କିନ୍ତୁ ମୋର ଅଭୟ ଦାତ୍ରୀ ଥିଲେ ମୋର ଜେଜେମା'। ସେ କେବଳ ବାଟ କଢ଼ାଇ ନେଇ ନ ଥିଲେ ଗୋବିନ୍ଦ ମାଷ୍ଟ୍ରେଙ୍କ ପାଖରେ ମୋର ପରିଚୟ ଦେଇ ମୋର ଦାୟିତ୍ୱ ଗ୍ରହଣ ପାଇଁ ସବିନୟ ଅନୁରୋଧ ଜଣାଇଲେ।

ଗୋବିନ୍ଦ ମାଷ୍ଟ୍ରେ ଦୀର୍ଘାକୃତିର ମଣିଷ। ସେ ବସିଥିଲେ। ସ୍ମିତ ହସି ମୋତେ ପାଖକୁ ଡାକି ବସାଇଲେ। ମୋର ଭୟ ପୂରାପୂରି କଟି ନ ଥାଏ। ଜେଜେମା' ରହିବେ କି ଯିବେ ତାହା ସ୍ଥିର କରି ପାରୁ ନ ଥାନ୍ତି। କିଛି ସମୟ ଅପେକ୍ଷା କଲା ପରେ କହିଲେ, "ସାର୍ ମୁଁ ଯାଉଛି। ତା'ର ଦାୟିତ୍ୱ ଆପଣଙ୍କ ଜିମାରେ। ଆଜିର ପାଠପଢ଼ା ସରିଲେ ମୁଁ ଆସି ନେଇଯିବି।" ଏହା କହି ମୋତେ ଗୋଟିଏ ସାନ୍ତ୍ୱନାମୂଳ ଚାହାଣୀ ଦେଇ ଚାଲିଗଲେ।

ପ୍ରଥମ ଦିନର ପାଠ ମୋର ସ୍ପଷ୍ଟ ମନେଅଛି। ଗୋବିନ୍ଦ ମାଷ୍ଟ୍ରେ ମୋ ହାତରୁ ଖଡ଼ିମୁଣ୍ଡାଟି ନେଇ ସ୍ଲେଟରେ ତିନୋଟି ଶୂନ୍ୟ (ବୃତ୍ତ) ଆଙ୍କିଦେଲେ। ଗୋଟିଏ ଛୋଟ, ଗୋଟିଏ ମଧ୍ୟମ ଆକାରର ଏବଂ ଅନ୍ୟଟି ବଡ଼। କହିଲେ: ବ୍ରହ୍ମା, ବିଷ୍ଣୁ, ମହେଶ୍ୱର। ତାଙ୍କର ଦୃଢ଼ ହାତରେ ମୋର ଡାହାଣ ହାତର ମଣିବନ୍ଧକୁ ଧରିଲେ ଏବଂ କ୍ରମାନ୍ୱୟରେ ଛୋଟ, ମଧ୍ୟମ ଓ ବଡ଼ ବୃତ୍ତ ଉପରେ ମୋ ହାତର ଖଡ଼ିକୁ ବୁଲାଇଲେ। ବୁଲାଇବା ସମୟରେ ଉଚ୍ଚ ସ୍ୱରରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବୋଲି କହୁଥାଆନ୍ତି ଏବଂ ମୋତେ ମଧ୍ୟ କହିବା ପାଇଁ ପ୍ରୋତ୍ସାହିତ କରୁଥାଆନ୍ତି।

ମୋର ଭୟ ଧୀରେ ଧୀରେ କଟିଗଲା। ମୁଁ ଅନୁଭବ କଲି ଯେ ଗୋବିନ୍ଦ ସାରଙ୍କ ପାର୍ଶ୍ୱରେ ଗୋଟିଏ ବେତ ରହିଥିଲେ ମଧ୍ୟ ଖୁବ୍ କମ୍ ସମୟରେ ସେ ଏହାର ବ୍ୟବହାର କରୁଛନ୍ତି। ପିଲାମାନେ ପାଟିତୁଣ୍ଡ କଲେ କିମ୍ବା ଅନ୍ୟମନସ୍କ ହେଲେ ଦଣ୍ଡ ପାଉଛନ୍ତି। ମୋର ସୌଭାଗ୍ୟ ଯେ ମୁଁ ସେପରି ଶାସ୍ତିର ଶରବ୍ୟ ହୋଇନାହିଁ।

ପରିପକ୍ୱତା ଆସିବା ପରେ ମୁଁ ସ୍ପଷ୍ଟ ବୁଝିପାରିଲି ଯେ ଶିକ୍ଷାର ପ୍ରଥମ ପାଦରେ ବୃତ୍ତ ଉପରେ ଖଡ଼ି ଚାଳନା କରି ନିଜର ଅଙ୍ଗୁଳି ଚାଳନାରେ ସମନ୍ୱୟ ଶିକ୍ଷା କରିବା କାହିଁକି ଗୁରୁତ୍ୱପୂର୍ଣ୍ଣ। ଏହା ସର୍ବସ୍ୱୀକୃତ ଯେ ଓଡ଼ିଆ ଭାଷାର ଅକ୍ଷରସବୁ ଗୋଲାକୃତିର ଅଂଶ ବିଶେଷ। ପ୍ରତିଟି ଅକ୍ଷରରେ ବୃତ୍ତ କିମ୍ୱା ଏହାର ଅଂଶବିଶେଷ ରହିଛି। ସୁତରାଂ ପ୍ରଥମେ ବିଭିନ୍ନ ଆକାରର ବୃତ୍ତ ଅଙ୍କନ କରିବାର ଅଭ୍ୟାସ ନିଶ୍ଚିତ ଭାବରେ ପରବର୍ତ୍ତୀ ପର୍ଯ୍ୟାୟରେ ଅକ୍ଷର ଚିହ୍ନିବା ଏବଂ ଲେଖିବା ପାଇଁ ଖୁବ୍ ଉପଯୋଗୀ।

ଗୋବିନ୍ଦ ମାଷ୍ଟ୍ରଙ୍କ ଚାଟଶାଳୀରୁ ମୁଁ କେବେ ଯାଇ ଅନ୍ୟ ଗୋଟିଏ ଚାଟଶାଳୀରେ ପହଞ୍ଚିଲି ତାହାର କାରଣ କିମ୍ୱା ସମୟ ଜାଣି ନାହିଁ। ଶିକ୍ଷକଙ୍କ ନାମ ଭରତ ସାର୍। ସାଧାରଣ ସ୍ୱାସ୍ଥ୍ୟ, ଆଦୌ ରାଗୀ ଜଣା ପଡ଼ନ୍ତି ନାହିଁ। କିନ୍ତୁ ବେତଟିଏ ଥାଏ, ଯଦିଓ ତାଙ୍କଠାରୁ ବେଶ୍ ଦୂରରେ। ଚାଟଶାଳୀ କୋଠରିଟି ବେଶ୍ ପ୍ରଶସ୍ତ କିନ୍ତୁ ଚାଳଘର। ଛାତ୍ରଛାତ୍ରୀଙ୍କ ସଂଖ୍ୟା ବେଶ୍ ଅଧିକ। ପ୍ରାୟ ଚାଳିଶ ହେବ। ଶିକ୍ଷକ ପ୍ରବେଶ ଦ୍ୱାର ପାଖାପାଖି ବସନ୍ତି। ଆମେ ସବୁ ଚାରିକାନ୍ଥକୁ ଆଉଜି ବସିଥାଉ। ଆୟତକାର ଭଙ୍ଗୀରେ ବସିବାର ଧାଡ଼ିଗୁଡ଼ିକ ହୋଇଥାଏ। ବଳକା କିଛି ଛାତ୍ରଛାତ୍ରୀ ଡେରିରେ ଆସିଲେ ସେମାନେ ଶିକ୍ଷକଙ୍କ ସାମନାରେ ମଝିରେ ଗୋଟିଏ ଧାଡ଼ିରେ ବସନ୍ତି।

ମୋର ବୟସ ଅଧିକ ହୋଇଥିବାରୁ ଗୋଟିଏ ଦୁଇଟି ସ୍ମୃତି ସଜଳ ରହିଛି। ଭରତ ସାର୍ ପାଠ ପଢ଼ାଇବା ସମୟରେ ବେତ ବ୍ୟବହାର କରୁ ନ ଥିଲେ ମଧ୍ୟ ଗୋଟିଏ ସମୟରେ ନିଶ୍ଚିତ ଭାବେ କରୁଥିଲେ। ଛାତ୍ରଛାତ୍ରୀଙ୍କ ସଂଖ୍ୟା ଅଧିକ ହୋଇଥିବାରୁ ଆମ ମଧ୍ୟରୁ ଜଣକୁ ସାର୍ ମନିଟର୍ ବା ବଡ଼ଚାଟ ରୂପେ ବାଛିଥାଆନ୍ତି। ମନିଟରର ଗୋଟିଏ ବଡ଼ ଦାୟିତ୍ୱ ହେଉଛି ସକାଳ ଓଳି ଶୀଘ୍ର (ପ୍ରାୟ ପ୍ରଥମେ) ଆସିବାର ଦାୟିତ୍ୱ। କାମ ହେଉଛି ପିଲାମାନଙ୍କର ଶୀଘ୍ର ପହଞ୍ଚିବା କାର୍ଯ୍ୟକୁ ତଦାରଖ କରିବା। ସୁତରାଂ ମନିଟର୍ ଗୋଟିଏ କାଗଜ ନେଇ ନିଜ ବାମ ପାଖରେ '୦' (ଶୂନ୍ୟ) ଲେଖେ। ତା'ପରେ ଆସୁଥିବା ପିଲା ପାଖରେ '୧', ପରେ ପରେ ଆସୁଥିବା ପିଲାର ବାମ ପାର୍ଶ୍ୱରେ '୨' ଏବଂ ଏହିପରି ଲେଖାଯାଏ।

ଦିନବେଳାର ଚାଟଶାଳୀ ଶେଷ ହେବା ମୁହୂର୍ତ୍ତରେ ସହଳ ଉପସ୍ଥାନ ପାଇଁ ପ୍ରୋତ୍ସାହନ ଓ ବିଳମ୍ୱ ଉପସ୍ଥାନ ପାଇଁ ଦଣ୍ଡବିଧାନର ପର୍ବ ଆରମ୍ଭ ହୁଏ। ସାର୍ ବେତ ଧରି ଠିଆ ହୁଅନ୍ତି। ମନିଟର୍ ନାମଟି କହି '୦' (ଶୂନ୍ୟ) କହିଲେ ସାର୍ ବେତକୁ ତାହାଣ ହାତ ପାପୁଲିରେ ମୃଦୁ ସ୍ପର୍ଶ ଦିଅନ୍ତି। ସମ୍ଭବତଃ ସ୍ନେହର ସ୍ପର୍ଶ। ତା'ପରେ ୧ ନମ୍ୱରର ଥିବା ପିଲାଟି ଗୋଟିଏ ବେତ ପାହାର, ଦୁଇ ନମ୍ୱର ପାଏ ଦୁଇ ପାହାର ଇତ୍ୟାଦି। ପାହାରର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ବେତ ପାହାରର ତୀବ୍ରତା ମଧ୍ୟ ବଢ଼େ। ଶେଷବେଳକୁ ଆସିଥିବା ପିଲାମାନଙ୍କର ଦୁର୍ଦ୍ଦଶା ଆପଣମାନେ

କଳ୍ପନା କରି ପାରୁଥିବେ। ସକାଳେ ଶୀଘ୍ର ଆସିବା ପାଇଁ ପିଲାମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଗଢ଼ି ତୋଳିବାର ଏ ଏକ ମାଧ୍ୟମ।

କେଉଁ କାରଣରୁ ଭରତ ସାର୍ ଚାଟଶାଳୀ ଛାଡ଼ି ଚାଲିଗଲେ ଏବଂ ତାଙ୍କ ସ୍ଥାନରେ ବିଷ୍ଣୁ ସାର୍ ଆସିଲେ ତାହା କହିହେବ ନାହିଁ। ସେଇ ଏକା ଘର, ଏକା ପରିବେଶ। ବିଷ୍ଣୁ ସାର୍‌ଙ୍କ ରୀତିନୀତି ମଧ୍ୟ ସମାନ ଧରଣର ଥିଲା। ମୋର ମନେହୁଏ ଧନୀ ଓ ଦରିଦ୍ର ପରିବାରର ପିଲାମାନେ ଏଠାକୁ ଆସୁଥିଲେ। ମୁଖ୍ୟତଃ ଗଣିତ ଓ ସାହିତ୍ୟ ପାଠ୍ୟ ବିଷୟ ରହିଥିଲା। ଚାଟଶାଳୀରେ ଥିବା ପିଲାମାନଙ୍କ ମଧ୍ୟରେ ସେପରି କିଛି "ଶ୍ରେଣୀ" ନ ଥିଲା। ଶିକ୍ଷକ ସମସ୍ତଙ୍କୁ ଅଧିକାଂଶ ସମୟରେ ସମାନ ଭାବରେ କଥା କହୁଥିଲେ। ବେଳେବେଳେ କୌଣସି ପିଲା ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଲେ କିମ୍ବା ସାର୍‌ଙ୍କ ସହାୟତା ଲୋଡ଼ିଲେ ସେ ତା'ପାଇଁ ଉତ୍ତର ଦେଉଥିଲେ।

ରୁଟିନ୍‌ବନ୍ଧା ଗତାନୁଗତିକ କାରବାର ମଧ୍ୟରେ କ୍ଳାନ୍ତି ଓ ଆଗ୍ରହହୀନତା ଉପୁଜିବା ସ୍ୱାଭାବିକ। ଆମେମାନେ ମଧ୍ୟ ନିଜସ୍ୱ ଶୈଳୀରେ ଟିକିଏ ମଜା, ଟିକିଏ ହସର ଆବାହାୱା ସୃଷ୍ଟି କରିବାର ଚେଷ୍ଟା କରୁଥିଲୁ। ସେତେବେଳେ ଆମ୍ଭମାନଙ୍କୁ ପଣକିଆ ଶିକ୍ଷା ଦିଆ ଯାଉଥିଲା। ବିଶେଷତଃ ୨ରୁ ଆରମ୍ଭ କରି ୨୫ ପର୍ଯ୍ୟନ୍ତ ଗୁଣନ ଫଳ ମୁଖସ୍ଥ କରି କହିବାକୁ ହେଉଥିଲା। ପୁଣି ୧୭ ସଂଖ୍ୟାର ପଣକିଆରେ ୧୭ ଚଉ (୧୭×୪) ୬୮ କହିଲେ ଯଥେଷ୍ଟ ହେବ ନାହିଁ। ସେ ସମୟରେ ମେଟ୍ରିକ ପଦ୍ଧତି ଆରମ୍ଭ ହୋଇ ନ ଥିଲା। ୧୬ ଅଣାକୁ ନେଇ ଗୋଟିଏ ଟଙ୍କା ହେଉଥିଲା। ଏଣୁ ୬୮ ଅଣା ହେଉଛି ୪ଟଙ୍କା ୪ ଅଣା। ଏ ଦୃଷ୍ଟିରୁ ଗୋଟିଏ ପିଲା ସତରକ ପଣକିଆ ଡାକିବା ସମୟରେ ୧୭×୧, ୧୭×୨, ୧୭×୩ କ୍ରମରେ ୧୭×୪ ପର୍ଯ୍ୟନ୍ତ ଡାକିଯିବ। ସତର ଚଉ ଅଡଷଠୀ କହିବା ସମୟରେ "ସତର ଚଉ ଅଡଷଠୀ ଚାରି ଟଙ୍କା ଚାରି ଅଣା" ବୋଲି କହିବାକୁ ହେବ।

ପ୍ରତିଦିନ ସନ୍ଧ୍ୟାରେ ସାର୍ ପଣକିଆ ଅଭ୍ୟାସର ପୁନରାବୃତ୍ତି କରାନ୍ତି। ଗୋଟିଏ ଧାଡିର ପ୍ରଥମ ପିଲା ୨କ ପଣକିଆ, ଦ୍ୱିତୀୟ ପିଲା ୩କ ପଣକିଆ, ତୃତୀୟ ପିଲା ୪କ ପଣକିଆ ଏବଂ ଏହି କ୍ରମରେ ଗତି କରେ। ଆମ୍ଭମାନଙ୍କ ମଧ୍ୟରେ ଗୋଟିଏ ପିଲାର "ଡ଼" ଉଚ୍ଚାରଣ କଷ୍ଟକର ହୁଏ ଏବଂ ସେ "ଡ଼"କୁ "ଦ" କୁହେ। ସୁତରାଂ ଆଗେ ସବୁ ଏପରି କ୍ରମରେ ଧାଡ଼ି କରିଥାଉ ଯେ ତା'ର ପାଳି ପଡ଼ିବ ୨୦କ ପଣକିଆ ଡାକିବାକୁ। ତା'ର ପାଳି ଆସିବା ମାତ୍ରେ ସେ ବାଧ୍ୟ ହୋଇ କୁହେ "କୋଦିଏ କେ କୋଦିଏ ପଣ" ଇତ୍ୟାଦି। "ଡ଼" ସ୍ଥାନରେ "ଦ" କହିବା ମାତ୍ରେ ହାସ୍ୟରୋଳ ସୃଷ୍ଟି ହୁଏ। ସମସ୍ତେ ହସନ୍ତି। ବିଷ୍ଣୁ ସାର୍ ମଧ୍ୟ। ଏହା ନିତିଦିନିଆ ନାଟକର ହାସ୍ୟରସାଳ ଦୃଶ୍ୟ।

ଆମେ ଶୁଣୁଥିଲୁ ଭରତ ସାର୍ ଓ ବିଷ୍ଣୁ ସାରମାନେ ଜଗତ୍‌ସିଂପୁର ଅଞ୍ଚଳରୁ ଆସିଛନ୍ତି। ଆମେସବୁ ମନେ ମନେ ଭାବୁଥିଲୁ ଏ ଅଞ୍ଚଳଟା ବୋଧହୁଏ ଶିକ୍ଷକ ତିଆରିର ଗୋଟେ ବଡ଼ କାରଖାନା। ବିଷ୍ଣୁ ସାର୍ କୌଣସି ଏକ କାରଣରୁ ଚାଟଶାଳୀ ବନ୍ଦ କଲାପରେ ଯେଉଁ ଶିକ୍ଷକ ଆସିଲେ ସେ ମଧ୍ୟ ଜଗତ୍‌ସିଂପୁର ଅଞ୍ଚଳର ଲୋକ। ତାଙ୍କର ପୂରା ନାମଟି ଜାଣିଲୁ ଶ୍ରୀ ସତ୍ୟବାଦୀ ଦାସ।

ବର୍ତ୍ତମାନର ଚାଟଶାଳୀର ପରିବେଶ ଅଧିକ ଉନ୍ନତ ଥିଲା। ଜଣେ ଧନୀ ବ୍ୟକ୍ତି ଗୋଟିଏ ପ୍ରଶସ୍ତ କୋଠାଘର ଚାଟଶାଳୀ ପାଇଁ ଛାଡ଼ି ଦେଇଥିଲେ। ଅନ୍ୟ ପିଲାମାନଙ୍କ ସହିତ ତାଙ୍କର ପୁତ୍ରକନ୍ୟାଙ୍କୁ ସାର୍ ପଢ଼ାଇବେ ଏହା ହିଁ ସର୍ତ୍ତ ଥିଲା।

ସତ୍ୟବାଦୀ ସାର୍ ପ୍ରାୟତଃ ବେତର ବ୍ୟବହାର କରୁ ନ ଥିଲେ। ତେବେ ମନିଟର୍ ବ୍ୟବସ୍ଥା ଓ ପିଲାମାନଙ୍କର ଉପସ୍ଥାନର ସମୟକୁ ଚାହିଁ ସେମାନଙ୍କୁ ଦଣ୍ଡବିଧାନର ବିଧି ପ୍ରଚଳିତ ଥିଲା। ଗଣିତ ଓ ସାହିତ୍ୟ ବ୍ୟତୀତ ଅନ୍ୟ ବିଷୟରେ ଅଳ୍ପ ଅଳ୍ପ ଚର୍ଚ୍ଚା ହେବାର ବାତାବରଣ ଏଠାରେ ରହିଥିଲା।

ସତ୍ୟବାଦୀ ସାର୍‌ଙ୍କ ଚାଟଶାଳୀର ଦୁଇ ତିନୋଟି ସ୍ମୃତି ସଜଳ ରହିଛି। ପ୍ରଥମତଃ ଚାଟଶାଳୀଟି ଆରମ୍ଭ ହେବା ପୂର୍ବରୁ ଶିକ୍ଷକ କିଛି ଲୋକଙ୍କର ସାହାଯ୍ୟ ନେଇ ଚାଟଶାଳୀ କାନ୍ଥରେ କେତେକ ଅମର ପଦାବଳୀ ଲେଖାଥିବା କାର୍ଡ଼ବୋର୍ଡ଼ ସବୁ ଖଞ୍ଜିଥିଲେ। ଆମର ବୟସକୁ ଚାହିଁ ସେଗୁଡ଼ିକ କାହାର ସୃଷ୍ଟି (କବିବର ରାଧାନାଥ ରାୟ କି ଭକ୍ତକବି ମଧୁସୂଦନ ରାଓ) ତାହା ଜାଣିବାର ସମ୍ଭାବନା ନ ଥିଲେ ମଧ୍ୟ ବାର୍ତ୍ତାସବୁ ମନଛୁଆଁ ରହିଥିଲା।

ବେଳେ ବେଳେ ଚାଟଶାଳୀ ସାମନାରେ ରିକ୍ସା କିମ୍ବା ଗାଡ଼ିରେ କେତେକ ଭଦ୍ରବ୍ୟକ୍ତି ଆସି ସତ୍ୟବାଦୀ ସାର୍‌ଙ୍କୁ ଦେଖା କରୁଥିଲେ। ସେମାନେ ଅନୁଚ୍ଚ ସ୍ୱରରେ ସାର୍‌ଙ୍କ ସହିତ କଥାବାର୍ତ୍ତା କରୁଥିଲେ। ପ୍ରଥମେ ପ୍ରଥମେ ଏପରି ଆଗମନର କାରଣ ଜାଣି ନ ଥିଲୁ। ପରେ ଜାଣିଲୁ ଯେ ସତ୍ୟବାଦୀ ସାର୍ ଜଣେ ବିଜ୍ଞ ଲୋକ। ସେ ଜାତକପତ୍ର ଦେଖି ଲୋକଙ୍କୁ ପରାମର୍ଶ ଦିଅନ୍ତି। ଏପରି ଜାଣିବା ପରେ ଆମ୍ଭମାନଙ୍କର ଭକ୍ତି ଓ ସମ୍ମାନ ବଢ଼ି ଯିବା ସ୍ୱାଭାବିକ୍।

ଏଠାରେ ମଧ୍ୟ ବହୁ କାର୍ଯ୍ୟକ୍ରମ ରୁଟିନ୍‌ବନ୍ଧା ଓ ଗତାନୁଗତିକ। ବେଳେବେଳେ ସନ୍ଧ୍ୟା ପାର୍ ହୋଇ ବିଳମ୍ବିତ ସମୟ ହୋଇଗଲେ ନିଦ ଲାଗେ। କିଛି ପିଲା ସାର୍‌ଙ୍କ ଦୃଷ୍ଟିର ଅନ୍ତରାଳରେ ଢୁଳାଇବା ଆରମ୍ଭ କରି ଦିଅନ୍ତି। ମଜା କରିବା ପାଇଁ ଆଉ କେତେକ ପିଲା ତାହାର ଚାରିପାଖରେ ଥିବା ଲଣ୍ଠନସବୁକୁ ପାଖେଇ ଦିଅନ୍ତି। ଫଳତଃ ଢୁଳାଇବା ସମୟରେ ଲଣ୍ଠନର ଗରମ ସ୍ପର୍ଶ ପାଇ ସେ ଚମକି ଉଠେ।

ଅନ୍ୟମାନେ ହସନ୍ତି। ସାମାନ୍ୟ କ୍ରୁର ହେଲେ ମଧ ଗତାନୁଗତିକତା ଓ ପରିବର୍ତ୍ତନହୀନତାରୁ ମୁକ୍ତି ପାଇବାର ଏ ଏକ ଉଦ୍ୟମ।

ଚାଟଶାଳୀ ଜୀବନରେ ଗୋଟିକରୁ ଅନ୍ୟଟିକୁ କୁଦମାରିବା ମୂଳରେ ଘଟଣା ସବୁର ଭୂମିକା ରହିଥିଲା। ଏହାପରେ ହିଁ ଔପଚାରିକ ଢଙ୍ଗରେ ପ୍ରାଥମିକ ଶିକ୍ଷା ଆରମ୍ଭ ହେଲା। ମୁଁ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେଲି। ତଥାପି ଚାଟଶାଳୀର ସ୍ମୃତି ରୋମନ୍ଥନ ବିଶେଷ ଧରଣର ଭାବାବେଗ ଆଣିଥାଏ। ଚତୁର୍ଥ ଶ୍ରେଣୀର ସାହିତ୍ୟ ବହିରେ ପଢ଼ିଥିବା ଧାଡ଼ି ସବୁ ମନରେ ବାରମ୍ବାର ପ୍ରତିଧ୍ୱନିତ ହୋଇଉଠେ:

ମନେଅଛି ମୋର ଗ୍ରାମ ଚାଟଶାଳୀ
ଶିଖିଥିଲି ଯହିଁ ଅକ୍ଷର ଆଗେ
ସରୁ ଦାଣ୍ଡ ଖଣ୍ଡେ ଚାଳଘର ଖଣ୍ଡେ
ଯାଇଥିଲି ଦିନେ ବାପାଙ୍କ ସଙ୍ଗେ।

X X X X

ମନ୍ଦିର ସମାନ ଗ୍ରାମ ଚାଟଶାଳୀ
ସବୁ ସ୍ମୃତି ପରେ ଟେକିଛି ମଥା
ପଢ଼ିଥିଲି ଯହିଁ ପ୍ରଥମ ଅକ୍ଷର
ଶିଖିଥିଲି ଯହିଁ ପ୍ରଥମ କଥା।

❖

(୪)

# ବିନା ମେଘରେ ଚଡ଼କ

ସ୍ନେହମୟୀ ଜନନୀର ଅଚାନକ ମୃତ୍ୟୁ ମୋ ପାଇଁ ଓ ପରିବାର ପାଇଁ ଏକ ପ୍ରଚଣ୍ଡ ଆଘାତ। ସବୁ ଠିକ୍ ଠାକ୍ ଚାଲିଥିଲା। ମୋର ବୟସ ଛ'ବର୍ଷ ଓ ମୋ ସାନ ଭାଇ ଅଚ୍ୟୁତ'ର ବୟସ ତିନିଚାରି ବର୍ଷ। ବେଶ୍ ବ୍ୟବଧାନ ପରେ ବୋଉ ଗୋଟିଏ କନ୍ୟା ରତ୍ନକୁ ଜନ୍ମ ଦେଇଥିଲା। ଖୁବ୍ ସୁନ୍ଦର, ନାଁ ତାର 'ପ୍ରତିମା'। ବୟସ ତା'ର ସେତେବେଳକୁ ମାତ୍ର ତିନିମାସ। ସେ ସକାଳ ଆମ ପାଇଁ ଦାରୁଣ ସକାଳ।

ସକାଳୁ ଉଠି ଶୁଣିଲି ଯେ ବୋଉକୁ ଆମ୍ବୁଲାନ୍ସରେ କଟକର ବଡ଼ ଡାକ୍ତରଖାନାକୁ ନିଆ ଯାଇଛି। ପୁଣି ଶୁଣିବାକୁ ପାଇଲି ଯେ ପୂର୍ବଦିନ ରାତି ବାରଟା ପରେ ବୋଉର ଝାଡ଼ାବାନ୍ତି ଆରମ୍ଭ ହୋଇଥିଲା। ଅବସ୍ଥା ଅସମ୍ଭାଳ ହେବାରୁ ବାପା ଡାକ୍ତରଖାନା ନେବାକୁ ଚେଷ୍ଟା କରିଥିଲେ। ମାତ୍ର ସଫଳ ହେଲେ ନାହିଁ। ସେତେବେଳେ ପ୍ରାୟ କୌଣସି ଘରେ ସେଠାରେ ଟେଲିଫୋନ୍ ନ ଥିଲା। ବ୍ୟବସାୟୀ ଗୋଷ୍ଠୀର ଜଣାଶୁଣା ବ୍ୟକ୍ତି ଗିରିଧାରୀ ସାହୁଙ୍କ ଘରେ ଗୋଟିଏ ମାତ୍ର ଟେଲିଫୋନ୍ ଥିଲା। ଅଧ ରାତିରେ ତାଙ୍କର ବିରାଟ ପ୍ରାସାଦ ମଧ୍ୟକୁ ପ୍ରବେଶ କରି ଟେଲିଫୋନ୍ ବ୍ୟବହାର କରିବା ସମ୍ଭବ ନ ଥିଲା। ତେଣୁ ପ୍ରତ୍ୟୁଷରେ ହିଁ ସଂଯୋଗ ସମ୍ଭବ ହେଲା।

ବୋଉ ସହିତ ମୋର ବାପା ଓ ଜେଜେମା' ଯାଇଥିଲେ। ଆମେ ଦୁଇଭାଇ ସେହି ଅଞ୍ଚଳରେ ରହୁଥିବା ସାନ ପିଉସୀଙ୍କ (ମୋର ଦୁଇଜଣ ପିଉସୀ) ପାଖରେ ରହିଥାଉ। କୁନି ଝିଅ ପ୍ରତିମା ମଧ୍ୟ ରହିଥାଏ।

ପ୍ରାୟ ଦିନ ଏଗାରଟା ବେଳକୁ ସାନ ପିଉସୀ ମୋ ବେକରେ ପଡ଼ିଥିବା ଛୋଟିଆ ସୁନାହାରଟି କାଢ଼ିନେଲେ। ମୁଁ ବୁଝିପାରିଲି କିଛି ଗୋଟାଏ ଅଘଟଣ ଘଟି ଯାଇଛି। ଅଳ୍ପ ସମୟ ପରେ ଆଉ କେତେକ ମହିଳା ଆସି ମୋତେ ସାନ୍ତ୍ୱନା ଦେବାକୁ ଆରମ୍ଭ କଲେ।

ପରେ ଜାଣିବାକୁ ପାଇଲି ଯେ ଆମ୍ବୁଲାନ୍ସରେ ହିଁ ବୋଉର ମୃତ୍ୟୁ ଘଟିଥିଲା। ମାତ୍ର ନିୟମ ଦୃଷ୍ଟିରୁ ଡାକ୍ତରଖାନାର କର୍ମଚାରୀମାନେ ଡାକ୍ତରଙ୍କ ପାଖକୁ ନେଲେ ଏବଂ ସେଠାରେ ତାଙ୍କର ମୃତ୍ୟୁ ଘୋଷଣା କରାଗଲା। ମୃତ ଶରୀରକୁ ପୁଣି ଘର ଦିଗରେ ଆଣିବା ପାଇଁ ବାପା ଉଚିତ୍ ମନେକଲେ ନାହିଁ। ସୁତରାଂ କେତେକ ଆତ୍ମୀୟଙ୍କ ସହାୟତାରେ ସେ ଖାନ୍‌ନଗର ଶ୍ମଶାନରେ ଶେଷକାର୍ଯ୍ୟ ସାରି ଘରକୁ

ଫେରିଲେ। ମୋର ସାନଭାଇକୁ ଭୁଲାଇ ଦିଆଗଲା। ତାକୁ କୁହାଗଲା ଯେ ବୋଉ ରାଣୀହାଟ (ଯେଉଁଠାରେ ମୋର ବାପା କାର୍ଯ୍ୟ କରୁଥିବା ମଣିନାଥ ବିସ୍କୁଟ, ଲଜେନ୍ସ କାରଖାନା ଅବସ୍ଥିତ) ଯାଇଛି ଏବଂ ଯଥା ସମୟରେ ଫେରି ଆସିବ। ଫେରି ଆସିବାର ବାର୍ତ୍ତା ସେମିତି ଅପୂରଣୀୟ ରହିଲା। ତିନିଦିନ ପରେ ଶିଶୁ କନ୍ୟା ପ୍ରତିମା ଆଖି ବୁଜିଲା। ସାନ ଭଉଣୀକୁ ସ୍ନେହସ୍ପର୍ଶ ଦେବାର ଆନନ୍ଦରୁ ଆମେ ଦୁଇଭାଇ ବଞ୍ଚିତ ହେଲୁ।

ବୋଉର ମୃତ୍ୟୁ ଏବେ ମଧ୍ୟ ଗୋଟିଏ କାଳରାତ୍ରୀର ଦୁଃସ୍ୱପ୍ନ ପରି ମନେହୁଏ। ଦୀର୍ଘ ବର୍ଷର ବ୍ୟବଧାନ ପରେ ମୁଁ ସପତ୍ନୀକ କାନାଡ଼ା ଯିବା ପରେ (୧୯୭୬ ମସିହାରେ) ଆମର ଡାକ୍ତର ପାରିବାରିକ ସ୍ୱାସ୍ଥ୍ୟର ଇତିହାସ ଜାଣିବାକୁ ଚାହିଁଲେ। ବାପାମା'ଙ୍କ ମୃତ୍ୟୁର ବୟସ ଓ କାରଣ ଜଣାଇବାକୁ କହିଲେ। ଅସମୟରେ ମୋ ବୋଉର ହଇଜାରେ ମୃତ୍ୟୁ ହୋଇଛି ଶୁଣି ଡକ୍ଟର କାସିମ୍ ପ୍ରଥମେ ଠୋ ଠୋ ହସିଲେ। କହିଲେ, "କଲେରାରେ କେହି କେବେ କ'ଣ ମରେ? ଏପରି ଅବସ୍ଥାରେ ତ କେବଳ ପାନୀୟ ଜଳ କିମ୍ବା କୋକାକୋଲା ପିଇଲେ ରୋଗ ଆପେ ଆପେ ଚାଲିଯିବ।" ମୁଁ ତାଙ୍କୁ ବୁଝାଇପାରିଲି ନାହିଁ ଯେ ଟିକିଏ ଅନୁନ୍ନତ (ଗ୍ରାମାଞ୍ଚଳ କିମ୍ବା ସହରତଳି ଅଞ୍ଚଳ)ଅଞ୍ଚଳରେ ବସବାସ କରୁଥିବା ନିମ୍ନ ମଧ୍ୟବିତ୍ତ ପରିବାରର ଲୋକମାନେ କିପରି ଜୀବନ ମରଣର ସମସ୍ୟାର ସମ୍ମୁଖୀନ ହୁଅନ୍ତି।

ବୋଉର ମୃତ୍ୟୁର ବର୍ଷ, ମାସ ତାରିଖ କହିପାରିବି ନାହିଁ। କୌଣସି ଲିଖିତ ସୂଚନା ମଧ୍ୟ ନାହିଁ। ଫଟୋ ମଧ୍ୟ ନାହିଁ। ତେବେ ତା'ର ସ୍ନେହଶୀଳ ଝାପ୍‌ସା ରୂପଟି ମନେପଡ଼ୁଛି। ସମ୍ଭବତଃ ବୋଉ ଖୁବ୍ ଶୃଙ୍ଖଳାପ୍ରିୟ ଥିଲା। ଅନ୍ୟ ସମୟରେ ହୁଏତ କାଁ ଭାଁ ବହି ପଢ଼େ। ମାତ୍ର ରାତି ଆଠଟା ନଅଟା ସମୟରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରୁ ଗୋଟେ ନିର୍ଦ୍ଦିଷ୍ଟ ବହି ବାହାର କରି ଗୁଣୁଗୁଣୁ ସ୍ୱରରେ ପଢ଼ିଥାଏ। ବାପା କୁହନ୍ତି ବୋଉ ପ୍ରତିଦିନ ଭାଗବତ ପଢ଼େ।

ପିଲାଦିନେ ମୁଁ ଦୁଷ୍ଟ ଥିଲି କି ଶାନ୍ତ ଥିଲି, ସେ କଥା କହିପାରିବି ନାହିଁ। କିନ୍ତୁ ଥରେ ସମ୍ଭବତଃ ମୁଁ ଶୃଙ୍ଖଳା ଭଙ୍ଗ କରିଥିବାରୁ ଘରର ଗୋଟିଏ ଖୁମ୍ବରେ ମୋର ହାତକୁ ବାନ୍ଧି ଦିଆ ଯାଇଥିଲା। ମୁକ୍ତ ହେବା ପାଇଁ ଚେଷ୍ଟା କରିବା ବେଳେ ଦଉଡ଼ି ବାରମ୍ବାର ଘଷି ହୋଇ କ୍ଷତଟିଏ ହୋଇଥିଲା। କ୍ଷତଟି ବଡ଼ ହୋଇ ରକ୍ତପୂଜ ଜମିଲା। ବାମ ହାତର ବାହୁରେ ଏବେ ମଧ୍ୟ ତା'ର ଚିହ୍ନ ରହିଛି। ତାକୁ ଦେଖିଲେ ବୋଉ କଥା ମନେପଡ଼େ।

ଆଉ ଗୋଟିଏ ଦୃଶ୍ୟ ଝାପ୍‌ସା ହୋଇ ମନେପଡ଼ୁଛି। ଆମ ପାଇଁ ପାକ ହୋଇଥିବା ମାଂସ ତରକାରୀର ବଳକା ଅଂଶ ବୋଉ ଆମ ଦୁଇଭାଇଙ୍କ ପାଇଁ

ରାତିରେ ଖାଇବା ପାଇଁ ସାଇତି ରଖିଥିଲା। ବୋଉର ଅଲକ୍ଷ୍ୟରେ ରାସ୍ତାରୁ ଗୋଟିଏ ବିରାଡ଼ି ଆସି ତା'କୁ ଖାଇ ଦେଇଥିଲା। ଖାଲି ହୋଇ ଯାଇଥିବା ପାତ୍ରଟି ବୋଉ ଆଖିରେ ପଡ଼ିବା ପରେ ତା'ର ବ୍ୟାକୁଳତା କହିଲେ ନ ସରେ। ବିରାଡ଼ିକୁ ଗାଳିଦେବାଠାରୁ ଆରମ୍ଭ କରି ସେ ଦିନଟା କିପରି ଏକ ନିଷ୍ଫଳା ଦିନ, ତାହା ସେ ତୁହାଇ ତୁହାଇ କହୁଥାଏ। ଏକ ଲୋଭନୀୟ ପଦାର୍ଥରୁ ଆମେ ଦୁଇଭାଇ ବଞ୍ଚିତ ହେବାର ବ୍ୟଥା, ତା' ପାଇଁ ଯେ କେତେ କଠୋର ତାହା କିଛିଟା ଅନୁଭବ କରିବାର ସାମର୍ଥ୍ୟ ମୋର ରହିଥିଲା।

ବୋଉକୁ ଅଳ୍ପ ବୟସରେ ହରାଇବାର ଦୁଃଖ ଅପୂରଣୀୟ। କେମିତି ଏକ ପ୍ରକାର ଶୂନ୍ୟତା ଆବୋରି ବସିଲା। ବିଭିନ୍ନ ସମୟରେ ଅନ୍ୟ ସବୁ ଆତ୍ମୀୟ ସ୍ୱଜନ ଘରକୁ ଆସନ୍ତି ଓ ପ୍ରବୋଧନା ଦିଅନ୍ତି। ମୁଁ କିଛି କିଛି ବୁଝେ, ସାନଭାଇ ଜାଣେ ଯେ କୌଣସି କାରଣରୁ ରାଣୀହାଟରୁ ବୋଉର ଫେରିବାରେ ବିଳମ୍ବ ଘଟୁଛି। ସେ ନିଶ୍ଚୟ ଫେରିବ।

ଦୁଃସ୍ଥିତିକୁ ସମ୍ଭାଳି ନେବା ପାଇଁ ଯେଉଁଟି ପ୍ରକୃତରେ କାମ କରିଥିଲା, ତାହା ହେଉଛି ଜେଜେମା'ଙ୍କ ସହ ମୋର ଦୃଢ଼ ସମ୍ପର୍କ। ଜେଜେମା' ଓ ମୋ ମଧ୍ୟରେ ବନ୍ଧନର ଖିଅଟି ଖୁବ୍ ଜୋର୍‌ଦାର୍ ଥିଲା।

### ଜେଜେମା'ର ସ୍ନେହବନ୍ଧନ

ମୂଳରୁ ହିଁ ଜେଜେମା'ଙ୍କୁ ମୁଁ 'ମା'ବୋଲି ଡାକୁଥିଲି। କଙ୍ଗାରୁ ଛୁଆ ଭଳି ମୁଁ ବହୁ ସମୟରେ ତା' କୋଳରେ ଲଟକି ରହୁଥିଲି। ମୋର ଜେଜେମା' କୁହେ ଯେ ମୋତେ କାଖେଇ କାଖେଇ ତା' ଅଣ୍ଟାରେ ଗୋଟିଏ ଦାଗ (ବେଣ୍ଡି) ହୋଇ ଯାଇଥିଲା। ମୋର ଜେଜେମା' ଦୀର୍ଘଜୀବୀ ଥିଲେ ଏବଂ ଖୁବ୍ ପରିଣତ ବୟସରେ (୧୯୮୧ ମସିହା କାର୍ତ୍ତିକ ପୂର୍ଣ୍ଣିମା ଦିନ)ଶେଷ ନିଃଶ୍ୱାସ ତ୍ୟାଗ କଲେ।

ନାଁ ତା'ର ମୌନାବତୀ। ଅଳ୍ପ କହେ, ଖୁବ୍ ବେଶୀ ଶୁଣେ। ପାଖପଡ଼ିଶାରେ ସେ 'ମଉନା' ନାମରେ ପରିଚିତ। ଜୀବନର ଶେଷ ପର୍ଯ୍ୟନ୍ତ ସେ ରାଗିବାର ମୁଁ ଦେଖିନାହିଁ କି ଉଚ୍ଚବାଚ ହୋଇ ଜୋର୍‌ରେ କଥା କହିବାର ଶୁଣି ନାହିଁ। ଚେହେରା ତାଙ୍କର ଏକରକମ ବିଦେଶୀ ମହିଳା। ଗୌରବର୍ଣ୍ଣ। ବଂଶାନୁକ୍ରମିକତା କେଉଁଠାରୁ ଯେ ଆସିଲା, ତାହା ମୁଁ କହିପାରିବି ନାହିଁ।

ବୋଉ ମୋର ଯତ୍ନ ଓ ଖାଦ୍ୟପେୟର ଦାୟିତ୍ୱ ବୁଝେ। ହେଲେ ମୋତେ ବୁଲାଇନେବାର ଦାୟିତ୍ୱ ହେଉଛି ଜେଜେମା'ର ବା ମା'ର। ମା' କୋଳରେ ମୁଁ ସାହି ବୁଲେ। ଆଇ ଘରେ ହୁଏତ ମୋତେ କେହି କେହି "ଦୁର୍ଗାର ପୁଅ" କହନ୍ତି। କିନ୍ତୁ ସମଗ୍ର ଚାଉଳିଆଗଞ୍ଜର ଲୋକେ ଜାଣନ୍ତି ମୁଁ ହେଉଛି 'ମଉନା ନାତି'।

ମଇନା କୋଳରେ କୋଳ ହୋଇ ସାହି ବୁଲିବା ମୋର ନିତ୍ୟ ନୈମିତ୍ତିକ ଆମୋଦ। ସେଥିରେ ହେଳା ହୁଏ ନାହିଁ। ମଇନା ଯେଉଁ ସବୁ ଘରକୁ ଯାଏ, ସେଠାକୁ ମୁଁ ମଧ୍ୟ ଯାଏ। ଏହି ନିତ୍ୟ ନୈମିତ୍ତିକ ବୁଲିବା ପର୍ବର ଗୋଟିଏ ବିଶେଷ ଅଧ୍ୟାୟ ହେଉଛି ଭାଗବତ ଶ୍ରବଣ।

ଆମ ଘରର ଗୋଟିଏ ପାର୍ଶ୍ୱରେ ଏକ ବିଶେଷ ପରିବାର ହେଉଛି ବୁଢ଼ୀମା'ଙ୍କ ଘର। ବୁଢ଼ୀମା' ମୋର ଜେଜେମା'ଙ୍କୁ ମଇନା ବୋଲି ଡାକନ୍ତି ଏବଂ ମୋର ଜେଜେମା' ତାଙ୍କୁ ନାନୀ ବୋଲି ଡାକେ। ବୁଢ଼ୀମା'ଙ୍କ ପୁଅ ଚକ୍ରଧର ସାହୁଙ୍କୁ ଆମେ ଦୁଇଭାଇ ଛୁଆବା' ବୋଲି ଡାକିଥାଉ ଏବଂ ତାଙ୍କର ପତ୍ନୀଙ୍କୁ ଛୁଆମା' ଡାକିଥାଉ। ଏ ପରିବାର ସହ ଆମର ସମ୍ପର୍କ ଗଭୀର। ଅନ୍ୟତ୍ର ତାହାର ସୂଚନା ଦେବି। ଏଠାରେ ଉଲ୍ଲେଖ କରିବାର କଥା ତାଙ୍କର ପିଣ୍ଡାକୁ ଲାଗି ତାଙ୍କର ଗୋଟିଏ ସୁନ୍ଦର ଭାଗବତ ଟୁଙ୍ଗୀ ରହିଥିଲା। ଏଠାରେ ତାଳପତ୍ର ପୋଥି ସମେତ ଶ୍ରୀ ଜଗନ୍ନାଥ ଦାସଙ୍କ ବିରଚିତ ଭାଗବତ ରହିଥିଲା। ଜନ୍ମାଷ୍ଟମୀ, ଭାଗବତ ପୂର୍ଣ୍ଣିମା ଇତ୍ୟାଦି ଉତ୍ସବ ଏଠାରେ ପାଳିତ ହୁଏ। ପ୍ରତିଦିନ ସନ୍ଧ୍ୟାରେ ତୁଳବାବୁ ନାମକ ଜଣେ ଭଦ୍ରବ୍ୟକ୍ତି ତାଙ୍କ କର୍ଯ୍ୟସ୍ଥଳୀରୁ ଫେରିବା ପରେ ଗୋଡ଼ହାତ ଧୋଇ ଏଠାକୁ ଆସି ଭାଗବତ ପଢନ୍ତି। ପ୍ରତି ସନ୍ଧ୍ୟାରେ ଅନ୍ୟ କେହି ଶ୍ରୋତା ନ ଥିଲେ ବି ବୁଢ଼ୀ ମା', ମୋ ଜେଜେମା' ଓ ମୁଁ ଉପସ୍ଥିତ ରହିଥାଉ।

ତୁଳବାବୁ ଆମ ଘରର ଖୁବ୍ ନିକଟରେ ଗୋଟିଏ ଭଡ଼ା ଘରେ ରହୁଥିଲେ। ଓ.ଏମ୍.ପି. ଛକର ଅନତିଦୂରରେ ଚୂନଭାଟିରେ କାମ କରୁଥିଲେ। ସେ ଗୋଧୂଳି ସମୟରେ ଘରକୁ ଫେରନ୍ତି। ପ୍ରାୟ ସାତଟା ସାଢ଼େ ସାତଟା ବେଳକୁ ଭାଗବତ ପାଠ ଆରମ୍ଭ ହୁଏ।

ଭାଗବତ ଶୁଣିବା ଏକ ଚିରାଚରିତ ଅଭ୍ୟାସ। କହିବା ଅନାବଶ୍ୟକ ଯେ ମୁଁ କିଛି ବୁଝୁ ନଥିଲି। କିନ୍ତୁ ପ୍ରତି ସନ୍ଧ୍ୟାରେ ଜେଜେମା' କୋଳରେ ବସି ନବାକ୍ଷରୀ ବୃତ୍ତର ଭାଗବତ ଗୀତର ନିଶା ସମ୍ଭବତଃ ଜୋର୍ ଥିଲା। ପିଲାଦିନର ଗୋଡ଼ହାତ ଛାଟି ଜୋର୍‌ରେ କାନ୍ଦିବାର ସ୍ମୃତି ମୋର କେବଳ ଗୋଟିଏ। ଦିନେ ସନ୍ଧ୍ୟାରେ ମୁଁ ହୁଏତ ଘରେ ଶୋଇ ପଡ଼ିଥିଲି। ତେଣୁ ମା' ଏକାକୀ ଭାଗବତ ଟୁଙ୍ଗୀକୁ ଯାଇଥିଲା। ଅଧାରାତିରେ ମୋର ନିଦ ଭାଙ୍ଗିଗଲା। ମୁଁ ଜାଣିଲି ଯେ ମା' ସେଦିନ ସନ୍ଧ୍ୟାରେ ମୋତେ ନେଇନାହିଁ। ତା'ପରେ ମୋର ଚିତ୍କାର ଆରମ୍ଭ ହେଲା। ମୁଁ ଜୋର୍‌ରେ ଚିତ୍କାର କରି ଗୋଡ଼ହାତ ଛାଟି କାନ୍ଦିବାକୁ ଲାଗିଲି।

ମା' ଅନ୍ୟ ଉପାୟ ନ ଦେଖି ମୋତେ କୋଳରେ ନେଇ ତୁଳବାବୁଙ୍କ ଘରକୁ ଗଲା। ସେତେବେଳେ ସମସ୍ତେ ପ୍ରାୟ ଶୋଇ ସାରିଥିଲେ। ତଥାପି ମା' ଡାକିବାରୁ

ସେ ନିଦରୁ ଉଠି କବାଟ ଖୋଲିଲେ। ମା' ନିଶ୍ଚୟ ଆସିବାର କାରଣ କହିଥିବ। ମୋର ମନେପଡୁଛି ବୁଲବାବୁ ମଶାରୀ ଭିତରେ ବ୍ୟାସାସନ (କାଷ୍ଠ ନିର୍ମିତ ଆସନ ଯାହା ଉପରେ ଭାଗବତ କିମ୍ବା ଅନ୍ୟ କୌଣସି ପୁରାଣ ଶାସ୍ତ୍ର ରଖାଯାଏ) ଉପରେ ବହିଟିଏ ରଖି ନବାକ୍ଷରୀ ବୃତ୍ତରେ ଗାନ କଲେ। ସେ ବହିଟି ଭାଗବତ କି ଅଭିଧାନ ତାହା ଜାଣିବାର ଉପାୟ ମୋର ନ ଥିଲା। କିନ୍ତୁ କିଛି ସମୟ ପାଇଁ ଭାଗବତ ସ୍ୱରରେ ଗାନ କରାହେଉଥିବା ପଦାବଳୀ ଶୁଣି ମୁଁ ତୃପ୍ତ ହେଲି। ଘରକୁ ଫେରି ଆରାମରେ ଶୋଇ ପଡ଼ିଲି। ସେହିଦିନଠାରୁ ମୋତେ ଟୁଙ୍ଗୀକୁ ନେବାର ଅଭ୍ୟାସଟି ମା' ଛାଡ଼ି ପାରି ନଥିଲା।

## ପିଉସୀମା ଓ ଚୁମ୍ବକୀୟ ଆକର୍ଷଣ

ବୋଉକୁ ହରାଇବାର ବେଦନାଦାୟକ ବ୍ୟଥା ପାଇଁ ଅନ୍ୟତମ ମଲମ ଥିଲା ମୋ ପିଉସୀ ନାନୀ। ମୋର ଦୁଇଜଣ ପିଉସୀ। ସାନ ପିଉସୀ ଚାଉଳିଆଗଞ୍ଜରେ ରହୁଥିଲେ। ବଡ଼ ପିଉସୀଙ୍କର ଘର ଚୌଧୁରୀ ବଜାର ନିକଟସ୍ଥ କାଠଗଡ଼ା ସାହି। ସେ ସ୍ନେହମୟୀ। ତାଙ୍କ ସ୍ନେହଶ୍ରଦ୍ଧାରେ ବନ୍ଧା ହୋଇ ମୁଁ ତାଙ୍କୁ ପିଉସୀ ନ ଡାକି ନାନୀମା' ବୋଲି ଡାକୁଥିଲି। ବୋଉର ଅବର୍ତ୍ତମାନରେ ସେ ପ୍ରକୃତରେ ମୋର ଜନନୀ।

ମୋର ପିଉସୀମା'ଙ୍କ ବ୍ୟକ୍ତିତ୍ୱ ପୂରାପୂରି ମୋର ଜେଜେମା' ସହିତ ତୁଳନୀୟ। ଶାନ୍ତ, ଉଦାର ଓ ସହନଶୀଳ। ଜୀବନ ସାରା ମୁଁ ତାଙ୍କ ମୁହଁରୁ କେବେହେଲେ ଅଶାଳୀନ ଶବ୍ଦ ଶୁଣି ନାହିଁ। ବହୁ ପୂର୍ବରୁ ମା' (ମୋର ଜେଜେମା') ପିଉସୀ ଘରକୁ ନିୟମିତ ଭାବରେ ବେଳେବେଳେ ଆସିଥାଏ। ତା' ସହିତ ମୁଁ ମଧ୍ୟ ଆସିଥାଏ। କାଠଗଡ଼ା ସାହିକୁ ଆସିବାର କଥା ଶୁଣିଲେ ମୋର ଆନନ୍ଦ ଦ୍ୱିଗୁଣିତ ହୋଇଉଠେ।

ମୋ ପିଉସୀଙ୍କର ଛ'ଝିଅ ଓ ଗୋଟିଏ ପୁଅ। ପୁଅ ବଳରାମ ଭାଇ ମୋ'ଠାରୁ ଚାରିପାଞ୍ଚ ବର୍ଷ ବଡ଼। ଝିଅମାନଙ୍କ ମଧ୍ୟରୁ ତିନି ଭଉଣୀ ବଡ଼ ଓ ତିନି ଭଉଣୀ ସାନ। ମୋର ମାତୃ ବିୟୋଗ ଘଟିବା ସମୟରେ ସମ୍ଭବତଃ ଗୋଟିଏ ମାତ୍ର ଭଉଣୀର ବିବାହ ସମ୍ପନ୍ନ ହୋଇଥିଲା। ବିରାଟ ପରିବାରର ଦାୟିତ୍ୱ ସତ୍ତ୍ୱେ ମୋର ନାନୀମା' ମୋତେ ଗଭୀର ଶ୍ରଦ୍ଧା କରୁଥିଲେ। କେବଳ ଲକ୍ଷ୍ୟ କରୁଥିଲି ଯେ ତାଙ୍କ ଶାଶୁ ଟିକିଏ ଚିଡ଼ିଚିଡ଼ି ହେଉଛନ୍ତି। ସମ୍ଭବତଃ ମୁଁ ଥିବା ସମୟରେ ତାଙ୍କର ଏକମାତ୍ର ନାତି (ବଳରାମ ଭାଇ) ପ୍ରତି ପିଉସୀଙ୍କ ଯତ୍ନ ପରିମାଣ କମି ଯିବାର ଆଶଙ୍କା କରି ସେ ଏପରି ଅସ୍ୱସ୍ତି ଅନୁଭବ କରୁଥିଲେ।

ସାମୟିକ ଭାବରେ ମା' ସହିତ ନାନୀମା' ଘରକୁ ଯିବା ଏବଂ ସେଠାରେ ତିନିଚାରିଦିନ କଟାଇବା ମୋ ପକ୍ଷରେ ଏକ ବିରାଟ ଆକର୍ଷଣ। ମୋର ସାନଭାଇ ବେଳେବେଳେ ଯାଏ। କିନ୍ତୁ ମୁଁ ପ୍ରାୟ ସବୁ ସମୟରେ ମା' ସହିତ ଯାଇଥାଏ।

ଜୀବନ ଯାତ୍ରାରେ ସାମୟିକ ଷ୍ଟେସନର କାର୍ଯ୍ୟ କରୁଥିବା ପିଉସୀ ଘର ପର ପର୍ଯ୍ୟାୟରେ ନିଜ ଘରର ରୂପରେଖ ନେଲା। ମୋ ଜୀବନ ଗଠନ ସମ୍ବଳର ମୁଖ୍ୟ ଭଣ୍ଡାର ହୋଇ ଉଠିଲା। ପରେ ତା'ର ସବିଶେଷ ସୂଚନା ଦେଉଛି।

❖

(୫)

# ଘର ବାହାରେ ଘର

ଘରଟି ଛୋଟ ହେଉ କି ବଡ଼ ହେଉ ସବୁଘରର ଗୋଟିଏ ପରିସୀମା ଥାଏ। କାନ୍ଥ ଥାଏ। ବାଡ଼ିବଗିଚା ଥିଲେ ଘରର ପରିସର କିଛି ବଢ଼ିଯାଏ। ତଥାପି ସୀମିତ ରହେ। କିନ୍ତୁ ସ୍ନେହଶ୍ରଦ୍ଧା ଓ ଆତ୍ମୀୟତାର କୌଣସି ଭୌଗୋଳିକ ସୀମା ରହି ନଥାଏ। ବୋଉର ମୃତ୍ୟୁ ପୂର୍ବରୁ ମଧ୍ୟ ଆମେ ଦୁଇଭାଇ ସ୍ନେହଶ୍ରଦ୍ଧାର ଯେଉଁ ଜୋର୍‌ଦାର୍ ମଳୟ ଅନୁଭବ କରୁଥିଲୁ ତାହାର ଉତ୍ସ ଥିଲା ଘର ନିକଟସ୍ଥ ଦୁଇଟି ପରିବାର:କୁଆ ବା' ଓ ବଡ଼ବା'ଙ୍କ ପରିବାର। ସମ୍ପର୍କ ମନ୍ଦିରର ସେହି ଛୋଟ ଛୋଟ କାରୁକାର୍ଯ୍ୟର ବର୍ଣ୍ଣନା ନ ଦେଲେ ଜୀବନ ମାନଚିତ୍ରରେ ବହୁଦିଗ ଲୁଚି ରହିଯିବ।

**କୁଆବା' କୁଆମା'**

ଆମ ଘରଟିର ଆୟତନ ଖୁବ୍ ଛୋଟ। ପ୍ରାୟ ଅଧ ଗୁଣ୍ଠ ଜମିରେ ନିର୍ମିତ ହୋଇଥିବା ଦୁଇଟି କୋଠରି। ଗୋଟିଏ କୋଠରି ବାପା ବୋଉ ବ୍ୟବହାର କରୁଥିଲେ। ଅନ୍ୟ କୋଠରିଟି ଆମେ ଦୁଇଭାଇ ଓ ବୁଢ଼ୀମା' (ଯାହାକୁ ମୁଁ ମା' ବୋଲି ସମ୍ବୋଧନ କରେ ଏବଂ ଏଠାରେ ମା' ନାମରେ ଉଲ୍ଲେଖ କରୁଛି) ବ୍ୟବହାର କରୁ। ଦୁଇଟି କୋଠରିକୁ ପୃଥକ୍ କରୁଥିବା କାନ୍ଥରେ ଗୋଟିଏ ଝରକା ଆକାରର ପ୍ରବେଶ ପଥ ରହିଥିଲା। ଗଭୀର ରାତିରେ ଥଣ୍ଡା କିମ୍ବା ଅନ୍ୟ କୌଣସି ଯନ୍ତ୍ରଣାଜନିତ ଶବ୍ଦ ଶୁଣିଲେ ବାପା କିମ୍ବା ବୋଉ ସେହି ମଝି ପ୍ରବେଶ ଝରକା ଦେଇ ଆମ କୋଠରିକୁ ଆସୁଥିଲେ। ଆମକୁ ଔଷଧପତ୍ର ଦେଉଥିଲେ। ଆବଶ୍ୟକ ହେଲେ କୋଳକୁ ନେଇ ସାନ୍ତ୍ୱନା ଓ ସୁରକ୍ଷା ଦେଉଥିଲେ। ଦୁଇଟି କୋଠରି ବ୍ୟତୀତ ଆମ ଘରେ ଗୋଟିଏ ରୋଷାଇଘର ଏବଂ ଗୋଟିଏ ପାଇଖାନା ରହିଥିଲା। ରାସ୍ତାକୁ ଲାଗି ଯେଉଁ ଅନ୍ୟ କୋଠରିଟି ଥିଲା, ତାହାକୁ ଆମେ ଦାଣ୍ଡଘର କହୁଥିଲୁ।

ଆମ ଘରର ପୂର୍ବଦିଗରେ ପ୍ରକାଣ୍ଡ ଆୟତନ ବିଶିଷ୍ଟ ଘରଟି ଆମ ଆତ୍ମୀୟତାର ଏକ କେନ୍ଦ୍ରବିନ୍ଦୁ। ଏହାର ମାଲିକ ଥିଲେ ଚକ୍ରଧର ସାହୁ। ଆମେ ଦୁଇଭାଇ ତାଙ୍କୁ କୁଆବା' ବୋଲି ଡାକିଥାଉ। ତାଙ୍କର ପତ୍ନୀଙ୍କୁ କୁଆମା' ଡାକୁ। କୁଆବା'ଙ୍କ ମା'ଙ୍କୁ ଆମେ ବୁଢ଼ୀମା' ବୋଲି ଡାକିଥାଉ। ପୂରା ପରିବାରଟି ସ୍ନେହବତ୍ସଳ। ଘରଟି ଲମ୍ବାକୃତିର ଘର, ଉତ୍ତରରୁ ଦକ୍ଷିଣକୁ ଲମ୍ବି ଯାଇଛି। ଏକମହଲା ବିଶିଷ୍ଟ ଘର। କେବଳ ଦକ୍ଷିଣ ପାର୍ଶ୍ୱର ଛୋଟିଆ ଅଂଶର ଛାତ ଉପରେ ଛୋଟିଆ କୋଠରିଟିଏ ରହିଛି। ସେହି ଛୋଟ କୋଠରିରେ କେହି ରୁହନ୍ତି ନାହିଁ। ଷ୍ଟୋର୍ ହିସାବରେ

ବ୍ୟବହାର କରାଯାଏ। ବଡ଼ ବଡ଼ ଘୁମମାନଙ୍କରେ ଆମ୍ବୁଲ ଥାଏ। ଅନ୍ୟ କେତେକ ଘୁମରେ ବଡ଼ି ଥାଏ। ଛାତ ଉପରକୁ ଆସିଲେ ବୁଆବା'ଙ୍କ ବଡ଼ପୁଅ ମନି ଓ ମୁଁ ବେଳେବେଳେ ଆମ୍ବୁଲ ନେଇ ଜିଭର ଅରମାନ୍ ମେଣ୍ଟାଇଥାଉ। ଏଥିପାଇଁ କାହାର ଅନୁମତି ନେବା ପ୍ରୟୋଜନ ହୁଏ ନାହିଁ।

ଘରଟିରେ ଆଧୁନିକ ନିର୍ମାଣ ଶୈଳୀର ସ୍ପର୍ଶ ନାହିଁ। ପୁରୁଣାକାଳିଆ ଜମିଦାର ଘର। ଉତ୍ତର ପଟେ ଭାଗ କରି ଦୁଇ ତିନୋଟି ପରିବାରକୁ ଭଡ଼ା ଦିଆଯାଇଥିଲା। ତଥାପି ବୁଢ଼ୀମା', ବୁଆବା' ଓ ବୁଆମା' ରହୁଥିବା ଅଂଶଟି ଖୁବ୍ ବଡ଼। ପୂର୍ବପଟକୁ ଲମ୍ବି ଯାଇଥିବା ଏବଂ ଅପେକ୍ଷାକୃତ ଅବ୍ୟବହୃତ ଅବସ୍ଥାରେ ଥିବା କେତେକ ଘରେ ସ୍ୱତନ୍ତ୍ର ବ୍ୟବସ୍ଥା ରହିଥିଲା। ଗୋଟିଏ ଘରେ ଢ଼ିଙ୍କି ଥିଲା। କ୍ରମାଗତ ଭାବରେ ଦୁଇ ଚାରିଦିନ ଧରି ଧାନକୁଟା ହେଉଥିବା ସମୟରେ ଆମେ କୌଣସି ବିଚିତ୍ର ଦୃଶ୍ୟ ଦେଖିବାର ଅନୁଭବ ନେଇ ଟିକିଏ ଦୂରରେ ଘଣ୍ଟେ ଅଧଘଣ୍ଟା ବସି ରହୁଥିଲୁ। ଢ଼ିଙ୍କି ଉପରେ ଚାପ ଦେଉଥିବା ଏବଂ ଚାପ ହୁଗୁଳା କରୁଥିବାର ସମନ୍ୱୟ ଦୃଶ୍ୟ ବେଶ୍ ଆମୋଦ ଦେଉଥିଲା। ଅପର ପାର୍ଶ୍ୱରେ ଢ଼ିଙ୍କିର ଖାଲରେ ଥିବା କୁଟା ହେଉଥିବା ଶସ୍ୟକୁ ଅନ୍ୟ ସ୍ତ୍ରୀଲୋକଟି କିପରି ହାତରେ ଏପଟ ସେପଟ କରୁଛି, ତାହକୁ ଚାହିଁ ରହୁଥିଲୁ। ଖାଲରେ ହାତ ଥିବା ବେଳେ ଢ଼ିଙ୍କି ହାତରେ ପଡ଼ିଯିବ ନାହିଁ ତ? ତା'ହେଲେ କ'ଣ ହେବ? ମାତ୍ର ସେପରି କିଛି ଘଟୁ ନଥିଲା। ଆଶ୍ଚର୍ଯ୍ୟ ହୋଇ ଆମେ ଚାହିଁ ରହିଥିଲୁ।

ଚକ୍ରଧରବାବୁଙ୍କ ପରିବାର ଜମିଦାର ପରିବାର। ଆମ ସମୟର କଥା ବେଳକୁ ଜମିଦାରୀ ଉଚ୍ଛେଦ ସରିଥିଲା। ତଥାପି ତାଙ୍କର ସ୍ଥାବର ସମ୍ପତ୍ତି କମ୍ ନ ଥିଲା। ଆମେ ଶୁଣୁଥିଲୁ ଅଳଣାହାଟ ଅଞ୍ଚଳରେ (ବର୍ତ୍ତମାନର ଜଗତ୍‌ସିଂହପୁର ଜିଲ୍ଲାର ଅଂଶବିଶେଷ) ପ୍ରଚୁର ଜମି ରହିଛି। ଆମେ ଦେଖୁ ଯେ ଅନେକ ସମୟରେ ବିଭିନ୍ନ ଶସ୍ୟ ଓ ଫଳମୂଳ ଭରା ଶଗଡ଼ଟିଏ ତାଙ୍କ ପିଣ୍ଡା ପାଖରେ ଆସି ରହିଥାଏ। ଏଥିରେ ଆମ୍ବ ସମେତ ବହୁତ କିଛି ଥାଏ।

ଚକ୍ରଧର ବାବୁଙ୍କ ମା'-ଆମର ବୁଢ଼ୀମା' ଓ ମୋର ମା'ଙ୍କ ମଧ୍ୟରେ ଗଭୀର ସ୍ନେହ ସମ୍ପର୍କ। ଦୁଇ ଭଉଣୀଙ୍କ ମଧ୍ୟରେ ମଧ୍ୟ ଏତେ ଗଭୀରତା ସହଜରେ ଦେଖାଯିବ ନାହିଁ। ଶଗଡ଼ ଲାଗିବାର ଅପରାହ୍ଣରେ କିମ୍ବା ତା'ପରଦିନ ସକାଳେ ବୁଢ଼ୀମା' ମଇନା ପାଖକୁ ଆମ୍ବ, ସପୁରୀ ଆଉ ପଣସ ପଠାଇଦିଅନ୍ତି। ଯେଉଁ ଜିନିଷ ତରକାରୀ ହେବାର କଥା, ପାକ ହେବାର କଥା, ତାହାସବୁ ପ୍ରସ୍ତୁତ ହେଲା ପରେ ମଇନା ପାଖକୁ ଆସେ। ବର୍ଷର ଏପରି କୌଣସି ଦିନ ନାହିଁ ଯେ ଯେଉଁଦିନ କୌଣସି ଖାଦ୍ୟଦ୍ରବ୍ୟ ମଇନାକୁ ଦିଆ ଯାଇନାହିଁ। ପରିମାଣ ଏତେ ବେଶୀ ଯେ ଆମେ ଦୁଇଭାଇ ସେ ସବୁର ଅଂଶୀଦାର ହୋଇଥାଉ।

ଯେଉଁସବୁ ପ୍ରକାର ଖାଦ୍ୟ ସାଧାରଣ ପରିବାରରେ ପ୍ରସ୍ତୁତ କରାଯାଇ ନଥାଏ (ହୁଏତ ବଜାରରୁ କିଣାଯାଇଥାଏ) ସେ ସବୁର ତୃପ୍ତି ଆମେ ବୁଢ଼ୀମା'ଙ୍କ ପ୍ରସ୍ତୁତ ଦ୍ରବ୍ୟରୁ ପାଉଥିଲୁ। କାଞ୍ଜୀ (ପଖାଳପାଣିକି ଦୀର୍ଘ ଦିନ ରଖି ସେଥିରୁ ପ୍ରସ୍ତୁତ କରାଯାଉଥିବା ଲୋଭନୀୟ ତରଳ ଦ୍ରବ୍ୟ), କୋଳଥ ଡ଼ାଲି, ଆରିସା ପିଠା, ଆମ୍ବ ଆଚାର ଇତ୍ୟାଦି ଦ୍ରବ୍ୟ ବହୁ ସମୟରେ ଓ ପ୍ରଚୁର ପରିମାଣରେ ମିଳୁଥିଲା।

ଅଲଣାହାଟ ବ୍ୟତୀତ ଘର ନିକଟରେ ତାଙ୍କର ଆଉ ଗୋଟିଏ ସ୍ଥାନରେ ପ୍ରକାଣ୍ଡ ଆମ୍ବ ବଗିଚା ରହିଥିଲା। ବର୍ତ୍ତମାନ ଏହି ସ୍ଥାନ ଚାଉଳିଆଗଞ୍ଜ ନିକଟସ୍ଥ ଅପର୍ଣ୍ଣା ନଗର ନାମରେ ପରିଚିତ। ବର୍ତ୍ତମାନ ସେଠାରେ ଘରଦ୍ୱାରର ଜଙ୍ଗଲ। ସେ ସମୟରେ ଆମ୍ବଗଛର ଜଙ୍ଗଲରେ ଭରପୂର ଥିଲା। କେବଳ ପ୍ରବେଶ ସ୍ଥାନରେ ଗୋଟିଏ ଚାଉଳକଳ ଥିଲା, ଭିତରେ ଗୋଟିଏ ଛୋଟିଆ ମଣ୍ଡପ ହୋଇ 'ଅପାଣିଆ' ନାମକ ଠାକୁରାଣୀଙ୍କ ପ୍ରତିମା ରହିଥିଲା। ଚାଉଳିଆଗଞ୍ଜ ଓ ଆଖପାଖ ଅଞ୍ଚଳରେ ବିବାହ ସମୟରେ ଲୋକମାନେ ମଙ୍ଗଳକୃତ୍ୟ ପାଇଁ ଏଠାକୁ ଆସୁଥିଲେ। ଛୁଆବା' ଓ ବଡ଼ମା'ଙ୍କ ଆମ୍ବ ଜଙ୍ଗଲର ରକ୍ଷଣବେକ୍ଷଣ ପାଇଁ କେତେକ ନିମ୍ନବର୍ଗର ସହାୟକ ଏଠାରେ ରହୁଥିଲେ। ଏମାନଙ୍କ ବ୍ୟତୀତ ଏହା ପ୍ରାୟ ଜନମାନବଶୂନ୍ୟ ରହିଥିଲା। ବେଳେବେଳେ ଛୁଆବା'ଙ୍କ ବଡ଼ପୁଅ ମନୀ ଓ ମୁଁ ଏଠାକୁ ଆସି ଏହି କର୍ମଚାରୀମାନଙ୍କୁ ସଂଗୃହୀତ ଆମ୍ବବ୍ୟାଗ ନେଇ ଘରକୁ ଆସିବାକୁ ନିର୍ଦ୍ଦେଶ ଦେଉଥିଲୁ।

ମନୀ ଓ ମୁଁ ପ୍ରାୟ ସମବୟସୀ। ମନୀ ବୟସରେ ଅଳ୍ପ କେତେ ମାସର ସାନ। ଆମେ ପରସ୍ପରକୁ ପ୍ରଥମ ନାମରେ ସମ୍ବୋଧନ କରୁଥିଲୁ। ମୁଁ ଚାଉଳିଆଗଞ୍ଜର ପଶ୍ଚିମ ପାର୍ଶ୍ୱରେ ଥିବା ଗୁଣାଦୋଳ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀରୁ ମୋର ଔପଚାରିକ ଶିକ୍ଷା ଆରମ୍ଭ କରିବା ସ୍ଥଳେ ମନୀ ଚାଉଳିଆଗଞ୍ଜର ପୂର୍ବସୀମାରୁ କିଛି ଦୂରରେ ଥିବା ନୂଆବଜାର ହାଇସ୍କୁଲରେ ତା'ର ଶିକ୍ଷା ଆରମ୍ଭ କରିଥିଲା। ଔପଚାରିକ ଶିକ୍ଷା ଆରମ୍ଭ କରିବା ପୂର୍ବରୁ ଆମ ଦୁଇଜଣଙ୍କ ମଧ୍ୟରେ ଗଭୀର ସମ୍ପର୍କ ଗଢ଼ି ଉଠିଥିଲା। ସମ୍ପର୍କ ସ୍ରୋତକୁ ଦୃଢ଼ କରିବା ମୂଳରେ ଅନେକଗୁଡ଼ିଏ ସହଭାଗୀ କାର୍ଯ୍ୟକ୍ରମ ସକ୍ରିୟ ରହିଥିଲା।

## ମନୀ ଓ ବନ୍ଧୁସୁଖ

ଏବେ ଶୀତର ପ୍ରାଦୁର୍ଭାବ କମିଛି କି ସୌଖୀନ ପୋଷାକପତ୍ର ମାଧ୍ୟମରେ ଶୀତର ପ୍ରକୋପକୁ ସହ୍ୟ କରିବାର ସାମର୍ଥ୍ୟ ବଢ଼ିଛି ତାହା ଜାଣେ ନାହିଁ। କିନ୍ତୁ ଏ କଥା ସତ ଯେ ପିଲାଦିନେ ଶୀତର କଷ୍ଟ ଅସହ୍ୟ ମନେ ହେଉଥିଲା। ପୁଣି ମୋ ଶରୀର ସାମାନ୍ୟ ରୁଗ୍ଣ ଧରଣର ଥିଲା। ମା' ମୋତେ ବେଳେବେଳେ "ଧଡ଼ି" ବୋଲି ଡାକିଦେଲେ ମୁଁ ଅପମାନିତ ବୋଧ କରୁଥିଲି ଏବଂ ଏପରି ନାମରେ ନ

ଡାକିବା ପାଇଁ ଜୋର୍‌ରେ କହୁଥିଲି । ଅନ୍ୟମାନେ ଏ ନାମର ବ୍ୟବହାର ନ କରନ୍ତୁ ବୋଲି ମୋର ଦୃଢ଼ ଇଚ୍ଛା ଥିଲା ।

ମୋ ଶୀତକଷ୍ଟର ଅନ୍ୟତମ କାରଣ ଥିଲା ମୋ ତ୍ୱଚା ବା ଚର୍ମର ଅପ୍ରାକୃତିକତା । ଶୀତଦିନେ ମୋର ଶରୀରର ଚମ ପ୍ରାୟ ସାପ କାତି ଛାଡ଼ିଲା ପରି ଦିଶୁଥିଲା । ଶୁଷ୍କଚର୍ମର ଲକ୍ଷଣ ଖୁବ୍ ସ୍ପଷ୍ଟ । ଗୋଡ଼ର ପାଦଦୁଇଟି ଫାଟିଯାଇ ଚାଲିବା ପାଇଁ ବେଶ୍ କଷ୍ଟ ହେଉଥିଲା । ବେଳେବେଳେ ସାମାନ୍ୟ ରକ୍ତ ମଧ୍ୟ ବାହାରି ଆସୁଥିଲା । ଚାଲିବା ପାଇଁ ଏତେ କଷ୍ଟ ହେଉଥିଲା ଯେ ମୁଁ ପ୍ରାୟ ଚଉଦପନ୍ଦର ବର୍ଷ ହେବା ପର୍ଯ୍ୟନ୍ତ ରାତିରେ ଦୁଇଗୋଡ଼ର ଫଟାସ୍ଥାନରେ ଭେସ୍‌ଲିନ୍ ଦେଇ ଚୂଲୀ ମଧ୍ୟକୁ ଦେଖାଏ । ଗରମ ଓ ତରଳ ଭେସ୍‌ଲିନ୍ ଭିତରକୁ ଯିବା ସମୟରେ କଷ୍ଟଲାଗେ । କିନ୍ତୁ ପରେ ପରେ ଗୋଡ଼ର ଦରଜ କମିଯାଏ ଏବଂ ଚାଲିବା ସହଜ ହୁଏ । ଶୀତଦିନ ରାତିରେ ଏପରି ଏକ ନିତିଦିନିଆ ଅଭ୍ୟାସ ମୋ ଜୀବନ ଚର୍ଯ୍ୟାର ଅଂଶ ଥିଲା ।

ଶୀତଦିନ ପାହାନ୍ତାରେ ପ୍ରଥମେ ମନୀ ଆସି ମୋତେ ଡାକପକାଏ । ମୁଁ ମୁହଁ ଧୋଇ ଆସିବା ବେଳକୁ ସେ ତାଙ୍କର ଘର ବାହାରେ ଗୋଟିଏ କୃତ୍ରିମ ଚୂଲୀ (ଇଟା ଓ ପଥର ଖଣ୍ଡ ସଜାଇ)ତିଆରି କରିଥାଏ । ସେଥିରେ କାଠିକୁଟା, କାଗଜ ଓ ଶୁଖିଲା ଛଣ ଆଣି ଅଗ୍ନି ସଂଯୋଗ କରେ । ଜଳନ୍ତା କାଠିକୁଟା ପାଖରେ ବସି ଆମେ ଶୀତର କଷ୍ଟକୁ ବିଦାୟ ଜଣାଇବାକୁ ଚେଷ୍ଟା କରୁ । ବେଳେ ବେଳେ ମୋର ସାନଭାଇ ଅଜୁ ଏବଂ ମନୀର ସାନଭାଇ ସୁର ଯୋଗ ଦିଅନ୍ତି । ଚୂଲୀରେ ଭଲ ଭାବେ ନିଆଁ ଧରିବ ବୋଲି ମନୀ ତାଙ୍କ ଗୁହାଳ ଓ ଅନ୍ୟ ସବୁ ପରିତ୍ୟକ୍ତ ଚାଳଘର ଛାତରୁ କିଛି ଛଣ ନେଇ ଆସିଥାଏ । ଏଥିପାଇଁ ବୁଢ଼ୀମା ଓ ବୁଆମା' ତାକୁ ମୃଦୁସ୍ୱରରେ ଗାଳି ଦିଅନ୍ତି । କିନ୍ତୁ ମୁଁ ପୂରାପୂରି ସୁରକ୍ଷିତ ରୁହେ ।

ନିଆଁ ପାଖରେ ବସି ଶୀତ କଟାଇବା, ତାଙ୍କ ଘରର ଛାତରେ ବସି ଖରାରୁ ଆମୋଦ ନେବା ଆମ ବନ୍ଧୁତ୍ୱକୁ ବଳିଷ୍ଠ କରିଥିଲା । ତାଙ୍କର ଛାତରେ ଥିବା ଷ୍ଟୋର ରୁମ୍‌ର ଘୁମ ଭିତରେ କିଛି ପରିମାଣରେ ଚାଉଳ ଲୁଚାଇ ନେଇ ଯାଉଥିଲୁ । ଏହାର ବିନିମୟରେ ଛକରେ କିମ୍ବା ରାସ୍ତାରେ କୋଳି କିଣୁଥିଲୁ । କୋଳିବିକାଳୀ ସ୍ତ୍ରୀଲୋକ ଛୋଟ ଛୋଟ ବେତରେ ବୁଣା ହୋଇଥିବା ଡିବା ରଖନ୍ତି । ସେତିକିରେ ମାପ କରି ଚାଉଳ ନିଅନ୍ତି । ସେତିକି ପରିମାଣରେ କୋଳି ଆମକୁ ଦିଅନ୍ତି । ବେତକୋଳି, ବରକୋଳି ଏବଂ କ୍ଷୀରକୋଳି ପରି ଅନେକପ୍ରକାର କୋଳି କିଣିଥାଉ । ସେ ସମୟର କୋଳିର ଅମୃତ ସ୍ୱାଦ ଏବେ ବି ସ୍ମୃତିପରଦାରେ ମଧୁର ସ୍ପର୍ଶ ଦିଏ । ବୁଢ଼ୀମା' ଓ ବୁଆମା' ଜାଣିପାରିଲେ ମନୀକୁ ଗାଳି ଦିଅନ୍ତି । ଚାଉଳ ବଦଳରେ ସେ ପଇସା ନେଇ କାହିଁକି କିଣୁନାହିଁ ବୋଲି ଯୁକ୍ତି କରନ୍ତି । କିନ୍ତୁ ପଇସା ମାଗିବା ପରିବର୍ତ୍ତେ ଗୋପନରେ ଚାଉଳ ନେଇଯିବା ସହଜ ଓ ସୁଖକର ମନେହୁଏ ।

କେବଳ କୋଳି ଖାଇବାର ସୁଖ ନୁହେଁ, ଆଉ କେତେକ ଆନନ୍ଦଭରା ବନ୍ଧୁସୁଖ ବେଶ୍ ମନେଅଛି। ବେଶ୍ ଦୀର୍ଘ ଓ ପ୍ରଶସ୍ତ ଛାତ। ଅନେକ ସମୟରେ ବଡ଼ି ଶୁଖା ଯାଇଥାଏ। ପୁଣି କେତେକ ବଡ଼ି ମସଲା ଓ ଲଙ୍କା ମିଶ୍ରିତ ବଡ଼ି। ପୂରାପୂରି ଶୁଖିବା ପରେ ସେଗୁଡ଼ିକ ବଡ଼ ବଡ଼ ପାତ୍ରରେ ରଖାଯିବାର ବ୍ୟବସ୍ଥା ଥାଏ। ମାତ୍ର ପୂରାପୂରି ଶୁଖିଯିବା ପୂର୍ବରୁ ଆମେ ଛାତରେ ଖେଳୁ ଖେଳୁ ପ୍ରତିଦିନ ଅଳ୍ପ କିଛି ଖାଇଦେଉ। ଖୁବ୍ ଭଲ ଲାଗେ। ସେହିପରି ଆଚାର ପ୍ରସ୍ତୁତ ପାଇଁ ଶୁଖା ହୋଇଥିବା ବଡ଼ ବରକୋଳି ଓ କଞ୍ଚା ଆମ୍ବ ମଧ୍ୟ ଖାଇଥାଉ। ବେଳେବେଳେ ମନୀ ଗାଳି ଶୁଣେ।

ମୁଁ ରକ୍ଷା ପାଇଯିବାର ନିଶ୍ଚିତ କାରଣ ଥିଲା ସେମାନଙ୍କର ସ୍ନେହଶ୍ରଦ୍ଧା। କୌଣସି ଦିନ ମୁଁ ଛୁଆବା', ଛୁଆମା' କିମ୍ବା ବୁଢ଼ୀମା'ଙ୍କଠାରୁ ଗାଳି ତ ଦୂରର କଥା, ସାମାନ୍ୟତମ ରୁକ୍ଷ ସ୍ୱରର ଶରବ୍ୟ ହୋଇନାହିଁ। ଅବଶ୍ୟ, ମୋତେ ଶ୍ରଦ୍ଧା କରିବାର ଅନ୍ୟ ଏକ ଦୁର୍ବଳତା ସେମାନଙ୍କର ରହିଥିଲା। ବାଲ୍ୟକାଳରୁ ସେମାନେ ଲକ୍ଷ୍ୟ କରିଥିଲେ ଯେ ପାଠପଢ଼ାରେ ମନୀ ଦୁର୍ବଳ, ଅତ୍ୟନ୍ତ ବୁଦ୍ଧିହୀନ ନ ହେଲେ ମଧ୍ୟ ପଛୁଆ। ଅନ୍ୟ ପକ୍ଷରେ ମୋର ଭଲ ରେକର୍ଡ଼ ସେମାନଙ୍କ କାନରେ ପଡୁଥିଲା। ସୁତରାଂ ମୁଁ ଆବଶ୍ୟକସ୍ଥଳେ ମନୀକୁ ପାଠ ବୁଝାଇପାରିବି ବୋଲି ସେମାନେ ଆଶା ରଖୁଥିଲେ। ପରୋକ୍ଷଭାବରେ ଏପରି ଆଶା ମଧ୍ୟ ପ୍ରକଟ କରୁଥିଲେ। ସୁତରାଂ କିଛିଟା ଅଧିକା ପ୍ରାପ୍ୟ ପାଇବାର ଆବାହାୱା ସେ ପରିବାରରେ ସବୁବେଳେ ସକ୍ରିୟ ଥିଲା।

ପରିବାରର କର୍ତ୍ତା ଚକ୍ରଧର ସାହୁ ଜମିଦାର ବଂଶଜ ଥିଲେ ମଧ୍ୟ ସେତେବେଳେ କୌଣସି ନିଜସ୍ୱ କାର୍ଯ୍ୟ କରୁ ନଥିଲେ। ସୌଭାଗ୍ୟବଶତଃ ସେ ଅଞ୍ଚଳର ବିଶିଷ୍ଟ ଲୁଗା ବ୍ୟବସାୟୀ ନିତ୍ୟାନନ୍ଦ ସାହୁ ସମ୍ବେଦନଶୀଳ ଭାବରେ ତାଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ନିଯୁକ୍ତି ଦେଇଥିଲେ। କଟକ ନଗରର ବ୍ୟବସାୟ କେନ୍ଦ୍ର ଚୌଧୁରୀ ବଜାରରେ ନିତ୍ୟାନନ୍ଦ ସାହୁଙ୍କର ଏକ ବିରାଟ ଲୁଗା ଦୋକାନ। ଏହାର ପରିଚାଳନା ଦାୟିତ୍ୱ ପାଇଁ ସେ ଛୁଆବା'ଙ୍କ ସହାୟତା ନେଇଥିଲେ। ପ୍ରତିଦିନ ସକାଳ ନ'ଟାରେ ଛୁଆବା' ନିତ୍ୟାନନ୍ଦ ସାହୁଙ୍କ ସହିତ ତାଙ୍କ ଗାଡ଼ିରେ ଚୌଧୁରୀବଜାର ଯାଆନ୍ତି ଏବଂ ପ୍ରାୟ ରାତି ଦଶଟାରେ ଫେରନ୍ତି। ଖୁବ୍ କମ୍ ସମୟ ତାଙ୍କ ସହ ସାକ୍ଷାତ ହୁଏ। ତଥାପି ତାଙ୍କର ଅମାୟିକ ବ୍ୟବହାର ଓ ସ୍ନେହ ଶ୍ରଦ୍ଧା ମୋ ପାଇଁ ଭାବଗତ ସମ୍ବଳ ଥିଲା।

ବିରାଟ ଘରର ଦାୟିତ୍ୱ ବୁଢ଼ୀମା' ଓ ଛୁଆମା' ସମ୍ଭାଳି ନିଅନ୍ତି। ଘରର ଆଭିଜାତ୍ୟ ଅନୁସାରେ ବେଶ୍ କେତେକ ସହାୟକ (ସ୍ତ୍ରୀ ଓ ପୁରୁଷ) ରହିଥିଲେ। ପଶୁପକ୍ଷୀ ମଧ୍ୟ ରହିଥିଲେ। ଗୋଟିଏ ବଡ଼ ଗୁହାଳରେ ସଂଖ୍ୟାଧିକ ଗାଈ। ଘର ଅଗଣାରେ ତିନିଚାରୋଟି ପିଞ୍ଜରୀରେ ଶୁଆ ଓ ସାରୀ। ସେମାନଙ୍କର ସ୍ୱର ଓ କଥା ଖୁବ୍ ମନଲୋଭା। ବେଶ୍ କିଛିଦିନ ପର୍ଯ୍ୟନ୍ତ ଗୋଟିଏ ପୋଷା ନେଉଳ ମଧ୍ୟ ଥିଲା।

ତା'ଛଡ଼ା ଅନେକ ପାରା। ମଣିଷ ସହିତ ଏମାନଙ୍କ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏକ ମନଲୋଭା ପରିବେଶ ତିଆରି କରିଥିଲା।

ମନୀ ସହିତ ସମ୍ପର୍କକୁ ଯୋଡ଼ିବାର ଅନ୍ୟ ଗୋଟିଏ ଶକ୍ତିଶାଳୀ ମାଧ୍ୟମ ଥିଲା ଏକତ୍ର ଗଣନାଟ୍ୟ ଦେଖିବାର ନିଶା। ଚାଉଳିଆଗଞ୍ଜଟି ଏକାଧିକ ସାହିର ସମୀକରଣ। ମୂଳ ଛକରେ ଶୋଭନୀୟ ଶ୍ରୀ ଲକ୍ଷ୍ମୀ ନାରାୟଣ ମନ୍ଦିର ଅବସ୍ଥିତ। ପୂର୍ବ ଆଡ଼କୁ ନୂଆବଜାର ଦିଗରେ ଲମ୍ବି ଯାଇଥିବା ରାସ୍ତାର ଦୁଇପାର୍ଶ୍ୱକୁ ନେଇ ଅଟାରୀ ସାହି, ପଶ୍ଚିମ ପଟକୁ ପାଞ୍ଚ ନମ୍ବର ଜାତୀୟ ରାଜପଥକୁ ଲମ୍ବିଥିବା ରାସ୍ତାକୁ କେନ୍ଦ୍ର କରି ମଠ ସାହି। ଉତ୍ତର ପଟେ ପାରାଦୀପ ରୋଡ଼ ପର୍ଯ୍ୟନ୍ତ ଲମ୍ବିଥିବା ସାହିଟିକୁ ତଳ ସାହି କୁହାଯାଏ ଏବଂ ଦକ୍ଷିଣ ପଟର ଛୋଟ ସାହିରେ ମଙ୍ଗଳା ମନ୍ଦିର ଥିବାରୁ ଏହାକୁ ମଙ୍ଗଳା ସାହି କୁହାଯାଏ।

ପ୍ରତିଟି ସାହିରେ ଗୋଟିଏ ଦୁଇଟି ମନ୍ଦିର ରହିଛି। ପ୍ରତଟି ମନ୍ଦିରକୁ କେନ୍ଦ୍ର କରି ବର୍ଷ ତମାମ ବିଭିନ୍ନ ଉତ୍ସବ ଅନୁଷ୍ଠିତ ହୁଏ। କିନ୍ତୁ ଆମ୍ଭମାନଙ୍କ ପାଇଁ ସବୁଠାରୁ ଆକର୍ଷଣୀୟ ଥିଲା ଗଣନାଟ୍ୟର ପରମ୍ପରା। ମାର୍ଚ୍ଚମାସର ଦୋଳଯାତ୍ରା ସମୟରେ ପ୍ରତି ସାହିରେ ପ୍ରାୟ ତିନିଚାରିଦିନ ଧରି ଗଣନାଟ୍ୟ ଆୟୋଜନ କରାଯାଏ। ସେହିପରି ସ୍କୁଲ, କଲେଜର ଗ୍ରୀଷ୍ମ ଅବକାଶ ସମୟରେ ଚନ୍ଦନ ଯାତ୍ରା ସମୟରେ ମଧ୍ୟ ଗଣନାଟ୍ୟର ସୁଯୋଗ ମିଳେ।

ସେ ସମୟରେ ତମ୍ବୁ ଟାଣି ଚେୟାରର ବ୍ୟବସ୍ଥା ସହ ଦର୍ଶକମାନଙ୍କ ପାଇଁ ଟିକେଟ୍‌ର ବ୍ୟବସ୍ଥା କରି ଗଣନାଟ୍ୟ ମଞ୍ଚସ୍ଥ ହେଉ ନ ଥିଲା। ମୁକ୍ତ ମଞ୍ଚରେ ଏସବୁ ଗଣନାଟ୍ୟ ହେଉଥିଲା। କଥିତ ଭାଷାରେ ଆମେ ସବୁ "ଯାତ୍ରା" ବୋଲି କହୁଥିଲୁ। ଲୋକମାନେ ବିନା ଟିକେଟ୍‌ରେ ମଞ୍ଚ ଚାରିପଟେ ବସି ଯାତ୍ରା ଦେଖୁଥିଲେ। ସାହିର ମନ୍ଦିର ସମିତିର କର୍ମକର୍ତ୍ତାମାନେ ସାହିଲୋକଙ୍କଠାରୁ ଚାନ୍ଦା ଆଦାୟ କରୁଥିଲେ। ଚାଉଳିଆଗଞ୍ଜ ସାହିବହୁଳ ହୋଇଥିବାରୁ ଦୋଳ ସମୟରେ ପ୍ରାୟ ପନ୍ଦର କୋଡ଼ିଏ ଦିନ କ୍ରମାଗତ ଭାବରେ ଯାତ୍ରା ହୁଏ। ସେହିପରି ଚନ୍ଦନ ସମୟରେ ମଧ୍ୟ କୋଡ଼ିଏ ପଚିଶ ଦିନ ଯାତ୍ରା ଚାଲେ।

ଯାତ୍ରା ଦେଖିବାର ନିଶା ଅଦମ୍ୟ। ସନ୍ଧ୍ୟା ସମୟରୁ ମାନସିକ ପ୍ରସ୍ତୁତି ଆରମ୍ଭ ହୋଇଯାଏ। ମନୀ ମୋ ପାଖକୁ ଆସି ବାରମ୍ବାର ମନେ ପକାଇଦିଏ। କେତେ ଶୀଘ୍ର ସେଠାକୁ ଗଲେ ଭଲ ରୂପେ ଦେଖିବା ପାଇଁ ଉପଯୁକ୍ତ ସ୍ଥାନଟିଏ ମିଳିବ, ତାହା ଚେତାଇଦିଏ। ମୁଁ ମଧ୍ୟ ସଜାଗ। ସନ୍ଧ୍ୟା ସମୟରେ ଖାଇବା ପରେ ପକେଟ୍‌ରେ କିଛି ଚିନାବାଦାମ୍ ବା ଚଣା ନିଆଯାଏ। ପାଖ ଦୋକାନରେ କିଣିବା ପାଇଁ ଅଳ୍ପ କିଛି ପକେଟ୍ ଖର୍ଚ୍ଚ ମଧ୍ୟ ନେଇଥାଉ। ସେଠାରେ ମୋ ପଇସା "ଆମ ପଇସା"ରେ

ପରିଣତ ହୁଏ। ମୋର ଚଣା "ଆମର ଚଣା" ହୋଇଯାଏ। ଯେଉଁ ସାହିରେ ଭଲ ଭଲ ଗଣନାଟ୍ୟର ଦଳ ଆସିଥାଆନ୍ତି, ସେଠାରେ ଅଧିକ ଆକର୍ଷଣ ରହିଥାଏ। ସେ ସମୟରେ ଗଣନାଟ୍ୟର ନାମ ମୁଖ୍ୟ ଉପବିଷ୍ଟଳଙ୍କୁ (ଗ୍ରାମ) କେନ୍ଦ୍ର କରି ଦିଆ ଯାଉଥିଲା। "ବେଣୀରାମ୍‌ପୁର୍" ଓ "ନଗେଶ୍‌ପୁର" ଦଳ ଦୁଇଟି ଅଗ୍ରଣୀ ଦଳର ସ୍ୱୀକୃତି ଲାଭ କରିଥିଲା। ପରବର୍ତ୍ତୀ ପର୍ଯ୍ୟାୟରେ କାଂଶ, ଗୋପାଳପୁର, ସଂପୁର ଇତ୍ୟାଦି ଦଳ ଧୀରେ ଧୀରେ ପରିଚିତ ହେଲେ। ଏ ସବୁ ଦଳଗୁଡ଼ିକ ମୁଖ୍ୟତଃ କଟକ ଏବଂ ଆଧୁନିକ ଜଗତ୍‌ସିଂହପୁର ଅଞ୍ଚଳ। ଶୁଣିବାକୁ ପାଉଥିଲୁ ଯେ ପ୍ରତିଟି ଦଳ ତାଙ୍କର ଗୋଟିଏ ନାଟ୍ୟ ବିଷୟ ଶିକ୍ଷା କରିବା ପରେ ସେମାନେ ପ୍ରଥମ ନିବେଦନ କରିଥାନ୍ତି ମା' ଶାରଳାଙ୍କ ସମ୍ମୁଖରେ। ପରେ ଅନ୍ୟତ୍ର ମଞ୍ଚସ୍ଥ କରନ୍ତି।

ଯାତ୍ରା ଦେଖିବାର ଅନୁଭୂତି ଏକ ସ୍ୱତନ୍ତ୍ର ଧରଣର। କେତେକ ସ୍ଥାନରେ ଇଟା ପଥର ନିର୍ମିତ ସ୍ଥାୟୀ ମଞ୍ଚ ଥାଏ। ଅନ୍ୟ କେତେକ ସ୍ଥାନରେ ସମାନ ଆକାର ବିଶିଷ୍ଟ ଏକାଧିକ ଖଟ ପକାଯାଇ କୃତ୍ରିମ ମଞ୍ଚ ନିର୍ମିତ ହୁଏ। ମୁକ୍ତ ମଞ୍ଚ। ଚାରିଦିଗ ଖୋଲା। ମଞ୍ଚକୁ ଲାଗି ଗୋଟିଏ ଦିଗରେ ନାଟ୍ୟଦଳର ସହଯୋଗୀ ବାଦ୍ୟଯନ୍ତ୍ରବାଦକ ବସିବା ପାଇଁ ନିରୂପିତ ସ୍ଥାନ ଥାଏ। ବିପରୀତ ଦିଗରୁ ଅଭିନେତା ଅଭିନେତ୍ରୀମାନେ ପ୍ରବେଶ କରନ୍ତି। ସେ ସମୟରେ ଯାତ୍ରା ଦଳରେ ନାରୀ ନ ଥିଲେ। ପୁରୁଷ ଓ ବାଳକମାନେ ନାରୀର ଅଭିନୟ କରୁଥିଲେ।

ମଞ୍ଚର ଗୋଟିଏ ଦିଗରେ ବାଦକ ବସିବା ସ୍ଥଳେ ଅନ୍ୟ ଗୋଟିଏ ପାର୍ଶ୍ୱରେ ମଞ୍ଚକୁ ଲାଗି ବାଳକମାନଙ୍କ ପାଇଁ ବସିବା ବ୍ୟବସ୍ଥା ହୋଇଥାଏ। ଅନ୍ୟପାର୍ଶ୍ୱରେ ମଞ୍ଚକୁ ଲାଗି ବାଳିକା ଏବଂ ସେହି ପାର୍ଶ୍ୱରେ ଦୂରକୁ ଦୂରକୁ ମହିଳାଙ୍କ ପାଇଁ ନିରୂପିତ ସ୍ଥାନ ରହିଥାଏ।

ସାଧାରଣତଃ ରାତି ଏଗାରଟା ବେଳକୁ ଆମେ ସବୁ ସଜବାଜ ହୋଇ ଯାତ୍ରା ଦେଖିବାକୁ ଯାଉ। ସାଢ଼େ ଏଗାର କିମ୍ବା ବାରଟା ବେଳକୁ ପ୍ରଥମେ ବାଦକ ଦଳ ସେମାନଙ୍କ ସ୍ଥାନ ଗ୍ରହଣ କରନ୍ତି। କିଛି ସମୟ ପରେ ବାଦ୍ୟଯନ୍ତ୍ର ଆରମ୍ଭ ହେଲେ ଯାତ୍ରାର ପ୍ରଥମ ସୂଚନା ମିଳେ। ବେଳେବେଳେ ବାଦ୍ୟଯନ୍ତ୍ର ଆରମ୍ଭ ହେବାର କୋଡ଼ିଏ ପଚିଶ ମିନିଟ୍ ପରେ ମ୍ୟାନେଜର୍ ଗୋଟିଏ ହୁଇସିଲ୍ ବଜାନ୍ତି। ଯାତ୍ରା ଆରମ୍ଭ ହେବାର ପ୍ରାରମ୍ଭିକ ଦୃଶ୍ୟରେ ଦଳେ ଝିଅ ଆସି ସମବେତ ନୃତ୍ୟ ପ୍ରଦର୍ଶନ କରନ୍ତି। ଆରମ୍ଭ ହେବାର ନିଶ୍ଚିତ ସ୍ୱରୂପ ରୂପ ନିଏ।

ସମୟ ସମୟରେ ବାଦ୍ୟଯନ୍ତ୍ର ଦୀର୍ଘ ସମୟ ଚାଲୁ ରହିଲେ ଆମପରି ପିଲାମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟେ। ଆମେ ସବୁ ଗୋପନରେ କଥାବାର୍ତ୍ତା କରି ପାଳି କରି ଆସନରୁ ଉଠିଥାଉ ଏବଂ ଅଭିନେତା ଅଭିନେତ୍ରୀମାନଙ୍କର ପ୍ରସ୍ତୁତି ଘର ଦିଗରେ

ସନ୍ତର୍ପଣରେ ପଦ ଚାଳନା କରୁ। ପିଲାମାନଙ୍କ ମଧ୍ୟରୁ କେହି ଉଠିବାର ଦେଖିଲେ ମୁରବୀ ମଣ୍ଡଳରୁ ଗର୍ଜନ ଆସେ, "କୁଆଡ଼େ ଯାଉଛ ?" ବାଧ୍ୟ ହୋଇ "ଏକ" ଯାଉଥିବାର ଇଙ୍ଗିତ ଦେବାକୁ ହୁଏ। ମୁରବୀ ଚୁପ୍। ଜଣେ ଜଣେ ସାହି ମୁରବୀ ହାତରେ ଗୋଟିଏ ବେତ ଧରିଥାନ୍ତି। ତଳେ ବାଡ଼େଇଦେଇ ନିଜକୁ ଶାନ୍ତ କରାନ୍ତି। ମିଛ କହି ଯାତ୍ରାବାଲାଙ୍କ ପ୍ରସ୍ତୁତି ଘରକୁ ଲୁଚିଛପି ଯାଇଥିବା ପିଲାଟି ଫେରିଆସି ସାଙ୍ଗସାଥୀଙ୍କୁ କୁହେ: "ଆଉ ଡ଼େରି ନାହିଁ। ଯାତ୍ରାବାଲାମାନେ ମୁହଁରେ ପାଉଡ଼ର ମାଖୁଛନ୍ତି, ବିଳମ୍ବ ହେବନି।" ମନ ଶାନ୍ତ ହୁଏ, ଅବିଳମ୍ବେ ଯାତ୍ରା ଆରମ୍ଭ ହେବ।

ବେଳେବେଳେ ଯାତ୍ରାର ବିଷୟ ବସ୍ତୁ ନେଇ ସରସତା କମ୍ ଥିଲେ ଧୈର୍ଯ୍ୟଚ୍ୟୁତି ଘଟେ। ଏପରିକି ବୟସ୍କ ବ୍ୟକ୍ତିମାନେ ମ୍ୟାନେଜରଙ୍କ ଆଡ଼କୁ ଲକ୍ଷ୍ୟ କରି ଜୋର୍‌ରେ କୁହନ୍ତି:ଫାର୍ସ ପଠାନ୍ତୁ। ଜଣେ ତରୁଣ ଓ ଜଣେ ତୂରୁଣୀଙ୍କୁ ନେଇ ହାସ୍ୟରସପୂର୍ଣ୍ଣ ଗୀତ ଓ ନାଟ୍ୟଭରା ଦୃଶ୍ୟ ହେଉଛି ଫାର୍ସ। ମନୋରଞ୍ଜନଧର୍ମୀ, ମାତ୍ର କୌଣସି ଅଶ୍ଳୀଳତା ନ ଥିଲା। ଛୋଟପିଲା, ତରୁଣ ତରୁଣୀ ଓ ବୟସ୍କମାନଙ୍କ ପାଇଁ ଦେଖିବା ଭଳି କଥାବସ୍ତୁ। ବହୁତ ସମୟରେ ପୌରାଣିକ କଥାବସ୍ତୁ, ବାଣାସୁର ବଧ, ଇନ୍ଦ୍ରଜିତ ବଧ, ଗରୁଡ଼ ଜନ୍ମ ଏବଂ ଶ୍ରୀକୃଷ୍ଣ ଜନ୍ମ ସେ ସମୟର ଲୋକପ୍ରିୟ ଉପସ୍ଥାପନା। କିଛି କିଛି ସାମାଜିକ କଥାବସ୍ତୁ ମଧ୍ୟ ରହିଥିଲା। କଙ୍କଣ ଦାସୀ, ପ୍ରେତାତ୍ମାର ଆହ୍ୱାନ ଓ ଲକ୍ଷହୀରା ପରି ସାମଜିକ ଶିରୋନାମା ମୋର ମନେଅଛି। ଯାତ୍ରା ଦେଖି ରାତି ଅନିଦ୍ରା ରହିବା, ପରଦିନ ଯତ୍‌କିଞ୍ଚିତ୍ ଖାଇଦେଇ ଶୋଇବା ଏବଂ ପୁଣି ସନ୍ଧ୍ୟା ସମୟରେ ଯାତ୍ରା ଦେଖିବାକୁ ଯିବା ପାଇଁ ପ୍ରସ୍ତୁତି ଆରମ୍ଭ କରିବା ବାର୍ଷିକ କ୍ୟାଲେଣ୍ଡର ମଧ୍ୟରେ ଏକ ବିଶିଷ୍ଟ ଅଂଶବିଶେଷ।

## ବଡ଼ବା' ବଡ଼ମା'

ଛୁଆବା' ଓ ଛୁଆମା'ଙ୍କ ଘର କି ଆମର ଘରର ପୂର୍ବଦିଗକୁ ରହିଥିବା ସ୍ଥଳେ ଆମ ଘରର ଉତ୍ତର ଦିଗରେ ମୋର ଆଉ ଗୋଟିଏ ସ୍ନେହ କେନ୍ଦ୍ର ଥିଲା ବଡ଼ବା'ଙ୍କ ଘର। ତାଙ୍କର ନାମ ଧ୍ରୁବ ଚରଣ ସାହୁ। ସେ ଚକ୍ରଧର ସାହୁଙ୍କର ଭାଇ ନହେଲେ ମଧ୍ୟ ଦୂର ସମ୍ପର୍କୀୟ ଭାଇ। ଦୁହେଁ ମିଳିତ ଭାବରେ ଜମିଦାରୀ ସମ୍ପତ୍ତିର ଅଧିକାରୀ। ସେ ଭଦ୍ର ଓ ଅଳ୍ପଭାଷୀ। କୌଣସି ବେତନ ଭୋଗୀ କାର୍ଯ୍ୟ କରୁ ନ ଥିଲେ। ସ୍ଥାବର ସମ୍ପତ୍ତି ସମେତ ତାଙ୍କର ବିଭିନ୍ନ ସ୍ଥାନରେ କେତେକ କୋଠାଘର ଥିଲା। ସେଥିରୁ ମିଳୁଥିବା ଭଡ଼ା ତାଙ୍କ ପରିବାରର ଖର୍ଚ୍ଚ ପାଇଁ ପର୍ଯ୍ୟାପ୍ତ ଥିଲା।

ବଡ଼ବା' ବଡ଼ମା'ଙ୍କ ଘରକୁ ମଧ୍ୟ ଆମେ ଦୁଇ ଭାଇ ଅବାଧରେ ଯାଇପାରୁଥିଲୁ। ତାଙ୍କର ଚାରୋଟି କନ୍ୟା। ପୁତ୍ର ନ ଥିବାରୁ ପତିପତ୍ନୀଙ୍କ ମନରେ ଗଭୀର ଦୁଃଖ ଥିଲା। ଏହା ସମସ୍ତେ ଅନୁମାନ କରିପାରୁଥିଲେ।

ତାଙ୍କର ବଡ଼ଝିଅ "ମାତା"। ସେ ବୟସରେ ମନୀ ଓ ମୋ'ଠାରୁ ବେଶ୍ ବଡ଼। ତେଣୁ ଆମେ ତାଙ୍କୁ "ମାତା ନାନୀ" ବୋଲି ଡାକୁଥିଲୁ। ସେ ଥରେ ଦୁଇଥର ଖୁବ୍ ଯାକଜମକରେ "କୁଣ୍ଢେଇ ବାହାଘର" ଆୟୋଜନ କରିଥିଲେ। ସେ "ବର"ର ମାତା କି "କନ୍ୟା"ର ମାତା, ସେ କଥା ମନେପଡୁନାହିଁ। କିନ୍ତୁ ତାଙ୍କର ସମବୟସୀ ତାଙ୍କର ବାନ୍ଧବୀ ସମ୍ବନ୍ଧୀୟ ଭୂମିକା ନେଇଥିଲେ। କୁଣ୍ଢେଇ ବିଭାଘର ହେଲେ ମଧ୍ୟ ଆୟୋଜନ କମ୍ ନ ଥିଲା। ବରଯାତ୍ରୀ କନ୍ୟାଯାତ୍ରୀର ସମାବେଶ ଏବଂ ବଡ଼ ଧରଣର ଭୋଜୀର କଥା ବେଶ୍ ମନେପଡୁଛି। ଭୋଜୀ ଓ ଆୟୋଜନ ଏତେ ଆକର୍ଷଣୀୟ ଥିଲା ଯେ ମନୀ ଓ ମୁଁ ଗୋଟିଏ କୁଣ୍ଢେଇ ବାହାଘରର ଦୁଇତିନିମାସ ନ ହେଉଣୁ ମାତାନାନୀଙ୍କୁ ପଚାରି ବସୁଥିଲୁ: "ମାତା ନାନୀ, କୁଣ୍ଢେଇ ବିଭାଘର ପୁଣି କେବେ ଆୟୋଜନ କରୁଛନ୍ତି ?"

ସମ୍ଭବତଃ ମନୀ ଓ ମୋର ପ୍ରାଥମିକ ଶିକ୍ଷା ସରିଲା ବେଳକୁ ମାତା ନାନୀଙ୍କର ବିବାହ ଉତ୍ସବ ଅନୁଷ୍ଠିତ ହୋଇଥିଲା। ଆମର ବୟସକୁ ଚାହିଁ ଆମେ ବେଶ୍ ସକ୍ରିୟ ଅଂଶ ନେଇଥିଲୁ। ଭଲ ଭଲ ରେକର୍ଡ଼ କେଉଁଠାରୁ ମିଳିବ, ସୁନ୍ଦର ସାଜସଜ୍ଜା କିପରି ହୋଇପାରିବ ଏବଂ କେଉଁମାନଙ୍କୁ ନିମନ୍ତ୍ରଣ କରାଯିବ–ଏସବୁ କ୍ଷେତ୍ରରେ ମୁରବୀ ଭଳି କାରବାର ଆରମ୍ଭ କରିଦେଲୁ। ନିଜ ବଡ଼ ଭଉଣୀର ବିଭାଘର ଉତ୍ସବରେ ସରସତା ଆମକୁ କାବୁ କରିଥିଲା।

ବଡ଼ବା' ବଡ଼ମା' ଏବଂ ଛୁଆବା' ଛୁଆମା' ଘର ଦୁଇଟି ମୋ ଜୀବନ ଇତିହାସର ଉଜ୍ଜ୍ୱଳ ପୃଷ୍ଠା। ମୋର ଛ'ବର୍ଷ ବୟସରେ ବୋଉକୁ ହରାଇବା ନିଶ୍ଚିତ ଭାବରେ ଏକ ଚଡ଼କ। ସମ୍ଭବତଃ ଜୀବନଭୂମିରୁ ତଳକୁ ତଳକୁ ଖସି ଯାଉଥିବା ସମୟରେ ଯିଏ ନିଜର ପିଠି ଦେଇ ମୋତେ ଅଟକାଇ ଧରି ରଖିଥିଲେ, ସେ ହେଉଛନ୍ତି ମୋର ମା' (ଜେଜେମା')। ପୁଣି ଦୁଇପଟେ, ଦୁଇଟି ସ୍ତମ୍ଭ ଭଳି ଧରି ରଖିଲେ ଛୁଆମା' ଛୁଆବା' ଏବଂ ବଡ଼ମା' ବଡ଼ବା'। ମନୀ କେବଳ ଯାତ୍ରା ଦେଖିବାର ସଖା ନୁହେଁ, ଜୀବନଯାତ୍ରା ଆଉ ଟିକିଏ ଆଗକୁ ନେଇଯିବାର ପ୍ରୟାସ-ପ୍ରତୀକ। ପ୍ରତିଦାନରେ ମୁଁ ଏମାନଙ୍କ ପାଇଁ କିଛି କରିନାହିଁ, କେବଳ ଏମାନଙ୍କର ଉତ୍ତର ପୁରୁଷର ମଙ୍ଗଳ କାମନା କରି ପ୍ରାର୍ଥନା କରିଛି।

❖

(୬)

# ପ୍ରାଥମିକ ଶିକ୍ଷା ଗୁଣାଦୋଳରେ

ମୋର ପ୍ରାଥମିକ ଶିକ୍ଷା ଚାଉଳିଆଗଞ୍ଜର ଗୁଣାଦୋଳ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ସମ୍ପନ୍ନ ହୋଇଥିଲା। ଏଠାର ଅନୁଭବ ଅମଳିନ ରହିଛି। ଏହି ସ୍କୁଲଟି ଚାଉଳିଆଗଞ୍ଜର ଗୋଟିଏ ପାର୍ଶ୍ୱରେ। ମୁଖ୍ୟ ରାସ୍ତାଟି ଯେଉଁଠି ପାଞ୍ଚନମ୍ବର ଯେଉଁଟି (ବର୍ତ୍ତମାନ ଷୋହଳ ନମ୍ବର) ଜାତୀୟ ରାଜପଥ ସହ ସଂଯୁକ୍ତ ହୋଇଛି। ଏହି ସଂଯୋଗ ସ୍ଥଳର ପ୍ରାୟ ୫୦୦ ମିଟର ପୂର୍ବରୁ ସ୍କୁଲଟି ଅବସ୍ଥିତ। ସ୍କୁଲର ସାମନାରେ ଏକ ବିରାଟ ଓ ସୁନ୍ଦର କ୍ରୀଡ଼ା ପ୍ରାଙ୍ଗଣ। କୁହାଯାଏ ଏ ଖେଳପଡ଼ିଆଟି ମୂଳତଃ ଓ.ଏମ୍.ପି. (ଓଡ଼ିଆ ମିଲିଟାରୀ ପୋଲିସ୍) ପରିସରର ଅଂଶବିଶେଷ ଥିଲା। ଏଠାରେ ଚାଉଳିଆଗଞ୍ଜ କ୍ଲବର ପିଲାମାନେ ଫୁଟବଲ୍ ଖେଳୁଥିଲେ। ପରେ ବିବଦମାନ ଅବସ୍ଥା ଉପୁଜିବାରୁ ନ୍ୟାୟାଳୟର ନିଷ୍ପତ୍ତି ଅନୁଯାୟୀ ଏହା ଚାଉଳିଆଗଞ୍ଜରେ ଅନ୍ତର୍ଭୁକ୍ତ ହେଲା। ସ୍କୁଲର ପଛଭାଗରେ ତାଳଦଣ୍ଡା କେନାଲ ବହିଯାଇଛି। ଶୁଣିଛି ବର୍ତ୍ତମାନ ଏହି ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟି ବିକଶିତ ହୋଇ ମଧ୍ୟ ଇଂରାଜୀ ସ୍କୁଲରେ ରୂପାନ୍ତରିତ ହୋଇଛି।

୧୯୫୭ ଜୁଲାଇ ମାସରେ ମୁଁ ସ୍କୁଲରେ ପ୍ରବେଶ କଲି। ଏହି ସ୍କୁଲରେ ଭର୍ତ୍ତି କରିବା ପାଇଁ ମୋର ପିତା କେଉଁଠାରୁ ପ୍ରରୋଚନା ପାଇଲେ, ତାହା ମୁଁ କହିପାରିବି ନାହିଁ। ତଥାପି ମୋର ମନେଅଛି ଯେ ଏଥିପାଇଁ ବାପା କମ୍ ସମାଲୋଚିତ ହୋଇ ନାହାନ୍ତି। ସେ ସମୟରେ ଚାଉଳିଆଗଞ୍ଜରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ନ ଥିଲା। ତେବେ ଏହାର ପୂର୍ବ ପାର୍ଶ୍ୱରେ ନୂଆବଜାର ହାଇସ୍କୁଲ ଆରମ୍ଭ ହୋଇ ବିସ୍ତାର ଲାଭ କରୁଥିଲା। ଆମ ଅଞ୍ଚଳର ବହୁ ବୟସ୍କ ଲୋକ ଅନୁଭବ କରୁଥିଲେ ଯେ ପିଲାର ବୌଦ୍ଧିକ ବିକାଶ ପାଇଁ ବଡ଼ ସ୍କୁଲ ଅଧିକ ସୁଯୋଗ ଦେବ। ଗୁଣାଦୋଳ ପରି ପ୍ରାଥମିକ ସ୍କୁଲରେ ବିକାଶର ସମ୍ଭାବନା ସୀମିତ। ଏଥିପାଇଁ ଅନେକ ଲୋକ ବାପାଙ୍କୁ ଉପହାସ କଲେ। କିନ୍ତୁ ବାପା ନିର୍ବିକାର। ଦୁଇବର୍ଷ ପରେ ମୋର ସାନଭାଇ "ଅଚ୍ୟୁତ"କୁ ମଧ୍ୟ ସେହି ଗୁଣାଦୋଳରେ ଭର୍ତ୍ତି କରାଗଲା।

ଗୁଣାଦୋଳରେ ମୁଁ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେଲି। ମୁଁ ଯେଉଁ ବର୍ଷ (୧୯୫୭ ମସିହା) ଭର୍ତ୍ତି ହେଲି ତାହାର ପୂର୍ବବର୍ଷରେ ହିଁ ଏହି ସ୍କୁଲଟି ନିମ୍ନ ପ୍ରାଥମିକ ବିଦ୍ୟାଳୟରୁ ଉଚ୍ଚ ପ୍ରାଥମିକ ସ୍ତରକୁ ଉନ୍ନୀତ ହୋଇଥାଏ। ସୁତରାଂ ମୁଁ ଚତୁର୍ଥ ଶ୍ରେଣୀରେ ପଢୁଥିବା ସମୟରେ ସ୍କୁଲର ପ୍ରଥମ୍ ଥର ପାଇଁ ପଞ୍ଚମ ଶ୍ରେଣୀ

କାର୍ଯ୍ୟକାରୀ ହୋଇଥାଏ। ପଞ୍ଚମ ଶ୍ରେଣୀର ଛାତ୍ର ମାତ୍ର ଦୁଇଜଣ: ଅଶୋକ ସାହୁ ଓ ସୁବାସ ପୃଷ୍ଟି। ସୁବାସ ପୃଷ୍ଟିଙ୍କ ପିତା ଭାସ୍କର ପୃଷ୍ଟି ସେ ସ୍କୁଲର ସମ୍ପାଦକ। ଭଦ୍ର ଓ ଶାନ୍ତ ପ୍ରକୃତିର ଲୋକ। ସେ ବେଳେବେଳେ ସ୍କୁଲକୁ ଆସିଲେ ଆମେ ସବୁ ଛାତ୍ରଛାତ୍ରୀ ତାଙ୍କୁ ଅଭିବାଦନ ଜଣାଇଥାଉ।

ଆମ ଶ୍ରେଣୀରେ ସମୁଦାୟ ୧୯ ଜଣ ଛାତ୍ରଛାତ୍ରୀ ଥିଲେ; ୧୦ ଜଣ ବାଳକ ଓ ୯ ଜଣ ବାଳିକା। ରାଜେଶ୍ୱର, ରମେଶ, ପ୍ରସନ୍ନ, ଶରତ, ଅଲେଖ, ଋଷି ଓ ଦିଲୀପ ନାମଗୁଡ଼ିକ ମନେ ପଡୁଛି। ଅନ୍ୟମାନଙ୍କ ମଧ୍ୟରୁ ହାଜରା ବିବି, ପ୍ରମୋଦା, ଶେଫାଳୀ, ଉର୍ମିଳା, ମିନତି, ରମା, ମିନାକ୍ଷୀ, ମୀରା ଓ ଗୁଲିଆ ଦେଈର ନାମ ସ୍ମରଣ କରିପାରୁଛି। ଆମ୍ଭମାନଙ୍କ ମଧ୍ୟରେ ରାଜେଶ୍ୱର ସିଂହ କେବଳ ବୟସରେ ଟିକେ ବଡ଼ ନ ଥିଲେ ତାଙ୍କ ଚରିତ୍ରର କେତେକ ବିଶେଷତ୍ୱ ଆମ୍ଭମାନଙ୍କ ପାଖକୁ ତାଙ୍କୁ ଟାଣି ଆଣିଥିଲା।

## ରାଜୁ ଭାଇ

ରାଜେଶ୍ୱରଙ୍କୁ ଆମେ ପ୍ରାୟ ସମସ୍ତେ "ରାଜୁଭାଇ" ବୋଲି ଡାକୁଥିଲୁ। ରାଜୁଭାଇର ଜନ୍ମସ୍ଥଳୀ ବିହାର ପ୍ରଦେଶର କୌଣସି ଏକ ସ୍ଥାନ। ରାଜୁଭାଇ କୁହନ୍ତି ଯେ ତାଙ୍କର ବାପା ରାଜୁ ଓ ତା'ର ସାନ ଭଉଣୀ "ବୀଣା"କୁ ନେଇ ଓଡ଼ିଶା ଚାଲି ଆସିଥିଲେ। ସେ ପ୍ରଥମେ କିଛିଦିନ ପୁରୀ ଗଜପତି ମହାରାଜଙ୍କର ଘରୋଇ କାର୍ ଚାଳକ ରୂପେ କାର୍ଯ୍ୟ କରିଥିଲେ। ପରେ ସ୍ଥାୟୀ ଚାକିରି ପାଇବା ଆଶାରେ ସେ ଦୁଇଜଣଙ୍କୁ ନେଇ କଟକ ଚାଲି ଆସିଲେ। ତଥାପି ତାଙ୍କର ଜୀବନ ସଂଗ୍ରାମ ଚାଲିଥିଲା। ପୂରା ପରିବାରଟି ଗୋଟିଏ ଛୋଟିଆ ଘରେ ରହୁଥିଲେ। ରାଜେଶ୍ୱରର ବାପା କାଁ ଭାଁ ସାମୟିକ ଭାବରେ ଘରୋଇ କାର୍ ଚଳାଇ ଯତ୍ ସାମାନ୍ୟ ରୋଜଗାର କରନ୍ତି। ଦୁଃସ୍ଥ ଅବସ୍ଥାର ପ୍ରତିଫଳନ ସବୁଥିରେ ସ୍ପଷ୍ଟ। ଆମେ ସବୁ ଛୋଟ ହେଲେ ମଧ୍ୟ ସେମାନଙ୍କ ଅଭାବଗ୍ରସ୍ତ ଜୀବନର ଚିହ୍ନ ସବୁ ଦେଖି ପାରୁଥିଲୁ।

ରାଜୁଭାଇ ମୂଳ ହିନ୍ଦୀ ଭାଷାଭାଷୀ ଅଞ୍ଚଳରୁ ଆସିଥିବାରୁ ଏବଂ ବିଳମ୍ବରେ ଓଡ଼ିଆ ଭାଷା ଶିକ୍ଷା କରିଥିବାରୁ ତାଙ୍କ ବୟସ ଓ ସ୍କୁଲର ଶ୍ରେଣୀ ମଧ୍ୟରେ ଅମେଳ ଥିଲା। ଶ୍ରେଣୀକୁ ଚାହିଁ ସେ ଅଧିକ ବୟସର ଛାତ୍ର ଥିଲେ। କିନ୍ତୁ ବୟସ ତାଙ୍କୁ କେତୋଟି ଅଧିକା ଜିନିଷର ଅଧିକାରୀ କରିଥିଲା।

ଆମେ ସବୁ ଲକ୍ଷ୍ୟ କରିଥିଲୁ ଯେ ଆମେ ସ୍କୁଲର ସହପାଠୀ ହେଲେ ମଧ୍ୟ ତାଙ୍କର ଆଉ ଗୋଟିଏ ବନ୍ଧୁ ବଳୟ ରହିଥିଲା। ତାଙ୍କ ବୟସର ପିଲାମାନଙ୍କ ସହିତ ସେ ସିନେମା ଦେଖିବାକୁ ଯାଉଥିଲେ। ସେ ସମୟରେ ଡିଟେକ୍‌ଟିଭ୍ ଉପନ୍ୟାସ "ଦସ୍ୟୁ ରବୀନ୍" ସିରିଜ୍‌ର ଗପ ସବୁ ଆଲୋଚନା କରୁଥିଲେ। "ଜଳଦସ୍ୟୁ" ସିରିଜ୍

ନାୟିକା ମୀରା କଥା ବାରମ୍ବାର କହୁଥିଲେ। ଆମ ସ୍କୁଲର ଅଳ୍ପ କେତେଜଣ ବାଳକ ରାଜୁଭାଇଙ୍କର ଖୁବ୍ ପ୍ରିୟ ଥିଲୁ। ମୋ ଛଡ଼ା ରମେଶ ଓ ପ୍ରସନ୍ନ ଏ ଦଳରେ ସାମିଲ ଥିଲେ। ରାଜୁଭାଇଙ୍କର ଗଳ୍ପ କଥନର ଶୈଳୀ ଥିଲା ଖୁବ୍ ଆକର୍ଷଣୀୟ। କଳ୍ପନା ପ୍ରବଣତାର ସଫଳ ପ୍ରୟୋଗ କରି ସେ ଆମକୁ ଅଜସ୍ର ଗପ କହୁଥିଲେ। ରାଜୁଭାଇଙ୍କର ଗୋଟିଏ ଖରାପ ଅଭ୍ୟାସ ଥିଲା ଗୁଡ଼ାଖୁ ଘଷିବା। ଆମ ସ୍କୁଲରେ ମଝିରେ ଘଣ୍ଟାଏ ଛୁଟି ହୁଏ। ପ୍ରାୟ ଦିନ ବାରଟାରୁ ଗୋଟାଏ ପର୍ଯ୍ୟନ୍ତ। ରୁଟିନ୍ ଅନୁଯାୟୀ ଏହା ଖେଳଛୁଟି ହେଲେ ମଧ୍ୟ ବାସ୍ତବରେ ଏହା ମଧ୍ୟାହ୍ନ ଭୋଜନର ଛୁଟି।

ଖାଇବା ପାଇଁ ଆମେ ସବୁ ଘରକୁ ଯାଉ। ରାଜୁଭାଇ, ରମେଶ ଓ ମୁଁ ପାଖାପାଖି ରହୁଥିବାରୁ ଏକାଠି ହୋଇ ଘରକୁ ଯାଉ ଏବଂ ପୁଣି ଫେରିବା ସମୟରେ ଏକାଠି ସ୍କୁଲକୁ ଫେରିଥାଉ। ସ୍କୁଲ ପରିସରରେ ପ୍ରବେଶ କରିବା ପୂର୍ବରୁ ଆମେ ସ୍କୁଲ ପଛପଟ ତାଳଦଣ୍ଡା କେନାଲ କୂଳକୁ ଯାଉ। ଏହାକୁ ଲାଞ୍ଜିକୂଳ କୁହନ୍ତି। ଏଠାରେ ରାଜୁଭାଇ ଗୁଡ଼ାଖୁରେ ଦାନ୍ତ ଘଷନ୍ତି। ଆମେ ଦୁଇଜଣ ସାଙ୍ଗରେ ରହିଥାଉ। ଆମ ପାଇଁ ଏ ଏକ ଗଳ୍ପ କଥନ ଓ ଶ୍ରବଣର ଅଧିବେଶନ। ଦସ୍ୟୁନାୟିକା ମୀରାଠାରୁ ଆରମ୍ଭ କରି ବଜାରଦର, ସିନେମା ଖବର ଏବଂ ପ୍ରଧାନମନ୍ତ୍ରୀ ଜବହାରଲାଲ ନେହେରୁଙ୍କ ଜୀବନୀର କିଛି ଅଂଶ ଶୁଣିବାକୁ ମିଳେ।

ଗୁଡ଼ାଖୁର ତୀବ୍ର ଗନ୍ଧ ସହିତ ଗଳ୍ପ ସବୁର ବିବିଧତା ଆମ ପାଇଁ ଆକର୍ଷଣର ଏକ ଜାଲ ତିଆରି କରେ। ମୁଁ ଶ୍ରେଣୀରେ ପ୍ରଥମ ହେଉଥିଲି। ରମେଶ ମଧ୍ୟ ପାଠରେ ଖୁବ୍ ଆଗୁଆ ଥିଲା। ତଥାପି ମନେ ହେଉଥିଲା ଯେ ରାଜୁଭାଇ ଆମ ଦୁହିଁଙ୍କୁ ପଛରେ ପକାଇ ଜ୍ଞାନ ରାସ୍ତାର କାହିଁ କେତେ ଦୂରକୁ ଚାଲି ଯାଇଛନ୍ତି।

ଆମର ଗୁରୁଜନମାନଙ୍କ ସମେତ ସାହିର ଅନ୍ୟ ସବୁ ବୟସ୍କ ବ୍ୟକ୍ତିମାନେ ଆମର ଏ ବନ୍ଧୁତା ଭଲ ଆଖିରେ ଦେଖୁ ନ ଥିଲେ। ସେମାନେ ଭାବୁଥିଲେ ବୟସରେ ଆଗେଇ ଯାଇଥିବା ରାଜୁଭାଇ ଆମ ପରି ଅଳ୍ପ ବୟସର କୋମଳମତି ମନକୁ ବିଷାକ୍ତ କରିଦେବ। ଏଥିପାଇଁ ସମୟ ସମୟରେ ଆମ ନାମରେ ଶିକ୍ଷକଙ୍କ ପାଖରେ ଅଭିଯୋଗ ପହଞ୍ଚୁଥିଲା। ରାଜୁ ସହିତ ମିଶି ଆମେ ମଧ୍ୟ ଗୋପନରେ ଗୁଡ଼ାଖୁ ବ୍ୟବହାର କରୁଛୁ ବୋଲି ଅଭିଯୋଗ କରାଯାଇଥିଲା।

ଔପଚାରିକ ଶିକ୍ଷା ବିଳମ୍ବରେ ଆରମ୍ଭ ହୋଇଥିବାରୁ ରାଜୁଭାଇ ଗଣିତରେ ଖୁବ୍ ଦୁର୍ବଳ। ଅନ୍ୟସବୁ ବିଷୟରେ ଚଳନୀୟ। ମାତ୍ର ବାହ୍ୟଜ୍ଞାନରେ ଧୂରନ୍ଧର। ଗୋଟିଏ ଦୁଇଟି ଘଟଣା ଏବେ ମଧ୍ୟ ମନେଅଛି। ସ୍କୁଲ ରୁଟିନ୍ କ୍ଳାସ୍ ସରିବା ପରେ ଆମେ ସବୁ କିଛି ସମୟ ବଗିଚା କାମ କରିଥାଉ। ଥରେ ବଗିଚାକାମ କଲାବେଳେ ବଗିଚାକୁ ଲାଗିଥିବା ରାସ୍ତାରେ ସ୍କୁଲ ଇନ୍‌ସପେକ୍ଟର ଯାଉ ଯାଉ ଅଟକିଗଲେ।

ସେ ସମୟରେ ପ୍ରାଥମିକ ସ୍କୁଲମାନଙ୍କର ତଦାରଖ କରିବାର ଦାୟିତ୍ୱ ଥିଲା ସବ୍‌ଇନ୍‌ସପେକ୍ଟରମାନଙ୍କର। ଏମାନେ ପିଲାଙ୍କ ପାଖରେ ଦେବତା ସଦୃଶ। ସାଇକେଲ୍‌ରେ ଆସନ୍ତି। ପିନ୍ଧିଥିବା ଫୁଲ୍‌ପ୍ୟାଣ୍ଟର ଶେଷ ଭାଗରେ ଗୋଟିଏ ଲୁହା ଚାପୁଣୀରେ ପ୍ୟାଣ୍ଟର ଶେଷଭାଗ ଚାପି ହୋଇ ରହିଥାଏ। ମୁଣ୍ଡରେ ନିଶ୍ଚିତ ଭାବରେ ଗୋଟିଏ ହ୍ୟାଟ୍ ଥାଏ। ଏପରି ଦୃଶ୍ୟ କେବେ କେମିତି ସମ୍ମୁଖକୁ ଆସିଲେ ଆଗେ ସବୁ ସ୍କୁଲ ପିଲା ଯୋଡ଼ହସ୍ତ ହୋଇ ଧାଡ଼ିବାନ୍ଧୁ। ଭକ୍ତି ସହକାରେ ନମସ୍କାର ଜଣାଉ। ଯେଉଁଦିନ ସବ୍‌ଇନ୍‌ସପେକ୍ଟର ସ୍କୁଲକୁ ଆସିବାର ଥାଏ, ତାହାର କିଛିଦିନ ପୂର୍ବରୁ "ବାବୁ ଆସିବେ" "ବାବୁ ଆସିବେ" ବୋଲି ମନ୍ତ୍ର ଉଚ୍ଚାରଣ ଚାଲିଥାଏ। ସେଦିନ ଅବଶ୍ୟ ଯୋଜନାବଦ୍ଧ କାର୍ଯ୍ୟକ୍ରମ ନ ଥିଲା। ନୂଆବଜାର ନିମ୍ନ ପ୍ରାଥମିକ ବିଦ୍ୟାଳୟର ତଦାରଖ ସାରି ବାବୁ ସେ ରାସ୍ତାରେ ଫେରୁଥିଲେ। ଆମେ ବାବୁଙ୍କୁ ଦେଖି ଉଦ୍ୟାନ କର୍ମ ଛାଡ଼ି ରାସ୍ତାରେ ଲମ୍ବା ହୋଇ ଧାଡ଼ିବାନ୍ଧି ଠିଆହେଲୁ। ବାବୁ ମଧ୍ୟ ସାଇକେଲ୍‌ରୁ ଓହ୍ଲାଇ ପଡ଼ିଲେ। ପାଖରେ ଥିବା ଜଣେ ଦୁଇଜଣ ଶିକ୍ଷକ ମଧ୍ୟ ଯୋଗଦେଲେ। କଥୋପକଥନର ଆରମ୍ଭ ହେବ କେଉଁଠାରୁ? ବାବୁ ଦେଖିଲେ ସ୍କୁଲ ଗେଟ୍‌ର ପାଖରେ ଗୋଟିଏ ସାଇନ୍‌ବୋର୍ଡ଼ ରହିଛି। ଓଡ଼ିଆରେ ଲେଖାଅଛି:ଗୁଣାଦୋଳ ଉ.ପ୍ରା. ବିଦ୍ୟାଳୟ, ଚାଉଳିଆଗଞ୍ଜ, କଟକ-୪।

ହଠାତ୍ ବାବୁ ତାଙ୍କର ପରିଦର୍ଶନ ଶୈଳୀରେ ପଚାରିଲେ, ପିଲାମାନେ କହିପାରିବ କାହିଁକି "କଟକ-୪" ଲେଖା ହୋଇଛି? ଆମେ--ସମସ୍ତେ ଚୁପ୍। ରାଜୁଭାଇ ତତ୍‌କ୍ଷଣାତ୍ ଆଗକୁ ଚାଲି ଆସି ଜୋର୍‌ରେ କହିଲେ, "କଟକର ଚାରୋଟି ସବ୍-ଡ଼ିଭିଜନ୍।" ଉତ୍ତରଟି ଭୁଲ୍ ହେଲେ ମଧ୍ୟ ବାବୁ ହସି ପକାଇଲେ। ରାଜୁଭାଇର ପ୍ରତ୍ୟୁତ୍ପନ୍ନମତି ଏ ଧରଣର। ଏ ହେଉଛି ଗୋଟିଏ ମାତ୍ର ଉଦାହରଣ।

ଆଉ ଥରେ ବାବୁ ଶ୍ରେଣୀକୁ ଆସି ପିଲାମାନଙ୍କୁ ପ୍ରଶ୍ନ ପଚାରୁଥାଆନ୍ତି? ଶିକ୍ଷକ ଶ୍ରେଣୀରେ ଥାଆନ୍ତି। ରୁଟିନ୍ ଅନୁଯାୟୀ ସେଇଟି କେଉଁ ବିଷୟର କ୍ଲାସ ତାହା ମନେ ନାହିଁ। ସମ୍ଭବତଃ ଭୂଗୋଳ କ୍ଲାସ। ବାବୁ ପଚାରିଲେ: ଲଣ୍ଡନ୍ ଯିବା କିପରି? ଆମେ ସବୁ ଚୁପ୍। ଶିକ୍ଷକ ତ ଏପରି କିଛି ଅତୀତରେ କହି ନାହାଁନ୍ତି। କାଳବିଳମ୍ବ ନ କରି ରାଜୁଭାଇ ଡାହାଣ ହାତଟିକୁ ସିଧାସଳଖ ବଢ଼ାଇଦେଇ କହିଲେ: "ଏମିତି"। ଆମେ ସମସ୍ତେ ସ୍ତମ୍ଭୀଭୂତ। ଶିକ୍ଷକ ଓ ବାବୁଙ୍କ ମୁରୁକି ହସରୁ ବୁଝି ପାରିଲୁ ନାହିଁ ଯେ ଉତ୍ତରଟି ଠିକ୍ କି ଭୁଲ୍। ମାତ୍ର ଏ କଥା ହୃଦୟଙ୍ଗମ କଲୁ ଯେ ରାଜୁଭାଇକୁ ନିରୁତ୍ତର ରଖିବାର ଉଦ୍ୟମ ନିଶ୍ଚିତ ଭାବେ ବିଫଳ ହେବ।

ଏସବୁ ବିଚକ୍ଷଣତା ସତ୍ତ୍ୱେ ରାଜୁଭାଇର ମନର କୌଣସି ଏକ କୋଣରେ ନ୍ୟୂନ ମନୋଭାବର ଛିଟାଟିଏ ରହି ଯାଇଥିଲା। ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ମୁଁ ତାହାର

କିଛିଟା ଆଭାସ ପାଇଲି। ଚତୁର୍ଥ ଶ୍ରେଣୀର ପରୀକ୍ଷା ଓ ପଞ୍ଚମର ଷାଣ୍ମାସିକ ପରୀକ୍ଷାରେ ମୋର ସଫଳତା ଦେଖି ଶିକ୍ଷକମାନେ ମୋତେ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଲାଗିଲେ। ମୁଁ ଚାଟଶାଳୀ ଛାଡ଼ି ପ୍ରାଥମିକ ବିଦ୍ୟାଳୟରେ ପ୍ରବେଶ କରିଥିଲେ ମଧ୍ୟ ମୋର ଚାଟଶାଳୀ ସହିତ କିଛିଟା ସମ୍ପର୍କ ରହିଥିଲା। ଗୁଣାଦୋଳର କେତେକ ଶିକ୍ଷକ ମୋ ଚାଟଶାଳୀକୁ ଯାଇ ସେଠାର ଶିକ୍ଷକ ସତ୍ୟବାଦୀ ବାବୁଙ୍କୁ କହିଲେ: "ଆପଣ ଦୟାକରି ଫକୀରର ବିଶେଷ ଯତ୍ନ ନେବେ। ଆମେ ଆଶା କରୁଛୁ ସେ ନିଶ୍ଚୟ ଉଚ୍ଚ ପ୍ରାଥମିକ ସ୍କଲାରସିପ୍ (ବୃତ୍ତି) ପାଇବ। ଆମ ସ୍କୁଲର ଖ୍ୟାତି ବଢ଼ିବ।" ମୁଁ କେବଳ ସ୍କଲାରସିପ୍ ଶବ୍ଦର ଅପଭ୍ରଂଶ "କଲର୍ସି" ଶୁଣିଲି। ସତ୍ୟବାଦୀ ସାର୍ ବିଶେଷ ଉତ୍ସାହିତ ହେବା ପରି ମନେ ହେଲା ନାହିଁ।

ମୋର କିନ୍ତୁ କୌତୂହଳ ଜାଗିଲା। ମୋ ଦୃଷ୍ଟିରେ ରାଜୁଭାଇ ହେଉଛି ଜ୍ଞାନର ଭଣ୍ଡାର। ମୁଁ ତାଙ୍କୁ "କଲର୍ସି" ଶବ୍ଦର ତାତ୍ପର୍ଯ୍ୟ ପଚାରିଲି। ମୁଁ ପଚାରିଲି- "ରାଜୁଭାଇ। କଲର୍ସି ମାନେ କ'ଣ?" ରାଜୁଭାଇ କହିଲେ- "କଲର୍ସି ମିଳିଲେ ସରକାରଙ୍କଠାରୁ ପ୍ରତି ମାସରେ ଟଙ୍କା ମିଳେ।" ମୋର ପାଲଟା ପ୍ରଶ୍ନ: "କେଉଁ ପିଲାକୁ କଲର୍ସି ମିଳେ?" ରାଜୁଭାଇ କହିଲେ- "ଦୁଇଟି ପିଲାଙ୍କର ପରୀକ୍ଷାରେ ମାର୍କ ସମାନ ହୋଇଗଲେ ସେମାନଙ୍କୁ କଲର୍ସି ମିଳେ।" କଥାଟା ମୋ ମନକୁ ପାଇଲା ନାହିଁ। ମୁଁ ସହଜ ହୋଇ କହିଲି- "ଦୁଇଟି ପିଲାଙ୍କର ସମୁଦାୟ ମାର୍କ ତ ସମାନ ହେବା ସମ୍ଭବ ନୁହେଁ।" ରାଜୁଭାଇ ସଙ୍ଗେ ସଙ୍ଗେ କହିଲେ- "ଓହୋ। ପୂରାପୂରି ସମାନ ହେବା ଦରକାର ନାହିଁ। ଖୁବ୍ ଅଳ୍ପ ତଫାତ୍ ଥିଲେ ପରୀକ୍ଷକମାନେ ମାର୍କ ଦେଇ ସମାନ କରି ଦିଅନ୍ତି।" ମୋର ଅଳ୍ପ ବୁଦ୍ଧିରେ ମଧ୍ୟ କଥାଟି ଗ୍ରହଣୀୟ ନ ଥିଲା। ମୁଁ ନିରୁତ୍ତର ରହିଲି। କିନ୍ତୁ ମନେ ମନେ କଳ୍ପନା କରି ପାରିଲି ଯେ ପରୀକ୍ଷା ସମୟରେ ମୁଁ ରାଜୁଭାଇଙ୍କୁ ଅନୈତିକ ପଦ୍ଧତିରେ ସାହାଯ୍ୟ କରେ ବୋଲି ମୋତେ ପରୋକ୍ଷରେ ପ୍ରରୋଚିତ କରାଯାଉଛି।

ରାଜୁଭାଇର ଉପାଖ୍ୟାନ ସତରେ ଜୀବନ କାହାଣୀର ଏକ ଅଭୁଲା ଦିଗ। ଏବେ ମଧ୍ୟ ମୋର ଇଚ୍ଛା ହୁଏ ଯେ ସମୟ ବାହାର କରି ରାଜୁଭାଇ ପାଖରେ କିଛି ସମୟ ବସିବି। ଗପ ଶୁଣିବି। ଶୈଳୀରେ କି ରୂପାନ୍ତର ଘଟିଛି, ତାହା ପରଖି ନେବି। ମାତ୍ର ସେ ସୁଯୋଗ ଏ ଯାବତ୍ ଆସିନାହିଁ।

## ସକାଳର ଶିକ୍ଷକ

ଜୀବନ ସକାଳର ଶିକ୍ଷକ ହେଉଛନ୍ତି ପ୍ରାଥମିକ ସ୍କୁଲର ଶିକ୍ଷକ। ପ୍ରତିଟି ନାମ ସ୍ମରଣ ରହିଛି। ପ୍ରଧାନ ଶିକ୍ଷକ ଥିଲେ ପୂର୍ଣ୍ଣଚନ୍ଦ୍ର ମିଶ୍ର। ଅନ୍ୟମାନେ ହେଲେ ଶ୍ରୀନିବାସ ସେନାପତି, ଶ୍ରୀନିବାସ ନାୟକ ଓ ଦୁର୍ଯ୍ୟୋଧନ ନାୟକ। ପଞ୍ଚମ ଶ୍ରେଣୀ

ଉନ୍ନୀତ ହେବା ସମୟରେ ଆଉ ଜଣେ ଶିକ୍ଷକ ଯୋଗଦେଲେ। ତାଙ୍କ ନାମ ବୈଷ୍ଣବ ଚରଣ ଦାସ। ସ୍କୁଲ ଛାଡ଼ିବା ପରେ ମଧ୍ୟ ବୈଷ୍ଣବ ସାରଙ୍କ ସହିତ ସମ୍ପର୍କ ଗଭୀର ଥିଲା।

ମୁଁ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେବାର ଅଳ୍ପ କିଛିଦିନ ପରେ ଗୁଣାଦୋଳ ସ୍କୁଲର ପ୍ରଧାନ ଶିକ୍ଷକ ବଦଳି ହୋଇ ପୂର୍ଣ୍ଣଚନ୍ଦ୍ର ମିଶ୍ର ନୂତନ ପ୍ରଧାନ ଶିକ୍ଷକ ରୂପେ ଯୋଗଦେଲେ। ସେ ଯେଉଁଦିନ କାର୍ଯ୍ୟରେ ଯୋଗଦେଲେ ସେଦିନ ମୁଁ ସ୍କୁଲରେ ଅନୁପସ୍ଥିତ ଥିଲି। ତା'ପର ଦିନ ମଧ୍ୟ ଅନୁପସ୍ଥିତ ଥିଲି। ସେଦିନ ପ୍ରାୟ ଏଗାରଟା ବେଳେ ଦେଖିଲି ଯେ ଆମ ଘରପାଖରେ ରିକ୍ସାରୁ ଜଣେ ଶୁଭ୍ର କାନ୍ତିମୟ ବର୍ଷୀୟାନ୍ ବ୍ୟକ୍ତି ଓହ୍ଲାଉଛନ୍ତି। ତାଙ୍କ ସହିତ ସ୍କୁଲର ଅନ୍ୟ ଜଣେ ଶିକ୍ଷକ ଥିବାରୁ ଏହି ଭଦ୍ର ବ୍ୟକ୍ତି ଜଣକ ନବାଗତ ପ୍ରଧାନଶିକ୍ଷକ ବୋଲି ଅନୁମାନ କରିପାରିଲି। ସେ ମୋତେ ସମ୍ବୋଧନ କରି କହିଲେ- "ତୁମେ ସବୁ ସ୍କୁଲକୁ ନିୟମିତ ଆସୁନାହଁ କାହିଁକି ?" ସେହି ସମୟରେ ମୋର ବାପା ମଧ୍ୟ ସେଠାକୁ ଆସିଲେ ଏବଂ କ୍ଷମାପ୍ରାର୍ଥନା କରି ମୋତେ ନିୟମିତ ପଠାଇବାର ପ୍ରତିଶ୍ରୁତି ଦେଲେ।

ମୁଁ ବୁଝି ପାରିଲି ଯେ ପ୍ରଧାନଶିକ୍ଷକ କେବଳ ଆମ ଘରକୁ ଆସି ନାହାଁନ୍ତି, ସେ ସାହି ସାହି ବୁଲି ଅଭିଭାବକମାନଙ୍କ ସହିତ ସଂଯୋଗ ସ୍ଥାପନ ଉଦ୍ଦେଶ୍ୟରେ ଏଠାକୁ ଆସିଛନ୍ତି। ତାଙ୍କ ମହତ୍ ଉଦ୍ଦେଶ୍ୟର କଳ୍ପନା କରିବା ମୋର ସେ ବୟସରେ ସମ୍ଭବ ନ ଥିଲେ ମଧ୍ୟ ମୋ ମନରେ ତାଙ୍କ ପ୍ରତି ଭକ୍ତି ଓ ସମ୍ମାନ ଅଙ୍କୁରିତ ହେଲା।

ପ୍ରଧାନଶିକ୍ଷକ ମୋତେ ଟିକେ ବେଶୀ ଭଲ ପାଉଥିଲେ। ଶ୍ରେଣୀରେ ଭଲ ପଢ଼ିବା ଏବଂ ପରୀକ୍ଷାରେ "ପ୍ରଥମ" ହେବା ହୁଏତ ଗୋଟିଏ କାରଣ ହୋଇପାରେ। ମାତ୍ର ଏକାଧିକ କାରଣ ଥିଲା ନିଶ୍ଚୟ। ପ୍ରଧାନ ଶିକ୍ଷକ ଶ୍ରୀ ମିଶ୍ର ଖୁବ୍ ନୈଷ୍ଠିକ ଧରଣର ବ୍ରାହ୍ମଣ। ସେ ଗୋଟିଏ ନିର୍ଦ୍ଦିଷ୍ଟ ଦୋକାନରୁ ତାଙ୍କର ଚାଉଳ, ଡାଲି ଓ ଅନ୍ୟ ସବୁ ସାମଗ୍ରୀ କ୍ରୟ କରନ୍ତି। ସାଧାରଣତଃ ଦୋକାନୀମାନେ କାଗଜର ଠୁଙ୍ଗାରେ(ବ୍ୟାଗ୍) ଜିନିଷ ପତ୍ର ଗରାଖକୁ ଦେଇଥାଆନ୍ତି। ଯେଉଁମାନେ ଠୁଙ୍ଗା ପ୍ରସ୍ତୁତ କରନ୍ତି ସେମାନେ ଅଠାର ବ୍ୟବହାର କରନ୍ତି କିମ୍ବା ବେଳେବେଳେ ରନ୍ଧା ହୋଇଥିବା ଭାତକୁ ଅଠା ଆକାରରେ ବ୍ୟବହାର କରି ଠୁଙ୍ଗା ପ୍ରସ୍ତୁତ କରନ୍ତି। ସୁତରାଂ ଶ୍ରୀଯୁକ୍ତ ମିଶ୍ର ଦୋକାନୀକୁ କଡ଼ା ନିର୍ଦ୍ଦେଶ ଦେଇଥାଆନ୍ତି ଯେ, ସାମଗ୍ରୀ ସବୁ ଖବର କାଗଜର ପୃଷ୍ଠାକୁ ଭାଙ୍ଗି ସେଥିରେ ସଉଦା ଯୋଗାଇବ। ନିତ୍ୟ ନୈମିତ୍ତିକ ଭାବରେ ପ୍ରଧାନ ଶିକ୍ଷକ ମୋତେ ସେ ଦୋକାନକୁ ପଠାନ୍ତି। ତାଙ୍କର ପୂର୍ଣ୍ଣ ଭରସା ଥାଏ ଯେ ମୁଁ ଠୁଙ୍ଗା ଆଦୌ ଆଣିବି ନାହିଁ, କେବଳ ଖବର କାଗଜର ପୁଡ଼ିଆରେ ଯାହା କିଛି ଆଣିବି। ଅସୁସ୍ଥତା କିମ୍ବା ଅନ୍ୟ କୌଣସି କାରଣବଶତଃ ମୁଁ ସ୍କୁଲକୁ ଆସି ନ ଥିଲେ

ସେ ମୋ ଉପରେ ଚିଡିଚିଡି ହୁଅନ୍ତି। ସେ ନ କହିଲେ ମଧ୍ୟ ମୁଁ ବୁଝିପାରେ ଯେ ତାଙ୍କର ସଉଦା ଆଣିବାରେ ଅସୁବିଧା ଯୋଗୁ ସେ ବିରକ୍ତ ହୋଇଛନ୍ତି। ମୋତେ ଟିକେ ଅଡୁଆ ଲାଗିଲେ ମଧ୍ୟ ଖୁସୀ ଲାଗେ ଯେ ମୁଁ ତାଙ୍କର ଆସ୍ଥା ଭାଜନ ହୋଇପାରିଛି।

ପ୍ରଧାନ ଶିକ୍ଷକଙ୍କୁ କେବଳ ଜଣେ ନୈଷ୍ଠିକ ବ୍ରାହ୍ମଣ କହିବା ଭୁଲ୍ ହେବ। ତାଙ୍କର ହୃଦୟର ଉଦାରତା ଓ ବିଶାଳତା ମଧ୍ୟ ପ୍ରଚୁର। ଆମେ ଦେଖିଛୁ କୌଣସି ବ୍ୟକ୍ତି କିଛି ରନ୍ଧା ଖାଦ୍ୟ ଦେଲେ ସେ ଗ୍ରହଣ କରୁ ନ ଥିଲେ। ସେ ସ୍କୁଲ ପରିସରରେ ରହୁଥିଲେ ଏବଂ ନିଜେ ରୋଷାଇ କରୁଥିଲେ। ଥରେ ଆମେ ସବୁ ତାଙ୍କର ଉଦାରତା ଦେଖି ଅଭିଭୂତ ହୋଇପଡ଼ିଲୁ। ଆମର ପଞ୍ଚମ ଶ୍ରେଣୀର ବୃତ୍ତି ପରୀକ୍ଷା ପାଖେଇ ଆସୁଥାଏ। ସେ ଆମ୍ଭମାନଙ୍କୁ ପ୍ରସ୍ତାବ ଦେଲେ ଯେ ଗୋଟିଏ ଶୁଭ ଦିନରେ ସ୍କୁଲର ଗୋଟିଏ କୋଠରିରେ ଦେବୀ ଆରାଧନା କରାଯିବ। ଆମେ ଫୁଲ ଓ ଫଳମୂଳ ସଂଗ୍ରହ କରିବୁ। ସେ ପୂଜା କରିବେ। ପରୀକ୍ଷାରେ ଉଚ୍ଚତର ସଫଳତା ପାଇଁ ଆମେ ସବୁ ପ୍ରାର୍ଥନା କରିବୁ। ପ୍ରସ୍ତାବଟି ଶୁଣି ଆମେ ବେଶ୍ ଆନନ୍ଦିତ। ଆମ ଶ୍ରେଣୀରେ ମୁସ୍‌ଲିମ୍ ପରିବାରର ବାଳିକାଟି ହେଉଛି ହାଜରା ବିବି। ସେ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲା। ଆମେ ଆଶା କରୁଥିଲୁ ଯେ ପୂଜାର ଆୟୋଜନ କରାଯାଉଥିବା ଦିନଟିରେ ସ୍କୁଲକୁ ନ ଆସିବା ପାଇଁ ପ୍ରଧାନ ଶିକ୍ଷକ ପରାମର୍ଶ ଦେବେ। ମାତ୍ର ପ୍ରଧାନ ଶିକ୍ଷକ କହିଲେ ପୂଜା ହେଉଥିବା କୋଠରିରେ ଦୁଇଟି ଆସ୍ଥାନ ରହିବ: କଟକଚଣ୍ଡୀ ଓ ବୋଖାରୀ ସାହେବ। ସେ ପୂଜା କରିବେ ଏବଂ ପ୍ରତି ଛାତ୍ରଛାତ୍ରୀ ନିଜ ନିଜ ମତେ ପ୍ରାର୍ଥନା କରିବେ। ବିଂଶ ଶତକର ପ୍ରାୟ ମଧ୍ୟ ଭାଗରେ ପ୍ରାଥମିକ ବିଦ୍ୟାଳୟର ଜଣେ ଗ୍ରାମୀଣ ବୈଷ୍ଣବ ବ୍ରାହ୍ମଣ ପରିବାରର ପ୍ରଧାନ ଶିକ୍ଷକଙ୍କଠାରେ ଏପରି ଉଦାରତା ଓ ସହନଶୀଳତା ଅକଳ୍ପନୀୟ ନିଶ୍ଚୟ।

ପ୍ରଧାନ ଶିକ୍ଷକଙ୍କ ବ୍ୟତୀତ ଅନ୍ୟ ଶିକ୍ଷକମାନଙ୍କର ମଧ୍ୟ ପ୍ରଭାବ ରହିଥିଲା। ପ୍ରଧାନ ଶିକ୍ଷକଙ୍କ ବ୍ୟତୀତ ଶ୍ରୀନିବାସ ସେନାପତି ଆମର ଅନ୍ୟ କେତେକ ବିଷୟ ପଢ଼ାଉଥିଲେ। ତାଙ୍କର ପ୍ରାଞ୍ଜଳତା ଆମକୁ ସ୍ପର୍ଶ କରୁଥିଲା। ଅନ୍ୟତମ ଶିକ୍ଷକ ଦୁର୍ଯ୍ୟୋଧନ ନାୟକ ମୁଖ୍ୟତଃ ଦ୍ୱିତୀୟ, ତୃତୀୟ ଶ୍ରେଣୀର ଦାୟିତ୍ୱ ନେଇଥିବାରୁ ତାଙ୍କ ସହ ଅପେକ୍ଷାକୃତ କମ୍ ସଂଯୋଗ ରହିଥିଲା।

ଶ୍ରୀନିବାସ ନାୟକ ସେ ସମୟରେ କନିଷ୍ଠତମ ଶିକ୍ଷକ। ସେତେବେଳେ ସେ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ। ସେ ମଧ୍ୟ ସ୍କୁଲ ପରିସରରେ ରହୁଥିଲେ। ବେଳେବେଳେ ଅଞ୍ଚଳର ଅନ୍ୟ କେତେକ ହାଇସ୍କୁଲ ପରୀକ୍ଷାର୍ଥୀ ସ୍କୁଲ ଅଗଣାକୁ ଆସି ତାଙ୍କ ସହିତ ପାଠ ଆଲୋଚନା କରନ୍ତି। ଅଙ୍କ

ଦୂରରୁ ଭାସି ଆସୁଥିବା ଏହିସବୁ କଥା ଆମ କାନରେ ବାଜେ। ବେଳେବେଳେ ଶୁଣିବାକୁ ମଜା ଲାଗେ। ପଞ୍ଚମ ଶ୍ରେଣୀର ଗଣିତରେ ସାଙ୍କେତିକ ଧାରା (ଯାହାକୁ ଆମେ ସବୁ ବେଳେବେଳେ 'ବଳଦିଆ ପଦ୍ଧତି' ବୋଲି କହିଥାଉ)। ସରଳ ରୂପରେ ରହିଥିବା ବେଳେ ଏହା ଜଟିଳ ରୂପରେ ହାଇସ୍କୁଲ ଗଣିତରେ ମଧ୍ୟ ରହିଥାଏ। ସୁତରାଂ ବନ୍ଧୁମାନଙ୍କ ସହିତ ଶ୍ରୀନିବାସ ସାର୍‌ଙ୍କ ଆଲୋଚନା ସମୟ ସମୟରେ ଆମ ପାଇଁ ଅର୍ଥହୀନ ମନେହେଲେ ମଧ୍ୟ ଅନ୍ୟ ସମୟରେ ଅର୍ଥପୂର୍ଣ୍ଣ ମନେହୁଏ।

ପୂର୍ବରୁ ସୂଚନା ଦିଆ ଯାଇଛି ଯେ ଶ୍ରୀ ବୈଷ୍ଣବ ଚରଣ ଦାସ ଶିକ୍ଷକ ହିସାବରେ ପରେ ଯୋଗଦେଲେ। ତାଙ୍କର ଜନ୍ମସ୍ଥାନ ଜଗତ୍‌ସିଂହପୁର ଅଞ୍ଚଳରେ ହୋଇଥିଲେ ମଧ୍ୟ ସେ ଦୀର୍ଘଦିନ ଧରି କଳାହାଣ୍ଡିରେ ରହି ଯାଇଥିଲେ। ସେଠାରେ ସେ ଘରୋଇ ଭାବେ ପିଲାମାନଙ୍କୁ ପଢ଼ାଉଥିଲେ। ପ୍ରବେଶିକା ପରୀକ୍ଷା ମାଧ୍ୟମରେ ପ୍ରାଥମିକ ସ୍କୁଲର ଶିକ୍ଷକ ହେଲେ।

ବୈଷ୍ଣବ ବାବୁ ଓ ତାଙ୍କର ପତ୍ନୀ ପଦ୍ମିନୀ ନାନୀ ଆମଘରଠାରୁ ଅନତି ଦୂରରେ ଗୋଟିଏ ଭଡ଼ାଘରେ  ରହୁଥିଲେ। ବୈଷ୍ଣବ ସାର୍ ଗୁଣାଦୋଳ ସ୍କୁଲରେ ଶିକ୍ଷକ ରୂପେ ଯୋଗ ଦେବାର ଅଳ୍ପଦିନ ପରେ ତାଙ୍କର ପତ୍ନୀ ସେ ସ୍କୁଲରେ "ମଦର" ପଦବୀରେ ଯୋଗଦେଲେ। ସ୍କୁଲରେ ଛାତ୍ରୀମାନଙ୍କର ସ୍ୱତନ୍ତ୍ର ବିକାଶ ଦିଗରେ ସହାୟତା ଯୋଗାଇବା ତାଙ୍କର ମୁଖ୍ୟ ଭୂମିକା। ଆମେ ସବୁ ତାଙ୍କୁ "ନାନୀ" ବୋଲି ଡାକୁଥିଲୁ। ବୈଷ୍ଣବ ସାର୍ ଖୁବ୍ ଛାତ୍ର ବତ୍ସଳ ଓ ପଦ୍ମିନୀ ନାନୀ ସ୍ନେହଶୀଳା ଥିଲେ।

ସନ୍ଧ୍ୟାବେଳେ ବୈଷ୍ଣବ ସାର୍ ତାଙ୍କର ଭଡ଼ାଘର କରି ଛାତ୍ରଛାତ୍ରୀଙ୍କୁ ଘରୋଇ ଭାବେ ପଢ଼ାଉଥିଲେ। ରାଜୁଭାଇ, ରମେଶ ଓ ମୁଁ ମଧ୍ୟ ତାଙ୍କ ପାଖକୁ ଆସୁଥିଲୁ। ବୈଷ୍ଣବ ସାର୍‌ଙ୍କ ଅଭିଜ୍ଞତାର ଗଭୀରତା ଥିଲା। ଆମେ ସବୁ ପ୍ରାଥମିକ ସ୍କୁଲର ଶିକ୍ଷାର୍ଥୀ ଥିଲେ ମଧ୍ୟ ତାଙ୍କ ପାଖକୁ ରାଣୀହାଟ ହାଇସ୍କୁଲର ଷଷ୍ଠ ଓ ସପ୍ତମ ଶ୍ରେଣୀର କେତେକ ଛାତ୍ର ଆସୁଥିଲେ। ସେ ସେମାନଙ୍କୁ ଗଣିତ ଓ ସାହିତ୍ୟ ବୁଝାଇବା ବେଳେ ମୋତେ ଶୁଣିବାକୁ ଖୁବ୍ ଭଲ ଲାଗୁଥିଲା। ସମ୍ଭବତଃ ମୋର ଗଣିତ ଓ ସାହିତ୍ୟ ପ୍ରୀତି ସେହିଠାରୁ ଆରମ୍ଭ ହୋଇଥିଲା। ମୋତେ ଉତ୍ସାହିତ କରିବା ପାଇଁ ବୈଷ୍ଣବ ସାର୍ ବେଳେବେଳେ ସପ୍ତମ ଶ୍ରେଣୀର ଗଣିତ ବହିରୁ ପ୍ରଶ୍ନ ସବୁ ସମାଧାନ କରିବାକୁ କହୁଥିଲେ। ମୁଁ ସମାଧାନ କରୁଥିଲି। ଉତ୍ସାହ ବଢୁଥିଲା। ସେହିପରି ପାଠ୍ୟ ବିଷୟର ବହିର୍ଭୂତ ପଦ୍ୟ ଓ କବିତା ସୁନ୍ଦର ଭାବେ ବୈଷ୍ଣବ ସାର୍ ବୁଝାଉଥିଲେ। ଛାତ୍ର ଜୀବନର ମୂଳଭିତ୍ତି ଗଠନରେ ବୈଷ୍ଣବ ସାର୍‌ଙ୍କ ଭୂମିକା ମୋ ପକ୍ଷେ ଅବିସ୍ମରଣୀୟ। ଗୁଣାଦୋଳ ଛାଡ଼ିବା ପରେ ମଧ୍ୟ ସାମୟିକ ଭାବରେ ବୈଷ୍ଣବ ସାର୍‌ଙ୍କ ସହିତ ସାକ୍ଷାତ ହେଉଥିଲା ଏବଂ ମୁଁ ପ୍ରେରଣା ଲାଭ କରୁଥିଲି।

## ମୁହୂର୍ତ୍ତ ଓ ବିଶିଷ୍ଟ ମୁହୂର୍ତ୍ତ

ପ୍ରାଥମିକ ସ୍କୁଲ ଜୀବନର କେତେକ ବିଶେଷ ମୁହୂର୍ତ୍ତ ଓ ଘଟଣାର ଛାପ ଉଜ୍ଜ୍ୱଳ ରହିଛି। କେତୋଟି ମୁହୂର୍ତ୍ତର ସ୍ମୃତି ମନକୁ ଆମୋଦିତ କରିବା ସ୍ଥଳେ ଅନ୍ୟ କେତୋଟି ଅନ୍ତପ୍ରେରିତ କରେ।

ସ୍କୁଲର କନିଷ୍ଠତମ ଶିକ୍ଷକ ଶ୍ରୀନିବାସ ନାୟକ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବାରୁ କଠିଣ ପରିଶ୍ରମ କରୁଥିଲେ। ସେ ସ୍କୁଲରେ ରହୁଥିଲେ ଏବଂ ରାତି ପାହାନ୍ତାରୁ ଉଠିପଡ଼ି ପଢ଼ାପଢ଼ି କରୁଥିଲେ। ତାଙ୍କୁ ଦେଖି ଅଧିକ ପରିଶ୍ରମ କରିପାରିବୁ ଭାବି ପ୍ରଧାନ ଶିକ୍ଷକ ପ୍ରସ୍ତାବ ଦେଲେ ଯେ ଛାତ୍ରମାନେ ରାତିରେ ଆସି ସ୍କୁଲରେ ଶୋଇପାରନ୍ତି। ଏହାଫଳରେ ଶ୍ରୀନିବାସ ସାର୍ ଠିକ୍ ସମୟରେ ଆମକୁ ନିଦରୁ ଉଠାଇଦେବେ ଏବଂ ଆମେ ଦଳଗତ ଭାବରେ ପଢ଼ିପାରିବୁ। ପ୍ରସ୍ତାବଟି ମନକୁ ପାଇଲା। ସନ୍ଧ୍ୟାବେଳେ ଘରେ ପାଠପଢ଼ା ଶେଷ କରି ରାତ୍ରଭୋଜନ ଶେଷ କରି ନ'ଟାରେ ଆସିବାକୁ କୁହାଗଲା।

ସାଙ୍ଗସୁଖର ଆକର୍ଷଣ କମ୍ ନୁହେଁ। ଆମେ ସବୁ ତରବରିଆ ଭାବରେ ସନ୍ଧ୍ୟାବେଳ ପଢ଼ା ଶେଷ କରି କିଛି ଟିକେ ଖାଇଦେଇ ଚାଲି ଆସୁ। ସ୍କୁଲର ଗୋଟିଏ ପାର୍ଶ୍ୱରେ ପାଞ୍ଚ ନମ୍ବର (ବର୍ତ୍ତମାନର ଷୋଳ ନମ୍ବର) ଜାତୀୟ ରାଜପଥକୁ ଲାଗି ସୁଦୃଶ୍ୟ ପଡ଼ିଆଟିଏ। ସେଠାରେ ସମସ୍ତେ ଏକତ୍ରିତ ହେଉ। ପଡ଼ିଆ ସହିତ ସଂଲଗ୍ନ ରହିଛି ଓ.ଏମ୍.ପି.। ମିଲିଟାରୀ ପରିସର ହୋଇଥିବାରୁ ପ୍ରତି ଘଣ୍ଟାରେ ସେଠାରେ ଖୁବ୍ ଜୋର୍‌ରେ ଘଣ୍ଟା ବାଜେ। ରାତି ନ'ଟାରେ ନ'ଥର ଜୋର୍‌ରେ ଶବ୍ଦ କରାଯାଏ। ଏପରି ଶବ୍ଦ ସଙ୍କେତ ସୃଷ୍ଟି ହେବା ମାତ୍ରେ ଆମେ ସବୁ ଧୀରେ ଧୀରେ ସ୍କୁଲ ଦିଗରେ ଅଗ୍ରସର ହେଉ। କୌଣସି ପିଲା ହାତରେ ହାତଘଡ଼ି ନ ଥିଲେ ମଧ୍ୟ ଠିକ୍ ନ'ଟା ବାଜି ଦୁଇ ତିନି ମିନିଟ୍ ମଧ୍ୟରେ ଆମେ ସ୍କୁଲରେ ପ୍ରବେଶ କରୁ।

କିଛିଦିନ ପରେ ଆମ୍ଭମାନଙ୍କର ଅତିମାତ୍ରାରେ ସମୟନିଷ୍ଠତା ଦେଖି ପ୍ରଧାନ ଶିକ୍ଷକ ସନ୍ଦେହ କଲେ। ସେ କହିଲେ: "ତୁମ୍ଭମାନଙ୍କର ପଢ଼ାର ସୁବିଧା ହେବ ବୋଲି ରାତିରେ ଆସିବାକୁ କହିଥିଲି। କିନ୍ତୁ ତମେ ସବୁ ଠିକ୍ ନ'ଟା ବେଳେ ଏକଜୁଟ ହୋଇ ଆସୁଛ କିପରି? ସନ୍ଧ୍ୟାବେଳେ ଘରେ ପଢ଼ାପଢ଼ି ନ କରି ତରବରିଆ ବାହାରି ଆସୁନାହଁ ତ? ଆଖପାଖରେ ମେଳ ହୋଇ ସମୟର ବରବାଦ କରୁ ନାହଁ ତ? କାଲିଠାରୁ ଆଉ ରାତିରେ ଆସିବାର ଦରକାର ନାହିଁ।" ଆସଙ୍ଗ ଲିପ୍‌ସା ମାଡ଼ ଖାଇଗଲା। ସତକଥା କହିପାରିଲୁ ନାହିଁ।

ସ୍କୁଲ ଜୀବନର ଅନ୍ୟ ଦୁଇଟି ବିଶେଷ ମୁହୂର୍ତ୍ତ ହେଉଛି ଶିଶୁ ଦିବସ (ନଭେମ୍ବର ୧୪) ଏବଂ ବୃତ୍ତି ପରୀକ୍ଷାର ଦୁଇ ତିନୋଟି ଦିନ। ଶିଶୁ ମନର

ଉନ୍ମାଦନା ଏବେ ବି ମନେପଡୁଛି। ଥରେ ଚତୁର୍ଥ ଶ୍ରେଣୀରେ ଏବଂ ଅନ୍ୟ ଥରେ ପଞ୍ଚମ ଶ୍ରେଣୀରେ ଆମେ ସବୁ କଟକର ବାରବାଟୀ ଷ୍ଟାଡ଼ିୟମ୍‌କୁ ଯାଇ ଶିଶୁ ମହୋତ୍ସବ ଉପଭୋଗ କରିଥିଲୁ। ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ରିକ୍ସାରେ ଯାଇ ହଜାର ହଜାର ପିଲାଙ୍କ ଗହଣରେ ନିରୂପିତ ସ୍ଥାନରେ ବସିବାର ସୁଯୋଗ ଏକ ବଡ଼ ଧରଣର ଆନନ୍ଦ। କଟକର ବିଭିନ୍ନ ସ୍କୁଲ ସମୂହର ପ୍ରଦର୍ଶନ ମନରେ ବିସ୍ମୟାନୁଭୂତି ଆଣିଥିଲା।

ଶେଷ ପରୀକ୍ଷାଟି ସେହିପରି ଅନନ୍ୟ ଅନୁଭୂତିରେ ଭରପୂର। ଏପ୍ରିଲ ମାସ। ଖରାଦିନ ହୋଇଥିବାରୁ ସକାଳ ଓଳି ସ୍କୁଲ ସମୟ। ପୁଣି ଉଚ୍ଚ ପ୍ରାଥମିକ ବୃତ୍ତି ପାଇ ମୁଁ ସ୍କୁଲର ଖ୍ୟାତି ବଢ଼ାଇବି ବୋଲି ଶିକ୍ଷକମାନେ ପୂର୍ବରୁ କଥାବାର୍ତ୍ତା ହେଉଥିବାରୁ ମୋ ମନରେ ସାମାନ୍ୟ ଭୟ ଥାଏ। ମାତ୍ର ପରୀକ୍ଷା କେଇଦିନ ବଣଭୋଜୀ ପରି ଲାଗିଲା। ପଞ୍ଚମ ଶ୍ରେଣୀର ୧୯ଜଣ ଛାତ୍ରଛାତ୍ରୀ ସକାଳୁ ସକାଳୁ ରିକ୍ସାରେ ବସି ଭକ୍ତମଧୁ ବିଦ୍ୟାପୀଠକୁ ଗଲୁ। ସେଇଟି ଆମର ପରୀକ୍ଷା କେନ୍ଦ୍ର। ରିକ୍ସାରେ ଅଧ ଘଣ୍ଟାରୁ ବେଶୀ ସମୟ ଯାତ୍ରା। ପ୍ରତିଦିନ ଦୁଇଟି ବିଷୟରେ ପରୀକ୍ଷା। ମଝିରେ ଶିକ୍ଷକମାନେ ଆମର ପୁରୀ ଆଳୁଦମ୍ ଜଳଖିଆର ବ୍ୟବସ୍ଥା କରିଥିଲେ। କଟକ ସହରର କେନ୍ଦ୍ରସ୍ଥଳରେ ନୂଆ ବାତାବରଣରେ କିଛିଟା ପରୀକ୍ଷାଜନିତ ଭୟ ଥିଲେ ମଧ୍ୟ ନୂତନତାର ଅନୁଭବରେ ଶିହରଣ ଆସୁଥାଏ। କେତୋଟି ମାସ ପରେ ମୁଁ ଜାଣିବାକୁ ପାଇଲି ଯେ ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ପାଇଛି। ଦୁଇ ବର୍ଷ ପର୍ଯ୍ୟନ୍ତ ମାସିକ ଦଶଟଙ୍କା ମୋତେ ମିଳିବ। ଖୁବ୍ ଖୁସୀ ଲାଗିଲା। ଶିକ୍ଷକମାନେ ଶ୍ରଦ୍ଧା ପ୍ରଦର୍ଶନ କଲେ।

ଗୁଣାଦୋଳ ଜୀବନରେ ସବୁଠାରୁ ବିଶିଷ୍ଟ ଓ କମନୀୟ ମୁହୂର୍ତ୍ତ ହେଉଛି ପୁଣ୍ୟାତ୍ମା ଆଚାର୍ଯ୍ୟ ହରିହର ମହୋଦୟଙ୍କ ପଦାର୍ପଣ। କିଛିଦିନ ପୂର୍ବରୁ ଶୁଣିବାକୁ ପାଇଲୁ ଯେ ଭୂଦାନ କାର୍ଯ୍ୟକ୍ରମର ଅଂଶବିଶେଷ ରୂପେ ଆଚାର୍ଯ୍ୟ ହରିହର ଚାଉଳିଆଗଞ୍ଜ ଆସିବେ। ସେ ଓ ତାଙ୍କର କର୍ମୀମାନେ ଆମ ସ୍କୁଲରେ ରାତ୍ରୀ ଯାପନ କରିବେ। ଆମେ ସବୁ ଖୁବ୍ ଉତ୍ସାହିତ ଥିଲୁ। ପ୍ରଧାନ ଶିକ୍ଷକ ଆମକୁ ଆଚାର୍ଯ୍ୟ ହରିହର ଓ ଭୂଦାନ ସମ୍ପର୍କରେ କିଛି ସୂଚନା ଦେଇଥିଲେ।

ଆଗମନର ଦିନଟି ପ୍ରବଳ ଉତ୍ସାହର ଦିନ। ସକାଳେ ସବୁ ପିଲା ଓ ଶିକ୍ଷକମାନେ ଉପସ୍ଥିତ ଥାଆନ୍ତି। ଶୁଣିଥିଲୁ ଯେ ଆଚାର୍ଯ୍ୟ ମହାଶୟ ନୂଆବଜାର ଦିଗରୁ ପଦଯାତ୍ରା କରି ଅନ୍ୟମାନଙ୍କ ସହିତ ସ୍କୁଲକୁ ଆସିବେ। ଅନେକଗୁଡ଼ିଏ କୀର୍ତ୍ତନମଣ୍ଡଳୀ ତାଙ୍କୁ ପାଛୋଟି ଆଣିବେ। ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଉପସ୍ଥିତ ହେବା ମାତ୍ରେ ଏବଂ କୀର୍ତ୍ତନ ଶୁଭା ଯିବା ମାତ୍ରେ ଆମେ ସବୁ ଅସ୍ଥିର ହୋଇ ଉଠିଲୁ। ସ୍କୁଲ ପରିସରର ବାହାରକୁ ଦୌଡ଼ିଯାଇ ଶୋଭା ଯାତ୍ରାରେ ଯୋଗ ଦେଲୁ। ଉତ୍କଳର

ବରପୁତ୍ର ଆଚାର୍ଯ୍ୟ ହରିହରଙ୍କ ତ୍ୟାଗଦୀପ୍ତ ଶରୀରକୁ ଦେଖି ଦେବ ଦର୍ଶନ କଲା ଭଳି ମନେ ହେଉଥାଏ।

ସ୍କୁଲ ପରିସରରେ ପ୍ରବେଶ କଲା ପରେ ଗୋଟିଏ ମସିଣାରେ ସେ ବସିଲେ। ଅନ୍ୟମାନେ ଯଥା ସ୍ଥାନରେ ବସିଲେ। କେଉଁ ବିଶିଷ୍ଟ ବ୍ୟକ୍ତିଗଣ ତାଙ୍କ ସହିତ ଆସିଥିଲେ ତାହାର ସ୍ମରଣ ନାହିଁ। ହେଲେ ତାଙ୍କ ଗହଣରେ ପୁଣ୍ୟମ୍ନା ରମାଦେବୀ ଯେ ଉପସ୍ଥିତ ଥିଲେ ଏହା ମନେଅଛି। ସମସ୍ତେ ମଧ୍ୟାହ୍ନ ଭୋଜନ ଗ୍ରହଣ କଲେ। ଘରକୁ ଫେରିଯାଇ ପୁଣି ସନ୍ଧ୍ୟାବେଳେ ଆସିବାକୁ ପିଲାମାନଙ୍କୁ ନିର୍ଦ୍ଦେଶ ଦିଆ ଯାଇଥିଲା।

ଘରେ ଆଦୌ ମନ ଲାଗୁ ନ ଥାଏ। ସନ୍ଧ୍ୟା ହେବା ପୂର୍ବରୁ ଆମେ ସ୍କୁଲରେ ପହଞ୍ଚି ଯାଇଥିଲୁ। ପୂଜ୍ୟା ରମାଦେବୀ ପିଲାମାନଙ୍କୁ ଏକତ୍ରିତ କରି ଆଶୀର୍ବାଦ ବ୍ୟକ୍ତ କଲେ। ଶୁଭ କାମନା କରି ପିଲାମାନଙ୍କୁ ଗୀତ ଗାଇବା ପାଇଁ ଉତ୍ସାହିତ କଲେ। ଅଳ୍ପ କେତେକ ପିଲା ଗୀତ ଗାଇଲେ। କେଦାର ପୃଷ୍ଟି ନାମକ ପିଲାଟି କେତୋଟି ସୁନ୍ଦର ଗୀତ ଗାଇଥିଲା। ମନୋରମ ଅନୁଭବରେ ସେ ସନ୍ଧ୍ୟାଟି ପୁଲକିତ ହୋଇ ଉଠିଥିଲା।

ତା'ପରଦିନ ସକାଳେ ଭୂଦାନ କର୍ମୀମାନେ ଦଳ ଦଳ ହୋଇ ବିଭିନ୍ନ ପରିବାରକୁ ଯାଇ ଭୂଦାନର ବାର୍ତ୍ତା ଓ ମୁଠି ଚାଉଳ (ଗରିବ ଲୋକଙ୍କ ଅନ୍ନସଂସ୍ଥାନ ପାଇଁ ବିଧିବଦ୍ଧ ସମ୍ବଳ ସଂଗ୍ରହ) ସମ୍ପର୍କରେ ବୁଝାଇବାର କାର୍ଯ୍ୟକ୍ରମ ଥିଲା। ପ୍ରତିଟି କର୍ମୀଙ୍କ ସହିତ ଜଣେ ଦୁଇଜଣ ସ୍କୁଲ ପିଲା ସାମିଲ୍ ହୋଇଥିଲୁ। ମୁଁ ମଧ୍ୟ ଗୋଟିଏ ଦଳରେ ସାମିଲ୍ ହେଲି। ସେ ଦିନଟି ବିରାଟ କାମ କଲା ପରି ଲାଗୁଥାଏ। କର୍ମୀ ଜଣକ ପରିବାରର ଲୋକଙ୍କୁ ବୁଝାଇବା ସମୟରେ କଥା ଶୁଣିବାକୁ ଭଲ ଲାଗୁଥାଏ। ଦୁଇ ତିନି ଦିନରୁ ଭୂଦାନ କାର୍ଯ୍ୟକ୍ରମ ପରେ ଆଚାର୍ଯ୍ୟ ହରିହର ମହାଶୟଙ୍କୁ ଅଶ୍ରୁଳ ବିଦାୟ ଜଣାଇଲୁ। ପୁଣି ଥରେ କୀର୍ତ୍ତନମଣ୍ଡଳୀ ଶୋଭା ଯାତ୍ରାରେ ତାଙ୍କୁ ପରବର୍ତ୍ତୀ ଗନ୍ତବ୍ୟ ସ୍ଥଳକୁ ନେଇଗଲେ। ଆଚାର୍ଯ୍ୟ ମହାଶୟଙ୍କ ସ୍ପର୍ଶରେ କେବଳ ସେ ସ୍କୁଲମାଟି ଧନ୍ୟ ହୋଇ ନ ଥିଲା, ତାଙ୍କର ଦିବ୍ୟ ସ୍ପର୍ଶରେ ଆମେ ସବୁ ମହକିତ ମଧ୍ୟ ହୋଇଥିଲୁ।

### ଯାହା ନେଇ ବାହାରିଲି

ଜୀବନର ଏଇ ମୁହୂର୍ତ୍ତରେ ସ୍ମୃତି ଚାରଣ କଲାବେଳେ ମୋର ମନେହୁଏ ଯେ ମୋର ପ୍ରାଥମିକ ବିଦ୍ୟାଳୟ ମୋ ଜୀବନ ବିଦ୍ୟାଳୟର ଭିତ୍ତି ସ୍ଥାପନ କରିଛି। ଶିକ୍ଷକମାନଙ୍କ ସ୍ନେହଶ୍ରଦ୍ଧା ସଙ୍କେତ ଦେଇଛି ଯେ ମୁଁ ଅନ୍ୟର ଆସ୍ଥାଭାଜନ ହୋଇପାରେ। ପୁଣି ଶିକ୍ଷାଗତ ଓ ପରୀକ୍ଷାଗତ ଉଚ୍ଚ ସାଫଲ୍ୟ ମୋର ଆତ୍ମ ବିଶ୍ୱାସର ଅଙ୍କୁରଣ କରିଛି।

ଏସବୁ ବ୍ୟତୀତ ଆଉ ଗୋଟିଏ ଦୁଇଟି ସମ୍ବଳ ମୁଁ ଏଠାରେ ସଂଗ୍ରହ କରିଛି। ତାହା ହେଉଛି ସହଯୋଗର ମନୋବୃତ୍ତି ଓ ଭାବ ପ୍ରକାଶର ସାମର୍ଥ୍ୟ।

ଆମ ସ୍କୁଲର ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ରୁଟିନ୍‌ରେ ଶନିବାର ଦିନ ଶେଷ ପିରିୟଡ୍‌ଟି "ବାଳସଭା" ନାମରେ ନାମିତ ଥିଲା। ଶନିବାର ଦିନର ଅଧାଦିନ ସ୍କୁଲ ହୁଏ। ଶେଷ ପିରିୟଡ୍‌ଟିରେ କୌଣସି ପାଠ୍ୟ ବିଷୟର ନିର୍ଘଣ୍ଟ ନ ଥାଏ କି କୌଣସି ଶିକ୍ଷକଙ୍କର ଭୂମିକା ନ ଥାଏ। ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ପିଲାମାନେ ଏକତ୍ରିତ ହୋଇ ଗୋଟିଏ କୋଠରିରେ "ବାଳସଭା"ର ଆୟୋଜନ କରନ୍ତି।

"ବାଳସଭା"ର ଆମେ କାର୍ଯ୍ୟସୂଚୀ ପ୍ରସ୍ତୁତ କରୁ। କାର୍ଯ୍ୟସୂଚୀ ଅନୁଯାୟୀ ଆମ୍ଭମାନଙ୍କ ମଧ୍ୟରୁ ଜଣଙ୍କୁ ସଭାର ସଭାପତି ହେବା ପାଇଁ ଅନୁରୋଧ କରାଯାଏ। ବେଳେବେଳେ ଶିକ୍ଷକମାନଙ୍କ ମଧ୍ୟରୁ ଜଣେ ଶିକ୍ଷକଙ୍କୁ ମଧ୍ୟ ସଭାପତି ହେବା ପାଇଁ ଅନୁରୋଧ କରାଯାଏ। କିନ୍ତୁ ଅଧିକାଂଶ ସମୟରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ହିଁ ଜଣେ କେହି ସଭାପତି ଦାୟିତ୍ୱ ତୁଲାଇଥାଆନ୍ତି।

ପ୍ରଥମେ ଜଣେ କେହି ପ୍ରାରମ୍ଭିକ ଗୀତ ଗାଆନ୍ତି। ସମୟ ସମୟରେ ଆରମ୍ଭରେ ଚତୁର୍ଥ ଶ୍ରେଣୀର ଜଣେ ଛାତ୍ରୀ ନୃତ୍ୟ କରିବାର କଥା ମନେଅଛି। ହୁଏତ ଗୀତ ଓ ନୃତ୍ୟର ସପ୍ତାହକ୍ରମରେ ପୁନରାବୃତ୍ତି ଘଟିଥାଏ। ତଥାପି ଗ୍ରହଣଶୀଳ ମନେହୁଏ। କାର୍ଯ୍ୟସୂଚୀ ମଧ୍ୟରେ ସ୍କୁଲର ପରିସରକୁ ଅଧିକ ଶୋଭନୀୟ କରାଯିବ କିପରି, ସଂଲଗ୍ନ ଉଦ୍ୟାନରେ ଉଦ୍ୟାନକର୍ମର ସମୟସୀମା ବଢ଼ାଯିବ କିପରି ଏବଂ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସଦ୍‌ଭାବ ବିକଶିତ ହେବ କିପରି, ସେ ସବୁ ଆଲୋଚନା ହୁଏ। ଆମ୍ଭମାନଙ୍କ ମଧ୍ୟରୁ କେହି କେହି ମତବ୍ୟକ୍ତ କରନ୍ତି। ସମସ୍ତଙ୍କୁ କହିବା ପାଇଁ ଆହ୍ୱାନ କରାଯାଏ। ଆମ ସ୍କୁଲରେ "ବାଳସଭା"ର ସ୍ୱାତନ୍ତ୍ର୍ୟ ଓ ତା'ର ଅବଦାନ ମୋ ଦୃଷ୍ଟିରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ। ପରବର୍ତ୍ତୀ ଜୀବନରେ ଚିନ୍ତନ ଓ ଭାବପ୍ରକାଶର ଯେଉଁ ଶୈଳୀ ଓ ସାମର୍ଥ୍ୟ ବିକଶିତ ହୋଇଛି, ତାହାର ମଞ୍ଜି ସମ୍ଭବତଃ ଏହି ସମୟରେ ବୁଣା ଯାଇଥିଲା।

ଗୁଣାଦୋଳ ସ୍କୁଲରୁ ବିଦାୟ ନେବା ବେଳେ ଯେଉଁ ବିଦାୟ ସଭା ଅନୁଷ୍ଠିତ ହୋଇଥିଲା, ତାକୁ ସ୍ମରଣ କଲେ ସ୍କୁଲର ପ୍ରଭାବ ଆକଳନ କରିବା ସହଜ ହୁଏ। ଏ ଦୃଶ୍ୟ ବିବାହ ସମୟରେ କନ୍ୟା ବିଦାୟ ହେବାର ଦୃଶ୍ୟ। ଆମେ ସବୁ ଭୋ ଭୋ କାନ୍ଦୁଥିଲୁ। ପରସ୍ପରକୁ ପ୍ରବୋଧନା ଦେଉଥିଲୁ। କିନ୍ତୁ କୋହର ବେଗ କୌଣସି ବାଧା ମାନୁ ନ ଥିଲା। ସ୍ମୃତି ଭଣ୍ଡାରର ହାର୍ଡ଼ ଡ୍ରାଇଭ୍‌ରେ ଗୁଣାଦୋଳର ଗୁଣାତ୍ମକ ଚିହ୍ନ ଚିର-ଅମଳିନ ରହିବ।

❖

(୭)

# ପିଉସୀ ଘର ଯିବା ପୂର୍ବରୁ

ପିଉସୀ ନାନୀର ଘର ମୋ ଜୀବନର ପ୍ରସ୍ତୁତି କେନ୍ଦ୍ର। ପ୍ରାଥମିକ ଶିକ୍ଷା ଶେଷ କରିବା ପରେ ୧୯୫୯ ମସିହାର ଜୁଲାଇ ମାସରେ ମୁଁ ରହିବା ପାଇଁ ଏବଂ ପରବର୍ତ୍ତୀ ହାଇସ୍କୁଲ ଶିକ୍ଷା ଆରମ୍ଭ କରିବା ପାଇଁ କାଠଗଡ଼ା ସାହି ଚାଲି ଆସିଲି। ସୌଭାଗ୍ୟବଶତଃ ଏଠାକୁ ଆସିବାର ସନ୍ଧିକ୍ଷଣରେ ଗୋଟିଏ ଭଲ ଖବର ଥିଲା ଯେ ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ପାଇବାକୁ ସଫଳ ହୋଇଥିଲି। ପ୍ରତିମାସ ବୃତ୍ତି ସ୍ୱରୂପ ଦୁଇବର୍ଷ ପର୍ଯ୍ୟନ୍ତ ମାସିକ ଦଶଟଙ୍କା ମିଳିବ, ଏହା ଏକ ଖୁସିର ସାମଗ୍ରୀ ଥିଲା। ମୋ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନେ ଖୁବ୍ ଖୁସି ଥିଲେ। ସ୍କୁଲଟି ମାତ୍ର ଦୁଇବର୍ଷ ତଳେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ତରକୁ ଉନ୍ନୀତ ହୋଇଥିବାରୁ ସେମାନେ ସ୍କୁଲର କୃତିତ୍ୱର ଦ୍ରୁତ ପ୍ରଚାରରେ ଲାଗିଗଲେ। ମୁଁ କାହିଁକି ନିକଟସ୍ଥ ନୂଆବଜାର ହାଇସ୍କୁଲରେ ଚତୁର୍ଥ ପଞ୍ଚମ ଶ୍ରେଣୀରେ ନ ପଢ଼ି ଗୋଟିଏ ପ୍ରାଥମିକ ସ୍କୁଲରେ ପଢ଼ିଲି, ଏପରି ଅଭିଯୋଗ କରୁଥିବା ବୟସ୍କମାନେ ମଧ୍ୟ ଚୁପ୍ ହୋଇଗଲେ। ପିଉସୀ ଘରର ବିକାଶପର୍ବର ସୂଚନା ଦେବା ପୂର୍ବରୁ ବାଲ୍ୟ ଜୀବନର ଆଉ ଦୁଇ ତିନୋଟି ସ୍ମୃତି ମୁଣ୍ଡ ଟେକି ପ୍ରକାଶ ଲୋଡୁଛି।

### ମାମୁଘର ବାଡ଼ିପଟର ଆତଗଛ

ବର୍ତ୍ତମାନ ବାଲ୍ୟ ଓ କୈଶୋର ଜୀବନ ଦେଇ ଗତି କରୁଥିବା ପିଲାମାନଙ୍କୁ ଦେଖିଲେ ବେଶୀ ଦୁଃଖ ଲାଗେ। ଏମାନଙ୍କର ବାଲ୍ୟ ଓ କୈଶୋର ଜୀବନର ସରସତା କିଛି ଅଛି କି? ସ୍କୁଲ ପାଠର ଚିନ୍ତା, କୋଚିଂ ସେଣ୍ଟରର ଚାପ ଆଉ ଟିଉସନ୍ ମାଷ୍ଟରଙ୍କ ତାଗିଦ୍‌ସବୁ ଜୀବନର କୋମଳତାକୁ ଧ୍ୱଂସ କରିଦେଇଛି। ଏମାନଙ୍କ ମାମୁଘରର ବଗିଚାରେ କୋଇଲି ଏବେ ବି ହୁଏତ ମଧୁର ସ୍ୱରରେ ଗାନ କରୁଛି, କିନ୍ତୁ ଏମାନେ କାଲା ପାଲଟିଛନ୍ତି। ପିଉସୀଘର ପଛପଟେ ନାନା ଜାତିର ଫୁଲର ମହୋତ୍ସବ ନିତିଦିନ ଚାଲିଛି, ଅଥଚ ସେ ଦିଗକୁ ଆଖି ପକାଇବାର ସମୟ ନାହିଁ। ସବୁବେଳେ ଖାଲି ପରୀକ୍ଷା, ଟିଉସନ୍ ସାର୍ ଓ କୋଚିଂ ସେଣ୍ଟର୍ ଚାପରେ ବିପର୍ଯ୍ୟସ୍ତ ହୋଇ ପଡ଼ିଛି ବାଲ୍ୟ ଓ କିଶୋର ସମୟ।

ମନେହୁଏ ମୋ ଜୀବନରେ ହୁଏତ ଦାରିଦ୍ର୍ୟ ଥିଲା। ସଂଗ୍ରାମ ଥିଲା। କିନ୍ତୁ ଏହା ସହିତ ମାଧୁର୍ଯ୍ୟ ମଧ୍ୟ ଥିଲା। ପ୍ରତିବର୍ଷ ରଜ, ଦଶହରା, ଦୋଳ ଓ ଚନ୍ଦନ ଯାତ୍ରା ଏବଂ ଅନ୍ୟ ଛୁଟି ପୂର୍ବରୁ ରୀତିମତ ଯୋଜନା କରାଯାଉଥିଲା। ମାମୁଘରେ,

ପିଉସୀଘରେ ଓ ମାଉସୀଘରେ କିପରି ଛୁଟି କଟାଯିବ, ତାହାର ଏକ କାଳ୍ପନିକ ଚିତ୍ର ବହୁ ଯତ୍ନରେ ପ୍ରସ୍ତୁତ କରାଯାଉଥିଲା।

ମୋର ମାମୁଘରଟି ବେଶୀ ଦୂରରେ ଅବସ୍ଥିତ ନୁହେଁ। ମୋତେ ନ' ଦଶ ବର୍ଷ ହେଲା ପରେ ମୁଁ ମୋର ସାନଭାଇକୁ ନେଇ ଖୁବ୍ ସାବଧାନତାର ସହ ଛୁଟିରେ ମାମୁଘରକୁ ଚାଲିଆସେ। ପାଞ୍ଚନମ୍ବର ଜାତୀୟ ରାଜପଥରେ କାଠଯୋଡ଼ି ପୋଲକୁ ଲାଗି ଖାନ୍‌ନଗର। ସେଇଠି ମାମୁଁଙ୍କ ଘର। ଆମ ଦୁଇଭାଇଙ୍କ ପାଇଁ ମାମୁଘରକୁ ଆସିବାର କେତୋଟି ବିଶେଷ ଆକର୍ଷଣ ରହିଛି। ଅନ୍ୟତମ ଆକର୍ଷଣ ହେଉଛି ଆତଗଛ।

ମୋ ମାମୁଙ୍କ ଆର୍ଥିକ ଅବସ୍ଥା ବେଶ୍ ଅସ୍ୱଚ୍ଛଳ। ଗ୍ରାମ ରାସ୍ତାର ଦୁଇଟି ପାଖରେ ସାମନାସାମନି ଦୁଇଟି ମାତ୍ର କୋଠରି। ଗୋଟିଏ ପକ୍କା ଘର। ସେଠାରେ ଅଜା ରୁହନ୍ତି। ଆମେ ଦୁଇଭାଇ ସେଠାକୁ ଗଲେ ସେଇ ଘରେ କାରବାର ଓ ବିଶ୍ରାମ ନେଇଥାଉ। ଏହି କୋଠାଘରର ଠିକ୍ ସମ୍ମୁଖରେ ଟିକିଏ ବଡ଼ ଆକାରର ଚାଳଘର। ଏହାର ଗୋଟିଏ ଅଂଶ ରୋଷାଇଘର ହିସାବରେ ବ୍ୟବହୃତ ହୁଏ। ଅନ୍ୟ ଅଂଶଟିରେ ମାମୁଁ ମାଇଁ ରୁହନ୍ତି। ଚାଳଘରକୁ ଲାଗି ବିରାଟ ଏକ ବାଡ଼ି। ଏଠାରେ ତିନି ଚାରୋଟି ଅଯତ୍ନବର୍ଦ୍ଧିତ ଆତଗଛ ବ୍ୟତୀତ ଅନ୍ୟ କିଛି ନାହିଁ। ତେବେ ଅନୁକୂଳ ଋତୁ ସମୟରେ ଗଛରେ ଆତ ଭରିଯାଏ। ଖୁବ୍ ମିଠା। ତଳେ ପଡ଼ିଥିବା ଆତ ସଂଗ୍ରହ କରି ମାଇଁ ଚାଉଳ ବ୍ୟାଗ ଭିତରେ ପୋତି ଦିଅନ୍ତି। ଏପରି କଲେ ତାହା ଶୀଘ୍ର ପାଚିଯିବ ବୋଲି କୁହନ୍ତି। ମାମୁଘରକୁ ଆସିଲେ ନିତିଦିନିଆ ଘରଖାଦ୍ୟ ଅପେକ୍ଷା ପାଚିଲା ଆତର ଲୋଭ ଅଧିକ ଆକର୍ଷଣ କରିଥାଏ।

ମାମୁଘରେ ଯେଉଁ କେତୋଟି ଦିନ କଟାଏ, ତାହାର ଏକ ସୁନ୍ଦର ଧାରା ଥାଏ। ସକାଳୁ ଉଠି ଦାନ୍ତ ଘଷିବା ପରେ ପରେ ଗୋଟେ ଲୋଭନୀୟ ଜିନିଷ ମିଳିଯାଏ। ତାହା ହେଉଛି ସେଉଗାଣ୍ଠିଆର ଗୋଟେ ପୁଡ଼ିଆ। ଅଜା କୁହନ୍ତି ଯେ କଟକ ବାଲୁବଜାରର ମାରୱାଡ଼ି ଗାଣ୍ଠିଆ କାରଖାନାର ଅସଲି ସେଉଗାଣ୍ଠିଆ। ତା' ସହିତ ଯେଉଁ ଚଟଣୀ ଆସିଥାଏ, ତାହା ପ୍ରକୃତରେ ସୁଆଦିଆ। ସକାଳ ଜଳଖିଆ ଖାଇବା ପୂର୍ବରୁ ଦାନ୍ତଘଷିବାର ପରେ ପରେ ଏପରି ଆକର୍ଷଣ ପ୍ରାୟ ଅଭ୍ୟାସରେ ପଡ଼ି ଯାଇଥିଲା। ମାମୁଁଘରେ ଥିବା ସମୟରେ କୌଣସି ଦିନ ଏହାର ବ୍ୟତିକ୍ରମ ହୋଇନାହିଁ। ନିର୍ଦ୍ଦିଷ୍ଟ ସମୟରେ କିମ୍ବା ନିର୍ଦ୍ଦିଷ୍ଟ ଢଙ୍ଗରେ ପ୍ରାତଃଭୋଜନର କଥା ମନେ ପଡୁନାହିଁ। କାଠଯୋଡ଼ି ନଦୀ ବନ୍ଧରେ ଗୋଟିଏ ବଡ଼ ଜଳଖିଆ ଦୋକାନ। ଏହି ଦୋକାନର 'ଶିବ' ଗୋଟିଏ ଡାଲାରେ ଗରମ ଗରମ ବରା, ପିଆଜି ଓ ଆଳୁଚପ୍ ଭର୍ତ୍ତି କରି ଗୋଟିଏ ହାତରେ ଝୁମ୍‌ଝୁମ୍ ବଜାଇ ବଜାଇ ରାସ୍ତାରେ ଚାଲିଯାଏ। ଅଜା କିମ୍ବା ମାମୁ ମୋ ପାଇଁ କିଣି ଦିଅନ୍ତି। ତାହା ମୋର ପ୍ରାତଃ ଭୋଜନର ଚାହିଦା ମେଣ୍ଟାଇଦିଏ।

ସନ୍ଧ୍ୟାବେଳେ ମାମୁ ମୋତେ କାଠଯୋଡ଼ି ବନ୍ଧ ଉପରକୁ ନେଇ ଯାଇ କୌଣସି ଏକ ଦୋକାନରେ ବସାଇ ଦିଅନ୍ତି। ମୁଁ ସନ୍ଧ୍ୟାର ମନୋଜ୍ଞ ଦୃଶ୍ୟ ଉପଭୋଗ କରେ। ସମ୍ଭବତଃ ସେ ସମୟରେ କାଠଯୋଡ଼ି ଉପରେ କଂକ୍ରିଟ ବନ୍ଧ ନିର୍ମାଣ ଚାଲିଥାଏ। ବହୁସଂଖ୍ୟାରେ କାର୍ଯ୍ୟରତ ଶ୍ରମିକମାନଙ୍କର ସମବେତ ଅନୌପଚାରିକ ଗୀତ ସୁନ୍ଦର ଗୁଞ୍ଜରଣ ସୃଷ୍ଟି କରେ। ପୁଣି ସେହି ବ୍ରିଜ୍‌ର ଅନତିଦୂରରେ ରେଲପୋଲ ଉପରେ ରେଳ ଯାଉଥିବାର ଦୃଶ୍ୟ ମନୋରମ। ବିଶେଷତଃ ପ୍ରତିଟି ଡବାର ଆଲୋକ ଦୂରରୁ ଅଜସ୍ର ଲଣ୍ଠନ ଆଲୋକର ସମାହାର ଭଳି ମନେହୁଏ। ପୁଣି କୌଣସି କୌଣସି ସମୟରେ ନଦୀଟି ଜଳପୂର୍ଣ୍ଣ ଥିବା ଅବସ୍ଥାରେ ରେଳର ଗତି ସନ୍ଧ୍ୟା ସମୟରେ ଖୁବ୍ ଆକର୍ଷଣୀୟ ଦେଖାଯାଏ। ଜଳରେ ଭାସି ଯାଉଥିବା ଆଲୋକମାଳା କେମିତି ଏକ ମାୟାଜାଲ ପରି ମନେହୁଏ।

ସମୟ ସମୟରେ ଯାନିଯାତ୍ରା ସମୟରେ ମାମୁଘରକୁ ଯାଇଛି। ଯେଉଁ କଥାଟି ମୋ ସ୍ମୃତି ଭଣ୍ଡାରରେ ଅମଳିନ ରହିଛି, ତାହା ହେଉଛି ଚୈତ୍ର ପୂର୍ଣ୍ଣିମାର ଘୋଡ଼ାନାଚ ମହୋତ୍ସବ। ଏହି ସମୟରେ ପ୍ରାୟ ପ୍ରତିବର୍ଷ ଆମେ ଦୁଇଭାଇ ମାମୁଁଘରକୁ ଯାଉ। ସନ୍ଧ୍ୟାରେ ମାମୁ ଆମକୁ ହନୁମାନ୍ ମନ୍ଦିର (ବର୍ତ୍ତମାନ ଯାହା ଓଡ଼ିଶା ସରକାରୀ ପ୍ରେସ୍ ସନ୍ନିକଟସ୍ଥ ପଞ୍ଚମୁଖୀ ହନୁମାନ ମନ୍ଦିର ନାମରେ ପ୍ରସିଦ୍ଧି ଅର୍ଜ୍ଜନ କରିଛି।)ନିକଟସ୍ଥ ଘୋଡ଼ାନାଚ ଦେଖାଇବାକୁ ନିଅନ୍ତି। ଓଡ଼ିଶାର ଏହି ପାରମ୍ପରିକ ନୃତ୍ୟ କୈବର୍ତ୍ତ୍ୟ ଗୋଷ୍ଠୀର ଲୋକମାନଙ୍କ ଦ୍ୱାରା ଅନୁଷ୍ଠିତ ହୁଏ। ଓଡ଼ିଶାର ପାଲାଗାୟନ ପରି ଏହାର ଏକ ସ୍ୱତନ୍ତ୍ର ଶୈଳୀ ରହିଛି। ଗୋଟିଏ କଥାବସ୍ତୁକୁ କେନ୍ଦ୍ର କରି ଏହି ଗାୟନ ଅନୁଷ୍ଠିତ ହୁଏ। ଏହାର ବାଦ୍ୟ ଶୈଳୀ ସ୍ୱତନ୍ତ୍ର ଓ ମନମୁଗ୍ଧକର। ପରିବେଷଣର ଶେଷଭାଗରେ ଗୋଟିଏ ସୁସଜ୍ଜିତ କୃତ୍ରିମ ଅଶ୍ୱ ମଧ୍ୟରେ ପ୍ରବେଶ କରି ଗାୟକ କିଛି ସମୟ ନୃତ୍ୟ କରନ୍ତି। ପାଲା ଓ ଦାସକାଠିଆର ପରମ୍ପରା ପ୍ରାୟ ଲୁପ୍ତ ହେବାକୁ ଯାଉଛି। ଘୋଡ଼ାନାଚର ପରମ୍ପରା ଏବେ ସମ୍ଭବତଃ ଆଉ ତିଷ୍ଠି ନାହିଁ।

ମାମୁଙ୍କ ସହିତ ପ୍ରାୟତଃ ଦୁଇତିନି ସନ୍ଧ୍ୟାରେ ଘୋଡ଼ାନାଚ ଦେଖିବାକୁ ଯାଏ। ଅନେକ ଲୋକଙ୍କର ସମାଗମ ହୋଇଥିବାରୁ ଛୋଟକୋଟିଆ ମେଳାର ପରିବେଶ ରହିଥାଏ। ଖେଳନା ବଦଳରେ ଛୋଟ ଛୋଟ ଚଟି ବହି ତଳେ ବିଛାଇ ଦେଇ ବସିଥିବା ଲୋକମାନଙ୍କ ପାଖକୁ ମୁଁ ଆଗ୍ରହ ନେଇ ଚାଲିଯାଏ। ଥରେ ମୋର ଦୃଷ୍ଟି ଆକର୍ଷଣ କଲା ଗୋଟିଏ ଚଟିବହି। ତାହାର ଶୀର୍ଷକ ହେଉଛି:ପସନ୍ଦ ଚୂଡ଼ାମଣି। ସେଥିରେ ଛୋଟ ଛୋଟ କୌତୂହଳପୂର୍ଣ୍ଣ ପ୍ରଶ୍ନ ରହିଥିଲା। ସେଥିରୁ କେତେକ ପ୍ରଶ୍ନ ଏବେ ବି ମନେଅଛି। ଅନ୍ତତଃ ଗୋଟିଏ ପ୍ରଶ୍ନ ଏଠାରେ ଉଲ୍ଲେଖ କରୁଛି। ପ୍ରଶ୍ନଟି ଏହିପରି:

ଦୁଇଜଣ କ୍ଷୀର ବିକାଳୀ ରାସ୍ତାରେ ଚାଲି ଯାଉଥିଲେ। ସେମାନଙ୍କ ପାଖରେ ତିନୋଟି ପାତ୍ର ଥିଲା। ଗୋଟିଏ ତିନି ଲିଟର୍ କ୍ଷୀର ଧରିବାର ପାତ୍ର, ଅନ୍ୟ ଦୁଇଟି ପାଞ୍ଚ ଲିଟର୍ ଏବଂ ଆଠ ଲିଟର୍ ଧରିବାର ପାତ୍ର। କେବଳ ବଡ଼ ପାତ୍ରଟିରେ ଆଠ ଲିଟର୍ କ୍ଷୀର ରହିଥିଲା। ଅନ୍ୟ ଦୁଇଟି ଖାଲି ପାତ୍ର। ରାସ୍ତାରେ ଯାଉଥିବା ସମୟରେ ସେମାନଙ୍କ ମଧ୍ୟରେ କଳି ଲାଗିଲା। ସୁତରାଂ ସେମାନେ କ୍ଷୀର ଅଧା ଅଧା ବାଣ୍ଟିନେଇ ନିଜ ନିଜ ରାସ୍ତାରେ ଚାଲିଯିବାକୁ ଚାହିଁଲେ। ବର୍ତ୍ତମାନ ପ୍ରଶ୍ନ ହେଉଛି ଅନ୍ୟର ସାହାଯ୍ୟ ନ ନେଇ ପାଖରେ ଥିବା ପାତ୍ର ସାହାଯ୍ୟରେ ଚାରି ଚାରି ଲିଟର୍ କ୍ଷୀର ବାଣ୍ଟିବେ କିପରି ?

ପୁସ୍ତକଟିରେ ଏହିପରି ପ୍ରାୟ କୋଡ଼ିଏ ପଚିଶଟି ପ୍ରଶ୍ନ ଓ ତାହାର ସମାଧାନ ରହିଥିଲା। ମୋତେ ଖୁବ୍ ଭଲ ଲାଗିଲା। ଅନ୍ୟମାନଙ୍କୁ ଏପରି ପ୍ରଶ୍ନ ପଚାରି ଚମତ୍କୃତ କରିବା ପାଇଁ ଆଗ୍ରହ ଜନ୍ମିଲା। ହେଲେ ବହିଟିକୁ କିଣିଦେବା ପାଇଁ ସାହସ କରି ମାମୁଁଙ୍କୁ କହିପାରିଲି ନାହିଁ। ତିନିରାତି ପରେ ଘୋଡ଼ାନାଚ ପର୍ବ ସରିଗଲା। ହେଲେ ମନରେ ଆଗ୍ରହ ସେମିତି ଜୀବନ୍ତ ରହିଥାଏ। ପରବର୍ଷ ଚଇତମାସର ଘୋଡ଼ାନାଚ ପର୍ବରେ ମୁଁ ପୁଣି ଆସିଲି। ଏଥର ବୟସ ଆଉଟିକେ ବଢ଼ିଥିଲା, ସାହସ ବି ବଢ଼ିଥିଲା। ମାମୁଙ୍କୁ କହିଲି। ସେ ଖୁସିରେ କିଣିଦେଲେ। ହାତରେ ଚାନ୍ଦ ପାଇଲା ପରି ଅନୁଭବ କଲି।'

ମୁଁ ସାନ ଥିବା ସମୟରେ ମାମୁଙ୍କର ବିବାହ ଅନୁଷ୍ଠିତ ହୋଇଥିଲା। ମୋର ମନେଅଛି ଯେ ମାମୁଙ୍କ ପାଇଁ ଉପଯୁକ୍ତ କନ୍ୟା ଅନ୍ୱେଷଣରେ ଯାଉଥିବା ମହିଳାଦଳରେ ମୁଁ ମଧ୍ୟ ଯାଉଥିଲି। ସର୍ଚ୍ଚ କମିଟିର ସଦସ୍ୟା ରୂପେ ପ୍ରଥମେ ତିନିଚାରିଜଣ ମହିଳା ଯାଉଥିଲେ। ସେମାନେ ସମ୍ଭାବ୍ୟ କନ୍ୟାର ଘରେ ପହଞ୍ଚିବା ପରେ ସେମାନଙ୍କୁ ଚର୍ଚ୍ଚା କରାଯାଉଥିଲା। ଗୃହର ମାଲିକ ଓ ମାଲିକାଣୀ ପ୍ରଥମେ କଥାବାର୍ତ୍ତା କରୁଥିଲେ। ସମ୍ଭାବ୍ୟ କନ୍ୟାଟି ଏମାନଙ୍କ ପାଖକୁ ଆସୁ ନ ଥିଲା। କିଛି ସମୟର କଥାବାର୍ତ୍ତା ଓ ଚା'ଜଳଖିଆ ପରେ କନ୍ୟାଟି ପ୍ରସ୍ତୁତ ଅଛି ସୂଚନା ମିଳିବା ପରେ ମହିଳାମାନେ କନ୍ୟା ସୁସଜ୍ଜିତ ଥିବା ଘରକୁ ଯାଉଥିଲେ। ତା'କୁ ଦେଖୁଥିଲେ। ଝିଅଟିର ନାମ ଓ ଶିକ୍ଷାଦୀକ୍ଷା ସମ୍ପର୍କରେ ଦୁଇତିନୋଟି ପ୍ରଶ୍ନ ପଚରା ଯାଉଥିଲା। ମନୋନୀତ ହେବା ପରେ ପୁରୁଷମାନେ କୌଣସି ଏକ ଶୁଭଦିନରେ ସେଠାକୁ ଯାଇ କନ୍ୟାଟିକୁ ଆଶୀର୍ବାଦ କରୁଥିଲେ।

ମାମୁଙ୍କ ବିବାହ ଉତ୍ସବରେ ମୁଁ ଆରମ୍ଭରୁ ସାମିଲ୍ ଥିଲି। ବିବାହ ଅନୁଷ୍ଠାନର ସାତଆଠଦିନର ଉତ୍ସବର ପ୍ରତିଟିଦିନ ମୁଁ ଉପଭୋଗ କରୁଥିଲି। ମାମୁଁ ଓ ଭଣଜାର ଗଭୀର ସମ୍ପର୍କ ଦୃଷ୍ଟିରୁ ମାମୁଙ୍କ ବିବାହ ଉତ୍ସବ ଦିନ ପଣ୍ଡିତ ମହାଶୟ ମୋ କାନରେ

ଗୁରୁ ମନ୍ତ୍ର ଫୁଙ୍କିଦେଲେ। ବହୁ ଅଳ୍ପ ବୟସରୁ ମୋର କାୟାଶୁଦ୍ଧ ହୋଇଗଲା ବୋଲି ଅନ୍ୟମାନେ କଥାବାର୍ତ୍ତା ହେଉଥିବାର ମୁଁ ଶୁଣିଛି।

ମୋର ମାମୁଙ୍କର ନାମ ଥିଲା ବୁଦ୍ଧଦେବ ସାହୁ। ମାଇଁ ମୋତେ ଓ ମୋର ସାନଭାଇକୁ ଖୁବ୍ ଶ୍ରଦ୍ଧା କରୁଥିଲେ। ବାଲ୍ୟଜୀବନରେ ମୋର ମାମୁଁଘର ସହିତ ଦୃଢ଼ ସଂଯୋଗ ରହିଥିଲା। କଲେଜ ଜୀବନର ଆଦ୍ୟଭାଗ ପର୍ଯ୍ୟନ୍ତ ମଝିରେ ମଝିରେ ମୁଁ ମାମୁଘରକୁ ଯାଉଥିଲି ଏବଂ ସ୍ନେହ ଆଦର ପାଉଥିଲି। କୌଣସି ଏକ କାରଣରୁ ମାଇଁଙ୍କର ଅକାଳ ବିୟୋଗ ଘଟିଲା। ମାମୁଘର ସହିତ ସମ୍ପର୍କ ପ୍ରାୟ କଟିଗଲା। ମାମୁଙ୍କର ଦୁଇଟି ପୁଅ ଥିଲେ ମଧ୍ୟ ସେମାନଙ୍କ ସହିତ ମୋର କୌଣସି ସମ୍ପର୍କ ରହିଲା ନାହିଁ। ତଥାପି ସ୍ମୃତିଚାରଣ କରିବା ସମୟରେ ମାମୁମାଇଁଙ୍କ ସ୍ନେହଶ୍ରଦ୍ଧାର ଛବି ହୃଦୟକୁ ଭାବପୂର୍ଣ୍ଣ କରେ।

## ଅସଜଡ଼ା ଜୀବନ

ବୋଉର ଅକାଳ ମୃତ୍ୟୁ ପରେ ଜୀବନ ସତରେ ଅସଜଡ଼ା ହୋଇ ଯାଇଥିଲା। ମୋର ଜେଜେମା'ଙ୍କୁ ମୁଁ ମା' ବୋଲି ଡାକୁଥିଲି। ସେ ଥିଲେ ସ୍ନେହର ଭରପୂର ଭଣ୍ଡାର। ମାତ୍ର ବୟସାଧିକ୍ୟ ଫଳରେ ପ୍ରତିଦିନ ରୋଷାଇ କରି ଆମ ଦୁଇଭାଇଙ୍କୁ ପ୍ରାତଃ ଭୋଜନ, ମଧ୍ୟାହ୍ନ ଭୋଜନ ଓ ରାତି ଭୋଜନ ଯୋଗାଇବା ସମ୍ଭବ ନ ଥିଲା। ବାବା କଟକ ରାଣୀହାଟରେ ଏକ ବିସ୍କୁଟ ଲଜେନ୍ସ କାରଖାନାର (ମଣିନାଥ ବିସ୍କୁଟ କମ୍ପାନୀ) ଛୋଟକୋଟିଆ ମ୍ୟାନେଜର ଥିଲେ। କମ୍ପାନୀ ଗାଡ଼ିରେ ସେ କେନ୍ଦ୍ରାପଡ଼ା, ଯାଜପୁର, ଢେଙ୍କାନାଳ, ନୟାଗଡ଼ ଏବଂ ଏହିପରି ସହରସବୁକୁ ଯାଇ ବ୍ୟବସାୟୀମାନଙ୍କୁ ବିସ୍କୁଟ ଲଜେନ୍ସ ଯୋଗାଇ ଦେଉଥିଲେ। ବାହାରେ ବାହାରେ ତାଙ୍କର ବେଶୀ ସମୟ କଟୁଥିଲା। ଘରକୁ ଫେରିବାର କୌଣସି ନିର୍ଦ୍ଦିଷ୍ଟ ସମୟ ନ ଥିଲା।

ବାପା କୌଣସି ଦିନ ଦଶଟା ଏଗାରଟା ବେଳକୁ ଘରକୁ ଫେରିଲେ ମଧ୍ୟାହ୍ନ ଭୋଜନ ପାଇଁ କିଛି ରୋଷାଇ କରନ୍ତି। ଯାହା କିଛି ଖାଇ ଦେଇ ଅବଶିଷ୍ଟ ରାତିରେ ଚଳାଇନେବାକୁ ହୁଏ। ବେଳେବେଳେ ବିଳମ୍ବିତ ରାତିରେ ଫେରନ୍ତି। ରାତି ନ'ଟା କିମ୍ବା ଦଶଟା ହୋଇଥିଲେ ଆମେ ଦୁଇଭାଇ ଶୋଇ ପଡ଼ିଥାଉ। ବାପା ନିକଟସ୍ଥ ଗୁଡ଼ିଆ ଦୋକାନରୁ ରୁଟି ତରକାରୀ କିଣି ଆଣନ୍ତି। କେବେ କେବେ ତରକାରୀ ନ ମିଳିଲେ ରସଗୋଲାର ସିରା (ମିଠାପାଣି)ଅଣାଯାଏ। ଆମକୁ ନିଦରୁ ଉଠାଇ ଖାଇବାକୁ ଦିଅନ୍ତି। ନିଦର ଚାପରେ ବିଶେଷ କିଛି ଖାଇବାର ଆଗ୍ରହ ନ ଥାଏ। ଦିନରେ କିମ୍ବା ରାତିରେ ଫେରିବାର ସମ୍ଭାବନା ନ ଥିଲେ ବାପା ନିର୍ଦ୍ଦେଶ ଦେଇଥାଆନ୍ତି ଯେ ମୁଁ କିଣି ଆଣିବି। ଆମେସବୁ ଖାଇବୁ। ଦିନବେଳା ମା'

ବେଳେବେଳେ ଭାତ କିମ୍ବା ପଖାଳ ପ୍ରସ୍ତୁତ କରେ, କିଣା ହୋଇ ଆସୁଥିବା ତରକାରୀ କିମ୍ବା ବରା, ପିଆଜି ବ୍ୟବହାର କରି ଗୁଜୁରାଣ ମେଣ୍ଟିଯାଏ।

ସେ ବୟସରେ ମଧ୍ୟ ବାପାଙ୍କ ପ୍ରତି କୌଣସି ବିରକ୍ତି ଆସୁ ନ ଥିଲା। ମୁଁ ବୁଝି ପାରୁଥିଲି ଯେ ବାପା ମଧ୍ୟ ଆମ ପାଇଁ କମ୍ କଷ୍ଟ ସହ୍ୟ କରୁ ନ ଥିଲେ। ସେ ନିଜର କର୍ତ୍ତବ୍ୟ ସମ୍ପାଦନ ପାଇଁ ଅନ୍ୟ ସହରରେ ରହୁଥିବା ସମୟରେ ସାଧାରଣ ହୋଟେଲରେ ରହିବା ପାଇଁ ଏବଂ ଖାଦ୍ୟପେୟ ପାଇଁ କମ୍ପାନୀ ତରଫରୁ ଖର୍ଚ୍ଚ ପାଉଥିଲେ। ମାତ୍ର ଯଥାସମ୍ଭବ କମ୍ ଖର୍ଚ୍ଚ କରି ଏବଂ ଯାହିତାହି ସ୍ଥାନରେ ରହିଯାଇ ଆମ ପାଇଁ କିଛି ସଞ୍ଚୟ କରୁଥିଲେ। ମୁଁ ଅନୁଭବ କରୁଥିଲି ଯେ ଆମ ପାଇଁ କିଛିଟା ସଞ୍ଚୟ କରିବା ଏବଂ ଭବିଷ୍ୟତରେ ଆମ ପାଇଁ ବାସୋପଯୋଗୀ ଘରଟିଏ ନିର୍ମାଣ କରିବାର ଇଚ୍ଛା ତାଙ୍କ ଶାରୀରିକ ସୁସ୍ଥତାର ଅନ୍ତରାୟ ଥିଲା। ହେଲେ ପ୍ରତିବାଦ କରିବାର ଶକ୍ତି ଓ ବୟସ ନ ଥିଲା।

ତେନ୍ତୁଳି ଚକଟା ସହିତ ପଖାଳ ଭାତ ଏବଂ ରାତିର ଚିନିମିଶା ପାଣି ସହିତ (କେବେ କେମିତି ରସଗୋଲାକୁ ବାଦ୍ ଦେଇ ତା'ର ସିରା ସହିତ) ରୁଟି ଖାଇଥିବା ଶରୀର ଆଜି ବି କର୍ମକ୍ଷମ ରହିଛି। ଏହା କ'ଣ ଈଶ୍ୱରଙ୍କ କରୁଣାମୟ ଜ୍ୱଳନ୍ତ ନିଦର୍ଶନ ନୁହେଁ? ତା' ମଧ୍ୟରେ ବିଭିନ୍ନ ଧରଣର ରୋଗସବୁ ମଧ୍ୟ ବୁଲି ଯାଇଛନ୍ତି। ମିଳିମିଳା, ଟାଇଫଏଡ୍, ନିମୋନିଆ ଏବଂ ଆଉ କେତେକ ରୋଗର ଅତ୍ୟାଚାର ଏ ଦେହ ସହିଛି। ପ୍ରତିଷେଧ ଟୀକା ଇଞ୍ଜେକ୍ସନ୍ କଥା ମନେ ନାହିଁ। କେବଳ ଚତୁର୍ଥ ପଞ୍ଚମ ଶ୍ରେଣୀରେ ବସନ୍ତ ଟୀକା ନେଇଥିବାର ସ୍ମରଣ ରହିଛି।

ଜୀବନର ସବୁ ଦୁର୍ଦ୍ଦିନ ମଧ୍ୟରେ ଆନନ୍ଦ ମଧ୍ୟ ଥିଲା। ମୋର ବାପା କମ୍ପାନୀର ଗାଡ଼ି ଓ ଡ୍ରାଇଭର୍ ନେଇ ଓଡ଼ିଶାର ବିଭିନ୍ନ ସହରକୁ ଯାଉଥିବାରୁ ସ୍ଥଳ ବିଶେଷରେ ବ୍ୟବସାୟର ଚାପ ନ ଥିବା ସମୟରେ ଆମ ଦୁଇଭାଇଙ୍କୁ ନେଇ ଯାଉଥିଲେ। ସେପରି ସୁଯୋଗ ପାଇ ଅଳ୍ପ ବୟସରେ ମୁଁ ବେଶ୍ କେତୋଟି ସ୍ଥାନ ଦେଖି ପାରିଥିଲି। ଏକାଧିକ ବାର କପିଳାସ ପାହାଡ଼ରେ ଖଞ୍ଜା ହୋଇଥିବା ପଥର ପାହାଚ ଚଢ଼ି ଚନ୍ଦ୍ରଶେଖର ମହାଦେବ ମନ୍ଦିର ଦେଖିଛି। ଯୋରନ୍ଦାରେ ଅଗ୍ନି ପୂର୍ଣ୍ଣିମାରେ ଥରୁଟିଏ ମେଳା ଓ ଅମୁଁହା ମନ୍ଦିର ଦେଖିଛି। ମୋର ମା' ଶରଣକୂଳର ଲଦୁକେଶ୍ୱରଙ୍କ ପାଖରେ ମୋ ମଥାର ପ୍ରଥମ କେଶ ମୁଣ୍ଡନ କରିବାର ମାନସିକ କରିଥିବାରୁ ବହୁଥର ଶରଣକୂଳ ଯାଇଛି। ଓଡ଼ଗାଁର ଶ୍ରୀରଘୁନାଥଜୀଙ୍କ ମନ୍ଦିର ଯାଇଛି। ପୁରୀ ଯାଇ ଶ୍ରୀଜଗନ୍ନାଥ ଦର୍ଶନରେ ସୌଭାଗ୍ୟ ମଧ୍ୟ ପାଇଛି। ପଞ୍ଚମ ଶ୍ରେଣୀ ଶେଷ କରିବା ବେଳକୁ ତୀର୍ଥ ଦର୍ଶନର ରେକର୍ଡ଼ଟା ମଜଭୁତ୍ ହୋଇ ସାରିଥିଲା।

❖

(୮)

# ଯାତ୍ରା ପାଇଁ ପ୍ରସ୍ତୁତି

ପ୍ରାଥମିକ ଶିକ୍ଷା ସମାପ୍ତି ପରେ ପିଉସୀ ଘରକୁ ଆସି ସେଠାରେ ହାଇସ୍କୁଲ ଶିକ୍ଷା ଆରମ୍ଭ କରିବା ଏକ ଆକସ୍ମିକ ଘଟଣା ନ ଥିଲା। ଚତୁର୍ଥ, ପଞ୍ଚମ ଶ୍ରେଣୀରେ ପଢ଼ିବା ସମୟରେ କେବଳ ଛୁଟି ସମୟରେ ନୁହେଁ ଅନ୍ୟ ସମୟରେ ମଧ ମା' (ମୋର ଜେଜେମା') ସହିତ ବାରମ୍ବାର ବୁଲିଯିବା ମାଧ୍ୟମରେ ସ୍ନେହର ରଜୁଟି ଖୁବ୍ ଟାଣ ହୋଇ ସାରିଥିଲା। ମୁଁ ଗୁଣାଦୋଳ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ଶେଷ କଲାପରେ ପିଉସୀ ଘରେ ରହିବାର ବନ୍ଦୋବସ୍ତ କରାଯିବ ବୋଲି ବାପାଙ୍କ ମୁହଁରୁ ବାରମ୍ବାର ଶୁଣୁଥିଲି। ଏପରି ଏକ ଜୀବନ ପାଇଁ ମାନସିକ ପ୍ରସ୍ତୁତି ଧୀରେ ଧୀରେ ଦାନା ବାନ୍ଧୁଥିଲା।

୧୯୫୯ ମସିହା ମେ/ଜୁନ୍ ମାସରେ ପ୍ରାଥମିକ ଶିକ୍ଷା ଶେଷ ହେଲା। ତା'ସହିତ ଜଡ଼ି ରହିଥିଲା ଗୋଟିଏ ଆନନ୍ଦର ଝଲକ। ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲି। ନବ ଗଠିତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଏପରି ସଫଳତାରେ ଶିକ୍ଷକମାନେ ଖୁସୀ ଥିଲେ। ସେମାନଙ୍କ ସ୍ମିତହସ ଭିତରେ ଶୁଭ ଆଶିଷର ଆଭାସ ମୁଁ ଦେଖି ପାରୁଥିଲି। ଅନ୍ତତଃ ଆଗାମୀ ଦୁଇବର୍ଷ ଲାଗି ପ୍ରତି ମାସରେ କିଛି ଟଙ୍କା (ମାସକୁ ଦଶ ଟଙ୍କା) ମିଳିବ, ଏପରି ପ୍ରୋତ୍ସାହନ ଖୁବ୍ ଆନନ୍ଦଦାୟକ ଥିଲା।

ଜୁନ୍ ମାସ ଶେଷରେ ମୁଁ ପିଉସୀ ଘରକୁ ଆସିଲି। ଆସିବା ପୂର୍ବରୁ ମୋର ବାପା ପିଉସୀ ଓ ପିଇସାଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା ହୋଇଥିଲେ ଏବଂ ସେମାନଙ୍କର ସଦୟ ସମ୍ମତି ପାଇଥିଲେ।

ମୋ ପିଉସୀଙ୍କ ଘର ହେଉଛି କାଠଗଡ଼ା ସାହି। ଏ ଅଞ୍ଚଳଟି କଟକର ମୁଖ୍ୟ ବ୍ୟବସାୟ କେନ୍ଦ୍ର ଚୌଧୁରୀ ବଜାରର ପଛ ଭାଗରେ। ବିପରୀତ ଦିଗରେ ଝୋଲା ସାହି ଓ ଦୋଳମୁଣ୍ଡାଇ ଅଞ୍ଚଳରେ ଧାଡ଼ି ଧାଡ଼ି କାଠ ଦୋକାନ, ସୁନ୍ଦର ସୁନ୍ଦର ଖଟ ଓ ପଲଙ୍କ ଇତ୍ୟାଦି ତିଆରି ଓ ବିକ୍ରୟ ହେବାର ବ୍ୟବସାୟ ସ୍ଥଳ। ଅନ୍ୟ ଗୋଟିଏ ଦିଗରେ ବିସ୍ତୃତ କୁମ୍ଭାର ସାହି। କେବଳ କଟକ କାହିଁକି ସମଗ୍ର ଓଡ଼ିଶାର ବହୁ ବିଖ୍ୟାତ ମୃଣ୍ମୟ ଶିଳ୍ପୀମାନଙ୍କର ଏହା ଆବାସ ସ୍ଥଳ। ଗଣେଶ ପୂଜା ଓ ସରସ୍ୱତୀ ପୂଜାର ଅବ୍ୟବହିତ ପୂର୍ବରୁ ମୋ ପରି ପିଲାମାନେ କୁମ୍ଭାର ସାହିକୁ ଯାଇ ସେଠାରେ କାର୍ଯ୍ୟରତ ମୂର୍ତ୍ତିକାରମାନଙ୍କୁ ଚାହିଁରହୁ। ସେମାନଙ୍କ ହାତର ରଙ୍ଗତୂଳୀରେ ନିର୍ଜୀବ

ମାଟିରେ କିପରି ଜୀବନର ଆଭା ଫୁଟି ଉଠୁଛି ତାହାକୁ ତନ୍ମୟତାର ସହ ଚାହିଁ ରହୁ। କଟକର ପ୍ରସିଦ୍ଧ ଦୁର୍ଗାପୂଜା ଓ କାଳୀପୂଜା ସମୟରେ କୁମ୍ଭାର ସାହି ଓ କାଠଗଡ଼ା ସାହିର ଶିଳ୍ପୀମାନେ ହିଁ ମୁଖ୍ୟତଃ ଦେବୀ ମୂର୍ତ୍ତି ତିଆରି କରନ୍ତି।

ମୁଁ ପିଉସୀ ଘରକୁ ଆସିବା ସମୟରେ ପରିବାରଟି ନିମ୍ନ ମଧ୍ୟବିତ୍ତ ସ୍ତରରେ ରହିଥିଲା। ପୂର୍ବରୁ ପଶ୍ଚିମ ଦିଗକୁ ଆୟତନାକାର ଚାଳଘର। ଏହି ଘରେ ତିନୋଟି ପରିବାର ରହୁଥିଲେ। ପୂର୍ବପଟେ ମୋର ନିଜ ପିଇସା ଓ ପିଉସୀ। ମୋର ପିଇସାଙ୍କ ନାମ ଭ୍ରମରବର ସାହୁ ଓ ପିଉସୀ ହେଉଛନ୍ତି ପାର୍ବତୀ ଦେବୀ। ପିଉସୀଙ୍କର ଛ'ଟି ଝିଅ ଏବଂ ଏକମାତ୍ର ପୁତ୍ର। ମୁଁ ଆସିବା ସମୟରେ ବଡ଼ ଦୁଇ ଭଉଣୀଙ୍କର ବିବାହ ସରିଥିଲା। ଏହି ବିବାହିତ ଦୁଇ ଭଉଣୀଙ୍କ ତଳେ ଭାଇ ବଳରାମ। ତାଙ୍କ ତଳେ ତିନି ଭଉଣୀ ଅବିବାହିତ ଥିଲେ। ମୁଁ ଲକ୍ଷ୍ୟ କରୁଥିଲି ଯେ ଧାରକରଜ କରି ମୋର ପିଇସା ଗୋଟିଏ ଭଉଣୀର ବିବାହ ସାରି କରଜ ପରିଶୋଧ କରିବା ମାତ୍ରେ ଅନ୍ୟର ବିବାହ ଲାଗି ଚିନ୍ତାଗ୍ରସ୍ତ ହୋଇ ପଡ଼ନ୍ତି। ମୁଁ ପିଉସୀ ଘରକୁ ଆସି ଷଷ୍ଠ ଶ୍ରେଣୀରେ ଭର୍ତ୍ତି ହେବା ବେଳକୁ ଭାଇ ବଳରାମ ନବମ ଶ୍ରେଣୀରେ ପଢୁଥିଲେ। ବିରାଟ ପରିବାରର ଦାୟିତ୍ୱ ପିଇସାଙ୍କର ଉପରେ ଲଦି ହୋଇ ରହିଥିଲା। ପିଇସାଙ୍କ ମା' ମଧ୍ୟ ବଞ୍ଚିଥିଲେ। ପିଇସା ପିଉସୀଙ୍କ ଶ୍ରଦ୍ଧାର ଅବାରିତ ଧାରାରେ ମୁଁ ସ୍ନେହସିକ୍ତ ହୋଇ ଦିନ କାଟୁଥିଲି।

ଘରର ମଧ୍ୟ ଭାଗରେ ଓ ପଶ୍ଚିମ ଭାଗରେ ପିଇସାଙ୍କର ଅନ୍ୟ ଦୁଇ ଭାଇଙ୍କ ପରିବାର। ତିନିଜଣ ଭାଇ ଏକ ବାପାମା'ର ସନ୍ତାନ ନୁହେଁ। ପ୍ରତି ଭାଇଙ୍କ ବାପମା' ଭିନ୍ନ। ତଥାପି ସେମାନଙ୍କ ମଧ୍ୟରେ ଗଭୀର ସୌହାର୍ଦ୍ଦ୍ୟ ଥିଲା। ତିନୋଟି ପୃଥକ୍ ପରିବାର ପାଇଁ ଘର ମଝିରେ କୌଣସି କାନ୍ଥ ନ ଥିଲା। ତଥାପି ପରିସରର ଭିନ୍ନତା ଅନୁମାନ କରିବା କଷ୍ଟ ନ ଥିଲା।

ତିନୋଟି ପରିବାର ମଧ୍ୟରେ ଭୌଗୋଳିକ ସୀମା ସ୍ପଷ୍ଟ ଓ ସୁନିର୍ଦ୍ଦିଷ୍ଟ ଥିଲେ ମଧ୍ୟ ପାରସ୍ପରିକ ବନ୍ଧନ ଖୁବ୍ ଗଭୀର ଥିଲା। ତିନି ପିଇସାଙ୍କର ପିତା ପରଲୋକ ଗମନ କରିଥିଲେ। ସାନ ପିଇସାଙ୍କ (ମାଧବ ପିଇସା) ମା' ଜୀବିତ ଥିଲେ ଏବଂ ତିନୋଟି ପରିବାରର ସାନବଡ଼ ସମସ୍ତେ ତାଙ୍କୁ ସାନମା' ବୋଲି ଡାକୁଥିଲେ। ପରଲୋକଗତ ପିତାମାତାଙ୍କ ଉଦ୍ଦେଶ୍ୟରେ ପାଳିତ ହେଉଥିବା ପ୍ରତ୍ୟେକ ଶ୍ରାଦ୍ଧ ଦିବସରେ ସମସ୍ତେ ଏକଜୁଟ ହେଉଥିଲେ। ଶ୍ରାଦ୍ଧର ପାର୍ବଣ ଶେଷ ହେବା ପରେ ଏକତ୍ର ଆହାର ଏବଂ ରାତିରେ ମଧ୍ୟ ଏକତ୍ର ଭୋଜନ ଅନୁଭବର ବିଷୟ। ଆମେ ସବୁ ଭାଇ ଭଉଣୀ ଏକାଠି ଖାଇବସୁ। ପୁଣି ସେଦିନ ଭଣଜା ଭାଣିଜୀମାନେ ମଧ୍ୟ ଜୁଟି ଯାଆନ୍ତି। କେବଳ ପାଞ୍ଚୋଟି ଶ୍ରାଦ୍ଧ ଦିବସ ନୁହେଁ, ଅନ୍ୟ ସବୁ ପର୍ବପର୍ବାଣୀରେ ମଧ୍ୟ ଭୌଗୋଳିକ ସୀମା ମିଳାଇଯାଏ। ସମାବେଶର ଆନନ୍ଦ ସମସ୍ତେ ଉପଭୋଗ କରନ୍ତି।

ଘରର ମଧ୍ୟ ଭାଗରେ ରହୁଥିବା ମଝିଆ ପିଇସା ହେଉଛନ୍ତି ଇନ୍ଦ୍ରମଣି ସାହୁ। ତାଙ୍କର କେତେକ ସ୍ୱାତନ୍ତ୍ର୍ୟ ଏବେ ମଧ୍ୟ ସ୍ମୃତି ପଟରେ ଅମଳିନ ରହିଛି। ମୁଁ ପିଉସୀ ଘରକୁ ଆସିବାର ଅଳ୍ପ କିଛି ବର୍ଷ ପୂର୍ବରୁ ସେ ତାଙ୍କର ପ୍ରଥମ ପତ୍ନୀଙ୍କୁ ହରାଇଥିଲେ। ଏହି ପତ୍ନୀଙ୍କ ଗର୍ଭରୁ ତାଙ୍କର ପ୍ରଥମ ସନ୍ତାନ ହେଉଛି ବଂଶୀଧର। ସେ ମୋ'ଠାରୁ ତିନି ଚାରି ବର୍ଷ ସାନ। ଇନ୍ଦ୍ରମଣି ପିଇସା ଦ୍ୱିତୀୟ ବିବାହ କରିଥିଲେ। ସେ ପିଉସୀ ହେଉଛନ୍ତି ସରୋଜିନୀ ଦେବୀ।

ଏହି ମଝିଆ ପିଇସାଙ୍କର ଆର୍ଥିକ ଅବସ୍ଥା ଅନ୍ୟ ଦୁଇଭାଇଙ୍କଠାରୁ ଉନ୍ନତ ଥିଲା। ସେ ଏକ ଛୋଟକାଟିଆ କଣ୍ଟ୍ରାକ୍ଟର ଥିଲେ ଏବଂ କଟକର ମାରୱାଡ଼ିପଟିର ଅଧିକାଂଶ ମାରୱାଡ଼ି ଗୃହ ଓ ବିପଣୀ ନିର୍ମାଣରେ ତାଙ୍କର ମୁଖ୍ୟ ଭୂମିକା ରହିଥିଲା। ତାଙ୍କ ବ୍ୟକ୍ତିତ୍ୱରେ ଏକ ସ୍ୱାତନ୍ତ୍ର୍ୟ ଥିଲା। ପ୍ରଥମତଃ ସେ ଗଭୀର ପରିଶ୍ରମୀ ଓ ଉଦ୍ୟୋଗୀ ଥିଲେ। କିନ୍ତୁ ତା'ଠାରୁ ଅଧିକ ଶକ୍ତିଶାଳୀ ଥିଲା ତାଙ୍କର ଆତ୍ମବିକାଶର ଅଭୀପ୍ସା। ଦୁଇଟି ନିତ୍ୟ ନୈମିତ୍ତିକ ଦୃଶ୍ୟ ମୋ ମନରେ ଗଭୀର ଛାପ ପକାଇଥିଲା।

୧୯୬୦ ମସିହା ବେଳକୁ ସେ ପ୍ରାୟ ଚାଳିଶ ବର୍ଷ ବୟସର ପାଖାପାଖି ହୋଇଥିବେ। ପୂର୍ବରୁ ତାଙ୍କର ଔପଚାରିକ ଶିକ୍ଷା ଖୁବ୍ ସୀମିତ ଥିଲା। ଇଂରାଜୀ ଜାଣି ନ ଥିଲେ। ଇଂରାଜୀ ଶିକ୍ଷା କରି ଅନ୍ତତଃ ତାଙ୍କର ନାମଟି ଦସ୍ତଖତ୍ କରିବାର ଆଗ୍ରହ ଦେଖିବାର କଥା। ତାଙ୍କ ଘରକୁ ବାହାର ରାସ୍ତା ସହିତ ସଂଯୁକ୍ତ କରୁଥିବା ଛୋଟ କୋଠରୀକୁ ଗଳିଘର କୁହାଯାଏ। ଏହି କୋଠରୀଟି ତାଙ୍କର ପଢ଼ାଘର ହିସାବରେ ବ୍ୟବହାର କରାଯାଏ। ପ୍ରତିଦିନ ସନ୍ଧ୍ୟା ସାତଟା'ରେ ସୁରବାବୁ ନାମକ ଜଣେ ଶିକ୍ଷକ ଆସନ୍ତି। ଇନ୍ଦ୍ରମଣି ପିଇସା ବାଧ୍ୟ ଛାତ୍ରଟି ପରି ଏ ଘରେ ଖାତାବହି ଅପେକ୍ଷାରେ ଥାଆନ୍ତି। ଆମ ବୟସର ପିଲାମାନେ ଖୁବ୍ କୌତୂହଳୀ ହୋଇ ସାମାନ୍ୟ ଖୋଲାଥିବା ଝରକାର ଫାଙ୍କେ ଫାଙ୍କେ ପିଇସା ଓ ସୁର ସାର୍‌ଙ୍କ କଥାବାର୍ତ୍ତା ଶୁଣିବାକୁ ଚେଷ୍ଟା କରୁ। ଖୁବ୍ ମଜା ଲାଗେ। ଧରାପଡ଼ିଯିବା ଭୟରେ ବେଶୀ ସମୟ ସେଠାରେ ରହି ନ ଥାଉ।

ପରିଣତି ସହଜରେ ଅନୁମେୟ। ପିଇସା ଇଂରାଜୀ ଶିଖିଲେ। ମୋର ମନେଅଛି ଯେ ମୋର ଷଷ୍ଠ ଶ୍ରେଣୀରୁ ଆରମ୍ଭ କରି ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ (କେବଳ ଶେଷ ପରୀକ୍ଷାକୁ ବାଦ୍ ଦେଇ) ମୁଁ ସ୍କୁଲରୁ ଯେଉଁ ପାଠୋନ୍ନତି କାର୍ଡ଼ ହାସଲ କରେ, ସେଥିରେ ଅଭିଭାବକ ସ୍ଥାନରେ ସେ ହିଁ ଦସ୍ତଖତ୍ କରନ୍ତି। ସୁନ୍ଦର ଓ ପରିପକ୍ୱ ହସ୍ତାକ୍ଷରରେ ତାଙ୍କର ଦସ୍ତଖତ୍‌ଟି ଆତ୍ମିକ ବିକାଶର ସ୍ୱାକ୍ଷର ବହନ କଲାପରି ମନେହୁଏ।

ଇନ୍ଦ୍ରମଣି ପିଇସାଙ୍କ ଶରୀର କିଛି ମାତ୍ରାରେ ମେଦ ବହୁଳ ଥିଲା। ସେ ସମୟରେ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ମେଡ଼ିକାଲ କଲେଜରେ ଜଣେ ପ୍ରଫେସର୍ ତାଙ୍କର ମଧୁମେହ ରୋଗର ଚିକିତ୍ସା କରୁଥିଲେ। ଡାକ୍ତର ତାଙ୍କର ଖାଦ୍ୟ ଉପରେ ନିୟନ୍ତ୍ରଣର ପରାମର୍ଶ ଦେଇଥିଲେ। ମୋ ଜାଣିବାରେ ସେ ପ୍ରତିଟି ପରାମର୍ଶ ଅକ୍ଷରେ ଅକ୍ଷରେ ପାଳନ କରନ୍ତି। ଫୁଲକୋବି ଖରାରେ ଶୁଖାଯାଇ ଖୁବ୍ ଶୁଷ୍କ ହେବା ପରେ ସେଥିରୁ କ'ଣ ଏକ ଆଇଟମ୍ ପ୍ରସ୍ତୁତ କରାଯାଏ। ଏଥିପାଇଁ ମୁଁ ଚୌଧୁରୀ ବଜାରକୁ ଯାଇ ଏକାଥରକେ ଦଶ/ବାରଟି କୋବି ଆଣିବାର ଘଟଣା ମନେଅଛି। ତାଙ୍କର ଏପରି ନିୟମାନୁବର୍ତ୍ତିତା ମୋତେ ଅଭିଭୂତ କରୁଥିଲା। ଏପରି ଏକ ଶୃଙ୍ଖଳିତ ଜୀବନାଭ୍ୟାସ ଯୋଗୁଁ ମଧୁମେହ ରୋଗ ସତ୍ତ୍ୱେ ସେ ଦୀର୍ଘଜୀବୀ ଥିଲେ। ୨୦୦୪ ମସିହାରେ ତାଙ୍କର ଦେହାନ୍ତ ଘଟିଥିଲା। ଏକ ସାଧାରଣ ରକ୍ଷଣଶୀଳ ଓ ଅନଗ୍ରସର ପରିବାରର ପରିପ୍ରେକ୍ଷୀ ମଧ୍ୟରେ ଇନ୍ଦ୍ରମଣି ପିଇସାଙ୍କର ନିଷ୍ଠା, ଶୃଙ୍ଖଳାବୋଧ ଓ ଅଧ୍ୟବସାୟର କଥା ଭାବିଲେ ବିସ୍ମିତ ହେବାକୁ ପଡ଼େ।

ତାଙ୍କର ପତ୍ନୀ, ଯାହାଙ୍କୁ ମୁଁ ସଜିମା' ବୋଲି ଡାକେ, ସେ ମଧ୍ୟ ଏକ ମହନୀୟ ବ୍ୟକ୍ତିତ୍ୱ। ମୋର ନିଜ ପିଇସା ପିଉସୀଙ୍କ ତୁଳନାରେ ଇନ୍ଦ୍ରମଣି ପିଇସା ଓ ସଜିମା'ଙ୍କ ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିଲା। ମୋର ହାଇସ୍କୁଲ ଜୀବନର ଏ ସାରା ସମୟଟା ଅଭାବ ଅନାଟନର ସମୟ। ମୋର ପିଉସୀ ଘରେ ବଳରାମ ଭାଇ ଓ ଚାରିଜଣ ଭଉଣୀ ଯାହା ଖାଆନ୍ତି ମୁଁ ତାହାହିଁ ଖାଏ। ଖାଇବା, ପିନ୍ଧିବା ଚଳିଯାଏ, ହେଲେ ହାତ ଖର୍ଚ୍ଚ ପାଇଁ ମୁଁ କେବେ ମାଗିବାର ସାହାସ କରେନାହିଁ। କାରଣ ଆର୍ଥିକ ଅବସ୍ଥା ସମ୍ପର୍କରେ ମୁଁ ଅଜ୍ଞ ନ ଥିଲି। ବାପା ବେଳେ ବେଳେ କାଠଗଡ଼ା ସାହି ଆସିଲେ ମୋତେ ଅଳ୍ପ କିଛି ପଇସାପତ୍ର ଦିଅନ୍ତି। ମାତ୍ର ତାହା ଖୁବ୍ କମ୍। ନିହାତି ଦରକାର ପଡ଼ିଲେ ମୁଁ ସଜିମା'କୁ ମାଗେ। ସେ ବିନା ବାକ୍ୟ ବ୍ୟୟରେ ମୋ ହାତକୁ ଦୁଇଟଙ୍କା ପାଞ୍ଚଟଙ୍କା ବଢ଼ାଇ ଦିଅନ୍ତି। "ବାପା ମୋତେ ପଇସା ଦେଲେ ମୁଁ ଫେରାଇଦେବି"- ଏ କଥା ମୁଁ କହିଲେ ମଧ୍ୟ ଫେରାଇଦେବାର ଘଟଣା ମୋର ମନେ ପଡୁନାହିଁ। ସଜିମା' ମଧ୍ୟ ସେ ଦିଗକୁ ଗୁରୁତ୍ୱ ଦେଲାପରି ମୋର ମନେହୁଏ ନାହିଁ।

ପୂର୍ବରୁ ସୂଚନା ଦେଇଛି ଯେ ସଜିମା' ଇନ୍ଦ୍ରମଣି ପିଇସାଙ୍କର ଦ୍ୱିତୀୟ ପତ୍ନୀ। ସେ ଏ ପରିବାରକୁ ଆସିବା ପୂର୍ବରୁ ପ୍ରଥମ ପତ୍ନୀଙ୍କ ଗର୍ଭରୁ ଜନ୍ମ ଲାଭ କରିଥିବା ସନ୍ତାନ ହେଉଛି ବଂଶୀ। ସେ ମୋଠାରୁ ତିନି ଚାରିବର୍ଷ ସାନ। ଅବଶ୍ୟ ସଜିମା'ଙ୍କ ସନ୍ତାନ ବସନ୍ତ, ବିରାଜ ଓ ଅନ୍ୟମାନେ କନ୍ୟା ସନ୍ତାନ। ବଡ଼ ବଡ଼ ପରିବାର ଚଳାଉଥିବା ପୁରୁଷ ଓ ନାରୀମାନେ କିପରି ଅନ୍ୟମାନଙ୍କୁ ବାନ୍ଧି ରଖନ୍ତି, ତାହା ସଜିମା'ଙ୍କଠାରୁ ଶିଖିବାର କଥା। ବିମାତା ହେଲେ ମଧ୍ୟ ଭଲ ଜିନିଷଟିଏ, ଭଲ

ଖାଦ୍ୟ ସେ ପ୍ରଥମେ ବଂଶୀକୁ ଦିଅନ୍ତି। ତା'ପରେ ତାଙ୍କ ନିଜ ସନ୍ତାନଙ୍କ ଭାଗ୍ୟରେ ପଡ଼ିଥାଏ। ବଂଶୀ ମଧ୍ୟ ଗଭୀର ଭାବରେ ତା'ର ମା'କୁ ଭଲପାଏ।

ବେଳେ ବେଳେ ସ୍ନେହର ଟାଣ ଏତେ ବେଶୀ ଯେ ସଜ୍ଜିମା' ବଂଶୀକୁ ନ ଜଣାଇ କୌଣସି ଏକ ସ୍ଥାନକୁ (ନିଜ ବାପଘର କିମ୍ବା ପୁରୀର ଜଗନ୍ନାଥ ଦର୍ଶନ) ଚାଲିଗଲେ ବଂଶୀ କ୍ରୋଧ ପ୍ରକାଶ କରେ। ସେଥିପାଇଁ ସଜ୍ଜିମା' ଅନେକ ସମୟରେ ବଂଶୀକୁ କିଛି ଲାଞ୍ଚ ଦେଇ ("ପଇସା ରଖିଥା, ଭଲ ଜିନିଷ କିଣି କରି ଖାଇବୁ କିମ୍ବା ସିନେମା ଯିବୁ") ଅନ୍ୟତ୍ର ଯାଆନ୍ତି। ଏଥିରେ ମୋର ସାମାନ୍ୟ ଲାଭ ହୁଏ। ବଂଶୀ ଏକୁଟିଆ ସିନେମା ଦେଖିବାକୁ ନ ଯାଇ ମୋତେ ଟାଣିନିଏ।

ପ୍ରାୟ ଏକତ୍ର ଚଳି ଆସୁଥିବା ଏହି ତିନୋଟି ପରିବାର ମଧ୍ୟରେ କାହାର ପ୍ରଭାବ ମୋ ଜୀବନକୁ ସବୁଠାରୁ ଅଧିକ ସ୍ପର୍ଶ କରିଛି ଏ ପ୍ରଶ୍ନ ମୁଁ ନିଜକୁ ପଚାରିଛି। ତାହାର ଉତ୍ତର ସ୍ପଷ୍ଟ ଓ ଏକମାତ୍ର ବ୍ୟକ୍ତିତ୍ୱ। ସେ ମୋର ନିଜ ପିଉସୀ ପାର୍ବତୀ ଦେବୀ। ମୋର ଦୁଇଜଣ ପିଉସୀ: ପାର୍ବତୀ ଦେବୀ ଓ ହାରାମଣି ଦେବୀ। ସାନ ପିଉସୀ ହାରାମଣି ଦେବୀଙ୍କ ଜୀବନ ସଂଘର୍ଷମୟ। ମୁଁ କାଠଗଡ଼ା ସାହି ଆସିବା ବେଳକୁ ସେ ତାର ଏକମାତ୍ର ଝିଅ ଲତିକାକୁ ନେଇ ଚାଉଳିଆଗଞ୍ଜରେ ରହୁଥିଲା। ମୋର ପିଉସୀ ଝିଅ ଲତିକା ନାନୀ ଖୁବ୍ ସ୍ନେହଶୀଳା। ମୋ'ଠାରୁ ବୟସରେ ବେଶ୍ ବଡ଼। ଏବେ ମଧ୍ୟ ତା'ଘରକୁ ଗଲେ ତା' କୁନି ଭାଇଟି ପାଇଁ ଆଦର ଯତ୍ନରେ ପିଠାପଣା କରି ଖୁଆଇବା ପାଇଁ ସଚଳ ହୋଇଉଠେ।

ମୋର ବଡ଼ ପିଉସୀ ପାର୍ବତୀଦେବୀ ମୋର ଚିର ନମସ୍ୟ। ମୋ ମା' (ଜେଜେମା') ପରି ମୁଁ କେବେ ତାଙ୍କୁ ରାଗିବାର ଦେଖିନାହିଁ। ଅଶାଳୀନ ଶବ୍ଦ ମୁଁ କେବେ ଶୁଣି ନାହିଁ। ସବୁଠାରୁ ବଡ଼ ହେଉଛି ତା' ହୃଦୟର ବିଶାଳତା। ପରିବାରରେ ଯେତେବେଳେ କୌଣସି ଅନୁଷ୍ଠାନ, ପୂଜାପାର୍ବଣ, ବିବାହ ଭୋଜୀ ଇତ୍ୟାଦି ଆୟୋଜିତ ହୁଏ, ତା'ର ଦୁର୍ବଳ ଗୋଡ଼ ଦୁଇଟି ସବଳ ଓ ସଚଳ ହୋଇ ଉଠେ। ଆମ ଘରକୁ ପରିବେଷ୍ଟନ କରି ଅନେକଗୁଡ଼ିଏ ପରିବାର ଖୁବ୍ ଅଭାବୀ। ଏପରିକି ଦୁଇବେଳା ଠିକ୍ ରୂପେ ଖାଇବା ପାଇଁ ଖାଦ୍ୟର ମଧ୍ୟ ଅଭାବ। ଆମ ପରିବାରର ଅନୁଷ୍ଠାନ ସମୟରେ ପିଉସୀ ବାଲ୍ଟି ବାଲ୍ଟି ଖାଦ୍ୟ ନେଇ ସମସ୍ତଙ୍କ ଅଲକ୍ଷ୍ୟରେ ବାଣ୍ଟିଦେଇ ଆସନ୍ତି। ମୋର ଭଉଣୀମାନେ ଏକରକମ ସୁରକ୍ଷାକର୍ମୀ ଭଳି ତାଙ୍କୁ ଜଗନ୍ତି; କାଳେ ବଣ୍ଟନ ପ୍ରକ୍ରିୟାରେ ଖାଦ୍ୟ ସରିଯିବ, ଏ ଭୟ ଥାଏ। ଧରାପଡ଼ିଗଲେ ପିଉସୀ ସ୍ମିତ ହସି କୁହନ୍ତି- 'ତୁମ୍ଭେମାନେ ତ ସବୁଦିନ ଭଲ ଖାଉଛ। ଯେଉଁମାନେ କିଛି ପାଉ ନାହାଁନ୍ତି, ସେମାନେ ଅନ୍ତତଃ ଦିନେ ଭଲରେ ଖାଆନ୍ତୁ।" ସମସ୍ତେ ଚୁପ୍ ରୁହନ୍ତି। ତା'ର ଔପଚାରିକ ଶିକ୍ଷା ନ ଥିଲା। ତଥାକଥିତ ଆଭିଜାତ୍ୟ ନ ଥିଲା। କିନ୍ତୁ

ତା'ହୃଦୟର ଆଭିଜାତ୍ୟଠାରୁ ବଡ଼ ଆଭିଜାତ୍ୟ ମୋ ଜୀବନରେ ଏବେ ବି ଅନାବିଷ୍କୃତ ରହିଛି।

କାଠଗଡ଼ାସାହିରେ ଆରମ୍ଭ ହୋଇଥିବା ଜୀବନ ସରଳ ଥିଲା, କିନ୍ତୁ ଚାପହୀନ ମଧ୍ୟ ଥିଲା। ସକାଳେ ବଳରାମ ଭାଇ ଓ ମୁଁ ଏକାଠି ବସି ସ୍କୁଲ ଯିବା ପୂର୍ବରୁ ପଖାଳ ଖାଇନେଉ। ତରକାରୀ ପତ୍ର ଥିଲେ ଭଲ କଥା, ନଚେତ୍ ମୁଁ ଗୁଡ଼ିଆ ଦୋକାନରୁ ବରା କିମ୍ବା ପିଆଜୀ କିଣି ଆଣେ। ଆମେ ଦୁଇଭାଇ ଏକାଠି ଖାଇନେଉ। ଭାଇ ଶୀଘ୍ର ଖାଇ ନେଇ ଚାଲି ଯାଆନ୍ତି। ମୁଁ ଧୀରେ ଧୀରେ ଖାଏ। ଟିକିଏ ପରେ ସ୍କୁଲକୁ ଯାଏ।

୧୯୫୯/୧୯୬୦ ମସିହା ବେଳକୁ ଘରେ ବିଜୁଳି ଆଲୋକ ନ ଥିଲା। ୧୯୬୧ ମସିହା ଏପ୍ରିଲ/ମଇ ମାସରେ ମୁଁ ମଧ୍ୟ ଇଂରାଜୀ ବୃତ୍ତି ପରୀକ୍ଷା ଦେଉଥିବା ସମୟରେ ଘରେ ବିଜୁଳି ଆଲୋକର ବ୍ୟବସ୍ଥା ହେଲା। ସେ ପର୍ଯ୍ୟନ୍ତ ମୁଁ ପ୍ରତିଦିନ ସନ୍ଧ୍ୟାରେ ଲଣ୍ଠନ ନେଇ ପଢ଼ିବାକୁ ବସିଯାଏ। ଏହା ଏକ ଚିରାଚରିତ ଅଭ୍ୟାସ। ବଳରାମ ଭାଇ ଖୁବ୍ ସୌଖୀନ୍ ଥିଲେ। ପରୀକ୍ଷା ବେଳକୁ ରାତି ଅନିଦ୍ରା ହୋଇ ପାଠପଢ଼ନ୍ତି। ବଂଶୀ ମଧ୍ୟ ନିୟମିତ ପଢ଼ି ବସି ନ ଥାଏ। ଦୁଇ ପିଉସାଙ୍କ ଦୃଷ୍ଟିରୁ ଏହା ଏଡ଼ାଇ ଯାଇ ନ ଥାଏ। ସୁତରାଂ ସାମୟିକ ଭାବେ ବଳରାମ ଭାଇ ଓ ବଂଶୀ ମୋର ନିଜ ପିଉସା ଓ ଇନ୍ଦ୍ରମଣି ପିଉସାଙ୍କ ଗାଳିର ଶିକାର ହୁଅନ୍ତି। ଗାଳିର ଚାପତାପଠାରୁ ନିଜକୁ ଦୂରେଇନେଇ ଲୁଚିଲୁଚି ଖସିଯାଆନ୍ତି। ଏ ଗାଳି ଭିତରେ ମୋ ପ୍ରତି ପ୍ରଶଂସାର ମନ୍ତବ୍ୟ ବି ରହିଥାଏ।

ଗାଳି ଶୁଣିବା ସତ୍ତ୍ୱେ ବଳରାମ ଭାଇଙ୍କ ଶ୍ରଦ୍ଧାର ପ୍ରାଚୁର୍ଯ୍ୟ ମୋର ଜୀବନର ଏକ ବିରାଟ ସମ୍ବଳ। ମୋର ଛୋଟ ଛୋଟ ଚାହିଦା ପ୍ରତି ସେ ସବୁବେଳେ ସଚେତନ ଥିଲେ। ୨୦୧୭ ଫେବୃଆରୀରେ ତାଙ୍କର ଦେହାବସାନ ପର୍ଯ୍ୟନ୍ତ ତାଙ୍କର ପ୍ରଗାଢ଼ ମମତାର ବଳୟ ଭିତରେ ମୁଁ ବାନ୍ଧି ହୋଇ ରହିଥିଲି। ଅନ୍ୟ ଦିଗରେ ବଂଶୀ ମଧ୍ୟ ପାଠପଢ଼ାରେ ବେଶ୍ ଦୁର୍ବଳ ଥିବାରୁ ମୋ'ଠାରୁ ସାମୟିକ ସହାୟତା ପାଉଥିଲା। ଏ ଦୃଷ୍ଟିରୁ ସେ କୃତଜ୍ଞ ରହିଥିଲା। ଈର୍ଷା ଓ ଅସୂୟା ବଦଳରେ ପରିବାରରେ ଭାଇଭଉଣୀଙ୍କ ସ୍ନେହ, ଶ୍ରଦ୍ଧା ମୋ ଜୀବନକୁ ସ୍ୱଚ୍ଛନ୍ଦ ଓ ଚାପହୀନ କରିଥିଲା।

❖

(୯)

# ହାଇସ୍କୁଲରେ ପ୍ରଥମ ଦିନ, ପ୍ରଥମ ଅନୁଭବ

ପ୍ରାଥମିକ ସ୍କୁଲରେ ପଢୁଥିବା ସମୟରେ ପ୍ରଧାନ ଶିକ୍ଷକ କେତେଥର ପଚାରିଛନ୍ତି ଯେ ମୁଁ କେଉଁ ହାଇସ୍କୁଲରେ ଭର୍ତ୍ତି ହେବି ଏବଂ କେଉଁ ସ୍ତର ପର୍ଯ୍ୟନ୍ତ ପଢ଼ିବି। ଶୁଣିବାକୁ ପାଇଥିଲି ଯେ ଶିକ୍ଷା ବିଭାଗରୁ ଏପରି ଏକ ନିର୍ଦ୍ଦେଶ ଆସିଥାଏ ଛାତ୍ରଛାତ୍ରୀମାନଙ୍କ ବର୍ତ୍ତମାନର ସ୍ଥିତି ଓ ଭବିଷ୍ୟତର ଅଭିଳାଷ ସମ୍ପର୍କରେ ଏକ ବିବରଣୀ ଦେବା ପାଇଁ। ସେ ସମୟରେ ମୋର ବାପା କିମ୍ବା ମୋର ଅନ୍ୟ କୌଣସି ଅଭିଭାବକ ସ୍କୁଲସବୁର ତୁଳନାତ୍ମକ ଚିତ୍ର ସମ୍ପର୍କରେ ସଚେତନ ନ ଥିଲେ। ମୋର ମଧ୍ୟ ଏ ସମ୍ପର୍କୀୟ ଜ୍ଞାନ ଖୁବ୍ ସୀମିତ। ତଥାପି କୌଣସି ଏକ କାରଣରୁ କଟକର ପ୍ୟାରୀମୋହାନ ଏକାଡ଼େମୀ ନାମଟି ମୁଁ ବାରମ୍ବାର ଶୁଣୁଥିଲି। ସୁତରାଂ ପ୍ରଧାନ ଶିକ୍ଷକ ପଚାରିଲେ ମୋର ଆଗାମୀ ସ୍କୁଲ ପ୍ୟାରୀମୋହନ ଏକାଡ଼େମୀ ଏବଂ ଶିକ୍ଷାଗତ ଅଭିଳାଷ ଏମ୍.ଏ. (ମୁଁ ଶୁଣୁଥିଲି ଏମ୍.ଏ. ହେଉଛି ସର୍ବୋଚ୍ଚ ଶିକ୍ଷା ସ୍ତର)ବୋଲି କହୁଥିଲି।

କାଠଗଡ଼ା ସାହିକୁ ସ୍ଥାନାନ୍ତରିତ ହେବା ପରେ ଘରଠାରୁ ପ୍ରାୟ ଦଶ ମିନିଟ୍ ଚଲାପଥର ଦୂରତାରେ ଅବସ୍ଥିତ ପ୍ୟାରୀମୋହନ ଏକାଡ଼େମୀ। ମାତ୍ର ବାପା ବୁଝିଆସି କହିଲେ ଯେ ଷଷ୍ଠଶ୍ରେଣୀ ପାଇଁ ବଛାବଛି ପରୀକ୍ଷା ଦୁଇ ତିନି ସପ୍ତାହ ପୂର୍ବରୁ ସରିଯାଇଛି। ଅନ୍ୟ ପକ୍ଷରେ କଟକର ବିନୋଦବିହାରୀରେ ଅବସ୍ଥିତ ମାରୱାଡ଼ି ହାଇସ୍କୁଲର ପ୍ରଧାନ ଶିକ୍ଷକ ସତୀଶ ଚନ୍ଦ୍ର ଘୋଷ କାଠଗଡ଼ା ସାହିର ଭଡ଼ା ଘରେ ରହୁଥିଲେ। ତାଙ୍କର ଆଗାମୀ ବାସଗୃହର ଯୋଜନା ସମ୍ପର୍କରେ ସେ ଇନ୍ଦ୍ରମଣି ପିଇସାଙ୍କ ପରାମର୍ଶ ଲୋଡ଼ୁଥିଲେ। ଏପରି ଏକ ସମ୍ପର୍କକୁ ଭିତ୍ତି କରି ପିଇସା ମୋର ପ୍ରାଥମିକ ବୃତ୍ତି ପରୀକ୍ଷାର ମାର୍କସିଟ୍‌ଟି ତାଙ୍କୁ ଦେଖାଇଲେ। ସେ ମାର୍କସିଟ୍ ଦେଖି ଖୁବ୍ ଖୁସୀ ହେଲେ ଏବଂ ତତ୍‌କ୍ଷଣାତ୍ ସମ୍ମତି ପ୍ରଦାନ କଲେ।

ଜୁଲାଇ ମାସର କୌଣସି ଏକ ତାରିଖରେ ମୁଁ ଇନ୍ଦ୍ରମଣି ପିଇସାଙ୍କ ସହିତ ସ୍କୁଲ ଗଲି। ବର୍ଷାର ସମ୍ଭାବନା ଥିବାରୁ ହାତରେ ଛତାଟିଏ ମଧ୍ୟ ଥିଲା। ବିନୋଦବିହାରୀରେ ମାଳମାଳ ପୁସ୍ତକ ଦୋକାନ। ପରିବେଶ ଖୁବ୍ ଭଲ। ଅଫିସ୍‌ରେ କାଗଜପତ୍ର କାମ ଶେଷ କରି ମୁଁ କ୍ଲାସ ମଧ୍ୟକୁ ପ୍ରବେଶ କଲି। ଛତାଟିକୁ ଦ୍ୱାରମୁଣ୍ଡରେ ରଖିଦେଲି।

ଦ୍ୱାରକୁ ପଛ କରି କ୍ଲାସ ମଧ୍ୟକୁ ପ୍ରବେଶ କରିବା ସମୟରେ ପିଇସା ଛତାଟିକୁ ନିଜେ ନେଇଗଲେ। ଭାବିଲେ ଯେ ପ୍ରଥମ ଦିନ ହୋଇଥିବାରୁ ମୁଁ ଛତାଟି ନେବାକୁ ଭୁଲି ଯାଇପାରେ। କ୍ଲାସ ସାରି ବାହାରିବା ବେଳକୁ ଯଥା ସ୍ଥାନରେ ଛତା ନାହିଁ। ପ୍ରଥମଦିନ ଛତାଟି ହଜାଇଥିବାରୁ ମୋତେ ଖରାପ ଲାଗୁଥାଏ। ସହପାଠୀମାନେ ପରାମର୍ଶ ଦେଲେ ପ୍ରଧାନ ଶିକ୍ଷକଙ୍କୁ ଜଣାଇବା ପାଇଁ।

ମାରୱାଡ଼ି ସ୍କୁଲର ନିର୍ମାଣ ଶୈଳୀ ଖୁବ୍ ଚମତ୍କାର। ମୁଖ୍ୟ ପ୍ରବେଶ ଦ୍ୱାର ଦୁଇପାର୍ଶ୍ୱରେ ଦୁଇଧାଡ଼ିର ସମାନ ସମାନ ଆକାର ବିଶିଷ୍ଟ କୋଠରୀ। ଠିକ୍ ତାହାର ଉପର ମହଲାରେ ମଧ୍ୟ ଦୁଇଧାଡ଼ିର ସମାନ ଆକାର ବିଶିଷ୍ଟ କୋଠରୀ। ସ୍କୁଲଟି ଦ୍ୱିଭାଷିକ। ଓଡ଼ିଆ ଓ ହିନ୍ଦୀ ମାଧ୍ୟମରେ ଶିକ୍ଷାଦାନ କରାଯାଏ। ତଳ ମହଲାର ବାମପଟେ ହିନ୍ଦୀ ମାଧ୍ୟମର ଚତୁର୍ଥ, ପଞ୍ଚ. ଷଷ୍ଠ ଓ ସପ୍ତମ ଶ୍ରେଣୀ। ଦକ୍ଷିଣ ଭାଗରେ ଓଡ଼ିଆ ମାଧ୍ୟମର ଚତୁର୍ଥ, ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀ। ସେହିପରି ଉପର ମହଲାର କୋଠରୀଗୁଡ଼ିକରେ ଅଷ୍ଟମ, ନବମ, ଦଶମ ଓ ଏକାଦଶ ଶ୍ରେଣୀର ବ୍ୟବସ୍ଥା କରାଯାଇଛି।

ଦୁଇଧାଡ଼ି କୋଠରୀର ମଧ୍ୟ ଭାଗର ଗୋଟିଏ ଦିଗରେ ମୁଖ୍ୟ ପ୍ରବେଶ ଦ୍ୱାର ରହିଥିବା ସ୍ଥଳେ ବିପରୀତ ଦିଗରେ ଶିକ୍ଷକ, ଶିକ୍ଷୟିତ୍ରୀମାନଙ୍କର କକ୍ଷ, ସ୍କୁଲ, ଅଫିସ୍ ଓ ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠ ଅବସ୍ଥିତ।

ହଜି ଯାଇଥିବା ଛତାଟି ସମ୍ପର୍କରେ ଜଣାଇବା ପାଇଁ ଖୁବ୍ ସନ୍ତର୍ପଣରେ ପ୍ରଧାନ ଶିକ୍ଷକଙ୍କ ଅଫିସ୍ ଦିଗରେ ଆଗେଇଲି। ମନରେ ଗଭୀର ଦ୍ୱିଧା ଓ ସଙ୍କୋଚ। ପ୍ରଧାନ ଶିକ୍ଷକ ଶ୍ରୀ ସତୀଶ ଚନ୍ଦ୍ର ଘୋଷ, ଗୌରକାନ୍ତିସମ୍ପନ୍ନ, ଦୀର୍ଘକାୟ ବିଶିଷ୍ଟ ମଣିଷ। ତା' ସହିତ ତାଙ୍କର ଗହରିଆ ନିଶ ତାଙ୍କ ଚେହେରାକୁ ବେଶ୍ ଭୟପ୍ରଦ କରିଥାଏ। ସହରତଳି ପ୍ରାଥମିକ ସ୍କୁଲରୁ ପ୍ରଥମ ଥର ପାଇଁ ପ୍ରବେଶ କରିଥିବା ମୋର ଦୁର୍ବଳ ଶରୀରକୁ କୌଣସି ମତେ ଟାଣି ଟାଣି ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠ ସାମନାରେ ଠିଆ ହେଲି। ଆଡ୍‌ମିଶନ୍ ସମୟ ହୋଇଥିବାରୁ ସେ ଖୁବ୍ ବ୍ୟସ୍ତ ଥିଲେ। ପାଖରେ ଦୁଇ ତିନିଜଣ ଶିକ୍ଷକ ବସିଥିଲେ। ସେ ଦୃଢ଼ କଣ୍ଠରେ ପଚାରିଲେ, "କ'ଣ ହୋଇଛି ?" ମୁଁ କହିଲି ମୋର ଛତାଟି ହଜି ଯାଇଛି। ସେ ଗର୍ଜି ଉଠି କହିଲେ, "ପ୍ରଥମ ଦିନରୁ କେୟାରଲେସ୍"। ମୋର ରକ୍ତ ପାଣି ହୋଇଗଲା ପରି ମନେହେଲା। ମୁଁ ଡରି ମରି ଚାଲି ଆସିଲି। କାହାକୁ କିଛି କହିବା ପାଇଁ ମୋ ମୁହଁରେ ଭାଷା ନ ଥିଲା।

ଗୋଟିଏ ସଙ୍କୋଚ ଭିତରୁ ବାହାରିବାକୁ ଚେଷ୍ଟା କରୁଥିବା ସମୟରେ ଅନ୍ୟ ଗୋଟିଏ ବଳୟରେ ଜଡ଼ିତ ହୋଇ ପଡ଼ିଲି। ଆମ ଘରୁ ସ୍କୁଲର ଅବସ୍ଥିତି ଗୋଟିଏ ସରଳରେଖାର ପଥ। ସିଧାସଳଖ ପନ୍ଦର ମିନିଟ୍‌ର ରାସ୍ତା। ସ୍କୁଲ ଶେଷ ହେବା

ପରେ ମୁଁ ତରତର ହେଉଥିବା ସମୟରେ କେତେକ ସହପାଠୀ ମୋତେ ସନ୍‌ସାଇନ୍ ଖେଳପଡ଼ିଆ ଯିବା ପାଇଁ ପ୍ରଲୋଭିତ କଲେ। ସେମାନେ କହିଲେ ଯେ ସେଦିନ ଅପରାହ୍ଣରେ ଷଷ୍ଠ ଶ୍ରେଣୀ ଓ ସପ୍ତମ ଶ୍ରେଣୀ ମଧ୍ୟରେ ଫୁଟବଲ୍ ମ୍ୟାଚ୍ ଅଛି। ସୁତରାଂ ଆମ ଶ୍ରେଣୀର ଖେଳାଳୀମାନଙ୍କୁ ଉତ୍ସାହ ଦେବା ପାଇଁ ଆମେ ସବୁ ଉପସ୍ଥିତ ରହିବା ଏକାନ୍ତ ଜରୁରୀ। ଖେଳ ସରିବା ପରେ ମୁଁ ଏକାକୀ ଫେରିବା ରାସ୍ତା ଠିକ୍ ଜାଣିପାରିବି ନାହିଁ ବୋଲି ଆଶଙ୍କା ପ୍ରକାଶ କଲି। ମାତ୍ର ପ୍ରମୋଦ ପଟ୍ଟନାୟକ ନାମକ ସହପାଠୀ ଜଣକ ଆମ ଘରର ପରବର୍ତ୍ତୀ ସାହିରେ (ଝୋଳାସାହିରେ)ରହୁଥିବାରୁ ସେ ମୋତେ ଘରେ ପହଞ୍ଚାଇଦେବ ବୋଲି ପ୍ରତିଶ୍ରୁତି ଦେଲା। ସାଙ୍ଗମାନଙ୍କ ଚାପରେ ମୁଁ ଘରକୁ ନ ଫେରି ସନ୍‌ସାଇନ୍ ପଡ଼ିଆ ଚାଲିଗଲି।

ସ୍କୁଲର ପ୍ରଥମ ଦିନରେ ଠିକ୍ ସମୟରେ ଘରକୁ ନ ଫେରିବା ଫଳରେ ଏକ ଅସ୍ୱାଭାବିକ ପରିସ୍ଥିତି ଉପୁଜିଲା। ମୋର ସ୍ନେହଶୀଳା ସରଳପ୍ରାଣ ପିଉସୀ ଆତଙ୍କିତ ହୋଇ ଚାରିଦିଗକୁ ଲୋକ ପଠାଇବାକୁ ଲାଗିଲା। ସେ ଆଶଙ୍କା କଲା ଯେ ମୁଁ ବାଟଭୁଲି ଅନ୍ୟତ୍ର ଚାଲି ଯାଇଛି। ମୋର ଖେଳରେ ମନ ଲାଗୁ ନଥାଏ। ମୁଁ ଘରେ ଜଣାଇ ନ ଥିବାରୁ ଉଦ୍‌ବିଗ୍ନ ଅବସ୍ଥାରେ ରହିଥାଏ।

ଦୁର୍ଭାଗ୍ୟକୁ ଖେଳ ସରିବା ପରେ ମଧ୍ୟ ପ୍ରମୋଦ ବାଟରେ ଏକାଧିକ ସ୍ଥାନରେ ନିଜର ବ୍ୟକ୍ତିଗତ କାମ ପାଇଁ ସମୟ ଦେଲା। ଫଳରେ ବିଳମ୍ବର ମାତ୍ରା ବଢ଼ି ଚାଲିଥାଏ। ମୁଁ ଘରେ ପହଞ୍ଚିବା ବେଳକୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇ ଯାଇଥାଏ।

ଘରେ ପହଞ୍ଚିଲା ବେଳକୁ ମୋର ପିଉସୀ ପ୍ରାୟ କ୍ରନ୍ଦନରତା। ସମସ୍ତଙ୍କ ମୁହଁରେ ହଜାରେ ପ୍ରଶ୍ନ: ତୁ କୁଆଡ଼େ ଚାଲିଗଲୁ? ସବିଶେଷ କାରଣ ଦର୍ଶାଇ କ୍ଷମା ମାଗିବାର ଅବକାଶ ମଧ୍ୟ ନଥିଲା। ନିରବରେ ମୁଁ ମୋର ଦୋଷ ସ୍ୱୀକାର କଲି। ପିଉସୀକୁ ବୁଝାଇଲି। ଆଶ୍ୱସ୍ତ ହେଲି ଯେ ଛତାଟି ମୋର ହଜି ନାହିଁ। ଇନ୍ଦ୍ରମଣି ପିଇସା ଆସିବା ସମୟରେ ଶ୍ରେଣୀର ପ୍ରବେଶ ଦ୍ୱାର ପାଖରୁ ଛତାଟି ନେଇ ଆସିଛନ୍ତି।

ସ୍କୁଲ ଆରମ୍ଭର ପ୍ରଥମ ଦିନରୁ ଗୋଟିଏ ବଡ଼ ଶିକ୍ଷା ମିଳିଲା। ସ୍କୁଲ ବାହାରେ କେଉଁଠି କିଛି କାର୍ଯ୍ୟକ୍ରମ ରହୁଥିଲେ ତାହାର ସୂଚନା ଦେବା ଏବଂ ଫେରିବା ସମୟଟିକୁ ନିର୍ଦ୍ଦିଷ୍ଟ ଭାବେ ଜଣାଇବା ଉଚିତ୍ ମନେକଲି। ଅନ୍ତତଃ ମୋର ପିଉସୀ କିମ୍ବା ମୋ ଉପର ଭଉଣୀ ଶାନ୍ତିନାନୀଙ୍କୁ ମୁଁ ଜଣାଇଦିଏ ଯେ ସନ୍ଧ୍ୟା କିମ୍ବା ରାତିରେ କେତେବେଳେ ମୁଁ ଘରକୁ ଫେରିବି। ସାଙ୍ଗମାନଙ୍କ ସହିତ ସିନେମା ଦେଖିବାକୁ ଗଲେ ମଧ୍ୟ ଜଣାଇଥାଏ। ପିଉସୀ କେବେ ମନା କରନ୍ତି ନାହିଁ! ମୁଁ ଜଣାଉଥିବାରୁ ଖୁସୀ ହୁଅନ୍ତି।

ଚାଉଳିଆଗଞ୍ଜ ଛାଡ଼ି ମୁଁ କାଠଗଡ଼ା ସାହିରେ ଯେଉଁ ଜୀବନ ଆରମ୍ଭ କଲି ତାହା ପୂରାପୂରି ନୂତନ ନୁହେଁ। ହାଇସ୍କୁଲ ଜୀବନ ଆରମ୍ଭ କରିବା ପୂର୍ବରୁ ମୁଁ ମୋର ଜେଜେମା' ସହିତ ବର୍ଷରେ ଏକାଧିକ ବାର ଏଠାକୁ ଆସୁଥିଲି। ପିଉସୀର ସ୍ନେହର ଆକର୍ଷଣ ସଦାବେଳେ ମୋତେ ଆନନ୍ଦ ଦେଉଥିଲା। ଏ ଘରର ଆବାହାଓ୍ୱା ସହିତ ମୁଁ ଖୁବ୍ ପରିଚିତ ଥିଲି। ତଥାପି ମାନସିକ ସ୍ତରରେ ମୋତେ ଜାବୁଡ଼ି ଧରିଥିବା କେତୋଟି ଅଭ୍ୟାସକୁ ପିଉସୀ ଘରକୁ ଚାରିକାନ୍ଥର ଆବେଷ୍ଟନୀ ମଧ୍ୟରେ ସଂଯୋଜିତ କରିବାକୁ ପ୍ରୟାସ କଲି।

ଜୀବନର ଆଦ୍ୟ କାଳରେ ମୋ ଜେଜେମା'ଙ୍କ କୋଳରେ କାଖ ହୋଇ ପ୍ରତିଦିନ ସନ୍ଧ୍ୟାରେ ଭାଗବତ ଟୁଙ୍ଗିକୁ ଯିବା କଥା ପୂର୍ବରୁ ସୂଚନା ଦେଇଛି। ଟିକିଏ ବଡ଼ ହେବା ପରେ ଏପରି ଏକ ସଂଯୋଗର ରୂପରେଖ ବଦଳିଗଲା। ସନ୍ଧ୍ୟା ସମୟରେ ନିକଟସ୍ଥ ମନ୍ଦିରମାନଙ୍କରୁ ଆରତୀକାଳୀନ ଘଣ୍ଟ ବାଜିଲେ ମୁଁ ମନ୍ଦିରକୁ ଯାଏ। ସାହି ଛକରେ ଥିବା ଶ୍ରୀ ଲକ୍ଷ୍ମୀନାରାୟଣ ମନ୍ଦିରକୁ ଯାଇ କିଛି ସମୟ କାଟିଥାଏ। ଅନ୍ୟ ସମୟରେ ଅଦୂରରେ ଥିବା ମଙ୍ଗଳା ମନ୍ଦିରକୁ ଯାଇ ଆରତି ଦର୍ଶନ କରେ।

କାଠଗଡ଼ା ସାହି ଆସିବା ପରେ ଏପରି ଅଭ୍ୟାସ ଅପରିବର୍ତ୍ତିତ ରହିଥିଲା। ପିଉସୀ ଘରର ପରିସରକୁ ସ୍ପର୍ଶ କରି ଶ୍ରୀ ପ୍ରକଟେନାଥଙ୍କ (ମହାଦେବ) ମନ୍ଦିର। ସୁତରାଂ ସନ୍ଧ୍ୟା ସମୟରେ ସେଠାରେ ପ୍ରଣତି ଜଣାଏ। ପାର୍ଶ୍ୱ ଦେବାଦେବୀଙ୍କ ପାଖରେ ମଥାନତ କରେ। ଏତଦ୍‌ବ୍ୟତୀତ ଆମ ଘରର ଉପର ମହଲାର ଗୋଟିଏ କୋଣରେ ଦେବଦେବୀଙ୍କ ଲାଗି ସୁନିରୂପିତ ସ୍ଥାନ ମଧ୍ୟ ଥିଲା। ସେଠାରେ ପୂଜାର୍ଚ୍ଚନା ଲାଗି ଫଟୋ ଏବଂ ପୋଥିସବୁ ରହିଛି। ମୁଁ ମନ୍ଦିରରୁ ଆସିବା ପରେ ଅଳ୍ପ ସମୟ ଏକାକୀ ପ୍ରାର୍ଥନା କରେ ଏବଂ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧର ଅନ୍ତତଃ ଗୋଟିଏ ଅଧ୍ୟାୟ ପ୍ରତିଦିନ ପାଠ କରିଥାଏ। ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧରୁ ଗୋଟିଏ ଗୋଟିଏ ଅଧ୍ୟାୟ ପଢିବାର ଅଭ୍ୟାସ ବହୁଦିନ ପର୍ଯ୍ୟନ୍ତ ବଳବତ୍ତର ଥିଲା। ଏପରିକି ୧୯୭୬ ମସିହାରେ ମୁଁ ସସ୍ତ୍ରୀକ କାନାଡ଼ା ଯିବା ସମୟରେ ସାଙ୍ଗରେ ସାମାନ୍ୟ ପୋଷାକପତ୍ର ବ୍ୟତୀତ ଅନ୍ୟ କୌଣସି ଜିନିଷ ନେଇ ନଥିଲି। ମାତ୍ର ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧଟି ନେଇଥିଲି। ଏହାକୁ ନିୟମିତ ପାଠ କରିବାରେ ଅପୂର୍ବ ତୃପ୍ତି ମିଳିଥାଏ। ବିଶେଷତଃ ଶ୍ରୀକୃଷ୍ଣ ଓ ଉଦ୍ଧବଙ୍କ କଥୋପକଥନ ଅଂଶଟି (ଯାହାକି ଉଦ୍ଧବ ଗୀତା ନାମରେ ପରିଚିତ) ଆନନ୍ଦର ଅଖଣ୍ଡ ନିର୍ଝର ସୃଷ୍ଟି କରିଥାଏ।

ଏପରି ଏକ ଅଭ୍ୟାସକୁ କେନ୍ଦ୍ର କରି ଆଉ ଗୋଟିଏ କାର୍ଯ୍ୟକ୍ରମର ସୂତ୍ରପାତ ଥିଲା। ପିଉସୀ ଘର ପାଖରେ ଗୋଟିଏ ଛୋଟ ଚାଳଘରେ ଶ୍ରୀ ସିଂହ ଦମ୍ପତି ରହୁଥିଲେ। ସେମାନେ ନିଃସନ୍ତାନ ଓ ବୃଦ୍ଧବୃଦ୍ଧା। ସୌଭାଗ୍ୟକ୍ରମେ ତାଙ୍କର ଦେଖାଶୁଣା

କରିବା ପାଇଁ ତାଙ୍କ ପାଖରେ ଜଣେ ଯୁବକ ରହୁଥିଲେ। ତାଙ୍କର ନାମ ଉଦୟ ନାଥ ମହାନ୍ତି। ଘର ନୟାଗଡ଼ ନିକଟବର୍ତ୍ତୀ ଦିଘିରୀ। ସେ କଟକରେ ଶିକ୍ଷ ନିର୍ଦ୍ଦେଶାଳୟର ଜଣେ ତଳୁଆ କର୍ମଚାରୀ ଥିଲେ। କିନ୍ତୁ ଶ୍ରଦ୍ଧାର ସହିତ ଶ୍ରୀ ସିଂହ ଓ ଶ୍ରୀମତୀ ସିଂହଙ୍କର ଯତ୍ନ ନିଅନ୍ତି। ପ୍ରତିଦିନ ସନ୍ଧ୍ୟାରେ ଅଫିସରୁ ଫେରିବା ପରେ ସାମାନ୍ୟ ଜଳଖିଆ ଗ୍ରହଣ କରି ପୁରାଣ ପାଠ ପାଇଁ ବସି ଯାଆନ୍ତି। ସିଂହ ଦମ୍ପତି ଶ୍ରୋତା। ମୋର ପିଉସୀ ମଧ୍ୟ ପୁରାଣ ଶୁଣିବାକୁ ଆସନ୍ତି। ଉଦିଭାଇ ଦୀର୍ଘ ସମୟ ଧରି ଗାୟକ ଶୈଳୀରେ ପୁରାଣ ଗାଇ ଚାଲନ୍ତି। ମଝିରେ ମଝିରେ କଣ୍ଠକୁ ବିଶ୍ରାମ ଦେବା ପାଇଁ ଶ୍ରବଣ କାର୍ଯ୍ୟ ଅବ୍ୟାହତ ରଖିବା ପାଇଁ ମୋତେ ଡକରା ପଡ଼େ। ମୁଁ ଅନ୍ତତଃ ଅଧଘଣ୍ଟା ପଇଁଚାଳିଶ ମିନିଟ୍ ସହାୟତା ଯୋଗାଏ।

ବର୍ଷତମାମ ଏ ପୁରାଣ ପାଠ ଚାଲିଥାଏ। ସାରଳା ମହାଭାରତ ସରିବା ପରେ ଜୈମିନୀ ମହାଭାରତ, ତା'ପରେ ଜଗମୋହନ ରାମାୟଣ ଇତ୍ୟାଦି ପଠନ ସନ୍ଧ୍ୟା ଅବ୍ୟାହତ ରହେ। ଯେଉଁଦିନ ଗୋଟିଏ ବିଶିଷ୍ଟ ପୁରାଣ ଶେଷ ହୁଏ, ସେଦିନ ଛୋଟକାଟିଆ ଅନୁଷ୍ଠାନଟି ଆୟୋଜନ କରାଯାଇ ଅଳ୍ପକିଛି ଲୋକଙ୍କୁ ନିମନ୍ତ୍ରଣ କରାଯାଏ। ପ୍ରସାଦ ସେବନ୍‌ର ବ୍ୟବସ୍ଥା ହୁଏ। ଉଦିଭାଇଙ୍କ ସହାୟତାରେ ସିଂହ ଦମ୍ପତ୍ତି ମନ ଆନନ୍ଦରେ ଏ ସବୁର ଦାୟିତ୍ୱ ନିଅନ୍ତି।

ପୁରାଣ ପାଠ କାର୍ଯ୍ୟକ୍ରମର ସହାୟକ ରୂପେ ଉଦିଭାଇଙ୍କ ସହିତ ସମ୍ପର୍କ ଗଭୀର ହେଲା। କିଛି ବର୍ଷ ପରେ ସେ ତାଙ୍କର ସାନଭାଇ ନାରାୟଣଙ୍କୁ ଗ୍ରାମରୁ ଆଣି ପାଖରେ ରଖିଲେ। ତା'ପାଇଁ ଚାକିରିଟି ଯୋଗାଡ଼ କଲେ। ନାରଣ ଭାଇ ଓ ମୁଁ ପ୍ରାୟ ସମବୟସ୍କୀ ଥିଲୁ। ସୁତରାଂ ବନ୍ଧୁତ୍ୱ ବୃଦ୍ଧି ପାଇଲା। ଗୋଟିଏ ଗ୍ରୀଷ୍ମ ଅବକାଶରେ ମୁଁ, ଉଦିଭାଇ ଓ ନାରଣଭାଇଙ୍କ ସହିତ ତାଙ୍କର ଗ୍ରାମ ଦିଘିରୀରେ ପ୍ରାୟ ଦଶଦିନ କଟାଇ ଆସିଲି। ଶରଣକୂଳର ଶ୍ରୀ ଲଡୁକେଶ୍ୱର ଓ ଓଡ଼ଗାଁର ଶ୍ରୀ ରଘୁନାଥଜୀଙ୍କ ଦର୍ଶନ ବ୍ୟତୀତ ମଉସା ମାଉସୀଙ୍କ ସ୍ନେହଶ୍ରଦ୍ଧା ମୋତେ ଗଭୀର ଆନନ୍ଦ ଦେଇଥିଲା। କ୍ଷେତରୁ ଆସିଥିବା ମୁଗଡ଼ାଲିର ବାସ୍ନା, ଶାଗଭଜାର ସ୍ୱାଦ ଓ ସଜ ପଖାଳର ତୃପ୍ତି ଏବେ ବି ମନେଅଛି। ଝିକିମିକି ପାହାଡ଼ ଉପରକୁ ଯାଇ ଗ୍ରାମାଞ୍ଚଳର ଦୃଶ୍ୟକୁ ନିରେଖି ଚାହିଁବାର ନିଶା ଖୁବ୍ ମଧୁର ଥିଲା। ଅଯାଚିତ ଭାବରେ ମମତାର ଧାର କେଉଁଠୁ ବହିବ, ତାହାର କଳ୍ପନା କରିବା ଆମ୍ଭମାନଙ୍କ ପକ୍ଷେ ସମ୍ଭବ ନୁହେଁ।

❖

(୧୦)

# ପ୍ରଥମ ପ୍ରେମ: ସାହିତ୍ୟ

ସାହିତ୍ୟକୁ ମୁଁ ଭଲପାଏ, ଏପରି ସ୍ୱୀକାରୋକ୍ତିରେ କୌଣସି ଦ୍ୱିଧା ନାହିଁ। କେବେ ଏହାର ଅଙ୍କୁରଣ ହେଲା? କେବେ ଏହା ପୁଷ୍ପିତ ହେଲା? ଏପରି ଭାବନାରେ ନିଶ୍ଚିତ ଭାବରେ ସୁଖ ମିଳେ।

ପ୍ରାଥମିକ ବିଦ୍ୟାଳୟରେ ଚତୁର୍ଥ, ପଞ୍ଚମ ଶ୍ରେଣୀର ସାହିତ୍ୟ ପରୀକ୍ଷାରେ ସର୍ବାଧିକ ନମ୍ବର ରଖିବା ନିଶ୍ଚିତ ଭାବରେ ସାହିତ୍ୟ ପ୍ରୀତିର ନିଦର୍ଶନ ନୁହେଁ। ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିବା ପିଲାମାନେ ସାଧାରଣତଃ ଗଣିତ ଓ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖିଥାଆନ୍ତି। ସୁତରାଂ ଏଥିରେ କିଛି ବିଚିତ୍ରତା ନାହିଁ। ତଥାପି ସମ୍ଭବତଃ ଏହିଠାରୁ ହିଁ ଭଲ ପାଇବାର ବୀଜ ବପନ କରାଯାଇଥିଲା। ସାହିତ୍ୟ ପ୍ରୀତିର ଅଙ୍କୁରଣ ପରିପ୍ରେକ୍ଷୀରେ ଜଣଙ୍କ ମୁହଁ ସ୍ପଷ୍ଟ ଦିଶେ। ସେ ହେଉଛନ୍ତି ବ୍ରଜସୁନ୍ଦର ମହାପାତ୍ର। ସେ ମୋର ଚତୁର୍ଥ/ପଞ୍ଚମ ଶ୍ରେଣୀର ସହପାଠିନୀ ପ୍ରମୋଦାର ଭାଇଙ୍କ ବନ୍ଧୁ। ଆମ୍ଭମାନଙ୍କୁ ଧାରଣା ଦିଆ ଯାଇଥିଲା ଯେ ବ୍ରଜବାବୁ ସେ ସମୟରେ ରେଭେନ୍ସା କଲେଜର ଓଡ଼ିଆ ଅନର୍ସର ଛାତ୍ର। ସେ ତାଙ୍କର ବନ୍ଧୁ ପ୍ରମୋଦାର ଭାଇ ଓ ତାଙ୍କର ସହପାଠୀଙ୍କ ଘରକୁ ଆସନ୍ତି। କୌଣସି ଏକ ପରିପ୍ରେକ୍ଷୀରେ ସେ ସମ୍ଭବତଃ ଆମ ସ୍କୁଲକୁ ଆସିଥିଲେ। ପ୍ରଧାନ ଶିକ୍ଷକଙ୍କ ସହିତ ପରିଚିତ ହେବା ପରେ ସେ ଅଣଆନୁଷ୍ଠାନିକ ଭାବରେ ତାଙ୍କୁ ଅଳ୍ପ କେତୋଟି ସାହିତ୍ୟର କ୍ଲାସ ନେବା ପାଇଁ ଅନୁରୋଧ ଜଣାଇଲେ।

ଆମ୍ଭମାନଙ୍କୁ ସାହିତ୍ୟ ପଢ଼ାଇବାର ଶୈଳୀ ସମସ୍ତଙ୍କୁ ମୁଗ୍ଧ କଲା। ଏହାର ଆଭାସ ପାଇ ପ୍ରଧାନ ଶିକ୍ଷକ ତାଙ୍କୁ ମଝିରେ ମଝିରେ ଓଡ଼ିଆ ପଢ଼ାଇବାକୁ ଅନୁରୋଧ ଜଣାନ୍ତି ଏବଂ ସେ ମଧ୍ୟ ଆଗ୍ରହର ସହିତ ସେ ଦାୟିତ୍ୱ ସମ୍ପନ୍ନ କରନ୍ତି। କୌଣସି ପାଠ୍ୟ ବିଷୟକୁ କିପରି ଭଲ ପାଇବାକୁ ହୁଏ ତାହାର ପ୍ରଣାଳୀ ତାଙ୍କୁ ଜଣାଥିଲା। ସେ କ୍ଲାସ ନେବାକୁ ଆସିଲେ ଆମେ ଖୁବ୍ ଖୁସୀ ହେଉଥିଲୁ। ତାଙ୍କ ପ୍ରତି ଗଭୀର ସମ୍ମାନ ଥିଲା। ପ୍ରାଥମିକ ଶିକ୍ଷା ଶେଷ ପର୍ଯ୍ୟନ୍ତ ତାଙ୍କ ସହିତ ସଂଯୋଗ ରକ୍ଷା କରିବାର ବାଟ ନ ଥିଲା। କେବଳ ଜାଣିଥିଲି ଯେ ସେ ବି.ଏ. ପାଶ୍ କରି କିଛି ବର୍ଷ ପାଇଁ କଟକର ନୂଆବଜାର ହାଇସ୍କୁଲରେ ଶିକ୍ଷକତା କରୁଥିଲେ। ମାର୍ମିକ ସ୍ତରରେ ବନ୍ଧନ ଏତେ ଦୃଢ଼ ଥିଲା ଯେ ଏବେ ମଧ୍ୟ ତାଳଦଣ୍ଡା କେନାଲ ଉପରେ

ଥିବା ବନ୍ଧ (ପାଞ୍ଚ ନମ୍ବର ଜାତୀୟ ରାଜପଥର ଅଂଶବିଶେଷ) ଉପରେ ଯିବା ସମୟରେ ବାମ ପାର୍ଶ୍ୱର ଏକ ଅଟ୍ଟାଳିକା ଦିଗରେ ଆଖି ସ୍ୱତଃ ଚାଲିଯାଏ। ସେତେବେଳେ ସେ ଅଟ୍ଟାଳିକାର ନାମ ଥିଲା, "ପୁସ୍ତକ"। ପୁସ୍ତକ ସାଇନ୍‌ବୋର୍ଡ୍ ଏବେ ନାହିଁ କି ବ୍ରଜବାବୁ ସେଠାରେ ନାହାଁନ୍ତି। କିନ୍ତୁ ତାଙ୍କର ପୂର୍ବ ଉପସ୍ଥିତିକୁ ମନେ ପକାଇ ମୋର ମୁଣ୍ଡ ନଇଁଯାଏ। ସାହିତ୍ୟକୁ ଭଲ ପାଇବାର ଯେଉଁସବୁ ମଞ୍ଜି ସେ ଛାଟି ଦେଇଥିଲେ ସମ୍ଭବତଃ ଗୋଟିଏ ମଞ୍ଜି ମୋ ହୃଦୟର କଞ୍ଚାମାଟିରେ ରହି ଯାଇଥିଲା।

ଅଙ୍କୁରଣ ଅବସ୍ଥାରେ ରହିଥିବା ସାହିତ୍ୟପ୍ରୀତି ମାରୱାଡ଼ି ସ୍କୁଲର ଷଷ୍ଠ, ସପ୍ତମ ଶ୍ରେଣୀରେ ଭିନ୍ନ ଏକ ବାତାବରଣର ସମ୍ମୁଖୀନ ହେଲା। ପ୍ରଥମତଃ ମୋର ସମନ୍ୱୟଶୀଳତା ଏକପ୍ରକାର ଆହ୍ୱାନର ସମ୍ମୁଖୀନ ହେଲା। ମୁଁ ଏକ ବାହ୍ୟ ପରିବେଶରୁ ଆସି ଏ ସ୍କୁଲରେ ପ୍ରବେଶ କଲି। ଏ ସ୍କୁଲରେ ମଧ୍ୟ ଚତୁର୍ଥ, ପଞ୍ଚମ ଶ୍ରେଣୀ ରହିଛି। ସୁତରାଂ ପୂର୍ବରୁ ଚତୁର୍ଥ, ପଞ୍ଚମ ଶ୍ରେଣୀରେ ଯେଉଁମାନେ ପ୍ରଥମ କିମ୍ବା ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲେ ସେମାନେ ମୋର ପ୍ରବେଶକୁ ଠିକ୍ ଭାବରେ ଗ୍ରହଣ କଲେ ନାହିଁ। ବିଶେଷତଃ ନିତିଦିନିଆ ଶ୍ରେଣୀଗୃହରେ ଶିକ୍ଷକଙ୍କ ଦୃଷ୍ଟି ମୋ ଉପରେ କେନ୍ଦ୍ରୀଭୂତ ହେବା ଫଳରେ ସେମାନଙ୍କ ସହନଶୀଳତା ଚାପଗ୍ରସ୍ତ ହେଲା। ପୁଣି ଷଷ୍ଠ ଶ୍ରେଣୀର ଷଣ୍ମାସିକ ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିବାରୁ ଏବଂ ଶ୍ରେଣୀ ଶିକ୍ଷକ ପାଠ୍ୟ ଅଗ୍ରଗତି ପତ୍ରରେ ଖୁବ୍ ଭଲ ଅଗ୍ରଗତି ମନ୍ତବ୍ୟ ଲେଖିବା ପରେ ସ୍ଥାନ ହରାଇଥିବା ଦୁଇତିନିଜଣ ଛାତ୍ର ବିଶେଷ କ୍ଷୁବ୍ଧ ହେଲେ। ପରିପକ୍ୱତା ଅଭାବରୁ ମୋ ପ୍ରତି ବ୍ୟବହାର ଭିନ୍ନ ରୂପ ନେଲା।

ଅବଶ୍ୟ ମୋର ମଧ୍ୟ ଗୋଟିଏ ଦୁର୍ବଳତା ରହି ଯାଇଥିଲା। ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରି ମୁଁ ସବୁ ପାଠ୍ୟ ବିଷୟରେ ଖୁବ୍ ଭଲ ନମ୍ବର ରଖୁଥିଲେ ମଧ୍ୟ ସାହିତ୍ୟରେ ମାର୍କର ପରିମାଣ ସାମାନ୍ୟ କମ୍ ରହୁଥିଲା। ଏହାର ମୁଖ୍ୟ କାରଣ ହେଉଛି ଯେ ସାହିତ୍ୟ ପରିପ୍ରେକ୍ଷୀରେ ମୁଁ ଠିକ୍ ରୂପେ ସମୟର ଯୋଜନା କରିପାରେ ନାହିଁ। ସାହିତ୍ୟର ପ୍ରଶ୍ନପତ୍ରରେ ଥିବା ପ୍ରଥମ ପ୍ରଥମ ପ୍ରଶ୍ନଗୁଡ଼ିକର ଉତ୍ତର ଏତେ ବିସ୍ତୃତ ଭାବରେ ଲେଖିଥାଏ ଯେ ଶେଷ ଅଂଶରେ ଥିବା ରଚନା ବା ପ୍ରବନ୍ଧ ଲେଖିବା ଆରମ୍ଭ କରିବା ସମୟରେ ସମୟ ପ୍ରାୟ ସରିଯାଏ। ମାତ୍ର ଦୁଇ ତିନୋଟି ଅନୁଚ୍ଛେଦ ଲେଖିବା ବେଳକୁ ଘଣ୍ଟା ବାଜିଯାଏ। ଅନ୍ୟ ପକ୍ଷରେ ରଚନା ଲେଖିବା ପାଇଁ ୧୦୦ରୁ ୧୫ କିମ୍ବା ୨୦ ମାର୍କ ରଖା ଯାଇଥାଏ। ଏ ଦୃଷ୍ଟିରୁ ମୁଁ ସାହିତ୍ୟରେ ହାସଲ କରୁଥିବା ମାର୍କ କେବଳ ୮୦ କିମ୍ବା ୮୫ ମାର୍କରୁ ପାଇଛି ବୋଲି ଧରା ଯାଇପାରେ। ଦୀର୍ଘଦିନ ଧରି ମୋର ଏ ଦୁର୍ବଳତାଟି ଗୋଟିଏ ବାଧକ ହୋଇ ରହିଥିଲା।

ଅନେକ ସମୟରେ ଆପାତତଃ ଦୃଷ୍ଟିକୋଣରୁ ଯାହା ବାଧା ଓ ପ୍ରତିବନ୍ଧକ ବୋଲି ପ୍ରତୀୟମାନ ହୁଏ ପରବର୍ତ୍ତୀ ଜୀବନରେ ତାହା ଏକ ଅମୂଲ୍ୟ ସମ୍ବଳ ରୂପେ ଆବିଷ୍କୃତ ହୋଇପାରେ। ଏହିପରି ଏକ ବିଶେଷ ଘଟଣା ମୋର ସାହିତ୍ୟାନୁରାଗକୁ ବିସ୍ଫୋରକ ଶକ୍ତି ଯୋଗାଇଲା।

ମାରୱାଡ଼ି ହାଇସ୍କୁଲର ଶିକ୍ଷକଗଣ ଓ ଅଳ୍ପ କେତେଜଣ ଶିକ୍ଷୟିତ୍ରୀ ଖୁବ୍ ଭଲ ଥିଲେ। ମୋର କୌଣସି ବ୍ୟକ୍ତିଗତ ଅଭିଯୋଗ ନ ଥିଲା। ମାତ୍ର ଷଷ୍ଠ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସପ୍ତମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ପରେ ମୁଁ ଏକ ଆହ୍ୱାନର ସମ୍ମୁଖୀନ ହେଲି। ସପ୍ତମ ଶ୍ରେଣୀର ଶ୍ରେଣୀ ଶିକ୍ଷକ ଭିନ୍ନ ଧରଣର ଥିଲେ। ସେ ଗଣିତ ଓ ସାହିତ୍ୟ ପରି ଦୁଇଟି ମୁଖ୍ୟ ବିଷୟ ପଢ଼ାଉଥିଲେ। ତାଙ୍କର ଏକ ବିଶେଷ ଦୁର୍ବଳତା ଥିଲା ଘରୋଇ ଭାବେ ବହୁ ପିଲାଙ୍କୁ ପାଠପଢ଼ାଇ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରିବା। ଘରୋଇ କୋଚିଂ ମାଧ୍ୟମରେ ପ୍ରଚୁର ଉପାର୍ଜ୍ଜନ କରିବାର ନିଶା ସେତେବେଳେ ବହୁ ଶିକ୍ଷକଙ୍କୁ ଘାରି ନଥିଲା। ତଥାପି ପ୍ରତି ସ୍କୁଲରେ ଏପରି ଜଣେ ଦୁଇଜଣ ଶିକ୍ଷକ ଟିଉସନ୍‌ର ପସରା ମେଳାଇଥିଲେ। ଜନୈକ ବଦାନ୍ୟ ମାରୱାଡ଼ି ବ୍ୟକ୍ତିଙ୍କ ପ୍ରଦତ୍ତ ଗୋଟିଏ ଭଡ଼ାବିହୀନ ଘରେ ରହୁଥିଲେ ଏବଂ ଦିନ ରାତି ଟିଉସନ୍‌ରେ ସମୟ ଦେଉଥିଲେ।

ତାଙ୍କର ଦଳଗତ ଟିଉସନ ବ୍ୟତୀତ ସେ ସକାଳ ଓଳି କାଠଗଡ଼ା ସାହିରେ ରହୁଥିବା ସବୁଜ ଯୁଗର ଅନ୍ୟତମ କବି ଶରତ ମୁଖାର୍ଜୀଙ୍କ ଝିଆରୀ କନକକୁ ପଢ଼ାଇବାକୁ ଆସନ୍ତି। କନକ ସେତେବେଳେ ଆମ ଶ୍ରେଣୀରେ ପଢୁଥିଲା। ଶିକ୍ଷକ ଜଣକ ପ୍ରାୟ ସାଢ଼େ ନ'ଟାରେ ତାଙ୍କ ଘରୁ ବାହାରିଯାଆନ୍ତି (କାରଣ ସ୍କୁଲ ଆରମ୍ଭର ସମୟ ହେଉଛି ସାଢ଼େଦଶଟା)। ଶ୍ରୀ ମୁଖାର୍ଜୀଙ୍କ ଘର ଆମ ଘରର ସାମନାସାମନି କହିଲେ ଚଳେ। ଶିକ୍ଷକ ବାହାରିବା ସମୟରେ ଆମ ଘରୁ ମଧ୍ୟ ଅନ୍ତତଃ ଚାରିପାଞ୍ଚଜଣ ଛାତ୍ର ବାହାରନ୍ତି। ସେମାନେ ମୋର ସହପାଠୀ। ଅଧିକାଂଶ ଦିନ ଶିକ୍ଷକ ମୋର ଏହି ସହପାଠିମାନଙ୍କୁ ଦେଖନ୍ତି। ସେ ମନେ କରନ୍ତି ଯେ ତାଙ୍କର କ୍ରମବର୍ଦ୍ଧିଷ୍ଣୁ ରୋଜଗାର ବ୍ୟବସ୍ଥାରେ ମୁଁ ଏକ ଶକ୍ତ ଧକ୍କା।

ବୁଦ୍ଧିମାନ୍ କହିଲେ ଲୋକେ ଯାହା ବୁଝନ୍ତି ସେ ଦୃଷ୍ଟିରୁ ମୁଁ ପ୍ରକୃତରେ ବୁଦ୍ଧିମାନ୍ ଥିଲି କି ନାହିଁ ବୋଲି ଜାଣିନାହିଁ। ସମ୍ଭବତଃ କଥାଟିକୁ ସରଳ ଭାବରେ ବୁଝାଇଦେବାର ମୋର ଦକ୍ଷତା ଥିଲା। ସେହି ଆକର୍ଷଣରେ ମୋର କେତେକ ବନ୍ଧୁ (ତାପସ, ମଦନ, କେଦାର ଇତ୍ୟାଦି) ପ୍ରାୟ ପ୍ରତିଦିନ ସକାଳ ଆଠଟା ବେଳେ ଆମ ଘରକୁ ଆସନ୍ତି। ଆମେ ସବୁ ଗଣିତର ପ୍ରଶ୍ନଗୁଡ଼ିକ ଚଟାଣରେ ଚକ୍ ବ୍ୟବହାର କରି ସମାଧାନ କରୁ। ଅନ୍ୟ କିଛି ପାଠ୍ୟ ବିଷୟ ମଧ୍ୟ ଆଲୋଚନା କରୁ। ମୋର

ଦୁର୍ଭାଗ୍ୟ ଯେ ଆମ ଶ୍ରେଣୀ ଶିକ୍ଷକଙ୍କ ଦୃଷ୍ଟିରେ ଏହା ଭିନ୍ନ ରୂପ ନେଲା। ମୁଁ ମୋର ଏହି ସାଙ୍ଗମାନଙ୍କୁ ସାହାଯ୍ୟ କରି ନଥିଲେ ସେମାନେ ହୁଏତ ଶିକ୍ଷକଙ୍କ ଟିଉସନ୍ ଧାଡ଼ିରେ ବସି ମୋଟା ଅଙ୍କର ଅର୍ଥ ତାଙ୍କୁ ଦେଇଥାଆନ୍ତେ।

ପରିଣତି ସହଜରେ ଅନୁମେୟ। ମୋତେ ଶ୍ରେଣୀରେ ଅପମାନିତ କରିବା ପାଇଁ ସେ ସବୁ ପ୍ରକାରର କୌଶଳ ପ୍ରୟୋଗ କଲେ। ଗଣିତରେ ପୂର୍ଣ୍ଣ ସଫଳତା ସମ୍ଭବ ଥିବାରୁ ସେ ଗଣିତ ଶ୍ରେଣୀର ସୁଯୋଗ ପାଆନ୍ତି ନାହିଁ। ମାତ୍ର ସାହିତ୍ୟ ଶ୍ରେଣୀରେ ମୋ ଉପରେ ଗୁଳି ବର୍ଷଣ ହୁଏ। ଗଣିତ ପରି ସାହିତ୍ୟରେ ମୁଁ ତ୍ରୁଟିଶୂନ୍ୟ ନୁହେଁ। ପର ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ଦୁର୍ଗାପ୍ରସାଦ ମହାନ୍ତିର ସାହିତ୍ୟ ଦକ୍ଷତା ଭଲ। ଏହାର ସୁଯୋଗ ନେଇ ସେ ବାରମ୍ବାର ଦୁର୍ଗାକୁ ମାତ୍ରାଧିକ ପ୍ରୋତ୍ସାହନ (ଅନାବଶ୍ୟକ ଭାବେ)ଦିଅନ୍ତି; ମୋତେ କେବଳ ନିରୁତ୍ସାହିତ ନୁହେଁ, ଅପମାନିତ ମଧ କରନ୍ତି। ସବୁଠାରୁ ଦୁର୍ଭାଗ୍ୟଜନକ କଥାଟି ହେଉଛି ତଥାକଥିତ ବଂଶ ଓ ଆଭିଜାତ୍ୟକୁ ନେଇ ଅପମାନର ଶର ଫିଙ୍ଗିବାର ମନୋବୃତ୍ତି। ଦୁର୍ଗା ଜଣେ ଅଧ୍ୟାପକଙ୍କ ସନ୍ତାନ; ମୁଁ ଏକ ମାମୁଲି ପରିବାରର ପିଲା। ଏହାକୁ ବିଭିନ୍ନ ରଙ୍ଗ ଓ ମସଲା ଦେଇ ମୋତେ ତଳକୁ କରିବାର ଅନେକ ଚେଷ୍ଟା କରନ୍ତି।

"ଫକୀର କେବଳ ମାଟ୍ରିକ ପାଶ୍ କରି କଚେରୀରେ ପିଅନ ହୋଇ ହାତ ପଛକରି ଲାଞ୍ଚ ମାଗିବ"- ଏପରି ବିବୃତିର ବହୁ ସଂସ୍କରଣ ମୋର ସାଙ୍ଗସାଥୀମାନେ ବହୁବାର ଶୁଣିଥିବେ। ସମ୍ଭବତଃ ଏପରି ପରିବେଶ ଆଜି ଆଉ ନାହିଁ। ବିଶେଷତଃ ସହରରେ ଏପରି ଘଟିଲେ କି ପ୍ରତିକ୍ରିୟା ଘଟିବ, ତାହା ସମସ୍ତେ ଜାଣନ୍ତି। ମାତ୍ର ଛାତ୍ରଛାତ୍ରୀ ହିସାବରେ ଆମେ ଶକ୍ତ ନ ଥିଲୁ। ଶିକ୍ଷକଙ୍କ ଅନୁଚିତ୍ ବ୍ୟବହାର ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବା ପାଇଁ ଯେଉଁ ସମ୍ବଳ ଓ ସହାୟତା ଦରକାର ତାହା ସେତେବେଳେ ଆମର ନ ଥିଲା।

ମନଦୁଃଖ ହୁଏ, କିନ୍ତୁ ପ୍ରତିବାଦ କରି ନ ଥିଲି। ମୁଁ ସ୍ପଷ୍ଟଭାବେ ଜାଣୁଥିଲି ଯେ ମୋର ସାଙ୍ଗସାଥିମାନଙ୍କର ସ୍ନେହଶ୍ରଦ୍ଧା ପୂର୍ବ ପରି ଦୃଢ଼ ଓ ବର୍ଦ୍ଧିଷ୍ଣୁ। ଏହା କେବଳ ସମ୍ପୃକ୍ତ ଶିକ୍ଷକଙ୍କର ଅର୍ଥ ଲୋଭ ଚରିତାର୍ଥ ନ ହେବାର ମାନସିକ ବ୍ୟର୍ଥତା।

ଜୀବନର ଏକ ବିରାଟ ବିରୋଧାଭାସ ହେଉଛି ଯେ ନକାରାତ୍ମକ ଘଟଣା ସକାରାତ୍ମକ ସୃଷ୍ଟିର ସମ୍ଭାବନା ନିର୍ମାଣ କରେ। ଏ କ୍ଷେତ୍ରରେ ମୋ ଜୀବନରେ ତାହା ହିଁ ହେଲା। ଅପମାନର ଜ୍ୱାଳା ମୋ ମନରେ ଏକ ସଂକଳ୍ପବୋଧ ଆଣିଲା। ମୁଁ ସ୍ଥିର କଲି ଯେ ଯେଉଁ ଭାଷା ଓ ସାହିତ୍ୟରେ ମୋର ଦୁର୍ବଳତା ରହିଛି, ମୁଁ ତାକୁ ଅତିକ୍ରମ କରିବି। ଅଧିକା ପରିଶ୍ରମ କରି ମୁଁ ଭଲ ଭଲ ରଚନା ପଢ଼ିବି। ଓଡ଼ିଆ ସାହିତ୍ୟର ଭଲ ଗ୍ରନ୍ଥ ସବୁ ଅଧ୍ୟୟନ କରିବି।

ଏପରି ସୁଯୋଗର ଅନ୍ୱେଷଣ ମୋ ପକ୍ଷରେ କଷ୍ଟକର ନ ଥିଲା। ଆମ ଘରର ମାତ୍ର ପାଞ୍ଚମିନିଟ୍‌ର ରାସ୍ତା ହେଉଛି ଗୌରୀଶଙ୍କର ପାର୍କ। ଏଠାରେ ପଢ଼ିଆରୀ ପାଠାଗାର ଅବସ୍ଥିତ। ଏହା କଟକର ଏକ ସୁନିୟନ୍ତ୍ରିତ ଓ ସୁପରିଚାଳିତ ପାଠାଗାର। ଏଠାରେ ଉଲ୍ଲେଖ କରିପାରେ ଯେ ପ୍ରାଣକୃଷ୍ଣ ପଢ଼ିଆରୀ ଜଣେ ପ୍ରଖ୍ୟାତ କଂଗ୍ରେସ ନେତା ଥିଲେ। ପୁରୁଣା କାଠୁ ଭୁଷୁଡ଼ି ଯାଇ ଦୁର୍ଘଟଣା ଘଟି ସେ ପରଲୋକ ଗମନ କରିଥିଲେ। ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ପାଠାଗାରର ଏପରି ନାମିତ କରାଯାଇଛି।

କଟକ ମ୍ୟୁନିସିପାଲିଟି ଏହାର ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ। ସକାଳ ଆଠଟାରୁ ସାଢ଼େ ଦଶଟା ପର୍ଯ୍ୟନ୍ତ ଏବଂ ସନ୍ଧ୍ୟା ସମୟରେ ପାଞ୍ଚଟାରୁ ସାଢ଼େ ଆଠଟା ପର୍ଯ୍ୟନ୍ତ ଏହା ଖୋଲା ରହେ। ଗୋଟିଏ ରହିଛି ବିରାଟ ପଠନ ଗୃହ। ଏହାର କେନ୍ଦ୍ର ସ୍ଥଳରେ ଗୋଟିଏ ଆୟତକାର ଟେବୁଲ୍ ଉପରେ ଓଡ଼ିଆ, ହିନ୍ଦୀ ଓ ଇଂରାଜୀ ଭାଷାର ମୁଖ୍ୟ ଖବରକାଗଜ ରହିଥାଏ। ଲୋକମାନେ ସ୍ୱାଧୀନ ଭାବରେ ନିଜେ ଚୟନ କରିଥିବା ଖବରକାଗଜ ପଢ଼ିପାରିବେ। ଅନ୍ୟମାନେ ପାଠାଗାର ସହାୟକଙ୍କୁ ନିଜର ରୁଚି କିମ୍ବା ପୁସ୍ତକର ନାମ ଜଣାଇଲେ ସେ ଆଲମିରାରୁ ପୁସ୍ତକ ଆଣି ପାଠକ/ ପାଠିକାଙ୍କୁ ଦେବେ। ପାଠାଗାର ବନ୍ଦ ହେବା ପର୍ଯ୍ୟନ୍ତ ସେ ପଠନ ଗୃହରେ ବସି ସ୍ୱଚ୍ଛନ୍ଦ ଭାବେ ପଢ଼ି ପାରିବେ।

ଏହି ପାଠାଗାରର ସଭ୍ୟ ହେବା ପାଇଁ ବ୍ୟବସ୍ଥା ଥିଲା। ରେଜେଷ୍ଟ୍ରୀଭୁକ୍ତ ସଭ୍ୟମାନେ ବହି ଘରକୁ ନେଇପାରିବେ ଏବଂ ଗୋଟିଏ ଫେରାଇବା ପରେ ଅନ୍ୟ ବହି ନେଇପାରିବେ। ଗଳ୍ପ, କବିତା, ଉପନ୍ୟାସ ଓ ପ୍ରବନ୍ଧାବଳୀସବୁ ଏ ପଦ୍ଧତିରେ ଉପଯୋଗ କରାଯାଇପାରିବ। ମୁଁ ମଧ୍ୟ ଏହାର ଉପଯୋଗ କରୁଥିଲି।

ପଢ଼ିଆରୀ ପାଠାଗାରର ମୁଖ୍ୟ ଆକର୍ଷଣ ମୋ ପାଇଁ ଥିଲା ଏହାର ରେଫରେନ୍ସ ବା ଗ୍ରନ୍ଥାଗାର କକ୍ଷ। ଏଠାରେ ଓଡ଼ିଆ ଭାଷାର ଗ୍ରନ୍ଥାବଳୀ, ଉଚ୍ଚତର ରଚନା ଏବଂ ଦୁର୍ଲ୍ଲଭ ପୁସ୍ତକସବୁ ସଜ୍ଜିତ ରହିଥିଲା। ଏ ପ୍ରକୋଷ୍ଠରେ ଥିବା କୌଣସି ପୁସ୍ତକ ପଠନ ଗୃହକୁ ନିଆଯାଏ ନାହିଁ କି ପାଠାଗାର ବାହାରକୁ ଦିଆଯାଏ ନାହିଁ। ପାଠକପାଠିକା ନିଜ ମନମୁତାବକ ଏ କକ୍ଷରେ ବହିକି ଦେଖିବେ ଏବଂ ତା' ସମ୍ମୁଖରେ ରହିଥିବା ଚେୟାର୍‌ରେ ବସି ନିରବରେ ପାଠ କରିବେ। ସୌଭାଗ୍ୟବଶତଃ ଏ କକ୍ଷର ପରିଚାଳନା ଦାୟିତ୍ୱରେ ଥିବା ବୋଷ୍ ବାବୁ ଖୁବ୍ ଶୃଙ୍ଖଳାପ୍ରିୟ ଥିଲେ। ଫଳତଃ ଏ ଗୃହକୁ ପ୍ରବେଶ କରୁଥିବା ଅଳ୍ପ ସଂଖ୍ୟକ ସୁଧୀ ପାଠକପାଠିକା ଶୃଙ୍ଖଳିତ ଭାବରେ ଏଠାରେ ଅଧ୍ୟୟନ କରନ୍ତି। ବ୍ୟକ୍ତିଗତ ଭାବରେ କିଛି ନୋଟ୍ କରିବାରେ ବାଧା ନ ଥିଲା। ବ୍ୟବହୃତ ଗ୍ରନ୍ଥସବୁ ଯେପରି ଅବିକୃତ ରହିବ ସେ ଦିଗରେ ବୋଷ୍ ବାବୁଙ୍କର କଡ଼ା ନଜର ଥିଲା।

ମୋ ଶ୍ରେଣୀ ଶିକ୍ଷକଙ୍କ ମୋ ପ୍ରତି ବିଦ୍ୱେଷ ଏବଂ ସାହିତ୍ୟର ବଳୟ ମଧ୍ୟରେ ଅଧିକରୁ ଅଧିକ ପ୍ରବେଶ କରିବାର ଇଚ୍ଛା ବଳବତୀ ଥିଲା। ମୁଁ କେବେକେବେ ସକାଳେ ଆସୁଥିଲି, କିନ୍ତୁ ସନ୍ଧ୍ୟା ସମୟରେ ନିୟମିତ ଆସି ଏହି ଗ୍ରନ୍ଥାଳୟ (ରେଫେରେନ୍ସ) ଗୃହରେ ସମୟ କାଟୁଥିଲି। ଏଠାରେ ଉଚ୍ଚାଙ୍ଗ ସାହିତ୍ୟ ଓ ସାହିତ୍ୟିକମାନଙ୍କ ସହ ପରିଚିତିର ସୁଯୋଗ ମିଳିଲା। ଓଡ଼ିଆ ଭାଷାର କ୍ଲାସିକାଲ୍ ରଚନା ପଢ଼ିବାରେ ଏକ ପ୍ରକାର ନିଶା ଜାଗିଲା। ସମ୍ଭବତଃ ସପ୍ତମ, ଅଷ୍ଟମ ଶ୍ରେଣୀରେ ରାଧାନାଥ, ଗଙ୍ଗାଧର, ଫକୀରମୋହନ, ମଧୁସୂଦନ ଓ ଉପେନ୍ଦ୍ରଭଞ୍ଜ ଗ୍ରନ୍ଥାବଳୀ ପଢ଼ିବାର ଗଭୀର ତୃପ୍ତି ମିଳିଲା। ଗୋପୀନାଥ ମହାନ୍ତିଙ୍କ ପରଜା ଓ ଅମୃତର ସନ୍ତାନ ହୃଦୟକୁ ସ୍ପର୍ଶ କଲା। କାହ୍ନୁବାବୁଙ୍କ ଶାସ୍ତି, ହା ଅନ୍ନ ଓ ବାଲିରାଜା ପଢ଼ିବା ପରେ ସେସବୁ ରଚନାର କେତେକ କାଳଜୟୀ ବାକ୍ୟ ମନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା। ପଦ୍ୟ ବା କବିତାର ଯେଉଁ ଉଦ୍ଧୃତି ମୋତେ ଭଲ ଲାଗେ, ମୁଁ ତାହାକୁ କାଗଜରେ ଟିପିନିଏ। ପରେ ସମୟ ପାଇଲେ ମୋର ଯେ କୌଣସି ପାଠ୍ୟ ପୁସ୍ତକର ପୃଷ୍ଠାର ଉପର କିମ୍ବା ତଳ ମାର୍ଜିନ୍‌ରେ ଉଦ୍ଧୃତିଟି ଲେଖିଦିଏ। ଏପରିକି ମୋର ମୋଟା ବୀଜଗଣିତ ବହିର ପ୍ରତ୍ୟେକ ପୃଷ୍ଠାର ତଳେ ଓ ଉପରେ ଉଦ୍ଧୃତି ସବୁ ଲେଖାଥିଲା।

ସେ ସମୟରେ ମୋ ନାକର ଗୋଟିଏ ପୁଡ଼ା ପଢ଼ିଆରୀ ପାଠାଗାର ହେବା ସ୍ଥଳେ ଅନ୍ୟ ପୁଡ଼ାଟି କଟକର ଟାଉନ୍ ହଲ୍ ଏବଂ ଶ୍ରୀରାମଚନ୍ଦ୍ର ଭବନ। ଆମ ଘରର ଗୋଟିଏ ଦିଗରେ ପଢ଼ିଆରୀ ପାଠାଗାର ଅବସ୍ଥିତ ରହିଥିବା ସ୍ଥଳେ ଅନ୍ୟ ଦିଗରେ ରହିଛି ଟାଉନ୍‌ହଲ୍ ଓ ଶ୍ରୀରାମଚନ୍ଦ୍ର ଭବନ। ଏ ଦୁଇଟି ଆମ ଘରଠାରୁ ପ୍ରାୟ ପନ୍ଦର ମିନିଟ୍ ରାସ୍ତା ହେବ। ଏ ଦୁଇଟି ମଧ୍ୟରେ ଦୂରତ୍ୱ ମାତ୍ର ଦୁଇ ତିନିଶହ ମିଟରର ଦୂରତ୍ୱ। କଟକ ମ୍ୟୁନିସିପାଲିଟି ଟାଉନ୍ ହଲ୍‌ର ପରିଚାଳନା କରନ୍ତି। ବିଶିଷ୍ଟ ଅନୁଷ୍ଠାନ "ଉତ୍କଳ ସାହିତ୍ୟ ସମାଜ" ଶ୍ରୀରାମଚନ୍ଦ୍ର ଭବନର ଦାୟିତ୍ୱ ନିର୍ବାହ କରନ୍ତି। ଦୁଇଟିର ଅବସ୍ଥିତି ଟାଉନ୍‌ହଲ୍ ରୋଡ୍‌ରେ ବୋଲି କୁହାଯାଇପାରେ।

ହଲ୍ ଦୁଇଟି ଖୁବ୍ ବଡ଼ ନୁହେଁ। ଖୁବ୍ ବେଶୀ ଶହେ ଜଣ ବସିବାର ବ୍ୟବସ୍ଥା ଅଛି। ପରବର୍ତ୍ତୀ କାଳରେ ଏ ଦୁଇଟି ହଲ୍‌ଠାରୁ ପ୍ରାୟ ଅଧକିଲୋମିଟର ଦୂରରେ ଏକ ବିରାଟ ପ୍ରାସାଦ "ଶହୀଦ୍ ଭବନ" ନିର୍ମାଣ କରାଯାଇଥିଲେ ମଧ୍ୟ ଦୀର୍ଘଦିନ ଧରି ଏ ଦୁଇଟି ସ୍ଥାନ କଳା ସାହିତ୍ୟର ପ୍ରାଣକେନ୍ଦ୍ର ରୂପେ କାର୍ଯ୍ୟ କରିଛି। ପ୍ରତିଦିନ ସନ୍ଧ୍ୟାରେ କିଛି ନା କିଛି କାର୍ଯ୍ୟକ୍ରମ ରହିଥାଏ। ବିଶେଷତଃ ବରପୁତ୍ରମାନଙ୍କ ଜନ୍ମ ଦିବସ, ଶ୍ରାଦ୍ଧ ଦିବସ ଓ ଅନ୍ୟ ସବୁ ପୁଣ୍ୟତିଥି ପାଳିତ ହୁଏ। ଖବରକାଗଜରେ କାର୍ଯ୍ୟସୂଚୀ ଦେଖି ମୁଁ ସନ୍ଧ୍ୟାରେ ଏ ସବୁ ସଭାସମିତିକୁ ଆସିଥାଏ। ରାଜନୈତିକ

ସଭାସମିତି ପ୍ରତି ମୋର ବିଶେଷତଃ ଆଗ୍ରହ ନ ଥାଏ। ମାତ୍ର ସାହିତ୍ୟ ସମ୍ପର୍କିତ କାର୍ଯ୍ୟ ନିର୍ଘଣ୍ଟର ଖବର ପାଇଲେ ମୁଁ ଟାଉନ୍ ହଲ୍ କିମ୍ବା ଶ୍ରୀରାମଚନ୍ଦ୍ର ଭବନ ଆସିଥାଏ। ପ୍ରାୟ ସାଢ଼େ ଆଠଟା କିମ୍ବା ନ'ଟାରେ ଫେରିବା ପରେ ଘରେ ଦଶଟା ପର୍ଯ୍ୟନ୍ତ ସ୍କୁଲ ପାଠ ପଢ଼ିବାରେ ମନଦିଏ।

କଟକର ଶ୍ରୀରାମଚନ୍ଦ୍ର ଭବନ ଓ ଟାଉନ୍‌ହଲ୍‌ରେ ଅନୁଷ୍ଠିତ ବହୁ ସାରସ୍ୱତ ସନ୍ଧ୍ୟାର ସ୍ମୃତି ଏବେ ମଧ୍ୟ ସତେଜ ରହିଛି। ସେହିପରି ଗୋଟିଏ ସାରସ୍ୱତ ସନ୍ଧ୍ୟା ହେଉଛି ଓଡ଼ିଶାର ପ୍ରଥିତଯଶା ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଶ୍ରାଦ୍ଧ ସଭା। ଓଡ଼ିଶାର ବହୁ କୃତବିଦ୍ୟ ସନ୍ତାନ ସେ ସନ୍ଧ୍ୟାରେ ଟାଉନ୍‌ହଲ୍‌ରେ ଉପସ୍ଥିତ ଥିଲେ। ବରେଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ସୁରେନ୍ଦ୍ର ମହାନ୍ତି, ସଚ୍ଚି ରାଉତରାୟ, ମଧୁ ମହାନ୍ତି, ଗୌରୀକୁମାର ବ୍ରହ୍ମା ଏବଂ ରାଧାନାଥ ରଥ ଇତ୍ୟାଦି ଉପସ୍ଥିତ ଥିଲେ। ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏବଂ ଏକ ନିର୍ଦ୍ଦିଷ୍ଟ ସମୟରେ ଏକାଧିକ ସାରସ୍ୱତ ସାଧକମାନଙ୍କୁ ଦେଖିବା ଓ ଶୁଣିବାର ଅନୁଭବ ଅନିର୍ବଚନୀୟ। ମୋର କିଶୋର ପ୍ରାଣକୁ ଆଲୋଡ଼ିତ କଲା ଭଳି ଏପରି ବହୁ ଅନୁଭବ ମୁଁ ଟାଉନ୍‌ହଲ୍ ଓ ଶ୍ରୀରାମଚନ୍ଦ୍ର ଭବନ ସଭାଗୃହରୁ ପାଇପାରିଥିଲି।

ଗୋଟିଏ ଦିଗରେ ମୋ ଶ୍ରେଣୀ ଶିକ୍ଷକଙ୍କ ବିଦ୍ୱେଷରୁ ମୁକୁଳିବା ପାଇଁ ମୁଁ ସାହିତ୍ୟକୁ ଜାବୋଡ଼ି ଧରିବାର ପ୍ରୟାସ କରୁଥିବାବେଳେ ଅନ୍ୟ ଏକ ଦୃଷ୍ଟିକୋଣରୁ ମୁଁ ତାଙ୍କୁ ଭକ୍ତି କରୁଥିଲି। ତାହାର କାରଣ ହେଉଛି ଯେ ସେ ସ୍କୁଲ୍‌ରେ ଏକ ସୁନ୍ଦର ପରମ୍ପରାର ସୂତ୍ରପାତ କରିଥିଲେ।

ପ୍ରତି ସ୍କୁଲରେ ହୁଏତ ବର୍ଷକୁ ଥରେ ଗୋଟିଏ ଛପା ହୋଇଥିବା ମୁଖପତ୍ର ପ୍ରକାଶ ପାଏ। ଆମ ସ୍କୁଲ୍‌ରେ ମଧ୍ୟ "ଛାତ୍ର" ଶିରୋନାମା ଥାଇ ମୁଖପତ୍ରଟିଏ ପ୍ରକାଶ ପାଉଥିଲା। ଏଥିରେ କୌଣସି ବୈଚିତ୍ର୍ୟ ନାହିଁ। କିନ୍ତୁ ମୋର ସେହି ଶ୍ରେଣୀ ଶିକ୍ଷକ ଏକ ଅଭିନବ ପରମ୍ପରା ଆରମ୍ଭ କରିଥିଲେ।–ତାହା ହେଉଛି ପ୍ରତି ଶ୍ରେଣୀର ମୁଖପତ୍ର। ଏଇଟି ଛପା ହୋଇଥିବା ମୁଖପତ୍ର ନୁହେଁ, ହସ୍ତଲିଖିତ ମୁଖପତ୍ର। ପ୍ରତି ଶ୍ରେଣୀର ମୁଖପତ୍ରର ପୃଥକ୍ ପୃଥକ୍ ଶିରୋନାମା ରହିଥାଏ। ଷଷ୍ଠ ଶ୍ରେଣୀର ମୁଖପତ୍ରର ନାମ "କଳିକା" ହେବା ସ୍ଥଳେ ସପ୍ତମ ଶ୍ରେଣୀର ମୁଖପତ୍ରର ନାମ "ଅର୍ଚ୍ଚନା" ହୋଇପାରେ। ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରି ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତି ଶ୍ରେଣୀର ମୁଖପତ୍ର ପରମ୍ପରା ଥିଲା। ବର୍ଷରେ ଅନ୍ତତଃ ଥରେ ଦୁଇଥର ଏପରି ପତ୍ରିକାର ଆୟୋଜନ କରାଯାଉଥିଲା।

ଶ୍ରେଣୀ ଶିକ୍ଷକଙ୍କ ପ୍ରୋତ୍ସାହନରେ ସେହି ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କଠାରୁ ଲେଖା ସଂଗୃହୀତ ହେଲା ପରେ ଶ୍ରେଣୀ ଶିକ୍ଷକ କିମ୍ବା ସାହିତ୍ୟ ଶିକ୍ଷକ ଲେଖାଗୁଡ଼ିକୁ ପରଖି ନିଅନ୍ତି। ମାନଦଣ୍ଡକୁ ଆଖିରେ ରଖି ଅଳ୍ପ କେତୋଟି ଲେଖାକୁ ବାଦ୍ ଦିଆଯାଇପାରେ।

ଆଉ କିଛି ଲେଖାକୁ ସଂଶୋଧିତ କରାଯାଇପାରେ। ଏହାପରେ ନିର୍ବାଚିତ ଲେଖାଗୁଡ଼ିକୁ ଏକତ୍ର କରି ଭଲ ହସ୍ତାକ୍ଷର ଦକ୍ଷତା ଥିବା ପିଲାକୁ ଦିଆଯାଏ। ଏପରି ସମ୍ଭବ ନ ହେଲେ ବାହାରର କୌଣସି ଲୋକଙ୍କୁ ପାରିଶ୍ରମିକ ଦେଇ ଲେଖାଗୁଡ଼ିକ ଗୋଟିଏ ସୁନ୍ଦର ବାଇଣ୍ଡିଂ ଖାତାରେ ସ୍ଥାନିତ କରିବାକୁ କୁହାଯାଏ। ହସ୍ତ ଲିଖିତ ମୁଖପତ୍ରଟିକୁ ସୁନ୍ଦର ଓ ଆକର୍ଷଣୀୟ କରିବାକୁ ପୃଷ୍ଠାର ସ୍ଥାନେ ସ୍ଥାନେ ଚିତ୍ର ଦିଆଯାଏ। ଏଥିପାଇଁ ଚିତ୍ରଶିକ୍ଷୀଙ୍କ ସାହାଯ୍ୟ ମଧ୍ୟ ନିଆଯାଏ।

ହସ୍ତ ଲିଖିତ ମୁଖପତ୍ରଟି ପ୍ରସ୍ତୁତ ହେଲା ପରେ କୌଣସି ଏକ ଦିବସରେ ପ୍ରଧାନ ଶିକ୍ଷକଙ୍କୁ ସମାବେଶ ପାଇଁ ଅନୁରୋଧ କରାଯାଏ। ସେ ଦିନ ମୁଖପତ୍ରଟି ଉନ୍ମୋଚିତ ହୁଏ। ସାଧାରଣତଃ ଶନିବାର ଦିନଟି ସ୍କୁଲରେ ଅଧାଦିନର କାର୍ଯ୍ୟକ୍ରମ ଥିବାରୁ କୌଣସି ଏକ ଶନିବାରର ଅପରାହ୍ଣରେ ଉନ୍ମୋଚନ ଉତ୍ସବ ଅନୁଷ୍ଠିତ ହୁଏ। ସବୁ ଶିକ୍ଷକ ଶ୍ରେଣୀକୁ ଆସି ଗୋଲାକାର ହୋଇ ଚେୟାରରେ ବସନ୍ତି। ଛାତ୍ରଛାତ୍ରୀମାନେ ମଧ୍ୟ ଭାଗରେ କମ୍ବଳ ଉପରେ ବସନ୍ତି। ପ୍ରଧାନ ଶିକ୍ଷକ ଏ ସଭାରେ ପୌରହିତ୍ୟ କରନ୍ତ। ଆମସ୍ମିକ ଭାବେ ବାହାରର କୌଣସି ଅତିଥି ସେଦିନ ସ୍କୁଲକୁ ଆସିଥିଲେ ତାଙ୍କୁ ପୌରହିତ୍ୟ କରିବା ପାଇଁ ପ୍ରଧାନ ଶିକ୍ଷକ ଅନୁରୋଧ କରନ୍ତି। ପ୍ରଥମେ ଶ୍ରେଣୀ ଶିକ୍ଷକ ପ୍ରାରମ୍ଭିକ ସୂଚନା ଦିଅନ୍ତି। ତା'ପରେ ପ୍ରଧାନ ଶିକ୍ଷକ ମୁଖପତ୍ରରେ ଅଙ୍ଗୁଳି ଚାଳନା କରି ଗୋଟିଏ ଗଳ୍ପ, ଗୋଟିଏ କବିତା ଓ ଗୋଟିଏ ପ୍ରବନ୍ଧ ବାହାର କରି ସେଗୁଡ଼ିକର ଲେଖକ, ଲେଖିକାମାନଙ୍କୁ ପଢ଼ିବା ପାଇଁ ପରାମର୍ଶ ଦିଅନ୍ତି। ଏହାପରେ ପ୍ରଧାନ ଶିକ୍ଷକ ଉଦ୍‌ବୋଧନ ଦିଅନ୍ତି। ପିଲାମାନଙ୍କର ସୃଜନଶୀଳ ପ୍ରତିଭା କିପରି ବିକଶିତ ହେବ, ସେ ଦିଗରେ ପରାମର୍ଶ ଦିଅନ୍ତି। ପିଲାମାନଙ୍କୁ ସାହାଯ୍ୟ କରିଥିବା ଶିକ୍ଷକମାନଙ୍କୁ ଧନ୍ୟବାଦ ଦିଅନ୍ତି। ଜଳଯୋଗର ବ୍ୟବସ୍ଥା ହୋଇଥାଏ। ଶିକ୍ଷକ ଓ ଛାତ୍ରଛାତ୍ରୀ ସମସ୍ତେ ଆନନ୍ଦର ଅଂଶୀଦାର ହୁଅନ୍ତି।

ମୋର ସପ୍ତମ ଶ୍ରେଣୀର ଶ୍ରେଣୀ ଶିକ୍ଷକ ଏ ଯେଉଁ ପରମ୍ପରା ଆରମ୍ଭ କରିଥିଲେ ଆମ୍ଭେମାନେ ନିଷ୍ଠାର ସହିତ ତାହା ପାଳନ କରୁଥିଲୁ। ମୋର ମନେଅଛି ଯେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତିବର୍ଷ ଦୁଇ ଦୁଇଥର ଶ୍ରେଣୀ ମୁଖପତ୍ରର ପ୍ରସ୍ତୁତି ଓ ଉନ୍ମୋଚନ ଉତ୍ସବ ପାଳନ କରିଛୁ। ପ୍ରସ୍ତୁତ ମୁଖପତ୍ରଟି ଶ୍ରେଣୀର ପାଠାଗାରରେ ରଖା ଯାଉଥାଏ। ଶ୍ରେଣୀର ଛାତ୍ରଛାତ୍ରୀମାନେ ମନିଟର୍ ହାତରେ ଏହା ନେଇ ନିଜ ସମୟରେ ବ୍ୟବହାର କରନ୍ତି ଏବଂ ପୁନଶ୍ଚ ଫେରାଇ ଦିଅନ୍ତି। କହିବା ଅନାବଶ୍ୟକ ଯେ ବହୁ ଉନ୍ନତ ବିଦ୍ୟାଳୟମାନଙ୍କରେ ମଧ୍ୟ ଏପରି ସୁନ୍ଦର ପରିକଳ୍ପନା ସ୍ଥାନ ପାଇନାହିଁ। ଏହାର ଅନୁକରଣ ଓ ପ୍ରସାରଣ ନିଶ୍ଚିତ ଭାବରେ ସୃଜନଶୀଳ ପ୍ରୟାସର ଏକ ଅଂଶବିଶେଷ।

ମୁଁ ନବମ ଶ୍ରେଣୀ ସାରିବା ବେଳକୁ (ପ୍ରାୟ ଏପ୍ରିଲ ୧୯୬୩) ମୋର ବହୁ ଚର୍ଚ୍ଚିତ ଏହି ଶ୍ରେଣୀ ଶିକ୍ଷକ ମାରୱାଡ଼ି ସ୍କୁଲରୁ ଅନ୍ୟତ୍ର ଚାଲିଗଲେ। ଶୁଣିଲି ସେ ତାଙ୍କର ଗ୍ରାମ ନିକଟସ୍ଥ ଏକ ସ୍କୁଲକୁ ଶିକ୍ଷକତା ପାଇଁ ଚାଲି ଯାଇଛନ୍ତି। ବିକର୍ଷଣ-ଆକର୍ଷଣରେ ଏକ ଅଧ୍ୟାୟ ସେଇଠି ଅଟକି ରହିଲା।

ଏପ୍ରିଲ ମାସରେ ନବମ ଶ୍ରେଣୀର ପରୀକ୍ଷା ସରିଥାଏ। ଶୁଣିଲି ଆମର ସାହିତ୍ୟ ଶିକ୍ଷକ ରୂପେ ଶ୍ରୀ ବୀରକିଶୋର ପାଲ୍ ନାମକ ଜଣେ ଶିକ୍ଷକ ଯୋଗଦାନ କରିଛନ୍ତି। ମଇ ମାସର ପ୍ରଥମ ସପ୍ତାହରେ ସେ ଆମ ଶ୍ରେଣୀକୁ ଆସି ପଚାରିଲେ, "ଫକୀର ମୋହନ ମହାରଣା କିଏ? ମୁଁ ତାକୁ ସାହିତ୍ୟର ସର୍ବୋଚ୍ଚ ନମ୍ବର ଦେଇଛି।" ଛାତ୍ରଛାତ୍ରୀମାନେ ସମସ୍ୱରରେ କହିଲେ- "ଫକୀର ମୋହନ ମହାରଣା ନୁହେଁ ଫକୀର ମୋହନ ସାହୁ।" ଶିକ୍ଷକ ସମ୍ମତିସୂଚକ ଅଙ୍ଗଭଙ୍ଗୀ ଦେଖାଇଲେ। ମୁଁ ଠିଆ ହେଲି। ମୋର ଆନନ୍ଦର ସୀମା ରହିଲା ନାହିଁ। ମୁଁ ହାଇସ୍କୁଲରେ ସବୁବେଳେ ଶ୍ରେଣୀରେ ପ୍ରଥମ ହୋଇଛି, କିନ୍ତୁ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖି ପାରି ନ ଥିଲି। ପୂର୍ବତନ ସାହିତ୍ୟ ଶିକ୍ଷକଙ୍କ ମନୋବୃତ୍ତି ଯୋଗୁଁ ମୋର ପ୍ରତିଦ୍ୱନ୍ଦୀ ହିଁ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ପାଇ ପାରୁଥିଲା।

କେବଳ ସେତିକି ନୁହେଁ, ଦଶମ ଶ୍ରେଣୀରେ ଆମ ଶ୍ରେଣୀର ମୁଖପତ୍ର 'ବର୍ଣ୍ଣାଳୀ' ଉନ୍ମୋଚିତ ହେଲା। ସାହିତ୍ୟ ଶିକ୍ଷକ ଶ୍ରୀ ବୀରକିଶୋର ପାଲ୍ ଘୋଷଣା କଲେ ଯେ ସେ ତିନୋଟି ଶ୍ରେଷ୍ଠ ଲେଖାକୁ ପୁରସ୍କାର ପ୍ରଦାନ କରିବେ। ତାଙ୍କ ବିଚାରରେ ମୋ ଲିଖିତ ପ୍ରବନ୍ଧ "ଆମେ ସାହିତ୍ୟ କାହିଁକି ପଢ଼ିବା?" ପ୍ରଥମ ପୁରସ୍କାର ଲାଭ କଲା। ସମ୍ଭବତଃ ସ୍କୁଲ ଜୀବନର ଏହା ପ୍ରଥମ ପୁରସ୍କାର। ଉନ୍ମୋଚିତ ଉତ୍ସବରେ ପ୍ରଧାନ ଶିକ୍ଷକଙ୍କଠାରୁ ପୁରସ୍କାର ଗ୍ରହଣ କରିବାର ଘଟଣା ମୋତେ ଗଭୀର ଆନନ୍ଦ ଦେଇଥିଲା।

କେତେକ ବିରୁଦ୍ଧ ଶକ୍ତିର ସାମନା କରିବାକୁ ଯାଇ ମୋ ମନରେ ଯେଉଁ ସାହିତ୍ୟ ପ୍ରୀତିର ମାନସିକତା ଗଢ଼ି ଉଠିଥିଲା, ତା'ର ସୁଫଳ ଏବେ ବି ମୋତେ ଆଛନ୍ନ କରି ରଖିଛି।

❖

# କଳିଙ୍ଗ ଭାରତୀ ଭଞ୍ଜ ଜୟନ୍ତୀ

ଓଡ଼ିଆ ଭାଷା ଓ ସାହିତ୍ୟକୁ ଭଲ ପାଇବାର ସୁଦୀର୍ଘ ରାସ୍ତାରେ କଳିଙ୍ଗ ଭାରତୀ ଭଞ୍ଜ ଜୟନ୍ତୀ ମୋ ପାଇଁ ଗୋଟିଏ ଗତିସ୍ତମ୍ଭ। ଏହା ସହିତ ମୋର ସମ୍ପର୍କ ଗଭୀର ହେବା ପୂର୍ବରୁ ଅନ୍ୟ କିଛି ଘଟଣା ମୋର ଗତିଶୀଳତାକୁ ଅଧିକ କ୍ଷିପ୍ର କଲା।

ଆମ ସ୍କୁଲ ପରିପ୍ରେକ୍ଷୀରେ ଶ୍ରେଣୀର ମୁଖପତ୍ରରେ ସ୍ଥାନ ପାଉଥିବା ଲେଖା ମଧ୍ୟରେ ମୋର ପ୍ରବନ୍ଧଟି ପ୍ରଥମ ହୋଇ ପୁରସ୍କୃତ ହେବା ପରେ ମୋର ଆଗ୍ରହ ବହୁଗୁଣିତ ହୋଇ ଯାଇଥିଲା। ପ୍ରତିଦିନ ସନ୍ଧ୍ୟାରେ ପଢ଼ିଆରୀ ପାଠାଗାର ଟାଉନ୍ ହଲ୍ ଏବଂ ଶ୍ରୀରାମଚନ୍ଦ୍ର ଭବନରେ ସମୟ କାଟିବାର ବେଶ୍ ସୁଫଳ ମିଳିଛି ବୋଲି ଅନୁଭବ କଲି। ଏହା ପରେ ପରେ ଆଉ ଗୋଟିଏ ପ୍ରୀତିପ୍ରଦ ଘଟଣା ଘଟିଲା।

ମୁଁ ଯେଉଁ ମାରୱାଡ଼ି ହାଇସ୍କୁଲରେ ଅଧ୍ୟୟନ କରୁଥିଲି ସେହି ସ୍କୁଲର କେତେଜଣ ଶିକ୍ଷକ ନବଗଠିତ ଓଷ୍ଟାର (Orissa secondary school teachers' association) ଅଗ୍ରଣୀ ପଦାଧିକାରୀ ରହିଥିଲେ। ବିଶେଷତଃ ଶ୍ରୀ ଭଗବାନ ମିଶ୍ର, କୈଳାସ ଚନ୍ଦ୍ର ମହାପାତ୍ର ଓ ବିବେକାନନ୍ଦ ଦାଶଙ୍କ ନାମ ଉଲ୍ଲେଖଯୋଗ୍ୟ। ଭଗବାନ ବାବୁ ଜଣେ ଧୂରୀଣ ଗଣିତ ଶିକ୍ଷକ ଓ ପରିଚାଳନା ଦକ୍ଷ ଅଭିଜ୍ଞ ଶିକ୍ଷକ। କୈଳାସ ବାବୁଙ୍କର ଇଂରାଜୀରେ ବେଶ୍ ଦକ୍ଷତା ଥିଲା। ବିବେକାନନ୍ଦ ବାବୁ ଆମର ସାହିତ୍ୟ ପଢ଼ାଉଥିବାରୁ ତାଙ୍କ ସହିତ ମୋର ଅଧିକ ସମ୍ପୃକ୍ତି ରହିଥିଲା।

ନୂତନ ଭାବରେ ଗଠିତ ଏହି ରାଜ୍ୟ ଶିକ୍ଷକସଂଘ ସେତେବେଳେ ବିଦ୍ୟାଳୟକୁ ଛାତ୍ରଛାତ୍ରୀଙ୍କୁ ଉତ୍ସାହିତ କରିବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଓ ପ୍ରତିଯୋଗିତାର ଆୟୋଜନ କରୁଥିଲେ। ଥରେ ବିବେକାନନ୍ଦ ବାବୁ ଆମକୁ ସୂଚନା ଦେଲେ ଯେ ଓଷ୍ଟା ପକ୍ଷରୁ ଏକ ବିରାଟ ପ୍ରତିଯୋଗିତାର ଆୟୋଜନ କରାଯାଉଛି। କିଛି ଶିକ୍ଷକଙ୍କ ପରାମର୍ଶ କ୍ରମେ ସେ ଆମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରୁଥିବା ଦୁର୍ଗା ପ୍ରସାଦ ମହାନ୍ତି ଓ ମୋତେ ଏହି ପ୍ରତିଯୋଗିତା ପାଇଁ ମନୋନୀତ କଲେ। ପ୍ରତିଯୋଗିତାର ସ୍ଥାନ ଥିଲା ରେଭେନ୍ସା କଲେଜିଏଟ୍। ନିର୍ଦ୍ଦିଷ୍ଟ ଦିନ ଆମେ ଦୁଇଜଣ ବିବେକାନନ୍ଦ ସାର୍‌ଙ୍କ ସହିତ ସେଠାକୁ ଗଲୁ। ଓଡ଼ିଆ ପ୍ରବନ୍ଧରେ ଭାଗ ନେବା ପାଇଁ ସେ ସ୍ଥିର କରିଥିଲେ। ସେଠାରେ ପହଞ୍ଚି ଶୁଣିବାକୁ ପାଇଲୁ ଯେ ପ୍ରତିଯୋଗୀଙ୍କ ସଂଖ୍ୟା ଖୁବ୍ ବେଶୀ ଥିବାରୁ ପ୍ରତି ସ୍କୁଲରୁ କେବଳ ଜଣେ ପ୍ରତିଯୋଗୀ ଅଂଶ ନେଇପାରିବେ ବୋଲି ଆୟୋଜକମାନେ ସ୍ଥିର କରିଛନ୍ତି। ଆମେ ଦୁଇଜଣ ବିବେକାନନ୍ଦ

ସାରଙ୍କ ନିଷ୍ପତ୍ତି ଶୁଣିବାକୁ ଇଚ୍ଛା ପ୍ରକାଶ କଲୁ। ସେ ପରାମର୍ଶ ଦେଲେ ଯେ ଦୁର୍ଗା ଓଡ଼ିଆ ପ୍ରବନ୍ଧ ପାଇଁ ପ୍ରତିଯୋଗିତାରେ ଭାଗ ନେବ। ମୁଁ ତର୍କ (Debate)ପ୍ରତିଯୋଗିତାରେ ଭାଗ ନେବି।

ମନ୍ଦ ନୁହେଁ, ମୁଁ ରାଜି ହେଲି। ପ୍ରବନ୍ଧ ସମ୍ପର୍କରେ ମୋର ଧାରଣା ଥିଲା। ମାତ୍ର ତର୍କ ପ୍ରତିଯୋଗିତାରେ ବିଚାରକମାନେ କ'ଣ ଦେଖିବେ ସେ ବିଷୟରେ ମୋର ସ୍ପଷ୍ଟ ଧାରଣା ନ ଥିଲା। ତଥାପି କିଛି ନ କରି ସେଠାରୁ ଫେରିଯିବା ବଦଳରେ ପ୍ରତିଯୋଗିତାର ସମ୍ଭାବନା ମୋତେ ଆନନ୍ଦ ଦେଲା।

ସମୟଟି ହେଉଛି ଚୀନାମାନେ ଭାରତ ସୀମାନ୍ତର ଯୁଦ୍ଧ ପରିସ୍ଥିତି ସୃଷ୍ଟି କରିଥିବାର ବେଳକାଳ। ଏପରି ଏକ ପରିବେଶରେ ଆୟୋଜକମାନେ ତର୍କ ବିଷୟ ରଖିଥିଲେ:ବର୍ତ୍ତମାନ ପରିସ୍ଥିତିରେ ଶାରୀରିକ ଶିକ୍ଷା ବାଧ୍ୟତାମୂଳକ ହେବା ଉଚିତ୍। ପ୍ରତିଯୋଗୀଙ୍କ ସଂଖ୍ୟା କମ୍ ନୁହେଁ, ତଥାପି ଉତ୍ସାହର ସହିତ ମୁଁ ଯୋଗଦେଲି ଏବଂ ଦ୍ୱିତୀୟ ସ୍ଥାନ ଅଧିକାର କଲି। ଦୁର୍ଗା ପ୍ରବନ୍ଧରେ ସଫଳତା ପାଇ ନ ଥିଲା। ବିବେକାନନ୍ଦ ବାବୁ ଖୁବ୍ ଖୁସୀ ହେଲେ। ଅଳ୍ପଦିନ ବ୍ୟବଧାନ ପରେ ଓଷ୍ଟାର ବାର୍ଷିକ ଉତ୍ସବରେ ଶ୍ରୀରାମଚନ୍ଦ୍ର ଭବନରେ ପୁରସ୍କାର ଗ୍ରହଣ କରିବାରେ ମାଦକତା ଥିଲା। ଯେଉଁ ଶ୍ରୀରାମଚନ୍ଦ୍ର ଭବନରେ ଦିନ ଦିନ ଧରି ଶ୍ରୋତା ହିସାବରେ ମୁଁ ଭାଷଣ ଶୁଣିଛି ତାହାର ମଞ୍ଚ ଉପରକୁ ଉଠି ପୁରସ୍କାର ଗ୍ରହଣ କରିବାର ଅନୁଭୂତି ଅନନ୍ୟ। ପୁରସ୍କାର ସ୍ୱରୂପ ଦୁଇଟି ସୁନ୍ଦର ବହି ପାଇଥିଲି। କବିବର ରାଧାନାଥ ରାୟଙ୍କ ଗ୍ରନ୍ଥାବଳୀ ଓ ଶ୍ରୀହର୍ଷ ମିଶ୍ରଙ୍କ ଭ୍ରମଣ କାହାଣୀ "ପଶ୍ଚିମ ଦିଗନ୍ତ"। ରାଧାନାଥ ଗ୍ରନ୍ଥାବଳୀ ମୁଁ ବହୁବାର ପାଠ କରିଛି ଏବଂ ମୋର ପ୍ରିୟ ପଂକ୍ତିସବୁ ଏବେ ମଧ୍ୟ ମନେ ରଖିଛି।

ଏ ଘଟଣାଟି ପରେ ମୋ ମନର ରାଡ଼ାର ସବୁବେଳେ ଉନ୍ମୁଖ ଥାଏ ତର୍କ ଓ ସାହିତ୍ୟ ବିଷୟକ ପ୍ରତିଯୋଗିତାର ସୂଚନା ପାଇଁ। ଖବରକାଗଜ ପଢ଼ିବା ସମୟରେ ଏପରି ସୂଚନା ପାଇଲେ ମୁଁ ଆଗ୍ରହ ପ୍ରକାଶ କରେ। ଆଖପାଖରେ ପ୍ରତିଯୋଗିତାର ସ୍ଥଳ ହୋଇଥିଲେ ମୁଁ ସେଠାକୁ ଚାଲିଯାଏ। ପ୍ରବନ୍ଧ କିମ୍ବା ଅନ୍ୟ କିଛି ଲେଖାର ଆହ୍ୱାନ ଥିଲେ ମୁଁ ଲେଖାଟି ଶେଷ କରି ପୋଷ୍ଟ୍ କରି ନିର୍ଦ୍ଦିଷ୍ଟ ଠିକଣାରେ ପଠାଇଦିଏ। ଏପରି ସଫଳତାର ମାତ୍ରା କମ୍ ନୁହେଁ। ଛଟଣୀ ରେଲୱେ ଭଞ୍ଜ ଜୟନ୍ତୀ କମିଟି ଆୟୋଜିତ ପ୍ରବନ୍ଧ ପ୍ରତିଯୋଗିତାର ପ୍ରଥମ ପୁରସ୍କାର ରୂପେ ପାଇଥିବା (ପୋଷ୍ଟ୍ ଯୋଗେ) "ବୈଦେହୀଶ ବିଳାସ"ର ଚାରିଖଣ୍ଡ ଏବେ ମଧ୍ୟ ମୋ ପୁସ୍ତକାଗାରରେ ରହିଛି।

କଟକରେ ଅନୁଷ୍ଠିତ କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀ ଉତ୍ସବ ପ୍ରତି ମୋର ଆକର୍ଷଣ ପଛରେ ଲୁଚି ରହିଥିବା ଘଟଣା ଖୁବ୍ ଚମତ୍କାର। ମୋର ଅନ୍ତରଙ୍ଗ ବନ୍ଧୁ

ତାପସ ଘୋଷ (ଯେ କି ପରବର୍ତ୍ତୀ ସମୟରେ ଜଣେ ସଫଳ ନାଟ୍ୟଶିଳ୍ପୀ ରୂପେ ସ୍ୱୀକୃତି ଓ ଶ୍ରଦ୍ଧା ପାଉଛନ୍ତି) ତଗରପଡ଼ାର ବ୍ରାହ୍ମଣ ସାହିରେ ରୁହନ୍ତି। ମୁଁ ବନ୍ଧୁ ସମୟରେ ଏହି ବନ୍ଧୁଙ୍କ ଘରକୁ ଯାଏ। ଆମର କାଠଗଡ଼ା ସାହି ବାସଭବନରେ ତାପସର ଘରକୁ ଯିବା ସମୟରେ ରାସ୍ତାରେ ତଗରପଡ଼ାରେ ଗୋଟିଏ ସୁନ୍ଦର ଚାଳଘର ଆଖିରେ ପଡ଼େ। ଘରର ଦ୍ୱାର ଦେଶରେ ଛୋଟ ସୁଦୃଶ୍ୟ ଫଳକଟିଏ ଲାଗିଥିବାର ଦେଖାଯାଏ। ଫଳକରେ ଲେଖାଥାଏ: କଳିଙ୍ଗ ଭାରତୀ; ବିଚ୍ଛନ୍ଦ ଚରଣ ପଟ୍ଟନାୟକ। "କଳିଙ୍ଗ ଭାରତୀ" ଏକ ଅନୁଷ୍ଠାନ ଏବଂ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଜଣେ ବିଶିଷ୍ଟ କବି- ଏତିକି ମାତ୍ର ମୋର ଧାରଣା ଥିଲା। ଏହାଠାରୁ ଅଧିକ କିଛି ଧାରଣା ନ ଥିଲା। ରାସ୍ତାରେ ସାଇକେଲ୍‌ରେ ତାପସ ଘରକୁ ଯିବା ସମୟରେ ଦକ୍ଷିଣ ପାର୍ଶ୍ୱରେ ଏହି ଘରଟିର ସହଜ ସରଳ ପରିବେଶ ଦୃଷ୍ଟି ଆକର୍ଷଣ କରୁଥିଲା।

ସାହିତ୍ୟ ବିଷୟକ ପ୍ରତିଯୋଗିତାର ଭାଗନେବା ପାଇଁ ଆତୁରତା ଥିବା ସମୟରେ ଖବର କାଗଜରେ ଗୋଟିଏ ବିଜ୍ଞାପନରେ ଆଖି ପଡ଼ିଲା। କଳିଙ୍ଗ ଭାରତୀର ଆଗାମୀ ଭଞ୍ଜ ଜୟନ୍ତୀ ଉତ୍ସବ ପାଳନ ଉପଲକ୍ଷେ ପ୍ରବନ୍ଧ ଓ କବିତା ପ୍ରତିଯୋଗିତାର ଆୟୋଜନ କରାଯାଉଛି। ପ୍ରବନ୍ଧର ବିଷୟ ବସ୍ତୁଥିଲା ଭଞ୍ଜ ସାହିତ୍ୟରେ ସର୍ବୋତ୍ତମ ନାୟକ ଏବଂ କବିତାଟି ଚୋଖି ବୃତ୍ତରେ ବସନ୍ତ ଋତୁର ବର୍ଣ୍ଣନା ହୋଇଥିବା ଆବଶ୍ୟକ। ଲେଖିବାର ପ୍ରସ୍ତୁତି ସମୟରେ ଜାଣିବାକୁ ପାଇଲି ଯେ ବିଚ୍ଛନ୍ଦ ଚରଣ ହେଉଛନ୍ତି କଳିଙ୍ଗ ଭାରତୀ ଅନୁଷ୍ଠାନର ପ୍ରତିଷ୍ଠାତା।

ଏ କଥା ମଧ୍ୟ ଜାଣିଥିଲି ଯେ କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକ ତାଙ୍କ ପ୍ରତିଷ୍ଠିତ କଳିଙ୍ଗ ଭାରତୀ ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟ ଜଗତରେ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାର ପ୍ରାଣକେନ୍ଦ୍ର ହେଉଛି ସ୍ୱର ଓ ଛନ୍ଦ। ଚୋଖି, ବଙ୍ଗଳାଶ୍ରୀ ଓ ଶଙ୍କରାଭରଣ ପ୍ରଭୃତି ଛନ୍ଦ ମାଧ୍ୟମରେ ଯେ କୌଣସି ଭାବଧାରାକୁ ପ୍ରକାଶ କରାଯାଇପାରେ ବୋଲି ତାଙ୍କର ବିଶ୍ୱାସ ଥିଲା। ଏ ଦୃଷ୍ଟିରୁ ଅମିତ୍ରାକ୍ଷର ଛନ୍ଦ ଓ ଛନ୍ଦହୀନ କବିତାର ସେ ଘୋର ବିରୋଧୀ ଥିଲେ। ଆମର ପାରମ୍ପରିକ ଛନ୍ଦ ପ୍ରୟୋଗ କରି କବିତା ଲେଖିବା ପାଇଁ ସେ ନବପିଢ଼ିକୁ ଆହ୍ୱାନ ଜଣାଉଥିଲେ। ମୁଁ ଶୁଣିବାକୁ ପାଇଥିଲି ଯେ ଏ ଧରଣର କବିତା ପାଠୋତ୍ସବ ସେ ବହୁବାର କଟକର ଟାଉନହଲ୍ ଓ ଶ୍ରୀରାମଚନ୍ଦ୍ର ଭବନରେ ଆୟୋଜନ କରିଥିଲେ। ଅବଶ୍ୟ ଏପରି ଉତ୍ସବର ଆନନ୍ଦ ନେବାର ସୌଭାଗ୍ୟ ମୋର ପୂର୍ବରୁ ଘଟି ନ ଥିଲା।

ବର୍ତ୍ତମାନ କଳିଙ୍ଗ ଭାରତୀ ପକ୍ଷରୁ ଆୟୋଜିତ ପ୍ରବନ୍ଧ ଓ କବିତା ପ୍ରତିଯୋଗିତାରେ ଅଂଶ ନେବା ପାଇଁ ଗଭୀର ଉନ୍ମାଦନା ରହିଥିଲା। ମନଯୋଗ ସହକାରେ ଲେଖିଲି। ମାତ୍ର କଳିଙ୍ଗ ଭାରତୀ ଠିକଣାରେ ସମୟସୀମା ପୂର୍ବରୁ ପଠାଇବା ସମ୍ଭବ ହେଲା

ନାହିଁ। ଘୋଷିତ ହୋଇଥିବା ଶେଷ ତାରିଖ ଦିନ ହିଁ ଲେଖା ଦୁଇଟି ସମାପ୍ତ ହେଲା। ମୁଁ ବିଶେଷ ଚିନ୍ତିତ ନ ଥିଲି, କାରଣ ମୋର ସାଇକେଲ୍ ଚଲା ରାସ୍ତାରେ କଳିଙ୍ଗ ଭାରତୀର ଫଳକଟି ଦେଖିଥିଲି। ସନ୍ଧ୍ୟାବେଳେ ମୁଁ ଲେଖା ଦୁଇଟି ଧରି ଡଗରପଡ଼ା ଗଲି। କଳିଙ୍ଗ ଭାରତୀ ଫଳକ ଲାଗିଥିବା ଦ୍ୱାରରେ କରାଘାତ କରିବା ପରେ ପଚିଶ ତିରିଶ ବର୍ଷର ଜଣେ ଯୁବକ ବାହାରିଲେ। ପୋଷାକପତ୍ର ଖୁବ୍ ସାଧାସିଧା। କଥାବାର୍ତ୍ତା ଖୁବ୍ ଧୀର ଓ ନମ୍ର। ମୁଁ ଧୀର ସ୍ୱରରେ କହିଲି: କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀ ଉପଲକ୍ଷେ ଅନୁଷ୍ଠିତ ହେଉଥିବା ପ୍ରତିଯୋଗିତାର ଲେଖା ଦୁଇଟି ଦେବା ପାଇଁ ମୁଁ ଆସିଥିଲି। ବିଚ୍ଛନ୍ଦବାବୁଙ୍କ ସହିତ ଦେଖା ହେଲେ ଭଲ ହୁଅନ୍ତା। ସେ କହିଲେ: ବେଶ୍ କିଛି ବର୍ଷ ପୂର୍ବେ ବିଚ୍ଛନ୍ଦବାବୁଙ୍କର ଦେହାନ୍ତ ହୋଇସାରିଛି। ମୁଁ ତାଙ୍କର ପୁଅ। ମୁଁ ଆପଣଙ୍କର ଲେଖା ଦୁଇଟି ଗ୍ରହଣ କରି ରଜତବାବୁଙ୍କ ପାଖକୁ ପଠାଇ ଦେଇପାରିବି। ମାତ୍ର ଆପଣ ରଜତବାବୁଙ୍କୁ ଦେଖା କଲେ ଭଲ ହେବ। ବର୍ତ୍ତମାନ କଳିଙ୍ଗ ଭାରତୀର ସମସ୍ତ ଆନୁଷ୍ଠାନିକ କାର୍ଯ୍ୟ ଅଧ୍ୟାପକ ରଜତ କୁମାର କର ବୁଝୁଛନ୍ତି। ଆଗାମୀ ଭଞ୍ଜଜୟନ୍ତୀ ପାଇଁ ନିକଟସ୍ଥ ଅନ୍ନପୂର୍ଣ୍ଣା ପ୍ରେସ୍‌ରେ ସ୍ମରଣିକାର ଛାପା କାର୍ଯ୍ୟ ଚାଲିଛି। ସେ ନିଶ୍ଚୟ ସେଠାରେ ଥିବେ। ଆପଣ ବରଂ ସେଠାକୁ ଯାଇ ଲେଖା ଦୁଇଟି ତାଙ୍କୁ ଦେଇ ଦିଅନ୍ତୁ। ଏହା କହି ସେ ଟିକିଏ ବାହାରକୁ ଆସି ଅନ୍ନପୂର୍ଣ୍ଣା ପ୍ରେସ୍‌ର ଅବସ୍ଥିତି ବୁଝାଇଦେଲେ।

ଅନ୍ନପୂର୍ଣ୍ଣା ପ୍ରେସ୍ ଦିଗରେ ଚାଲିଲି। ସେଠାରେ ପହଞ୍ଚିବାରେ ଅସୁବିଧା ହେଲା ନାହିଁ। ରଜତବାବୁଙ୍କୁ ଭେଟିଲି। ଗୌରବର୍ଣ୍ଣ ଦୀପ୍ତିମନ୍ତ ଚେହେରା। କଥାବାର୍ତ୍ତା ଖୁବ୍ ଭଦ୍ରୋଚିତ। ମୋ ସହିତ ଦଶମିନିଟ୍ କଥାବାର୍ତ୍ତା କଲେ। ମୁଁ ଜଣେ ସ୍କୁଲ ଛାତ୍ର ହେଲେ ମଧ୍ୟ ଭଞ୍ଜ ସାହିତ୍ୟ ସହିତ ଅନ୍ତତଃ କିଛିମାତ୍ରାରେ ପରିଚିତ ରହିଛି, ଏହା ଜାଣି ନିଜର ଗଭୀର ଆନନ୍ଦ ପ୍ରକାଶ କଲେ। ଭଞ୍ଜ ଜୟନ୍ତୀ ଉତ୍ସବକୁ ନିଶ୍ଚୟ ଆସିବାକୁ ମୋତେ କହିଲେ। ସେ ବର୍ଷ ନାରୀସଂଘ ସଦନରେ ଅନୁଷ୍ଠିତ ହେବ ବୋଲି ପ୍ରାକ୍ ସୂଚନା ଦେଲେ। ସେଦିନ ସନ୍ଧ୍ୟାରେ ଏକ ସୁନ୍ଦର ଅନୁଭବ ନେଇ ମୁଁ ଅନ୍ନପୂର୍ଣ୍ଣା ପ୍ରେସ୍‌ରୁ ଘରକୁ ଫେରିଲି।

ଆନନ୍ଦକୁ ବହୁଗୁଣିତ କଲାଭଳି ଆଉ ଗୋଟିଏ ଘଟଣା ଭଞ୍ଜଜୟନ୍ତୀ ଉତ୍ସବର ଅବ୍ୟବହିତ ପୂର୍ବରୁ ଘଟିଲା। ସେତେବେଳେ କଳିଙ୍ଗ ଭାରତୀ ଭଞ୍ଜ ଜୟନ୍ତୀ ଉତ୍ସବ ପାଇଁ କଟକରେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନ ନିରୂପିତ ହୋଇ ନ ଥିଲା। ଏହି ଉତ୍ସବ ପ୍ରତିବର୍ଷ ମଇ ୧୫ ତାରିଖରୁ ୨୨ ତାରିଖ ପର୍ଯ୍ୟନ୍ତ ପ୍ରତିଦିନ ସନ୍ଧ୍ୟାରେ ଆୟୋଜନ କରାଯାଏ। କେବେ କେବେ ନାରୀ ସଂଘ ସଦନରେ, କେବେ ଅନ୍ନପୂର୍ଣ୍ଣା ଥିଏଟର ମଞ୍ଚରେ ଅନୁଷ୍ଠିତ ହୁଏ। ସେ ବର୍ଷର ଉତ୍ସବର ଆରମ୍ଭ ନାରୀ ସଂଘ

ସଦନରେ ଆରମ୍ଭ ହୋଇଥାଏ। ଦିନେ ଦୁଇଦିନ ପରେ ଖବର କାଗଜରେ ଦେଖିବାକୁ ପାଇଲି ଯେ ଉତ୍ସବର କୌଣସି ଏକ ଅପରାହ୍ଣରେ ବକ୍ତୃତା ପ୍ରତିଯୋଗିତାର ଆୟୋଜନ କରାଯାଇଛି। କିନ୍ତୁ କଲେଜ ଓ ସ୍କୁଲ ପାଇଁ ପୃଥକ୍ ପୃଥକ୍ ବିଭାଗ ନାହିଁ, ତଥାପି ଭାଗ ନେବା ପାଇଁ ମନସ୍ଥ କଲି।

ନିର୍ଦ୍ଦିଷ୍ଟ ସମୟରେ ସଭା ଗୃହରେ ପହଞ୍ଚିବା ପରେ ଲକ୍ଷ୍ୟ କଲି ଯେ ବାତାବରଣଟି ତୀବ୍ର ପ୍ରତିଦ୍ୱନ୍ଦିତାର ଆବାହାଓ୍ୱାରେ ପୂର୍ଣ୍ଣ। ମୁଁ ଏକମାତ୍ର ସ୍କୁଲ ଛାତ୍ର। ପ୍ରତିଯୋଗୀ ସଂଖ୍ୟା କମ୍ ନୁହେଁ। ପ୍ରତିଯୋଗୀ ମଧ୍ୟରେ କେତେକ ଜଣାଶୁଣା ବ୍ୟକ୍ତିତ୍ୱ ମଧ୍ୟ ରହିଛନ୍ତି। ସ୍ନାତକୋତ୍ତର ସ୍କୁଲରେ ଅଧ୍ୟୟନ କରୁଥିବା ଶ୍ରୀ ଦେବଦାସ୍ ଛୋଟରାୟ, ଭାଗଗ୍ରାହୀ ଭୂୟାଁ, କୃଷ୍ଣ ଚନ୍ଦ୍ର ଭୂୟାଁ ଓ ଭାରତେନ୍ଦୁସୁନ୍ଦର ରାଜଗୁରୁ ମହାପାତ୍ର ପ୍ରତିଯୋଗୀମାନଙ୍କ ତାଲିକାରେ ରହିଥିଲେ। ଡର ଲାଗିଲା ଖୁସି ବି ଲାଗିଲା। ରଜତ ବାବୁ ବକ୍ତୃତାର ବିଷୟ ବସ୍ତୁ ଘଣ୍ଟାଏ ପୂର୍ବରୁ ଘୋଷଣା କଲେ। ବିଷୟବସ୍ତୁ ଚମତ୍କାର: "ବିମଳ ରାଜନୀତିର ବିକାଶ ପାଇଁ ସାହିତ୍ୟିକ ରାଜନୀତିଜ୍ଞ ହେବା ଆବଶ୍ୟକ।" ପୁଣି ଶୁଣିଲି ଯେ ବିଚାରକ ମଣ୍ଡଳୀରେ ବିଦ୍ୱାନ ବ୍ୟକ୍ତିମାନେ ଅଛନ୍ତି। ବିଶିଷ୍ଟ ଔପନାସିକ ଶ୍ରୀ ବିଭୂତି ପଟ୍ଟନାୟକ ଏହି ବିଚାରକମଣ୍ଡଳୀର ଅଧ୍ୟକ୍ଷ।

କିଛି ମାସ ପୂର୍ବରୁ ଓଷ୍ଟାର ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ପ୍ରବେଶ ପରେ ପରେ ଏହା ଦ୍ୱିତୀୟ ଆହ୍ୱାନ। କେବଳ ଗୋଟିଏ ସାଧାରଣ ବିଭାଗର ପରିପ୍ରେକ୍ଷୀରେ ପ୍ରତିଯୋଗୀତା ହେଉଥିବାରୁ ସଫଳତାର ମାତ୍ରା ଏତେ ଉଚ୍ଚସ୍ତରୀୟ ହେବ ବୋଲି କଳ୍ପନା କରି ନଥିଲି। ମୁଁ ଦ୍ୱିତୀୟ ସ୍ଥାନ ଅଧିକାର କଲି। ଦେବଦାସ ବାବୁ ପ୍ରଥମ ହୋଇଥିଲେ। ସେହି ବର୍ଷ ମୁଁ ମୋର ପ୍ରବନ୍ଧ ଓ କବିତା ପାଇଁ ମଧ୍ୟ ପୁରସ୍କୃତ ହୋଇଥିଲି। ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ମୋର ସ୍ନାତକୋତ୍ତର ଶିକ୍ଷାର ଶେଷ ପର୍ଯ୍ୟନ୍ତ ମୁଁ ପ୍ରାୟ ଦୁଇବର୍ଷରୁ ଅଧିକ ବକ୍ତୃତା ପ୍ରତିଯୋଗୀତାରେ ଅଂଶ ଗ୍ରହଣ କରିଛି। ୧୯୭୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ବାଗ୍ମୀ ରୂପେ ଶ୍ରୀରାମଚନ୍ଦ୍ର ଭଞ୍ଜ ସ୍ୱର୍ଣ୍ଣପଦକ ହାସଲ କରିଛି। କିନ୍ତୁ ୧୯୬୩ ମସିହାରେ ଏହି ଭଞ୍ଜଜୟନ୍ତୀ ବକ୍ତୃତା ପ୍ରତିଯୋଗୀତାରେ ସଫଳତା ମୋତେ ସର୍ବାଧିକ ସଫଳତା ଆନନ୍ଦ ଦେଇଥିଲା ବୋଲି ମୁଁ ଅନୁଭବ କରେ।

ପ୍ରତିଯୋଗିତା ପ୍ରେରିତ ହୋଇ କଳିଙ୍ଗଭାରତୀ ସହିତ ଯେଉଁ ଆତ୍ମିକ ସମ୍ପର୍କର ଆରମ୍ଭ ହେଲା ତାହା ବହୁବର୍ଷ ଧରି ବଳବତ୍ତର ରହିଥିଲା। ୧୯୭୦ ମସିହାରେ ମୁଁ ସ୍ନାତକୋତ୍ତର ଅଧ୍ୟୟନ ପାଇଁ ବାଣୀବିହାର ଆସିବା ପର୍ଯ୍ୟନ୍ତ ପ୍ରତିବର୍ଷ ମଇମାସର ୭/୮ ଦିନ ସନ୍ଧ୍ୟାରେ ମୁଁ ଭଞ୍ଜଜୟନ୍ତୀ ଉତ୍ସବରେ ସାମିଲ ହେଉଥିଲି। ବିଭିନ୍ନ ପ୍ରତିଯୋଗିତାରେ ଅଂଶ ନେଇ ସଫଳତାର ସ୍ୱାଦ ଅନୁଭବ କରୁଥିଲି। ରଜତବାବୁଙ୍କ

ସ୍ୱାକ୍ଷର ଥିବା ଅନ୍ତତଃ କୋଡ଼ିଏ ତିରିଶଟି ପ୍ରଶଂସା ପତ୍ର ଏବେ ମଧ୍ୟ ମୋ ପାଖରେ ରହିଥିବ। ଏତଦ୍‌ବ୍ୟତୀତ ପ୍ରତିଦିନ ସନ୍ଧ୍ୟାରେ ଖ୍ୟାତନାମା ଶିଳ୍ପୀ ଶ୍ୟାମାମଣୀ ଦେବୀଙ୍କ ଓଡ଼ିଶୀ ଛାନ୍ଦ ଶୁଣିବାର ତୃପ୍ତି ମିଳେ। ରାତି ଦଶଟା ପର୍ଯ୍ୟନ୍ତ ପ୍ରଖ୍ୟାତ ବାଗ୍ମୀମାନଙ୍କର ଭଞ୍ଜ ସାହିତ୍ୟର ଚର୍ଚ୍ଚା ଶୁଣେ। କେତେକ ବିଶିଷ୍ଟ ବକ୍ତାଙ୍କର କଥା ଏବେ ମଧ୍ୟ ଝଙ୍କୃତ ହୁଏ। ପ୍ରାଣନାଥ ମହାନ୍ତି ଓ ଜୟକୃଷ୍ଣ ମିଶ୍ରଙ୍କ ବାଗ୍ମିତା ହୃଦୟସ୍ପର୍ଶୀ। ଶ୍ରୀ କାଳିଚରଣ ପଟ୍ଟନାୟକ ବକ୍ତବ୍ୟ ରଖନ୍ତି ଯେ ଉପେନ୍ଦ୍ରଭଞ୍ଜ କେବଳ କବି ସମ୍ରାଟ ନୁହଁନ୍ତି, ସଂଗୀତ ସମ୍ରାଟ ମଧ୍ୟ। ଅନନ୍ୟ ଶୈଳୀରେ ରଜତବାବୁ ବୁଝାଇ ଦିଅନ୍ତି ଯେ ଉପେନ୍ଦ୍ରଭଞ୍ଜ ଶ୍ରୀରାମଙ୍କ ଆରାଧନା କରି କେବଳ ରାମକଥା କହିନାହାଁନ୍ତି, ସେ ଶ୍ରୀକୃଷ୍ଣଙ୍କ ଲୀଳା ମଧ୍ୟ ରୂପାୟନ କରିଛନ୍ତି। ଏ ପରିପ୍ରେକ୍ଷୀରେ ସେ କେଳି କଉତୁକର ପ୍ରସଙ୍ଗ ଅବତାରଣା କରନ୍ତି। ଅନ୍ୟମାନଙ୍କ ମଧ୍ୟରେ ଶରତ କୁମାର କର, ଅଜିତ କୁମାର କର, ଶୈଳେଶ୍ୱର ନନ୍ଦଙ୍କ ଉପସ୍ଥାପନା ଗଭୀର ଆକର୍ଷଣ ସୃଷ୍ଟି କରୁଥିଲା। ସେତେବେଳେ ମୁଁ ଶୁଣିବାକୁ ପାଉଥିଲି ଯେ ଭଞ୍ଜସାହିତ୍ୟ ଓ ପ୍ରାଚୀନ ସାହିତ୍ୟର ଅନ୍ୟତମ ଧୂରୀଣ ବକ୍ତା ହେଉଛନ୍ତି ହୃଦାନନ୍ଦ ରାୟ। ମାତ୍ର ଅଧ୍ୟାପକ ହିସାବରେ ସେ ସେତେବେଳେ ଜୟପୁର (କୋରାପୁଟ) ପରି ଦୂର ସ୍ଥାନରେ ଅବସ୍ଥାପିତ ଥିବାରୁ କଟକର ଭଞ୍ଜଜୟନ୍ତୀରେ ମୁଁ ତାଙ୍କୁ ଦେଖିବାର ସୁଯୋଗ ପାଉ ନ ଥିଲି।

ପୁରସ୍କାର ଓ ଅନ୍ୟ କେତେକ ସୂତ୍ରରେ ମୁଁ ପାଇଥିବା ଭଞ୍ଜ ସାହିତ୍ୟର ସମୀକ୍ଷା ପାଠ କରି ମୋର ହୃଦ୍‌ବୋଧ ହେଲା ଯେ ଭଞ୍ଜସାହିତ୍ୟର ପ୍ରଚାର ପ୍ରସାର ମାଧ୍ୟମରେ ବିଚ୍ଛନ୍ଦବାବୁ ଏକ ସାଂସ୍କୃତିକ ଆନ୍ଦୋଳନର ସୂତ୍ରପାତ କରିଥିଲେ। ତାଙ୍କର ଦକ୍ଷ ତତ୍ତ୍ୱାବଧାନରେ ଯେଉଁ ଦୁଇଜଣ କିଶୋର ଅଗ୍ରଦୂତର ଭୂମିକା ନିର୍ବାହ କରିଥିଲେ ସେମାନେ ହେଉଛନ୍ତି ରଜତକୁମାର କର ଏବଂ ହୃଦାନନ୍ଦ ରାୟ। କହିବା ଅନାବଶ୍ୟକ ଯେ ଏ ଦୁଇଜଣ ଦକ୍ଷ ବାଗ୍ମୀ ଓ ସାହିତ୍ୟିକଙ୍କ ପରିଶ୍ରମ ଫଳରେ ଭଞ୍ଜ ଜୟନ୍ତୀର ପରମ୍ପରା ଓଡ଼ିଶାର ସାଂସ୍କୃତିକ ସୀମାକୁ ଚିରପ୍ରସାରିତ କରିଛି। କେବଳ କଟକ, ଭୁବନେଶ୍ୱର ନୁହେଁ, ଭଞ୍ଜ ଜୟନ୍ତୀ ଏବେ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ମଧ୍ୟ ମହାସମାରୋହରେ ପାଳିତ ହେଉଛି।

କଟକରେ ଅନୁଷ୍ଠିତ ଭଞ୍ଜ ଜୟନ୍ତୀ ସହିତ ସମ୍ପୃକ୍ତି ଯେଉଁ ଆବେଗ ସୃଷ୍ଟି କରିଥିଲା, ତାହାର ତରଙ୍ଗର ପ୍ରଭାବରେ ମୁଁ ବେଳେ ବେଳେ ଉଦ୍‌ବେଳିତ ହୋଇ ଉଠୁଥିଲି। ୧୯୬୩ ମସିହାରେ କଟକରେ ଭଞ୍ଜ ଜୟନ୍ତୀ ପରେ ପରେ ଭୁବନେଶ୍ୱର ଭଞ୍ଜ ଜୟନ୍ତୀ ସୂଚନା ଖବରକାଗଜରେ ପଢ଼ିଲି। ଏହା ସହିତ ବକ୍ତୃତା ପ୍ରତିଯୋଗିତାର ଖବର ମଧ୍ୟ ଦେଖିଲି। ଦୁଃସାହସ କରି ବସ୍‌ରେ ଭୁବନେଶ୍ୱର ଆସି ରବୀନ୍ଦ୍ର

ମଣ୍ଡପରେ ପହଞ୍ଚିଲି। ସେଠାରେ ଜାଣିଲି ଯେ ପ୍ରତିଯୋଗିତାରେ ଭାଗ ନେବା ପାଇଁ ପ୍ରବେଶିକା ଦେୟ ଏକ ଟଙ୍କା ରଖା ଯାଇଛି। ଟ୍ରେନ୍‌ରେ କଟକ ଫେରିବା ପାଇଁ ମାତ୍ର ଏକଟଙ୍କା ପାଖରେ ରହିଥିଲା। କିଛି ନ ଭାବି ପ୍ରବେଶିକା ଦେୟ ଦେଇଦେଲି। ପ୍ରଥମ ପୁରସ୍କାର ପାଇଲି। ପ୍ରଫେସର୍ ହୃଦାନନ୍ଦ ରାୟଙ୍କ ଓଜସ୍ୱିନୀ ଭାଷଣ ଶୁଣି ପେଟ ପୂରିଗଲା। ଉତ୍ସବ ସରିବା ପରେ ଫେରିବା ଚିନ୍ତା। ପୁରସ୍କାର ସ୍ୱରୂପ ହାତରେ ଥାଏ ଗୋଟିଏ ଶିଲ୍‌ଡ। ଭାଗ୍ୟକୁ ପ୍ରତିଯୋଗିତାର ଜଣେ ପ୍ରତିଯୋଗୀ ଶ୍ରୀ ବେଣୀମାଧବ ଘୋଷ୍‌ଙ୍କ ପାଖରେ ମୋର ଅସୁବିଧା ଜଣାଇଲି। ସେ ତୁରନ୍ତ ଗୋଟିଏ ଟଙ୍କା ଦେଲେ। ମୁଁ ଦ୍ରୁତଗତିରେ ଷ୍ଟେସନ୍ ଯାଇ ରେଳଯୋଗେ ଘରକୁ ଫେରିଲି।

ପ୍ରତିଯୋଗିତାର ଆବେଗ ମନକୁ ସକ୍ରିୟ ରଖିବାରେ ସହାୟକ ହେଲା। ବିଭିନ୍ନ ସଭାସମିତି ଓ ଅନୁଷ୍ଠାନର ଉତ୍ସବ ଓ ପ୍ରତିଯୋଗିତାସବୁରେ ଯୋଗ ନେବାର ଆଗ୍ରହ ବଳବତୀ ରହିଲା। ଆମ ଘର ଓ ଟାଉନ୍ ହଲ୍‌ର ମଧ୍ୟବର୍ତ୍ତୀ ସ୍ଥାନ ହେଉଛି କଟକ ମ୍ୟୁନିସିପାଲିଟି ସନ୍ନିକଟସ୍ଥ ମାରୁତି ମଣ୍ଡପ। ଶୁଣିଥିଲି ଯେ ଏଠାରେ ଥିବା ଏକ ମଣ୍ଡପରେ ପ୍ରତିବର୍ଷ ଦୀର୍ଘଦିନ ଧରି ରାମାୟଣ ପ୍ରଚାରଣୀ ସଭା ଅନୁଷ୍ଠିତ ହେଉଥିବାରୁ ପ୍ରଫେସର୍ ହୃଦାନନ୍ଦ ରାୟ ଏହାର ନାମକରଣ କରିଥିଲେ "ମାରୁତି ମଣ୍ଡପ"। ଏହି ମାରୁତି ମଣ୍ଡପରେ ଅନୁଷ୍ଠିତ ବହୁ ସଭାସମିତିର ଭାଷଣ ଶୁଣିବାକୁ ଯାଏ। ରାମାୟଣ ପ୍ରଚାରଣୀ ସଭାର ବକ୍ତୃତା ପ୍ରତିଯୋଗିତାରେ ଭାଗ ମଧ୍ୟ ନିଏ।

ହାଇସ୍କୁଲ ଜୀବନର ଶେଷ ଦୁଇ ତିନିବର୍ଷରେ ପାଠ୍ୟ ପୁସ୍ତକର ବାହାରେ ଯେଉଁ ସମ୍ପୃକ୍ତି ଓ ଅନୁରକ୍ତିର ସୂତ୍ରପାତ ହେଲା। ତାହାର ପ୍ରଭାବ ସମ୍ଭବତଃ ଏ ପର୍ଯ୍ୟନ୍ତ ସକ୍ରିୟ ରହିଛି। କୌଣସି ବିଷୟରେ ନିଜେ ବୁଝିବା ଏବଂ ଅନ୍ୟମାନଙ୍କୁ ବୋଧଗମ୍ୟ ଭାଷାରେ ବୁଝାଇବାର ଦକ୍ଷତା ଶରୀରର ଭିତରକୁ ପ୍ରବେଶ କଲା। ପ୍ରତିଯୋଗିତାର ପରିପ୍ରେକ୍ଷୀ ନ ଥାଇ ମଧ୍ୟ କୌଣସି ସଭା ସମିତିରେ କିଛି କହିବା ପାଇଁ ଆହ୍ୱାନ ଆସିଲେ ତାହା ଗ୍ରହଣ କରିବାରେ ଦ୍ୱିଧା ରହିଲା ନାହିଁ; ବରଂ ଏପରି ସମାବେଶରେ ସାମିଲ୍ ହେବାର ଆନନ୍ଦ କ୍ରମପ୍ରସାରିତ ହେଲା।

❖

## (୧୨)

# ସ୍କୁଲ ଅନୁଭୂତି, ମଧୁର ସ୍ମୃତି

ସ୍କୁଲର ପାଚେରୀ ଡେଇଁ କଲେଜ ଯିବା ପାଇଁ ପ୍ରବଳ ଆଗ୍ରହ ଥାଏ। ପୁଣି କଲେଜର ପାଠ ଶେଷ କରି ଚାକିରି କରି ସ୍ୱଚ୍ଛନ୍ଦ ଜୀବନ ଯାପନ କରିବାର ଅଭିଳାଷ ମଧ କମ୍ ନୁହେଁ। ତଥାପି ବହୁ ସମୟରେ ମନ ସ୍କୁଲର ଗୋଡ଼ିପଥର ସନ୍ଧିରୁ ମଧୁର ସ୍ମୃତି ଖୋଜିବାରେ ପ୍ରଯତ୍ନ କରେ। ସ୍କୁଲ ସମୟର ସାଙ୍ଗସାଥୀ ଶିକ୍ଷକ ଏବଂ ବିଶିଷ୍ଟ ଘଟଣା ଓ ବ୍ୟକ୍ତିବିଶେଷ ଆକର୍ଷଣୀୟ ରୂପ ନେଇ ଆଗରେ ଠିଆ ହୁଅନ୍ତି।

**ସାଙ୍ଗସାଥୀ**

ଆମ ସ୍କୁଲର ପ୍ରତି ଶ୍ରେଣୀରେ ଦୁଇଟି ସେକ୍ସନ୍ ରହିଥିଲା। ଗୋଟିଏ ସେକ୍ସନ୍‌ରେ ହିନ୍ଦୀ ଭାଷାରେ ଶିକ୍ଷାଦାନ କରାଯାଏ। ସାଧାରଣତଃ ମାରୱାଡ଼ି ସମ୍ପ୍ରଦାୟର ପିଲାମାନେ ଏବଂ ଅନ୍ୟ ପ୍ରଦେଶରୁ ଚାଲିଆସି ଓଡ଼ିଶାରେ ବସବାସ କରୁଥିବା ଲୋକମାନଙ୍କର ପିଲାମାନେ ଏହାର ସୁଯୋଗ ନିଅନ୍ତି। ଆମ ବିଭାଗରେ ଓଡ଼ିଆରେ ଶିକ୍ଷାଦାନ କରାଯାଏ।

ଆମ ସେକ୍ସନ୍‌ରେ ପ୍ରାୟ ୪୦/୪୫ ପିଲା ଥିଲେ। ଜଣେ ମାତ୍ର ଛାତ୍ରୀ। ଏହି ଛାତ୍ରୀ ଜଣକ ଅଷ୍ଟମ ଶ୍ରେଣୀରେ ଏହି ସ୍କୁଲ ଛାଡ଼ି ଗୋଟିଏ ବାଳିକା ବିଦ୍ୟାଳୟରେ ଭର୍ତ୍ତି ହେଲେ। ଅଷ୍ଟମ ଶ୍ରେଣୀରେ ବାହାରୁ ଜଣେ ଛାତ୍ରୀ ଆସି ଏଠାରେ ଭର୍ତ୍ତି ହେଲେ। ସୁତରାଂ ଶ୍ରେଣୀର ରୂପରେଖ ମୋଟାମୋଟି ଅପରିବର୍ତ୍ତିତ ରହିଲା।

ମୁଁ ଏକ ବାହ୍ୟ ପରିସରରୁ ଷଷ୍ଠ ଶ୍ରେଣୀରେ ପ୍ରବେଶ କରିବା ଫଳରେ ଏବଂ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିବା ଫଳରେ ପ୍ରଥମେ ପ୍ରଥମେ କିଛିଟା ଅସ୍ଥିରତା ଉପୁଜିବା ସ୍ୱାଭାବିକ। ପ୍ରଥମ ଓ ଦ୍ୱିତୀୟ ସ୍ଥାନରୁ ଦ୍ୱିତୀୟ ଓ ତୃତୀୟ ସ୍ଥାନକୁ ଖସି ଯାଇଥିବା କିଛି ଛାତ୍ରଙ୍କ ମନରେ ମୋ ପ୍ରତି କିଛିଟା ବିଦ୍ୱେଷ ରହିଥିଲା। ସେମାନଙ୍କ ଈର୍ଷାପୂର୍ଣ୍ଣ କଥା ଓ ଆଚରଣ ପରୋକ୍ଷଭାବରେ ପ୍ରକାଶ ପାଉଥିଲା। କିନ୍ତୁ ମୋର ସୌଭାଗ୍ୟ ଯେ ଧୀରେ ଧୀରେ ସେମାନଙ୍କ ମନୋବୃତ୍ତିର ପରିବର୍ତ୍ତନ ଘଟିଲା। କ୍ରମଶଃ ସହନଶୀଳତା ବୃଦ୍ଧି ପାଇଲା। ସପ୍ତମ ଶ୍ରେଣୀରେ ପାଦ ଦେବା ସମୟରେ ଆମ୍ଭମାନଙ୍କ ମଧ୍ୟରେ କୌଣସି ବିଦ୍ୱେଷ ନ ଥିଲା। ସହଯୋଗର ହାତ ଧରି ଆମେସବୁ ଆଗେଇ ଚାଲିଥିଲୁ।

ମୋର ଅନ୍ତରଙ୍ଗ ବନ୍ଧୁ ବଳୟରେ ତିନି ଚାରିଜଣ ଛାତ୍ର ବେଶ୍ ନିକଟତର ହୋଇ ଉଠିଥିଲେ। ସେମାନେ ହେଉଛନ୍ତି ତାପସ, ମଦନ (ମନୀ) କେଦାର ଓ ଅମୀୟ। ଆମେ ବହୁସମୟରେ ଏକାଠି ପାଠ ପଢୁଥିଲୁ। ସକାଳ ଓଳି ଆମର ଉପର ଘର ଚଟାଣରେ ଚକ୍ ଧରି ଅଙ୍କ କଷୁଥିଲୁ। ମୋତେ ସେମାନେ ପାଠ ପଢ଼ାରେ ଆଗୁଆ ବିଚାର କରୁଥିବାରୁ ସାହିତ୍ୟ ଓ ଅନ୍ୟସବୁ ବିଷୟ ବୁଝାଇ ଦେବା ପାଇଁ ଅନୁରୋଧ କରୁଥିଲେ। ଏପରି କରିବାରେ ମୋତେ ପ୍ରଚୁର ଆନନ୍ଦ ମିଳୁଥିଲା।

ଆମେ ଏକାଠି ବସୁଥିଲେ ମଧ୍ୟ ଆମ୍ଭମାନଙ୍କ ବ୍ୟକ୍ତିତ୍ୱରେ ସ୍ୱାତନ୍ତ୍ର୍ୟ ରହିଥିଲା। ଏମାନଙ୍କ ମଧ୍ୟରୁ କେହି ଶ୍ରେଣୀରେ ଦ୍ୱିତୀୟ କିମ୍ବା ତୃତୀୟ ସ୍ଥାନ ଅଧିକାର କରୁ ନ ଥିଲେ। ତଥାପି ପାଠରେ ପଛୁଆ ନ ଥିଲେ। ଶେଷ ହାଇସ୍କୁଲ ପରୀକ୍ଷାରେ ଏମାନେ ଦ୍ୱିତୀୟ ଶ୍ରେଣୀର ଉଚ୍ଚତର ମାର୍କ ହାସଲ କରିଥିଲେ। ପ୍ରତ୍ୟେକଙ୍କ ପାଖରେ କିଛି ନା କିଛି ଶିଖିବାର ଉପାଦାନ ରହିଥିଲା।

ତାପସର ଡାକ ନାମ ଥିଲା ବାଂଶୀ। ତାପସର ବାପା ପୋଲିସ୍ ବିଭାଗର ଅଫିସ୍‌ରେ (କଟକର ବକ୍‌ସି ବଜାର) ହିସାବ ରକ୍ଷକ ଥିଲେ। ସେମାନେ ରାଜା ବଗିଚାର ପୋଲିସ୍ କଲୋନୀରେ ରହୁଥିଲେ। କାଠଯୋଡ଼ି ନଦୀ କୂଳରେ ଅବସ୍ଥିତ ଏ ଘରଟି ଆମ ଦୁଇ ତିନିଜଣଙ୍କ ପାଇଁ ଗୋଟିଏ ସୁନ୍ଦର ଆମୋଦ କେନ୍ଦ୍ର ଥିଲା। ମଉସା ଓ ମାଉସୀ ଖୁବ୍ ସ୍ନେହୀ ଥିଲେ। ଗୋଟିଏ ଘଟଣା ମୋର ସ୍ପଷ୍ଟ ମନେଅଛି। ଥରେ ଅପରାହ୍ଣରେ ମୁଁ ତାଙ୍କ ଘରେ ପହଞ୍ଚିଲା ବେଳକୁ ମାଉସୀ ଓ ପିଲାମାନେ ଖୁବ୍ ହସୁଛନ୍ତି। ହସିବାର କାରଣ ଜାଣି ନ ପାରି ମୁଁ ମୁହଁକୁ ଚାହିଁଲି। ସେତେବେଳେ ମଉସା ଅଳ୍ପ କିଛି ବର୍ଷ ପାଇଁ ସ୍ଥାନାନ୍ତରୀତ ହୋଇ ପୁରୀରେ ରହୁଥିଲେ। ଯୋଗାଯୋଗ ପାଇଁ ଫୋନ୍‌ର ବହୁଳ ପ୍ରଚଳନ ନ ଥିଲା। ମାଉସୀ ମୋତେ ଜଣାଇଲେ ଯେ ମୋ ନାମ ଥିବା ଜଣେ ଛାତ୍ରର ମୃତ୍ୟୁ ଖବର ସମ୍ବାଦପତ୍ରରେ ପ୍ରକାଶ ପାଇଛି। ସେଥିରେ ଖୁବ୍ ବ୍ୟଥିତ ହୋଇ ସେ ମାଉସୀଙ୍କ ପାଖକୁ ଚିଠି ଲେଖିଛନ୍ତି। ଅବିଳମ୍ବେ ମୋର ପିଉସୀ ଘରକୁ ଯାଇ ପ୍ରବୋଧନା ଦେବା ପାଇଁ ବାରମ୍ବାର ପରାମର୍ଶ ଦେଇଛନ୍ତି। ମାଉସୀ ଚିଠିଟି ଆଣି ମୋ ପାଖରେ ପଢ଼ିଲେ। ତାପସ ଓ ମୁଁ ହସି ହସି ବେଦମ୍ ହେଲୁ। ମାଉସୀ କହିଲେ- "ତୋର ଆୟୁଷ ଖୁବ୍ ବଢ଼ିଗଲା।"

ତାପସ ପାଠପଢ଼ାରେ ସାଧାରଣ ଥିଲେ ମଧ୍ୟ ତା'ମଧ୍ୟରେ ଲୁଚି ରହିଥିବା କଳାକାରଟି ଖୁବ୍ ପ୍ରତିଭାସମ୍ପନ୍ନ ଥିଲା। କୁଶଳତାର ସହିତ ହାସ୍ୟରସ ସୃଷ୍ଟି କରିପାରୁଥିଲା। ବିଶେଷତଃ ମଞ୍ଚ ଉପରେ ମୂକ ଅଭିନୟ ପ୍ରଦର୍ଶନ କରିବାର ଦକ୍ଷତା ତା'ର ଅସାଧାରଣ। ସ୍କୁଲ ପର୍ଯ୍ୟାୟରୁ ଆରମ୍ଭ କରି ବହୁସୌଖୀନ ଯୁବ ଗୋଷ୍ଠୀର

ଆମନ୍ତ୍ରଣ କ୍ରମେ ସେ ମଞ୍ଚରେ ହାସ୍ୟ ଅଭିନେତାର ଭୂମିକା ପ୍ରଦର୍ଶନ କରୁଥିଲା। ସ୍କୁଲ ସାରିଲା ବେଳକୁ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକରେ ତାପସ ଘୋଷ୍ ଏକ ପରିଚିତ କଳାକାରର ସ୍ୱୀକୃତି ପାଇ ସାରିଥିଲା।

ପରବର୍ତ୍ତୀ ପର୍ଯ୍ୟାୟରେ ତାପସ ନିଜ ଅଭିନୟ ପ୍ରଦର୍ଶନ ପରିପ୍ରେକ୍ଷୀରେ ବମ୍ବେ, ଚେନ୍ନାଇ ଓ ଅନ୍ୟ ସବୁ ସହରକୁ ଆମନ୍ତ୍ରିତ ହୋଇ ଯାଇଛି। ବିଶେଷତଃ ସତୁରୀ ଦଶକର ଅନ୍ୟତମ ସଫଳ କଣ୍ଠଶିଳ୍ପୀ ହବିବ୍‌ର ନେତୃତ୍ୱରେ ଗଠିତ "ହବିବ୍ ମେଲୋଡି"ର ସହଯୋଗୀ କଳାକାର ରୂପେ ଅଜସ୍ର ଲୋକଙ୍କ ସ୍ନେହଶ୍ରଦ୍ଧା ଲାଭ କରିଛି। ଅବଶ୍ୟ ତାପସର ଓଡ଼ିଆ ଚଳଚ୍ଚିତ୍ର ଜଗତରେ ପ୍ରବେଶ ଆଶାନୁରୂପ ସଫଳତା ଆଣି ନ ଥିଲା। ଏବେ ମଧ୍ୟ ତାପସ ସହିତ ସାମୟିକ ଦେଖାସାକ୍ଷାତ୍ ଓ ଭାବର ଆଦାନ ପ୍ରଦାନ ହସର ଝଲକ ଆଣିଥାଏ।

ମୋର୍ ଅନ୍ୟତମ ସ୍କୁଲ ବନ୍ଧୁ ମଦନର ଡାକ ନାମ ମନୀ। ତାପସର ଘର ଆମ ପାଇଁ ଆମୋଦ କେନ୍ଦ୍ର ହେଲେ ମଦନ ଘର ହେଉଛି ଭୋଜନ କେନ୍ଦ୍ର। ଏଠାରେ ଯେତେବେଳେ ପହଞ୍ଚିଲେ ମଧ୍ୟ ପାଟି ସୁଆଦିଆ ଜିନିଷର ବ୍ୟବସ୍ଥା ଚାଲିଥିବ। ମଦନର ବାପା ଜଣେ ଅବସରପ୍ରାପ୍ତ କର୍ମଚାରୀ। ସେ ବହୁ ସମୟରେ ଆଖପାଖରୁ ବରା, ପିଆଜୀ କିମ୍ବା ସେହିପରି କିଛି ଆଣନ୍ତି। ଆମ୍ଭମାନଙ୍କ ମଧ୍ୟରେ ବଣ୍ଟା ହୁଏ। ମଦନର ଭାଇ କଟକର ଶିଳ୍ପାଞ୍ଚଳରେ (ମଧୁ ପାଟଣା) ଚାକିରି କରୁଥିବାରୁ ତାଙ୍କ ସହ କମ୍ ଦେଖା ହୁଏ। ନୂଆବୋଉ ଖୁବ୍ ସ୍ନେହୀ। ମନୀର ବଡ଼ ଭଉଣୀ ହେଉଛନ୍ତି ଅନୁରାଧା ଶତପଥୀ। ତାଙ୍କୁ ସମସ୍ତେ ଧୁନୀ ବୋଲି ଡାକୁଥିବାରୁ ଆମେ ତାଙ୍କୁ ଧୁନୀ ନାନୀ ବୋଲି ଡ଼ାକୁଥିଲୁ। ଆମେ ଷଷ୍ଠଶ୍ରେଣୀର ଛାତ୍ର ଥିବା ସମୟରେ ସେ ରେଭେନ୍ସା କଲେଜରେ ସ୍ନାତକୋତ୍ତର ଅର୍ଥନୀତିର ଷଷ୍ଠବାର୍ଷିକ ଛାତ୍ରୀ ଥିଲେ। ଆମେ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଖାଉଥିଲୁ।

ମନୀ ଘରେ ମଧ୍ୟ ମୋର ଅବାଧ ପ୍ରବେଶ। ତାଙ୍କ ଘରଟିର ଅବସ୍ଥାନ ମଧ୍ୟ କଟକ ସହରର ମଧ୍ୟ ଭାଗରେ ଟାଉନ୍ ହଲ୍ ରୋଡ୍। ମୋର ଅତି ପରିଚିତ ସ୍ଥାନ। ଧୁନୀ ନାନୀ ବଡ଼ ଭଉଣୀ ପରି ଆମ ସହିତ କଥାବାର୍ତ୍ତା କରନ୍ତି। ପରାମର୍ଶ ଦିଅନ୍ତି। ଅନେକ ସମୟରେ ମୁଁ ତାଙ୍କୁ ଘର ବାହାରେ ଥିବା ସିମେଣ୍ଟ ବେଞ୍ଚ ଉପରେ ବସି ବହି ପଢ଼ିବାର ଦେଖେ। ଥରେ ଉତ୍ସୁକ ହୋଇ ସେ କେଉଁସବୁ ବହି ପଢୁଛନ୍ତି ବୋଲି ମୁଁ ପଚାରିଲି। ସେ ବଙ୍ଗଳା ଉପନ୍ୟାସ ପଢୁଛନ୍ତି ଏବଂ ଏ ସବୁ ଉପନ୍ୟାସ ଚମତ୍କାର ବୋଲି ମନ୍ତବ୍ୟ ଦେଲେ। ପରେ ପରେ ଥରେ ଦୁଇଥର ସେ ଆମକୁ ବଙ୍ଗଳା ଉପନ୍ୟାସର କଥାବସ୍ତୁ ଶୁଣାଇଲେ। ଆମେ ସବୁ ଖୁସୀ ହେଲୁ। ଆମର ଆଗ୍ରହ ଦେଖି ସେ ଆମକୁ ଥରେ ବଙ୍ଗଳା ସିନେମା ଦେଖାଇବାକୁ ନେବାର ପ୍ରତିଶ୍ରୁତି ଦେଲେ।

ମଦନଙ୍କ ଘର ଏବଂ ଆମ ଘରର ମଧ୍ୟ ଭାଗରେ ଅବସ୍ଥିତ ହେଉଛି ସୁଦୃଶ୍ୟ ପ୍ରାସାଦ ଶହୀଦ୍ ଭବନ। କିଛିକାଳ ପାଇଁ ଏହା ଏକ ବିବାଦୀୟ ପରିସ୍ଥିତିରେ ସିନେମା ହଲ୍‌ର କାର୍ଯ୍ୟ କରୁଥିଲା। ନାମ ହେଉଛି, "ଇଉନାଇଟେଡ୍ ଟକିଜ୍"। ଧୁନି ନାନୀ ସେଠାରେ ମୁକ୍ତି ଲାଭ କରିଥିବା ଗୋଟିଏ ବଙ୍ଗଳା ଛବି "ବିକାଶ" ଦେଖାଇବାକୁ ଆମ୍ଭମାନଙ୍କୁ ନେଇଗଲେ। ସୁନ୍ଦର ଛବି, ସାଧାସିଧା ହାଫ୍‌ସାର୍ଟ ପିନ୍ଧିଥିବା ସୌମିତ୍ର ଚାଟାର୍ଜୀ ହେଉଛନ୍ତି ମୁଖ୍ୟ ନାୟକ, ଖୁବ୍ ଭଲ ଲାଗିଲା। ଆଉ କିଛିଦିନ ପରେ ଆଉ ଦୁଇ ତିନୋଟି ବଙ୍ଗଳା ଛବି ଦେଖିବାର ସୁଯୋଗ ପାଇଲୁ। ସମ୍ଭବତଃ ମନୀ ଏ ଦିଗରେ ବିଶେଷ ଆଗ୍ରହୀ ନ ଥିଲା। କିନ୍ତୁ ଏ ସବୁ ଛବି ମୋ ହୃଦୟକୁ ଖୁବ୍ ସ୍ପର୍ଶ କଲା। ପାଠ୍ୟ ପୁସ୍ତକ ବାହାରେ ଅନ୍ୟ କିଛି ପଢ଼ିବାର ନିଶାଟା ବଳବତ୍ତର ହେବା ମୂଳରେ ଧୁନୀ ନାନୀଙ୍କ ପ୍ରେରଣା ନିଶ୍ଚିତ ଭାବେ କାମ କରିଛି।

ଧୁନୀ ନାନୀଙ୍କୁ ପ୍ରେରଣାରେ ବଙ୍ଗଳା ସିନେମା ନେବାର ଆଗ୍ରହ ଧୀରେ ଧୀରେ ବଢ଼ିବାକୁ ଲାଗିଲା। ସ୍କୁଲ ଜୀବନରେ ମୁଁ ପ୍ରାୟତଃ ସିନେମା ଦେଖିବା ପାଇଁ ହଲ୍‌କୁ ଯାଉ ନ ଥିଲି। କାଁ ଭାଁ କେବେ ବଡ଼ମାନଙ୍କ ସହିତ ପୌରାଣିକ ଛବି ଦେଖିବାକୁ ଯାଉଥିଲି। ମାତ୍ର ଗୋଟିଏ ଦୁଇଟି ବଙ୍ଗଳା ଛବି ଦେଖିବା ପରେ ଆଗ୍ରହ ବଢ଼ିଲା। ଶହୀଦ୍ ଭବନରେ ଅସ୍ଥାୟୀ ଭାବେ ଚାଲୁଥିବା ସିନେମା ହଲ୍, ଇଉନାଇଟେଡ୍ ଟକିଜ୍ ବନ୍ଦ ହୋଇ ଅଳ୍ପ ଦୂରରେ "ପାର୍ବତୀ ଟକିଜ୍" (ବର୍ତ୍ତମାନ ଯେଉଁଠାରେ କଟକ ମ୍ୟୁନିସିପାଲିଟିର କଲ୍ୟାଣ ମଣ୍ଡପ ନିର୍ମାଣ କରାଯାଇଛି) ଆରମ୍ଭ ହେଲା। ଏଠାରେ ଭଲ ଭଲ ହିନ୍ଦୀ ଛବି ସହିତ ମ୍ୟାଟିନୀ ସୋ ହିସାବରେ ବଙ୍ଗଳା ଛବି ପ୍ରଦର୍ଶିତ ହେଉଥିଲା।

ବଙ୍ଗଳା ଛବିର ମୋହ ଏତେ ବଢ଼ିଗଲା ଯେ ହାଇସ୍କୁଲ ପାର ହେବା ପରେ ପରେ ଦିନେ ବଜାରରେ "ତ୍ରିଭାଷୀ" (ହିନ୍ଦୀ, ଓଡ଼ିଆ, ବଙ୍ଗଳା) ଚଟି ବହିଟି କିଣି ଆଣିଲି। ନିଜ ଚେଷ୍ଟାରେ ଗୋଟିଏ ଦିନ ପରିଶ୍ରମ କରି ବଙ୍ଗଳା ପଢ଼ିବାକୁ ଶିଖିଗଲି। ପଢ଼ିବାକୁ ଶିଖିବା ପରେ ସମ୍ଭବତଃ ବିମଳ ମିତ୍ରଙ୍କ "ହାଟେ ବାଜାରେ" ପୂରା ବହିଟି ପ୍ରଥମ ଥର ପାଇଁ ପଢ଼ିଲି। ବଙ୍ଗଳା ଭାଷା ଓ ସାହିତ୍ୟ ପ୍ରତି ଏକ ଅଦମ୍ୟ ଆକର୍ଷଣ ଜନ୍ମନେଲା।

ମୋର ଅନ୍ତରଙ୍ଗ ବନ୍ଧୁ ବଳୟରେ ଆଉ ଜଣେ ରହିଥିଲେ। ସେ ହେଉଛି ବନ୍ଧୁ କେଦାର ଭଗତ। ବାଲୁବଜାରରେ ବସବାସ କରୁଥିବା ବ୍ୟବସାୟୀ ପରିବାରରେ ଜନ୍ମ। ମନୀ ଓ ତାପସ ପରି କେଦାର ଘର ଭିତରକୁ ମୁଁ ଅବାଧରେ ପଶି ଯାଉ ନ ଥିଲି। କିନ୍ତୁ ବନ୍ଧୁ ସମୟରେ ଆମେ ତିନିଜଣ ଏକାଠି ହେଉଥିଲୁ। କେଦାର ଖୁବ୍ ସୌଖୀନ୍ ପ୍ରିୟ ଓ ବିଳାସୀ ଥିଲା। ବିଭିନ୍ନ ପ୍ରକାର ଆଳ ଦେଖାଇ ସେ ତା'ର ବାପମା'ଙ୍କଠାରୁ ଟଙ୍କାପଇସା ଆଣୁଥିଲା।

ହୋଟେଲ୍‌ରେ ଖାଇବା ଓ ନୂଆ ଜାଗାକୁ ବୁଲିଯିବା ତା'ର ରୀତିମତ ଅଭ୍ୟାସ ଥିଲା। ଅବଶ୍ୟ ଅନାବଶ୍ୟକ ଭାବେ ହୋଟେଲ୍‌ରେ ଖାଇବାର ଅଭ୍ୟାସକୁ ମୁଁ ପସନ୍ଦ କରୁ ନଥିଲି। ଅନେକ ସମୟରେ ମୋତେ ନ ଜଣାଇ ମନୀ, ତାପସ ଓ କେଦାର ହୋଟେଲ୍‌ରେ ଖାଉଥିଲେ।

କେଦାର ପରବର୍ତ୍ତୀ ଜୀବନରେ ଜଣେ ସଫଳ ଉଦ୍ୟୋଗୀ ହୋଇପାରିଛି। କଲେଜ ଶିକ୍ଷାରେ ସେ ବିଶେଷ ସଫଳତା ପାଇ ନ ଥିଲେ ମଧ୍ୟ ବ୍ୟବସାୟିକ ଜଗତରେ ଅପୂର୍ବ ସାଫଲ୍ୟ ହାସଲ କରିଛି। M.B.A. ଓ M.C.A. ଥିବା ଏକ ଶିକ୍ଷାନୁଷ୍ଠାନର ସର୍ବାଧିକାରୀ ରୂପେ ସେ ନିଜର ପରିବାର ସହିତ ଭୁବନେଶ୍ୱରରେ ବସବାସ କରୁଛି।

## ଶିକ୍ଷକବୃନ୍ଦ

ମୋର ହାଇସ୍କୁଲରେ ପ୍ରାୟ ତିରିଶ ପଇଁତିରିଶ ଜଣ ଶିକ୍ଷକ ଥିଲେ। ମଝିରେ ମଝିରେ ଦୁଇ ତିନିଜଣ ଶିକ୍ଷୟିତ୍ରୀ ଯୋଗ ଦେଇଥିଲେ, ପୁଣି ବିଦାୟ ମଧ୍ୟ ନେଇଥିଲେ। ପ୍ରତି ଶ୍ରେଣୀର ଦୁଇଟି ବିଭାଗ ମଧ୍ୟରୁ 'କ' ବିଭାଗରେ ହିନ୍ଦୀରେ ଶିକ୍ଷାଦାନ କରାଯାଏ। 'ଖ' ବିଭାଗରେ ଓଡ଼ିଆରେ ଶିକ୍ଷାଦାନ ହୁଏ। ଅଧାଅଧି ଶିକ୍ଷକ 'କ' ବିଭାଗ ସହିତ ସମ୍ପୃକ୍ତ ଥିବା ସ୍ଥଳେ ଅନ୍ୟମାନେ 'ଖ' ବିଭାଗ ସହିତ ଜଡ଼ିତ। ଏ ଦୃଷ୍ଟିରୁ ପ୍ରାୟ ପନ୍ଦର ଷୋଳହ ଜଣ ଶିକ୍ଷକଙ୍କ ସହିତ ଆମର ସମ୍ପୃକ୍ତି ରହିଥିଲା।

ପୂର୍ବରୁ ସୂଚନା ଦେଇଛି ଯେ ସେ ସମୟରେ ଯେଉଁ ମାଧ୍ୟମିକ ଶିକ୍ଷକ ସଂଘ ନୂଆ କରି ଓଡ଼ିଶାରେ ଗଠିତ ହେଲା ମୋ ସ୍କୁଲର କେତେକ ଶିକ୍ଷକ ଏ ଦିଗରେ ଅଗ୍ରଣୀ ଥିଲେ। ଆମ ସ୍କୁଲର ଅଭିଜ୍ଞ ଶିକ୍ଷକ ଭଗବାନ ମିଶ୍ର ଏ ସଂଘର ମୁଖ୍ୟ ପଦାଧିକାରୀ ରହିଥିଲେ। କୈଳାସ ଚନ୍ଦ୍ର ମହାପାତ୍ର ଓ ବିବେକାନନ୍ଦ ଦାଶ ମଧ୍ୟ ଖୁବ୍ ସକ୍ରିୟ।

ଉଚ୍ଚତର ଶ୍ରେଣୀରେ (ଦଶମ, ଏକାଦଶ)ଭଗବାନ ବାବୁ ଗଣିତ ପଢ଼ାନ୍ତି ଏବଂ ତାଙ୍କ ଶୈଳୀରେ ବେଶ୍ ନୂତନତ୍ୱ ରହିଥିଲା। କିନ୍ତୁ ଅଧିକାଂଶ ଛାତ୍ର ତାଙ୍କୁ ଭୟ କରୁଥିଲେ। ଭଗବାନବାବୁ ଖୁବ୍ ବିଚକ୍ଷଣ ଥିବାରୁ ସ୍କୁଲରେ କୌଣସି ସମସ୍ୟା ଉପୁଜିଲେ ପ୍ରଧାନ ଶିକ୍ଷକ ତାଙ୍କର ପରାମର୍ଶ ଲୋଡ଼ୁଥିଲେ। ଅଷ୍ଟମ ଓ ନବମ ଶ୍ରେଣୀରେ ଶ୍ରୀ ରବୀନ୍ଦ୍ର ମୋହନ ଜେନା ଗଣିତ ଓ ବିଜ୍ଞାନ ପଢ଼ାଉଥିଲେ। ତାଙ୍କର ସହଜ ବ୍ୟବହାର ପାଇଁ ପିଲାମାନେ ତାଙ୍କ ନିକଟକୁ ଯାଇ ନିଜର ସନ୍ଦେହ ଦୂର କରିବାରେ ପ୍ରୟାସ କରୁଥିଲେ।

ବିବେକାନନ୍ଦ ଦାଶଙ୍କୁ ଶିକ୍ଷକ ହିସାବରେ ମୁଁ ଖୁବ୍ ଭକ୍ତି କରୁଥିଲି। ସେ ଆମର ସାହିତ୍ୟ ପଢାଉଥିଲେ। ତାଙ୍କର ବୈଶିଷ୍ଟ୍ୟ ହେଉଛି ଯେ ସବୁବର୍ଗର ପିଲାମାନଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ। ସ୍ୱଚ୍ଛଳ ଓ ଦରିଦ୍ର ପିଲାମାନଙ୍କ ପ୍ରତି ତାଙ୍କର

ଦୃଷ୍ଟିଭଙ୍ଗୀ ସମାନଭାବରେ ଉଦାର ଥିଲା। ଏବେ ମଧ୍ୟ ଶିକ୍ଷକ ଆନ୍ଦୋଳନ ଜନିତ କାର୍ଯ୍ୟକ୍ରମରେ ସେ ସକ୍ରିୟ। ସଭା ସମିତିରେ ତାଙ୍କ ସହିତ ସାକ୍ଷାତର ସୁଯୋଗ ପାଇଲେ ମୁଁ ମଥାନତ କରି ସମ୍ମାନ ଜଣାଇଥାଏ।

ପ୍ରଧାନ ଶିକ୍ଷକ ସତୀଶ ଚନ୍ଦ୍ର ଘୋଷ ମୁଖ୍ୟତଃ ସ୍କୁଲର ପରିଚାଳନା ଦାୟିତ୍ୱ ବୁଝନ୍ତି। ତଥାପି ସାମୟିକ ଭାବରେ ନବମ, ଦଶମ ଓ ଏକାଦଶ ଶ୍ରେଣୀକୁ ଚାଲି ଆସି ଇଂରାଜୀ କବିତା ପଢ଼ାନ୍ତି। ସେ ପଢ଼ାଇବା ସମୟରେ ହାସ୍ୟରସର ସୁନ୍ଦର ଉପଯୋଗ କରନ୍ତି।

ଆମର ଦୁଇଜଣ ଇଂରାଜୀ ଶିକ୍ଷକ ଦୀନବନ୍ଧୁ ମିଶ୍ର ଓ ଗୋପୀନାଥ ମହାପାତ୍ର ଖୁବ୍ ଦକ୍ଷ ଥିଲେ। ସତୀଶ ବାବୁଙ୍କ ଅବସର ଗ୍ରହଣ ପରେ ଗୋପୀନାଥ ମହାପାତ୍ର ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ କଲେ। ଗୋପୀନାଥ ମହାପାତ୍ରଙ୍କ ଦୁଇଟି ଦିଗ ମୋ ମନରେ ତାଙ୍କୁ ଚିରସ୍ମରଣୀୟ କରିଛି। ପ୍ରଥମତଃ ତାଙ୍କର ପ୍ରକାଶ ଭଙ୍ଗୀ ଖୁବ୍ ସରଳ। ସେ ଖୁବ୍ ସରଳ ଭାଷାରେ ଛୋଟ ଛୋଟ ଇଂରାଜୀ ବାକ୍ୟ ଗଠନ କରି ପଢ଼ାନ୍ତି। ଫଳତଃ ଅତି ଦୁର୍ବଳ ଛାତ୍ର ମଧ୍ୟ ତାଙ୍କ ଶ୍ରେଣୀରେ ନିଜକୁ ଅସହାୟ ମନେ କରେ ନାହିଁ। ଦଶମ ଓ ଏକାଦଶ ଶ୍ରେଣୀରେ ଆମକୁ ଇଂରାଜୀ କବିତା ପଢ଼ାଉଥିଲେ। ଗୋଟିଏ ଇଂରାଜୀ କବିତା ପଢ଼ାଇ ସାରିବା ପରେ ସେ ଦୁର୍ଗା ଓ ମୋତେ କବିତାଟିର ଓଡ଼ିଆ ପଦ୍ୟ ରୂପ ରଚନା କରିବା ପାଇଁ ନିର୍ଦ୍ଦେଶ ଦିଅନ୍ତି। ପର ସପ୍ତାହରେ ସେ ନୂତନ କବିତାଟି ପଢ଼ାଇବା ପୂର୍ବରୁ ଶ୍ରେଣୀରେ ଦୁର୍ଗା ଓ ମୁଁ ପୂର୍ବ କବିତାର ଓଡ଼ିଆ ଭାଷାନ୍ତର ଆବୃତ୍ତି କରିଥାଉ। ଅନ୍ୟମାନେ ମଧ୍ୟ ଏହା ଉପଭୋଗ କରନ୍ତି। Daffodils, Inchcape Rock ଏବଂ Tubal Cain ପରି କବିତା ସବୁର ଓଡ଼ିଆ ପଂକ୍ତି ଏବେ ମଧ୍ୟ ମୋର ମନେ ଅଛି। ସ୍କୁଲ ଜୀବନରେ ଏ ଏକ ସୁନ୍ଦର ଅନୁଭବ।

ବ୍ୟକ୍ତିଗତ ଜୀବନର ସ୍ମୃତିଚାରଣ କଲାବେଳେ ଏ ସବୁ ଶିକ୍ଷକମାନଙ୍କର ଅବଦାନ ମନକୁ ଆସେ। ସାହିତ୍ୟ ଶିକ୍ଷକ ବୀରକିଶୋର ପାଲ୍, ହିନ୍ଦୀ ଶିକ୍ଷକ ବିଜୟ କୁମାର ଦାସ ଏବଂ ଖେଳ ଶିକ୍ଷକ ଉଦୟନାଥ ପୃଷ୍ଟିଙ୍କ ସମ୍ବେଦନଶୀଳ ମନୋବୃତ୍ତି ସବୁବେଳେ ମନେପଡ଼ିବ।

## ସତୀଚଉରାର ସ୍ମୃତି

ସ୍କୁଲ ଅନୁଭୂତିର ବିବିଧତା ମଧ୍ୟରେ ଯେଉଁ ସ୍ମୃତି ଜୋର୍‌ରେ ମୁଣ୍ଡ ଟେକି ଉଠେ ତାହା ହେଉଛି ସତୀ ଚଉରାର ସ୍ମୃତି। ହଠାତ୍ ଦିନେ ଆମେ ସମସ୍ତେ ସ୍କୁଲରେ ପହଞ୍ଚିବା ମାତ୍ରେ ପ୍ରଧାନ ଶିକ୍ଷକ ଘୋଷଣା କଲେ ଯେ ଆମର ଉପସ୍ଥିତି ଖାତାରେ ଚିହ୍ନିତ ହେବା ପରେ ପରେ ଆମ ସମସ୍ତଙ୍କୁ ସତୀ ଚଉରା (ଶ୍ମଶାନ) ଯିବାକୁ

ପଢ଼ିବ। ଏ କଥା ମଧ୍ୟ ଜଣାଇଲେ ତାଙ୍କର ସାନଭାଇ ରାମଚନ୍ଦ୍ର ଘୋଷ ଏହି ସ୍କୁଲରେ କିଛିଦିନ ଶିକ୍ଷକତା କରିଥିଲେ ଏବଂ ଆଜି ସକାଳେ ତାଙ୍କର ଦେହାନ୍ତ ଘଟିଛି। ସତୀ ଚଉରା ଶ୍ମଶାନରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହେବ। ମୁଁ ଏହି ଶିକ୍ଷକଙ୍କୁ ସ୍ୱଚକ୍ଷୁରେ ଦେଖି ନାହିଁ। ମୁଁ ସ୍କୁଲରେ ପ୍ରବେଶ କରିବା ସମୟରେ ସେ ସ୍କୁଲରୁ ଓହରି ଯାଇଥିଲେ। ତଥାପି ସ୍କୁଲର ପୂର୍ବତନ ଶିକ୍ଷକ ହିସାବରେ ସମ୍ମାନ ଜଣାଇବାକୁ ଆମେ ସବୁ ତୁରନ୍ତ ସତୀ ଚଉରା ଯାଇଥିଲୁ।

ସମୟ ପ୍ରାୟ ଏଗାରଟା ହେବ। ଅଳ୍ପ ଅଳ୍ପ ଖରା। ତଥାପି ଅନେକ ଗଛ ଥିବାରୁ ଶୀତଳ ଓ ମୁକ୍ତ ପବନ। କିନ୍ତୁ ସତୀ ଚଉରା କ'ଣ ପ୍ରକୃତରେ ଏକ ଶ୍ମଶାନ? ମନେହେଲା ଏ ଏକ ପୂତପବିତ୍ର ସାରସ୍ୱତ ପୀଠ। ଆଖି ଆଗରେ ଯେଉଁ ସବୁ ସମାଧି ରହିଛି ଏବଂ ସମାଧିରେ କବି ଓ ପ୍ରଜ୍ଞାପୁରୁଷମାନଙ୍କର ରଚନାର ଯେଉଁ ସବୁ ଉଦ୍ଧୃତି ରହିଛି, ତାକୁ ଲକ୍ଷ୍ୟ କରି ଅନ୍ୟ କେଉଁ ରାଜ୍ୟକୁ ଚାଲିଗଲା ପରି ହୃଦ୍‌ବୋଧ ହେଲା। ସ୍କୁଲରୁ ଏଠାକୁ ଆସିଥିବାରୁ ପାଖରେ ସ୍କୁଲ ବ୍ୟାଗ୍ ରହିଥାଏ। କଲମ ନେଇ ମୁଁ କାଗଜରେ କବିବର ରାଧାନାଥ ରାୟ, ଗଙ୍ଗାଧର ମେହେର ଓ ଗୋପାଳ ପ୍ରହରାଜଙ୍କ ରଚନାର ଉଦ୍ଧୃତି ସବୁ ଲେଖିବାକୁ ଆରମ୍ଭ କଲି। ଶିକ୍ଷକ ଶ୍ରୀରାମଚନ୍ଦ୍ର ବାବୁଙ୍କ ପରିବାରର ଲୋକମାନେ ଓ ବଡ଼ମାନେ ଶେଷକୃତ୍ୟର ବିଧିବିଧାନ ଅନୁଯାୟୀ ଅନ୍ୟ ସମସ୍ତ ଆୟୋଜନ କରୁଥାଆନ୍ତି। ମୁଁ ଓ ଅନ୍ୟ କେତେକ ଛାତ୍ର ଏହି ସାରସ୍ୱତ ପୀଠର ହୀରାଲୀଳା ସଂଗ୍ରହ କରିବାରେ ବ୍ୟସ୍ତ ରହିଥାଉ।

ଅପରାହ୍ଣରେ ଆମେ ଫେରି ଆସିଲୁ। ପୁଣି କିଛିମାସ ପରେ ଆଉ ଥରେ ସତୀ ଚଉରାର ସର୍ଶର ଅବକାଶ ମିଳିଲା। ଆମ ସ୍କୁଲର ସଂସ୍କୃତ ପଣ୍ଡିତ ମହାଶୟଙ୍କର ଦେହାନ୍ତ ଘଟିଲା। ଆମେ ପୁଣି ସତୀ ଚଉରା ଆସିଲୁ ଓ ମନରେ ରହି ଯାଇଥିବା କିଛିଟା ଆସମ୍ପୂର୍ଣ୍ଣତା ପରିପୂରିତ ହେବାର ବେଳା ଆସିଲା। ବିଶିଷ୍ଟ ବ୍ୟକ୍ତିମାନଙ୍କର ସମାଧିରେ ଲେଖା ହୋଇଥିବା ଧାଡ଼ି ପୁଣି ପଢ଼ିଲି। ପୁଣି ଆଲୋଡ଼ିତ ହେଲି।

ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରସିଦ୍ଧ ଗୀତିକବି ରାଧାମୋହନ ଗଡ଼ନାୟକଙ୍କ କବିତା "ସତୀ ଚଉରା" ପଢ଼ିବା ସମୟରେ ମୋର ପୂର୍ବ ଅନୁଭବ ପ୍ରାଣବନ୍ତ ଭାବରେ ମୋ ପାଖରେ ଠିଆ ହେଲା। ଏବେ ମଧ୍ୟ ବେଳେବେଳେ ସତୀ ଚଉରାର ସ୍ମୃତି ମୋତେ ଉଦ୍‌ବେଳିତ କରେ।

❖

(୧୩)

# ସନ୍ଧିକାଳର ସଙ୍କଟ: ପିତୃ ବିୟୋଗ

ଶିଶୁଟି ଧୀରେ ଧୀରେ ବିକଶିତ ହେଲା ପରି ମୋ ସମ୍ପର୍କରେ ପ୍ରତ୍ୟାଶା ଧୀରେ ଧୀରେ ପରିପକ୍ୱ ହେଉଥିଲା। ୧୯୫୯ ମସିହା ଜୁଲାଇ ମାସରେ ମୁଁ ସ୍କୁଲରେ ପ୍ରବେଶ କରିବା ସମୟରେ କିଛି ପରିମାଣର ବିରୋଧି ଶକ୍ତିର ସମ୍ମୁଖୀନ ହୋଇଥିଲି। ବିଶେଷତଃ ଯେଉଁ ଦୁଇ ତିନି ଜଣ ଆଗୁଆ ଛାତ୍ର (ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରୁଥିଲେ) ଗାଦିଚ୍ୟୁତ ହେବା ଫଳରେ ମୁଁ ସେମାନଙ୍କ ପ୍ରଚ୍ଛନ୍ନ କ୍ରୋଧର ଶରବ୍ୟ ହେବା ସ୍ୱାଭାବିକ। ପୁଣି ଶ୍ରେଣୀର ଚାରି ପାଞ୍ଚ ଜଣ ଛାତ୍ର ମୋର ବିଶେଷ ଅନୁଗତ ହୋଇ ସକାଳ ଓଳି ଆମ ଘରକୁ ଯାଇ ପାଠ ବୁଝୁଥିଲେ। ଏହା ଅଚ୍ଚ କେତେକ ଶିକ୍ଷକଙ୍କ ଘରୋଇ ଟିଉସନ୍‌ର ବାଧକ ଥିବାରୁ ସେମାନେ ମଧ୍ୟ କ୍ଷୁବ୍ଧ ହେଲେ। ଜଣେ ଶିକ୍ଷକ ବିଭିନ୍ନ ଉପାୟରେ ମୋ ପ୍ରତି ବାଟୁଳି ପ୍ରକ୍ଷେପଣ କରୁଥିଲେ।

କିନ୍ତୁ ଧୀରେ ଧୀରେ ପ୍ରତିକୂଳ ସ୍ରୋତର ତୀବ୍ରତା କମିଲା। ପ୍ରଥମ ଓ ଦ୍ୱିତୀୟ ସ୍ଥାନ ହରାଇଥିବା ଛାତ୍ର ଦୁଇଜଣଙ୍କର ମନୋବୃତ୍ତିର ପରିବର୍ତ୍ତନ ଘଟିଲା। ଶର ନିକ୍ଷେପ କରୁଥିବା ଶିକ୍ଷକ ଜଣକ ନିଜ ଗ୍ରାମ ନିକଟସ୍ଥ ହାଇସ୍କୁଲକୁ ଚାଲିଗଲେ। ପରିବେଶ ମୋ ପ୍ରତି ଅନୁକୂଳ ହେବାକୁ ଆରମ୍ଭ କଲା।

ଉଚ୍ଚ ପ୍ରାଥମିକ ବୃତ୍ତିଲାଭ କରି ମୁଁ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ପ୍ରତି ମାସରେ ଦଶ ଟଙ୍କା ପାଉଥିଲି। ଏକାଥରକେ ଛ' ସାତ ମାସର ବୃତ୍ତି ଷାଠିଏ, ସତୁରୀ ଟଙ୍କା ମିଳେ। କମ୍ କଥା ନୁହେଁ। ଅଭିଭାବକ ହିସାବରେ ମୋର ପିଉସୀ ପୁଅ ବଳରାମ ଭାଇ ସ୍କୁଲକୁ ଆସି ଟଙ୍କା ଗ୍ରହଣ କରନ୍ତି। ଘରେ ମୋତେ ପୂରା ଟଙ୍କା ଦେଇ ଦିଅନ୍ତି। ମୋର ପିଉସୀ ଓ ବାପା ଏ ସମ୍ପର୍କରେ ଜାଣନ୍ତି, କିନ୍ତୁ ମୋଠାରୁ ପଇସା ନେଇ ସେମାନଙ୍କ ଘର ଖର୍ଚ୍ଚରେ ମିଶାନ୍ତି ନାହିଁ। ପଇସା ମୋ ପାଖରେ ରହିଥାଏ। ମୋର ମନଖୁସିରେ ସ୍ୱତନ୍ତ୍ର ଖର୍ଚ୍ଚ କରିଥାଏ। କେବେ କିପରି ହୋଟେଲ୍‌ରେ ଭଲ କିଛି ଖାଇବାକୁ ଇଚ୍ଛା ହେଲେ ଏହି ପାଣ୍ଠିରୁ ନେଇଯାଏ। କେବଳ ପିଉସୀଙ୍କୁ ଜଣାଇଦିଏ।

ଷଷ୍ଠ ଶ୍ରେଣୀରେ ଷାଣ୍ମାଷିକ ଓ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିଲି। ସପ୍ତମରେ ଷାଣ୍ମାସିକ ପରୀକ୍ଷାରେ ମଧ୍ୟ ପ୍ରଥମ ସ୍ଥାନ ଅଧିକାର କଲି। ତା'ପରେ ମାଧ୍ୟମିକ ବୃତ୍ତି ପରୀକ୍ଷା ପାଇଁ ଶିକ୍ଷକମାନଙ୍କ ଦୃଷ୍ଟି ମୋ ଉପରେ କେନ୍ଦ୍ରୀଭୂତ ହେଲା। ଦିନେ ସ୍କୁଲର ପ୍ରଧାନ ଶିକ୍ଷକ ସତୀଶ ବାବୁ ହଠାତ୍ ଶ୍ରେଣୀକୁ ପଶି ଆସି ବିଧିବଦ୍ଧ ଭାବେ ଘୋଷଣା କଲେ ଯେ ଆଗାମୀ ବୃତ୍ତି ପରୀକ୍ଷାରେ

ଏକମାତ୍ର ଛାତ୍ର ହିସାବରେ ମୁଁ ଏହି କେନ୍ଦ୍ରୀୟ ପରୀକ୍ଷାକୁ ଯିବି। ମାନସିକ ସ୍ତରରେ ପ୍ରସ୍ତୁତ ରହିବା ପାଇଁ ଏବଂ ଅଧିକ ପରିଶ୍ରମ କରିବା ପାଇଁ ସେ ପରାମର୍ଶ ଦେଲେ।

୧୯୬୧ ମସିହା ଏପ୍ରିଲ ମାସରେ ମୁଁ ବୃତ୍ତି ପରୀକ୍ଷା ଦେଲି। ରେଭେନ୍ସା କଲେଜିଏଟ୍ ପରୀକ୍ଷା କେନ୍ଦ୍ର। ସେତେବେଳ ପର୍ଯ୍ୟନ୍ତ ବି ପଡଶୀ ଘରେ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା ନ ଥିଲା। ଲଣ୍ଠନ ସାହାଯ୍ୟରେ ମୁଁ ଯଥାରୀତି ପଢୁଥିଲି। ପରୀକ୍ଷା ଦେବା ସମୟରେ ଆମ ଘରେ ବିଦ୍ୟୁତ୍ ବ୍ୟବସ୍ଥା ଲାଗି କାନ୍ଥବାଡ଼ରେ ଖୋଳାଖୋଳି ଚାଲିଥାଏ। ଏପରି ଅବସ୍ଥାରେ ଏକାଗ୍ରତା ରକ୍ଷା କରି ପଢ଼ିବାକୁ ହେଉଥାଏ। ବୃତ୍ତିଲାଭ କରିବାରେ ମୁଁ ସଫଳତା ପାଇ ନ ଥିଲି। ପାଇଥିଲେ ଏକାଦଶ ଶ୍ରେଣୀର ଶେଷ ପର୍ଯ୍ୟନ୍ତ ମାସିକ ପନ୍ଦର ଟଙ୍କା ମିଳିଥାଆନ୍ତା। ତଥାପି ମୁଁ ନିରାଶ ହେଲି ନାହିଁ। ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ସେ ସମୟରେ ଗୋଟିଏ "ଗଣିତ ମେଧାବୃତ୍ତି ଯୋଜନା" ଆରମ୍ଭ କଲେ। ସେ ଯୋଜନା ଅନୁଯାୟୀ ମୁଁ ଓ ଆମ ଶ୍ରେଣୀର ଆଉ ଦୁଇ ତିନି ଜଣ ଗଣିତରେ ଉଚ୍ଚ ସଫଳତା ପାଇଁ ମାସିକ ଚଉଦ ଟଙ୍କା (କିମ୍ୱା ବାର ଟଙ୍କା) ବୃତ୍ତି ପାଇଲୁ। ଏକାଦଶ ଶ୍ରେଣୀର ଶେଷ ପର୍ଯ୍ୟନ୍ତ ଏ ପ୍ରକାର ଆର୍ଥିକ ସହାୟତା ମୋ ପାଇଁ ଖୁବ୍ ଉପଯୋଗୀ ଥିଲା।

ଅଷ୍ଟମ, ନବମ ଓ ଦଶମ ଶ୍ରେଣୀରେ ମୋର ସଫଳତା ଅବ୍ୟାହତ ରହିଥିଲା। ଆମର ପ୍ରଧାନ ଶିକ୍ଷକ ଆମର କ୍ଲାସ ନେଉ ନ ଥିଲେ। ବେଳେ ବେଳେ ସେ ଶ୍ରେଣୀକୁ ଆସି ଇଂରାଜୀ କବିତା ପଢ଼ାନ୍ତି। ଖୁବ୍ ଚମତ୍କାର ଲାଗେ। ସେ ପ୍ରଶାସନିକ କାର୍ଯ୍ୟରେ ବିଶେଷ ବ୍ୟସ୍ତ ରହୁଥିଲେ ମଧ୍ୟ ପିଲାମାନଙ୍କ ସମ୍ପର୍କରେ ଶିକ୍ଷକମାନଙ୍କର ମନ୍ତବ୍ୟ ପ୍ରତି ଧ୍ୟାନଶୀଳ ରହୁଥିଲେ। ବନ୍ଧୁ ଶିକ୍ଷକ ମୋ ସମ୍ପର୍କରେ ପ୍ରଧାନ ଶିକ୍ଷକଙ୍କ ପାଖରେ ସେମାନଙ୍କର ଅନୁକୂଳ ମନ୍ତବ୍ୟ ଦେଲେ। କେବଳ ସ୍କୁଲ ବାହାରେ ମୁଁ ମୋର କେତେକ ସହପାଠୀଙ୍କୁ ବେଶ୍ ସମୟ ଦେଉଥିବାରୁ ବ୍ୟକ୍ତିଗତ ସମୟ କମି ଯାଉଛି ବୋଲି ସେମାନଙ୍କର ଏକମାତ୍ର ଅଭିଯୋଗ ଥିଲା। ଏକାଦଶ ଶ୍ରେଣୀର ଆରମ୍ଭରେ ପ୍ରଧାନ ଶିକ୍ଷକ ମୋତେ ଅନୁରୂପ ଭାବରେ ଉତ୍ସାହ ଓ ପରାମର୍ଶ ଦେଲେ। ମୁଁ ଟିକିଏ ଅଧିକା ପରିଶ୍ରମ କଲେ ମାଧ୍ୟମିକ ବୋର୍ଡ଼ ପରୀକ୍ଷାରେ ସର୍ବୋଚ୍ଚ ଦଶଟି ସ୍ଥାନ ମଧ୍ୟରୁ ଗୋଟିଏ ସ୍ଥାନ ହାସଲ କରିପାରିବି ବୋଲି ଆଶା ପ୍ରକାଶ କଲେ। ସ୍କୁଲ ପାଇଁ ଏହା ଗର୍ବ ଓ ଗୌରବର ବିଷୟ ହେବ ବୋଲି ଦୋହରାଇଲେ। ଏକ ବିରାଟ ଦାୟିତ୍ୱର ଆହ୍ୱାନ ମୋତେ ଆନ୍ଦୋଳିତ କଲା।

ସ୍କୁଲରେ ଅଧ୍ୟୟନ କରିବା ଏବଂ ଘରେ ନିଜେ ପଢ଼ିବା ଓ ଅନ୍ୟ କେତେକଙ୍କୁ ସହାୟତା କରିବା ବ୍ୟତୀତ ମୁଁ କୌଣସି ଶିକ୍ଷକଙ୍କ ଘରୋଇ ବ୍ୟବସ୍ଥା ମଧ୍ୟକୁ ଯାଉ ନ ଥିଲି। ମାତ୍ର ବୋର୍ଡ଼ ପରୀକ୍ଷାର ପାଞ୍ଚ ଛ'ମାସ ପୂର୍ବରୁ ମୋର ବନ୍ଧୁ

ଶିକ୍ଷକ କୌଣସି ପାରିଶ୍ରମିକ ନ ନେଇ ସେମାନଙ୍କ ଘରେ ଅନ୍ୟ ପିଲାମାନଙ୍କ ଗହଣରେ ମୋତେ କିଛି କୋଚିଂ ଦେବାର ଆଗ୍ରହ ପ୍ରକାଶ କଲେ। ସ୍କୁଲର ସ୍ୱାର୍ଥ ଓ ପ୍ରତ୍ୟାଶିତ ଗୌରବ ଏହାର ମୁଖ୍ୟ କାରଣ ଥିଲା। ସେମାନଙ୍କର ଏପରି ସହୃଦୟତା ମୋତେ ଭଲ ଲାଗିଲା। ମୋର ପ୍ରସ୍ତୁତି ସମୟକୁ ପୂରାପୂରି ଜଳାଞ୍ଜଳି ନ ଦେଇ ପ୍ରତିଦିନ ଅଳ୍ପ ସମୟ ପାଇଁ ଗଣିତ, ଇଂରାଜୀ ଓ ସଂସ୍କୃତ କୋଚିଂ ପାଇଁ ମୁଁ ଆଗ୍ରହ ପ୍ରକାଶ କଲି। ଇଂରାଜୀ ଶିକ୍ଷା ପାଇଁ ଶ୍ରୀ ଦୀନବନ୍ଧୁ ମିଶ୍ର, ଗଣିତ ପାଇଁ ଶ୍ରୀ ଭଗବାନ ମିଶ୍ର ଓ ସଂସ୍କୃତ ପାଇଁ ପଣ୍ଡିତ ପ୍ରହ୍ଲାଦ ରଥ ମହୋଦୟଙ୍କ ସାହାଯ୍ୟ ନେଲି। ଏମାନଙ୍କର ସାନିଧ ଓ ତାଲିମ ମୋ ପାଇଁ ଅମୂଲ୍ୟ। ଜୀବନର ହିସାବ ଖାତାରେ ଏମାନଙ୍କ ଋଣ ମୋତେ ଚିରକୃତଜ୍ଞ ରଖିଯିବ।

ସବୁକିଛି ଠିକ୍‌ଠାକ୍ ଚାଲିଥିଲା। ୧୯୬୫ ମସିହାରେ ହାଇସ୍କୁଲ ବୋର୍ଡ଼ ପରୀକ୍ଷା ମାର୍ଚ୍ଚ ୧ ରୁ ଆରମ୍ଭ ହେବ ବୋଲି ଘୋଷଣା ସରିଥିଲା। ଏ ଦୃଷ୍ଟିରୁ ପ୍ରସ୍ତୁତିର ଗତିରେ ବେଗ ଥିଲା ଏବଂ ମନପ୍ରାଣରେ କିଛିଟା ଉଦ୍‌ବେଗ ତ କିଛିଟା ଆଶାର ଝଲକ ରହିଥିଲା।

ସମାନ୍ତରାଳ ଭାବରେ ଆଉ ଗୋଟିଏ ଆୟୋଜନର ପ୍ରସ୍ତୁତି ମଧ୍ୟ ଚାଲିଥାଏ। ମୋର ପିଉସୀଙ୍କର ଏକମାତ୍ର ପୁତ୍ର ସନ୍ତାନ ହେଉଛନ୍ତି ବଳରାମ ଭାଇ। ତାଙ୍କର ବିବାହ ଉତ୍ସବର ଦିନ ସ୍ଥିରୀକୃତ ହୋଇ ସାରିଥିଲା। ଫେବୃଆରୀ ୧୭ ତାରିଖ କିମ୍ବା ୧୮ ତାରିଖ। ଉଚ୍ଚଶିକ୍ଷା ପାଇଁ ଅନିଚ୍ଛୁକ ଥିବାରୁ ମୋର ପିଇସାଙ୍କ ସାନଭାଇ ଶ୍ରୀ ଇନ୍ଦ୍ରମଣି ସାହୁ ତାଙ୍କ ପାଇଁ ଏକ ବ୍ୟବସାୟ ପ୍ରତିଷ୍ଠାନର ବ୍ୟବସ୍ଥା କରି ତାଙ୍କୁ ତାଲିମ ମଧ୍ୟ ଦେଇଥିଲେ। ଇନ୍ଦ୍ରମଣି ପିଇସା ଜଣେ ଉଚ୍ଚ ଧରଣର ଉଦ୍ୟୋଗୀ ଏବଂ ବିଚକ୍ଷଣ ବୁଦ୍ଧି ସମ୍ପନ୍ନ ବ୍ୟକ୍ତିତ୍ୱ ଥିବାରୁ ତାଙ୍କର ବ୍ୟବସାୟିକ ସଫଳତା ଖୁବ୍ ଉଚ୍ଚ ଧରଣର ଥିଲା। ତିନୋଟି ପିଇସାଙ୍କ ପରିବାର ତିନୋଟି ଗଠନ ଦୃଷ୍ଟିରୁ ଏକାନ୍ନବର୍ତ୍ତୀ ନ ଥିଲେ ମଧ୍ୟ କାର୍ଯ୍ୟରତ ଓ ଆତ୍ମିକ ଦୃଷ୍ଟିରୁ ଏକାଠି ଥିଲେ ବୋଲି କୁହାଯିବ। ଇନ୍ଦ୍ରମଣି ପିଇସାଙ୍କ ଉଦାରତା ଓ ସହଯୋଗୀ ମନୋବୃତ୍ତି ମୋ ପିଇସାଙ୍କ ପରିବାରର ବେଶ୍ କିଛି ପରିବର୍ତ୍ତନ ଆଣିଥିଲା। ଆର୍ଥିକ ବିକାଶର ଏ ବିଶେଷ ଅଂଶୀଦାର ରୂପେ ବଳରାମ ଭାଇ ଜୀବନ ଆରମ୍ଭ କରି ଥିବାରୁ ଆର୍ଥିକ ମାନଚିତ୍ର ବଦଳିବାରେ ଲାଗିଥାଏ। ସୁତରାଂ ପିଇସାଙ୍କ ଏକମାତ୍ର ପୁତ୍ର ବଳରାମ ଭାଇଙ୍କ ବିବାହ ଉତ୍ସବ ମହାସମାରୋହରେ ପାଳିତ ହେବାର ପ୍ରସ୍ତୁତି ଚାଲିଥାଏ।

ଫେବୃଆରୀ ମାସର ପନ୍ଦର ତାରିଖ ସକାଳ। ପ୍ରାୟ ସାଢ଼େ ନ'ଟା ବେଳେ ମୁଁ ସଂସ୍କୃତ ଶିକ୍ଷକଙ୍କ ବାସଗୃହରୁ ଫେରି ମୋ ସାଇକେଲ୍‌ଟିକୁ ଘର ଭିତରକୁ ଉଠାଇବାର ଚେଷ୍ଟା କରୁଥାଏ। ମୋର ଭଉଣୀମାନେ ଘର ଭିତରୁ ବାହାରି ଆସି ଏକ ସ୍ୱରରେ

କହିଲେ: "ଫକୀର ଭାଇ, ସାଇକେଲ୍ ଭିତରକୁ ନିଅ ନାହିଁ। ମାମୁଁ ହଠାତ୍ ଅସୁସ୍ଥ ହୋଇ ପଡ଼ିଛନ୍ତି। ତାଙ୍କୁ ବଡ଼ ମେଡ଼ିକାଲ୍ ନେବାର ବ୍ୟବସ୍ଥା ହେଉଛି। ବାପା ଓ ବୋଉ (ମୋର ପିଇସା ଓ ପିଇସୀ) ଚାଉଳିଆଗଞ୍ଜ ଚାଲିଗଲେଣି। ତୁମେ ଶୀଘ୍ର ଚାଲିଯାଅ।" ମେଘହୀନ ଆକାଶରେ ଏ ଘଡ଼ଘଡ଼ି ଶବ୍ଦରେ ମୁଁ ଚମ୍‌କି ପଡ଼ିଲି। ମୁଁ ସାଇକେଲ୍ ଲେଉଟାଇ ଦ୍ରୁତ ଗତିରେ ଚାଉଳିଆଗଞ୍ଜ ଦିଗକୁ ଚାଲିଲି। ଲେଭଲ୍‌କ୍ରସିଂ (ଯେଉଁଠାରେ ବର୍ତ୍ତମାନ ଓ.ଏମ୍.ପି. ଓ କଲେଜ ଛକକୁ ସଂଯୁକ୍ତ କରୁଥିବା ଓଭର୍ ବ୍ରିଜ୍ ରହିଛି) ପାଖରେ ପହଞ୍ଚିଲା ବେଳକୁ ଦେଖିଲି ଯେ ଆମ୍ବୁଲାନ୍ସଟି ମୋ ଦିଗକୁ ଆସୁଛି। ତତ୍‌କ୍ଷଣାତ୍ ଅନୁମାନ କଲି ଯେ ବାପାଙ୍କୁ ନେଇ ଆମ୍ବୁଲାନ୍ସଟି ଚାଉଳିଆଗଞ୍ଜରୁ ବଡ଼ ମେଡ଼ିକାଲ୍‌କୁ ଯାଉଛି। ଦିଗ ବଦଳାଇ ମୁଁ ଆମ୍ବୁଲାନ୍ସ ପଛେ ପଛେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ ଦିଗରେ ଆଶଙ୍କିତ ଚିତ୍ତରେ ସାଇକେଲ୍ ଚଳାଇଲି।

ମୁଁ ମେଡ଼ିକାଲ୍‌ରେ ପହଞ୍ଚିବା ବେଳକୁ ବାପାଙ୍କୁ ମେଡ଼ିକାଲ୍ ୱାର୍ଡ଼ରେ ଭର୍ତ୍ତି କରାଯାଇଥାଏ। ଶୁଣିଲି ଯେ ଚାଉଳିଆଗଞ୍ଜ ଅଞ୍ଚଳର ଏକମାତ୍ର ଡାକ୍ତର କିଶୋର ଚନ୍ଦ୍ର ସାହୁଙ୍କ ତତ୍ତ୍ୱାବଧାନରେ ସେ ଅଛନ୍ତି। କରୋନାରୀ ଥ୍ରମ୍ବୋସିସ୍ ବୋଲି ରୋଗ ନିରୂପଣ କରାଯାଇଛି। ବାପା ଶଯ୍ୟାରେ ଶୋଇ ଥାଆନ୍ତି। ପାଖରେ ସାନ ପିଇସୀ ବସି ଥାଆନ୍ତି। ପ୍ରତି ମିନିଟ୍‌ରେ ବାପାଙ୍କ ପାଟିରୁ ପେଜ ଭଳି ତରଳ ଧଳା କଫ ବାହାରୁଥାଏ। ସାନପିଇସୀ ଏ କଫ ନେଇ ଗୋଟିଏ ବାଲ୍ଟିରେ ପକାଇ ଚାଲିଥିଲେ। ଅଳ୍ପ ଦୂରରେ ବଡ଼ ପିଇସା ପିଇସୀ ନିର୍ବାକ୍ ହୋଇ ବସିଥାଆନ୍ତି। ମୁଁ ସେଠାରେ ପହଞ୍ଚିବା ପରେ ଏ ହୃଦୟ ବିଦାରକ ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲି। କ'ଣ କରିବି, ତାହା ଠିକ୍ କରିପାରୁ ନଥିଲି।

ସମୟ ପ୍ରାୟ ଏଗାରଟା ହେବ। ଏତେ ଯନ୍ତ୍ରଣା ସତ୍ତ୍ୱେ ବାପାଙ୍କ କଥା ଚାଲିଥାଏ। ତାଙ୍କୁ ବଡ଼ ପିଇସୀ ମନା କରୁ ଥାଆନ୍ତି। ତଥାପି ସେ କହି ଚାଲିଥାଆନ୍ତି। କେଉଁ କେଉଁ ବ୍ୟକ୍ତି ପାଖରେ ସେ ଆଉ ଦେଇଥିବା ଟଙ୍କାପଇସା ଅଟକି ରହିଛି, ସେମାନଙ୍କ ନାମ କହୁଥାଆନ୍ତି। ଚାଉଳ ବସ୍ତାଏ ପାଇଁ କାହାକୁ ଟଙ୍କା ଦେଉଛନ୍ତି, ସେ କଥା ମଧ୍ୟ ଜଣାଉଥାଆନ୍ତି। ମୁଁ ବୁଝି ପାରୁଥାଏ ଯେ ଆମ ଦୁଇଭାଇଙ୍କ ଭବିଷ୍ୟତ ସୁରକ୍ଷା ପାଇଁ ତାଙ୍କର ଏ ସବୁ ଅସହାୟ ଚେଷ୍ଟା। ଅତୀତରେ ସେ ଆମରି ସୁରକ୍ଷା ପାଇଁ, ନିଜ ପାଇଁ ପଇସା ଖର୍ଚ୍ଚ ନ କରି ନିଜର ସ୍ୱାସ୍ଥ୍ୟକୁ ବିପନ୍ନ କରିଛନ୍ତି। ଅତୀତରେ ନିଶ୍ଚୟ ବେଳେ ବେଳେ ଛାତିରେ ଯନ୍ତ୍ରଣା ହୋଇଥିବ। କିନ୍ତୁ ନିଜ ପାଇଁ ଚିକିତ୍ସାରେ ପଇସା ଖର୍ଚ୍ଚ ନ କରି ସେ ବିପଦକୁ ଆହ୍ୱାନ କରିଛନ୍ତି। ଆମ ପାଇଁ ତାଙ୍କର ଦରଦ କଥା ଭାବି ଯେତିକି ଭାବପ୍ରବଣ ଲାଗୁଥିଲା ତାଙ୍କର ଅବହେଳା କଥା ଭାବି ରାଗ ମଧ୍ୟ ଆସୁଥିଲା। ତଥାପି ନିର୍ବାକ, ନିଷ୍ପନ୍ଦ ହୋଇ ମୁଁ ଠିଆ ହୋଇ ରହିଥିଲି।

ଅନ୍ୟ ଗୋଟିଏ ଘଟଣା ମୋତେ ନିର୍ବାକ୍ କରିଥିଲା। ମୋର ବଡ଼ ପିଉସୀଙ୍କ ସହିତ ବାପାଙ୍କର ଖୁବ୍ ଭଲ ସମ୍ପର୍କ ଥିବା ସ୍ଥଳେ ସାନ ପିଉସୀଙ୍କ ସହିତ ତିକ୍ତ ସମ୍ପର୍କ ରହିଥିଲା। ଏପରିକି ଅତୀତରେ ଦୁହିଁଙ୍କ ମଧ୍ୟରେ ବଚସା ମୋ କାନରେ ବାଜିଛି। ଅଥଚ ଆଜିର ଦୁର୍ଦ୍ଦିନରେ ସାନ ପିଉସୀ ବାପାଙ୍କ ମୁହଁରୁ ବାହାରୁଥିବା କଫକୁ ବିନା ଦ୍ୱିଧାରେ ନିଜ ଦୁଇ ଆଞ୍ଜୁଳାରେ ତୋଳି ନେଇ ବାଲ୍ଟିରେ ପକାଉଥିଲେ। ଅତୀତର ତିକ୍ତ ସମ୍ପର୍କ କାହିଁ କେଉଁ ଦୂରରେ ରହି ଯାଇଥିଲା। ସେହି ଶ୍ରଦ୍ଧାର ସମ୍ପର୍କ-ପ୍ରେରିତ ହୋଇ ସାନ ପିଉସୀ ସେବା କରି ଚାଲିଥିଲେ।

ପ୍ରାୟ ବାରଟା ସାଢ଼େ ବାରଟା ସମୟରେ ଅବସ୍ଥାର ଉନ୍ନତି ହେଲା ଭଳି ମନେହେଲା। ଯେଉଁ ଦ୍ରୁତଗତିରେ ବାପାଙ୍କ ମୁହଁରୁ କଫ ବାହାରୁଥିଲା ତାହା ଟିକେ ମନ୍ଥର ହୋଇ ଆସିଲା। ଇତି ମଧ୍ୟରେ ଆମର କେତେକ ଆତ୍ମୀୟ ସେଠାରେ ପହଞ୍ଚି ଯାଇଥିଲେ। ମୋର ବୁଢ଼ୀମା'ଙ୍କ ଜଣେ ସମ୍ପର୍କୀୟ ଭାଇ ମାଗୁଣୀ ଅଜା ସେଠାରେ ଉପସ୍ଥିତ ଥିଲେ। ମୋତେ ସମସ୍ତେ ପ୍ରବୋଧନା ଦେଇ ଚାଉଳିଆଗଞ୍ଜ ପଠାଇଲେ। କିଛି ଖାଇ ସାରିବା ପରେ ଆସିବାକୁ ପରାମର୍ଶ ଦେଲେ। ଅନିଚ୍ଛାସତ୍ତ୍ୱେ ସାଇକେଲ ନେଇ ଗଲି। ମୋର ସାନଭାଇ ଓ ମୋ ପାଇଁ ବୁଢ଼ୀମା'ଙ୍କ ଘରେ ଖାଇବାର ବ୍ୟବସ୍ଥା ହୋଇଥିଲା। ମୁଁ କୌଣସି ମତେ କିଛି ଖାଇଲି। ସମସ୍ତେ ବାପାଙ୍କ ଅବସ୍ଥା ପଚାରୁଥାଆନ୍ତି। ପ୍ରାୟ ଭଲ ଅଛନ୍ତି ବୋଲି କହୁଥାଏ।

ତରବର ହୋଇ ସାଇକେଲ ଚଢ଼ି ମେଡ଼ିକାଲ ବାହାରିଲି। କାହିଁକି କେଜାଣି ସାଇକେଲ୍ ଚଳାଉ ଚଳାଉ ହଠାତ୍ ତଳେ ପଡ଼ିଗଲି। ପୁଣି ଉଠିପଡ଼ି ସାଇକେଲ୍ ଚଳାଇଲି। ମେଡ଼ିକାଲ୍ ୱାର୍ଡ଼ର ନିକଟବର୍ତ୍ତୀ ହେବା ମାତ୍ରେ ଅଳ୍ପ ଦୂରରୁ କାନ୍ଦଣା ଶୁଣି ପାରିଲି। ମୋର ଛାତି ଥରି ଉଠିଲା। ଜାଣିବାକୁ ବାକି ରହିଲା ନାହିଁ ଯେ ସବୁ କିଛି ସରି ଯାଇଛି। ମୁଁ ପିତୃହରା ହୋଇ ପଡ଼ିଛି। ପହଞ୍ଚି ଦେଖିଲି ଯେ ମୋର ସାନ ପିଉସୀ ଚିତ୍କାର କରି କାନ୍ଦୁଛନ୍ତି। ବଡ଼ ପିଉସୀଙ୍କ ଆଖିରୁ ଝରଝର ଲୁହ ବୋହି ଯାଉଛି। ବାପାଙ୍କ ମରଶରୀରଟି ବିଛଣାରୁ କାଢ଼ି ବାରଣ୍ଡାରେ ଶୁଆଇ ଦିଆଯାଇଛି। ବଡ଼ ପିଉସା ଶବ ସଂସ୍କାର ପାଇଁ ଲୋକ ଓ ଜିନିଷପତ୍ର ଯୋଗାଡ଼ କରିବାକୁ ଚାଲି ଯାଇଛନ୍ତି। ମୁଁ ସାଇକେଲଟିକୁ ପକାଇ ଦେଇ ଖଣ୍ଡିଏ ପଥର ଉପରେ ବସିଗଲି। କ'ଣ କରିବି, ତାହା ବୁଝି ପାରୁ ନ ଥାଏ।

ଅପରାହ୍ନରେ ପିଉସା ଆସିଲେ। ତାଙ୍କ ସହିତ ବଳରାମ ଭାଇ ତାଙ୍କର କେତେଜଣ ବନ୍ଧୁଙ୍କୁ ନେଇ ସେଠାକୁ ଆସିଥିଲେ। ମୁଁ ମର୍ମାହତ ହେଲି ଯେ ଭାଇଙ୍କ ବିବାହ ମଙ୍ଗଳକୃତ୍ୟ କାଲି। ଅଥଚ ତାଙ୍କୁ ଏପରି ଏକ କାର୍ଯ୍ୟରେ ଆସିବାକୁ ପଡ଼ିଛି। ବଡ଼ ପିଉସାଙ୍କ ନିଷ୍ପତ୍ତି ଅନୁଯାୟୀ ମେଡ଼ିକାଲରୁ ସିଧା ସଲଖ ଖାନ୍‌ନଗର ଶ୍ମଶାନକୁ

ନେଇ ଯିବାର ଠିକ୍ ଠାକ୍ ହେଲା। ମର ଶରୀରକୁ ଚାଉଳିଆଗଞ୍ଜ ନେଇ ଅଧିକ ଶୋକାକୁଳ ଅବସ୍ଥା ସୃଷ୍ଟି କରିବା ଅନୁଚିତ ବିଚାର କରାଗଲା। ମୋର ସେହି ଦୁର୍ବଳ କାନ୍ଧରେ ବାପାଙ୍କ ମରଶରୀରକୁ ବହନ କରି ଶ୍ମଶାନ ଗଲି। ବଳରାମ ଭାଇ ତାଙ୍କର ବନ୍ଧୁ କେଇଜଣ ଓ ମୁଁ ଶ୍ମଶାନ ଗଲୁ। ସାଙ୍ଗରେ ବଡ଼ ପିଇସା, ସାନ ପିଇସା, ମୋର ଅଜା ଓ ମାଗୁଣୀ ଅଜା ରହିଥିଲେ। ଶ୍ମଶାନରେ ପହଞ୍ଚିବା ପରେ ଖବର ପାଇ ମୋର ମାମୁ ମଧ୍ୟ ପହଞ୍ଚିଲେ।

ଫେବୃଆରୀ ପନ୍ଦର ତାରିଖରେ ପୂରାପୂରି ଶୀତ କଟି ନ ଥାଏ। ମୁଁ ମୁଖାଗ୍ନି ଦେଇ ସାରିବା ପରେ ପିଇସୀ ଘର ଲୋକମାନେ ଚାଲିଗଲେ। ଆମେ ଦୁଇଭାଇ (ମୁଁ ଓ ଅଚ୍ୟୁତ) ଅଜାଙ୍କ ସହିତ କାଠଯୋଡ଼ି ନଦୀବନ୍ଧ ଉପର ଦେଇ ଖାନ୍‌ନଗର ବାଟେ ଚାଲି ଚାଲି ଚାଉଳିଆଗଞ୍ଜ ଫେରୁଥାଉ। ଖାନ୍‌ନଗରର ଗୋଟିଏ ସ୍ଥାନରେ ଅଜାଙ୍କ ନିର୍ଦ୍ଦେଶ ଅନୁସାରେ ନଦୀରେ ଗାଧୋଇବାକୁ ପଡ଼ିଲା। ଗାଧୋଇ ସାରି ପଛକୁ ଚାହିଁଲି। ହୁ ହୁ ହୋଇ ନିଆଁ ଜଳୁଛି। ସମ୍ଭବତଃ ମୁଁ କିଛି ସମୟ ପୂର୍ବରୁ ସଂଯୋଗ କରିଥିଲି ମୁଖାଗ୍ନି। ଡର ଲାଗିଲା। ତଥାପି ପାଦ ଦୁଇଟିକୁ ସ୍ଥିର ରଖି ସାନଭାଇର ହାତ ଧରି ଚାଉଳିଆଗଞ୍ଜ ଦିଗରେ ଚାଲିଲୁ। ଓଦା ଲୁଗା ଓ ଖାଲି ଦେହରେ ଶୀତ ଲାଗୁଥାଏ। ତଥାପି ଉପାୟହୀନ। ରିକ୍ସା ମଧ୍ୟ ମିଳୁ ନଥାଏ। ପାଞ୍ଚନମ୍ବର ଜାତୀୟ ରାଜପଥ ଦେଇ ଚାଉଳିଆଗଞ୍ଜ ଫେରିଲୁ। ସେତେବେଳକୁ ରାତି ଆଠଟା।

ଘରେ ପହଞ୍ଚି ମା'କୁ କିପରି ସାନ୍ତ୍ୱନା ଦେଲୁ ତାହା ଜାଣି ନ ଥିଲୁ। କେବଳ ଚୁପ୍‌ଚାପ୍ ହୋଇ ବସିଲୁ। ଅଜା ଆମ ପାଇଁ ଗୁଡ଼ିଆ ଦୋକାନରୁ କିଛି ରୁଟି ତରକାରୀ କିଣି ଆଣିଲେ। ଆମେ ଖାଇସାରି ବିଶ୍ରାମ ନେବାକୁ ବାହାରିଲୁ। ବାପା ସାଧାରଣତଃ ଯେଉଁ ସ୍ଥାନରେ ଶୁଅନ୍ତି, ଠିକ୍ ସେହି ସ୍ଥାନରେ ଶୋଇବା ପାଇଁ ମା' ମୋତେ ପରାମର୍ଶ ଦେଲା। ମୁଁ ମାନିନେଲି। ମୁଁ ଶୋଇପଡ଼ିଲି ସତ, ହେଲେ ଖୁବ୍ ପାହାନ୍ତାରେ ମୋର ନିଦ ଭାଙ୍ଗିଗଲା। ମୋ ମନରେ ଗଭୀର ଦୁଃଖ ଥିଲେ ମଧ୍ୟ ସେ ପର୍ଯ୍ୟନ୍ତ ମୁଁ ଉଚ୍ଚ ସ୍ୱରରେ କାନ୍ଦି ନ ଥିଲି। ଏବେ ମୁଁ ନିଜକୁ ନିୟନ୍ତ୍ରଣ କରିପାରିଲି ନାହିଁ। ଉଚ୍ଚ ସ୍ୱରରେ ଭୋ ଭୋ କାନ୍ଦିଲି। ମା' ମଧ୍ୟ ମୋତେ ଧରି କାନ୍ଦିଲା। କେତେବେଳେ ସେ କାନ୍ଦ ବନ୍ଦ ହେଲା, ତାହା ମୋର ସ୍ମରଣ ନାହିଁ।

ପରଦିନ ସକାଳେ ରୀତି ଅନୁଯାୟୀ ଶ୍ମଶାନରୁ ବାପାଙ୍କର ଅସ୍ଥି ଆଣିବାର ବିଧି। ଚଟି ନ ପିନ୍ଧି ଅଜାଙ୍କ ସହିତ ଖାନ୍‌ନଗର ଶ୍ମଶାନକୁ ବାହାରିଲି। ଚାଉଳିଆଗଞ୍ଜର ଏକ ମୁଖ୍ୟ ରାସ୍ତା ଦେଇ ପାଞ୍ଚ ନମ୍ବର ଜାତୀୟ ରାଜପଥକୁ ଉଠିବାର ଅବ୍ୟବହିତ ପୂର୍ବରୁ ଦେଖିବାକୁ ପାଇଲି ଯେ ମୋର ଚାରିଜଣ ସହପାଠୀ ସାଇକେଲ୍‌ରେ ମୋ ଦିଗକୁ ଆସୁଛନ୍ତି। ସେମାନଙ୍କ ମଧ୍ୟରେ ମୋର ଅନ୍ତରଙ୍ଗ ବନ୍ଧୁ ତାପସ, ମନି ଓ

କେଦାର ଥିଲେ। ସେମାନଙ୍କ ମଧ୍ୟରେ ଦୁର୍ଗା ପ୍ରସାଦ (ଯାହାଙ୍କୁ ଦ୍ୱିତୀୟ ସ୍ଥାନକୁ ଖସାଇ ମୁଁ ଶ୍ରେଣୀରେ ପ୍ରଥମ ହେଉଥିଲି) ମଧ୍ୟ ଥିଲେ। ଆମ ଘରକୁ ଯିବା ପାଇଁ ମୁଁ ସେମାନଙ୍କୁ ଇଙ୍ଗିତ ଦେଲି। ମାତ୍ର ସେମାନେ ନାସ୍ତିବାଣୀ ଶୁଣାଇ ମୋ ପଛେ ପଛେ ଶ୍ମଶାନ ଦିଗରେ ସାଇକେଲ୍ ଗଡ଼ାଇଲେ। ଗତ ରାତିରେ ସେମାନଙ୍କୁ ଦୁଃସମ୍ବାଦ ଦେବାର କୌଣସି ଉପାୟ ନ ଥିଲା। ସେମାନେ କେଉଁ ସୂତ୍ରରୁ ଜାଣିଲେ, ମୁଁ କହିପାରିବି ନାହିଁ। ମାତ୍ର ବନ୍ଧୁ ହୃଦୟର ଆବେଗ ସେମାନଙ୍କୁ ସକାଳୁ ସକାଳୁ ଟାଣି ଆଣିଥିଲା। ମୁଁ ବାପାଙ୍କ ଅସ୍ଥି ନେଇ ପୁନଶ୍ଚ ଫେରିବା ସମୟରେ ସେମାନେ ମୋ ସହିତ ଘରକୁ ଆସିଲେ। ବନ୍ଧୁତ୍ୱର ବଳୟ ଭିତରେ ଆଗେ କିଛି ସମୟ ଏକାଠି କାଟିଲୁ।

ବଡ଼ ପିଇସୀଙ୍କ ମନର ବେଦନା ଯେତେ ବେଶୀ ହେଲେ ମଧ୍ୟ ସାମାଜିକ ଭୂମିକାର ଚାପରେ ତାଙ୍କୁ କାରବାର କରିବାକୁ ହେଲା। ବଳରାମ ଭାଇଙ୍କ ବିବାହ ଉତ୍ସବ କାଠଗଡ଼ା ସାହିରେ ଅନୁଷ୍ଠିତ ହେଲା।

ମୋ ବୁଢ଼ୀମା'ଙ୍କର ଏକ ମାମୁଁ ପୁଅ ଭାଇ ହେଉଛନ୍ତି ଆମର ମାଗୁଣୀ ଅଜା। ତାଙ୍କ ପରି ଦରଦୀ ମଣିଷଟିର ସନ୍ଧାନ ପାଇବା କଷ୍ଟ। କେବଳ ମୋ ବାପାଙ୍କ ମୃତ୍ୟୁ ଘଟଣା ନୁହେଁ। ଅତୀତର ବହୁ ଦୁର୍ଦ୍ଦିନ ସମୟରେ ସେ ପାଖରେ ଠିଆ ହୁଅନ୍ତି। ଘଟଣା କ୍ରମେ ମୋର ପିଇସୀ ଘରକୁ ଲୋକମାନଙ୍କର ଆସିବାର ରାସ୍ତା ବନ୍ଦ ଥିଲା। କିନ୍ତୁ ମୁଖାଗ୍ନି ସମୟରୁ ଆରମ୍ଭ କରି ଶେଷକୃତ୍ୟର ବିଧି ବିଧାନ ଶେଷ ହେବା ପର୍ଯ୍ୟନ୍ତ ମାଗୁଣୀ ଅଜା ଆମ ପାଖରେ ଉପସ୍ଥିତ ଥିଲେ। ଏକାଦଶାହ ଶେଷ ହେବା ପର୍ଯ୍ୟନ୍ତ ସେ ତାଙ୍କର ମଙ୍ଗଳାବାଗ ବାସଭବନରୁ ସକାଳ ଆଠଟା ବେଳେ ଆମ ଘରକୁ ଆସନ୍ତି ଓ ରାତି ଦଶଟାରେ ଫେରି ଯାଆନ୍ତି।

ଏକଦା ମାଗୁଣୀ ଅଜା ଖୁବ୍ ଧନୀ ଥିଲେ। ଢେଙ୍କାନାଳରେ ତାଙ୍କର ଭଲ ବ୍ୟବସାୟ ଚାଲିଥିଲା। ଆମେ ସାନ ଥିବା ବେଳେ ବାପାଙ୍କ ସହିତ ଯୋରନ୍ଦା କିମ୍ବା କପିଳାସ ଗଲାବେଳେ ତାଙ୍କ ପାଖରେ କିଛି ସମୟ ବିଶ୍ରାମ ନେଉ। ଆମର ଖାଦ୍ୟ ପାନୀୟର ବ୍ୟବସ୍ଥା ଏବଂ ଆମକୁ ଖୁସୀ କରାଇବାରେ ତାଙ୍କର ପ୍ରଯତ୍ନ ଦେଖିଲେ ଅବାକ୍ ଲାଗେ। ଧୀରେ ଧୀରେ ତାଙ୍କ ଅବସ୍ଥାର ଅବନତି ଘଟିଲା। ସେ ବ୍ୟବସାୟ ହରାଇ ତାଙ୍କର ମଙ୍ଗଳାବାଗ୍‌ର (କଟକ) ଛୋଟିଆ ଘରଟିରେ ରହୁଥିଲେ। କିନ୍ତୁ ତାଙ୍କ ହୃଦୟର ବ୍ୟାପ୍ତି ସେମିତି ରହିଥିଲା। ଶରୀରରେ ଦାରିଦ୍ର୍ୟର ଛାପ ଥିଲା। କିନ୍ତୁ ମନପ୍ରାଣରେ ସମ୍ବେଦନଶୀଳତାର ଗଭୀରତା ସେମିତି ରହିଥିଲା। ଶ୍ରାଦ୍ଧ ଓ ଅନ୍ୟସବୁ ବିଧି ବିଧାନ ପାଇଁ କ'ଣ କରିବାକୁ ହେବ ସେ ପ୍ରତିଦିନ ପରାମର୍ଶ ଦେଉଥିଲେ। ତାଙ୍କରି ତତ୍ତ୍ୱାବଧାନରେ ଶୁଦ୍ଧିକ୍ରିୟା ସମ୍ପନ୍ନ ହେଲା। ଏକାଦଶାହ ପରେ ମୁଁ ପରୀକ୍ଷା ପ୍ରସ୍ତୁତି ପାଇଁ କାଠଗଡ଼ାସାହି ଆସିଲି। ସାନଭାଇ ମା'ପାଖରେ ରହିଲା।

ଏକାଦଶାହ ସରିବାର ତିନି ଚାରିଦିନ ପରେ ବୋର୍ଡ଼ ପରୀକ୍ଷା (ମାର୍ଚ୍ଚ ୧ରୁ) ଆରମ୍ଭ ହେଲା। ଖୁବ୍ ଭଲ କରିବାର ଆଶା ଓ ଉତ୍ସାହ ଧକ୍କା ଖାଇ ସାରିଥିଲା। ତଥାପି ମୋର ସହପାଠୀମାନେ ସାନ୍ତ୍ୱନା ଦେଉଥିଲେ। ଶିକ୍ଷକମାନେ ପ୍ରେରଣାର କଥା କହୁଥିଲେ। ଆମ ସ୍କୁଲରୁ ଚାରିଜଣ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ। ଦୁଇଜଣ ହିନ୍ଦୀ ବିଭାଗରୁ ଏବଂ ଦୁଇଜଣ ଓଡ଼ିଆ ବିଭାଗରୁ। ଏମାନଙ୍କ ମଧ୍ୟରୁ ମୋର ସର୍ବୋଚ୍ଚ ନମ୍ବର ଥିଲା। କିନ୍ତୁ ବୋର୍ଡ଼ ପରୀକ୍ଷାରେ ସର୍ବୋଚ୍ଚ ଦଶଟି ସ୍ଥାନ ମଧ୍ୟରୁ ଗୋଟିଏ ସ୍ଥାନ ହାସଲ କରିବାର ଅଭୀପ୍ସା ଏକ ପ୍ରଚଣ୍ଡ ଆଘାତରେ ଭାଙ୍ଗି ଯାଇଥିଲା।

❖

(୧୪)

# ରେଭେନ୍ସା ମାଟିର ବାସ୍ନା

କଟକ ନଗରୀର ଗଳି ଉପଗଳି ସହିତ ମୁଁ ଅପରିଚିତ ନ ଥିଲି । ବିଶେଷତଃ ଦୁର୍ଗାପୂଜା ସମୟରେ ଜଣେ ଦୁଇଜଣ ବନ୍ଧୁଙ୍କ ସହିତ ମୁଁ ଚାଲିଚାଲି କଟକର ଗଳିକନ୍ଦିରେ ଥିବା ପୂଜାମଣ୍ଡପ ଦେଖିବାକୁ ଯାଏ । ବର୍ଷେ ବର୍ଷେ ଏପରି ପଦଯାତ୍ରା ଦୁଇ ତିନିଦିନ ଅବ୍ୟାହତ ରହେ । ଅବଶ୍ୟ କଟକରେ ମୋର ବହୁବ୍ୟବହୃତ ଓ ନିତ୍ୟପରିଚିତ ରାସ୍ତା ଥିଲା ଚାଉଳିଆଗଞ୍ଜରୁ କଲେଜଛକ ଦେଇ କାଠଗଡ଼ା ସାହିକୁ ଯାଇଥିବା ଗୋଟିଏ ମୁଖ୍ୟ ରାସ୍ତା । ମୋର ସ୍କୁଲ ଜୀବନର ପ୍ରତି ଶନିବାର ଦିନ ଅପରାହ୍ଣରେ ମୁଁ ଚାଉଳିଆଗଞ୍ଜକୁ ଯାଏ ଏବଂ ରବିବାର ଦିନ ଅପରାହ୍ଣରେ କାଠଗଡ଼ା ସାହିକୁ ଫେରିଆସେ । ତରବର ହୋଇ ଯିବା କିମ୍ୱା ଫେରିବା ସମୟରେ ମାଲ୍‌ଗୋଦାମ ଓ ଛତ୍ରବଜାର ରାସ୍ତା ଦେଇ ଯାଇଥାଏ । ନଚେତ୍ ଏ ରାସ୍ତା ସବୁ ଅପରିଚ୍ଛନ୍ନ ଥିବାରୁ କଲେଜଛକ ଓ ରାଣୀହାଟ ମଧ୍ୟ ଦେଇ ଯିବା ଆସିବା କରିଥାଏ । କଲେଜଛକ ଦେଇ ଯିବାଆସିବା କରିବା ସମୟରେ ସ୍ୱତଃ ରେଭେନ୍ସା କଲେଜ ଦିଗରେ ଦୃଷ୍ଟି ଆକର୍ଷିତ ହୁଏ । ସୁଦୃଶ୍ୟ ପ୍ରାସାଦ, ଦଳଦଳ ବିଦ୍ୟାର୍ଥୀମାନଙ୍କର ଯିବା ଆସିବାର ଦୃଶ୍ୟ ଏବଂ ସାମନାରେ ଟେନିସ୍ ପ୍ରାଙ୍ଗଣରେ କେତେକ ଟେନିସ୍ ଖେଳାଳୀଙ୍କ କ୍ରୀଡାର ଦୃଶ୍ୟ ଆକର୍ଷଣର ଏକ ମାୟାଜାଲ ସୃଷ୍ଟି କରେ । ମୁଁ ଏ କଲେଜରେ ପଢନ୍ତି କି ! ଏପରି ଏକ ସ୍ୱପ୍ନାବିଷ୍ଟ କଳ୍ପନା ଧୀରେ ଧୀରେ ଦାନା ବାନ୍ଧେ ।

ଏକ ନିଦାରୁଣ ଆଘାତ ଭିତରେ ହାଇସ୍କୁଲ ବୋର୍ଡ଼ ପରୀକ୍ଷା ମାର୍ଚ୍ଚ ମାସରେ (୧୯୬୫) ଶେଷ ହେଲା । ପରୀକ୍ଷାର ଫଳାଫଳ ନେଇ ମୁଁ ଅତିବେଶୀ ଆଶାୟୀ ନ ଥିଲି । ତଥାପି ମନର କେଉଁ ଏକ କୋଣରେ ଆଶାର ଛିଟାଟିଏ ରହିଥିଲା । କିଛି ଏକ ଚମତ୍କାରିତା ଘଟି କ'ଣ ଗୋଟାଏ ଘଟି ଯିବ କି ! ଶୁଣିବାକୁ ପାଇଲୁ ଯେ ମଇ ମାସର ପ୍ରଥମ ସପ୍ତାହରେ ପରୀକ୍ଷା ଫଳ ପ୍ରକାଶ ପାଇବ । ମନପ୍ରାଣ ସଦୃଷ୍ଟ ହୋଇ ଅପେକ୍ଷା କରିଥାଆନ୍ତି ଫଳାଫଳ ଜାଣିବାକୁ ।

ମାର୍ଚ୍ଚ ମାସରୁ ମଇମାସ ମଧ୍ୟରେ କିଛିଟା ମାନସିକ ବିପର୍ଯ୍ୟୟ ଘଟିଥିଲା । ସ୍କୁଲ ଜୀବନରେ ମୋର ଖାଇବା, ପିଇବାରେ ଅଭାବ ନ ଥିଲା । ମୋ ପିଇସାଙ୍କ ଆର୍ଥିକ ଅବସ୍ଥା ଉନ୍ନତ ନ ଥିଲେ ମଧ୍ୟ ସେ ମୋର ଯଥାରୀତି ଯତ୍ନ ନେଉଥିଲେ । ତଥାପି ମୋର ହାତ ଖର୍ଚ୍ଚ ପାଇଁ ମୁଁ ଜଣେ ଦୁଇଜଣ ପିଲାଙ୍କୁ ପଢ଼ାଉଥିଲି । ପାରିଶ୍ରମିକ ରୂପେ ମାସିକ ଦଶକୋଡ଼ିଏ ଟଙ୍କା ପାଉଥିଲି । ମୁଁ ପଢ଼ାଉଥିବା ପିଲାମାନେ

ପରୀକ୍ଷାରେ ଭଲ କରୁଥିବାରୁ ସେମାନଙ୍କ ଅଭିଭାବକ ଖୁବ୍ ଖୁସୀ ଥିଲେ। ବୋର୍ଡ଼ ପରୀକ୍ଷା ସରିବା ପରେ ବେଶ୍ ବଳକା ସମୟ ମିଳିଲା। ଠିକ୍ ପରୀକ୍ଷା ପରେ ପରେ ଜଣେ ଅନୁରୋଧ ଜଣାଇଲେ ତାଙ୍କର ପିଲାମାନଙ୍କୁ ପଢ଼ାଇବା ପାଇଁ। ଦୁଇଓଳି (ସକାଳ ଓ ସନ୍ଧ୍ୟା) ପଢ଼ାଇବାକୁ ହେବ। ମାସକୁ ଅଶୀଟଙ୍କା ମିଳିବ। ସମୟର ସଦୁପଯୋଗ ହେବ ଏବଂ ବେଶୀ ପଇସା ମିଳିବ, ଏହା ଭାବି ମୁଁ ସମ୍ମତ ହେଲି।

ପ୍ରତିମାସରେ ଏତେ ପଇସା କ'ଣ କରିବି, ଭାବିପାରିଲି ନାହିଁ। ସ୍କୁଲ ଜୀବନରେ ମୁଁ ଆଦୌ ସିନେମା ପ୍ରିୟ ନ ଥିଲି। ବର୍ଷକରେ ଥରେ ଅଧେ ଅନ୍ୟମାନଙ୍କ ସହିତ ସିନେମା ହଲ୍‌କୁ ଯାଏ। ମାତ୍ର ବାପାଙ୍କୁ ହରାଇବା ପରେ ମୁଁ ଯେଉଁ ମାନସିକ ଅସ୍ଥିରତା ଭିତର ଦେଇ ଗତି କରୁଥିଲି ସେଥିରେ ସିନେମାର ଚୁମ୍ବକୀୟ ଆକର୍ଷଣକୁ ଏଡ଼ାଇ ପାରିଲି ନାହିଁ। ବିଶେଷକରି ପ୍ରତି ରବିବାର ଦିନ ମୁଁ ଚାଉଳିଆଗଞ୍ଜରୁ କାଠଗଡ଼ା ସାହିକୁ ଫେରିଥାଏ। ମୁଁ ଫେରିବା ସମୟରେ ଅଭ୍ୟାସଗତ ଭାବରେ ରାଣୀହାଟ ପୋଲ ଉପରେ ଥିବା ହିନ୍ଦ୍ ସିନେମା ହଲ୍‌କୁ ପ୍ରବେଶ କଲି। ଟିଉସନ୍ ଦରମା ପାଇ ପଇସାର ଅଭାବ ନ ଥିଲା। ସୁତରାଂ ପ୍ରତି ସପ୍ତାହରେ ଅନ୍ତତଃ ଥରେ ଦୁଇଥର ସିନେମା ଦେଖିବାର ବଦଅଭ୍ୟାସ ରୂପ ନେଲା। ଫାଷ୍ଟ ସୋ ଦେଖି ସାରି ସାଢ଼େ ନ'ଟାରେ ଘରେ ପହଞ୍ଚେ। ଅନ୍ୟମାନେ ଧରି ନିଅନ୍ତି ଯେ ମୁଁ ଚାଉଳିଆଗଞ୍ଜରୁ ଫେରୁଛି। ପ୍ରଶ୍ନ ପଚାରନ୍ତି ନାହିଁ।

ପିଲାଙ୍କୁ ପାଠପଢ଼ାଇବା ଏବଂ କିଛିଟା ମନୋରଞ୍ଜନରେ ବୁଡ଼ିବାର ଅଭ୍ୟାସରେ ଦୁଇମାସ କଟିଗଲା। ମଇ ମାସର ପ୍ରଥମ ସପ୍ତାହରେ ବୋର୍ଡ଼ ପରୀକ୍ଷାଫଳ ପ୍ରକାଶ ପାଇବ। ମୁଁ ଉତ୍‌କଣ୍ଠିତ ହୋଇ ଉଠିଲି।

ସମସ୍ତ ଉତ୍କଣ୍ଠା ମଧ୍ୟରେ ମୋର ଏକାଗ୍ରତା ଯେ ପୂରାପୂରି ବାଟଭୁଲି ନାହିଁ, ଏ କଥାର ପ୍ରମାଣ ମୁଁ ପାଇଗଲି। ସେ ଦିନ ମଇ ୮ ତାରିଖ। ପୂର୍ବଦିନ ରାତିରେ ମୋର ପ୍ରିୟବନ୍ଧୁ ତାପସ ଓ ମୁଁ ମାଧମିକ ବୋର୍ଡ଼ ଅଫିସ୍‌କୁ ଯାଇଥିଲୁ। ଶୁଣିବାକୁ ପାଇଲୁ ଯେ ପରୀକ୍ଷା ଫଳ ପ୍ରକାଶ ପାଇବ। ଆମ ପରି ପ୍ରାୟ ଶହେଜଣ ଛାତ୍ର ସେଠାରେ ଜୁଣ୍ଡ ହୋଇଥିଲେ। ଅଫିସର୍ ଗେଟ୍ ବନ୍ଦ ରହିଥିଲା। ଆଜି ରାତିରେ ଫଳାଫଳ ପ୍ରକାଶ ପାଇବାର କୌଣସି ସମ୍ଭାବନା ନାହିଁ ବୋଲି ଅଫିସ୍ ଭିତରୁ କେହି କେହି କହୁଥିଲେ। ତଥାପି ବାହାରେ ଗହଳି ବଢ଼ିବାରେ ଲାଗିଥାଏ। ନିରୂପାୟ ହୋଇ ପ୍ରାୟ ରାତି ବାରଟା ବେଳକୁ ଆମେ ଫେରି ଆସିଲୁ। ତା'ପର ଦିନ ସକାଳ ଆଠଟା ନ'ଟା ବେଳକୁ ପୁନଶ୍ଚ ଆସିବା ପାଇଁ ସ୍ଥିର କଲୁ।

ମଇ ଆଠ ତାରିଖ ଦିନ ସକାଳ ଆଠଟାରେ ମୁଁ ସାଇକେଲ୍ ଧରି ତାପସ ଘରକୁ ବାହାରିଲି। ବାଟରେ ଚୌଧୁରୀ ବଜାରରେ ମୋର ପୂର୍ବତନ ଗଣିତ ଶିକ୍ଷକ

ରବୀନ୍ଦ୍ର ମୋହନ ଜେନା ଦେଖାହେଲେ। ସେ କହିଲେ- "ଫକୀର। ତୁମକୁ ସ୍କୁଲରେ ସମସ୍ତେ ଖୋଜୁଥିଲେ। ଆଜି ରେଡ଼କ୍ରସ୍‌ର ପ୍ରତିଷ୍ଠାତା ହେନେରୀ ଡୁନାଣ୍ଟଙ୍କ ଜନ୍ମଦିନ। ଏଥିପାଇଁ ଆଜି ସ୍କୁଲପିଲାଙ୍କ ମଧ୍ୟରେ ଗୋଟିଏ ବକ୍ତୃତା ପ୍ରତିଯୋଗିତାର ଆୟୋଜନ କରାଯାଇଛି। ପ୍ରତିଯୋଗିତାଟି ରେଭେନ୍ସା କଲେଜିଏଟ୍ ସ୍କୁଲରେ ଦଶଟା ସମୟରେ ଅନୁଷ୍ଠିତ ହେବ। ତମେ ଆମ ସ୍କୁଲର ପ୍ରତିନିଧିତ୍ୱ କର ବୋଲି ସମସ୍ତେ ଚାହାଁନ୍ତି।" ମୁଁ ସମ୍ମତ ଜଣାଇ ତାପସ ଘର (ଡଗରପଡ଼ା) ଦିଗରେ ଆଗେଇଲି। ମୁଁ ତାପସ ପାଖରେ ପହଞ୍ଚିବା ପରେ ତାକୁ ବକ୍ତୃତା ପ୍ରତିଯୋଗିତାର କଥା ଜଣାଇଲି। ରେଭେନ୍ସା କଲିଜିଏଟ୍ ଯିବା ପାଇଁ ସେ ତୁରନ୍ତ ରାଜି ହୋଇଗଲା ଏବଂ ପ୍ରତିଯୋଗିତାରେ ମୁଁ ଭାଗ ନିଏ ବୋଲି ଦୃଢ଼ମତ ଜଣାଇଲି। ବୋର୍ଡ଼ ପରୀକ୍ଷା ଫଳ ପ୍ରକାଶନର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ ବୋଲି ତାପସ ଦୃଢ଼ ସ୍ୱରରେ କହିଲା।

ଆମେ ଦୁହେଁ ଯଥା ସମୟରେ ରେଭେନ୍ସା କଲେଜିଏଟ୍‌ରେ ପହଞ୍ଚିଲୁ। ଆମ ସ୍କୁଲର ଶିକ୍ଷକ ଶ୍ରୀ ବିବେକାନନ୍ଦ ଦାଶ ମୋତେ ଦେଖି ଖୁବ୍ ଖୁସୀ ହେଲେ। ଆଜି ବୋର୍ଡ଼ ପରୀକ୍ଷାର ଫଳାଫଳ ପ୍ରକାଶ ପାଇବାର ସମ୍ଭାବନା ଥିବା ସତ୍ତ୍ୱେ ମୁଁ ଆସି ପାରିଥିବାରୁ ସେ ବଧାଇ ଜଣାଇଲେ। ଠିକ୍ ସମୟରେ ପ୍ରତିଯୋଗିତା ଆରମ୍ଭ ହେଲା। କାର୍ଯ୍ୟକ୍ରମ ଶେଷ ହେଲେ ମୁଁ କିପରି ତୁରନ୍ତ ମାଧ୍ୟମିକ ବୋର୍ଡ଼ ଅଫିସ୍‌କୁ ଚାଲିଯିବି ତାହା ଭାବି ବ୍ୟଗ୍ର ରହିଥାଏ। ପ୍ରତିଯୋଗିତା ସରିଲା ମାତ୍ରେ ଫଳାଫଳ ଘୋଷଣା କରା ନଯାଇ ଉପସ୍ଥିତ ଶିକ୍ଷକମାନଙ୍କୁ ଆହ୍ୱାନ କରାଗଲା ହେନେରୀ ଡୁନାଣ୍ଟଙ୍କ ବିଷୟରେ କିଛି କହିବାକୁ। ଭକ୍ତମଧୁ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ଶ୍ରୀ ଚିନ୍ତାମଣି ପତି ଦୀର୍ଘ ସମୟ ଭାଷଣ ଦେଲେ। ଧୈର୍ଯ୍ୟଚ୍ୟୁତି ଘଟୁଥାଏ, କିନ୍ତୁ ନିରୂପାୟ।

ଘୋଷଣାଟି ସୁଖକର ଥିଲା। ମୁଁ ପ୍ରଥମ ସ୍ଥାନ ଅଧିକାର କରି ପୁରସ୍କାର ସ୍ୱରୂପ ତିରିଶ ଟଙ୍କା ପାଇଲି। ସେ ସମୟରେ ଖୁବ୍ ବେଶୀ ପଇସା। ତାପସ ଓ ମୁଁ କାଳବିଳମ୍ବ ନ କରି ବୋର୍ଡ଼ ଅଫିସ୍ ଅଭିମୁଖେ ବାହାରିଲୁ। ଦିନ ପ୍ରାୟ ବାରଟା। ସକାଳେ ପ୍ରାତଃ ଭୋଜନ ଠିକ୍ ରୂପେ ହୋଇ ନଥିବାରୁ ଦୁହିଁଙ୍କୁ ପ୍ରବଳ ଭୋକ। ପାଖରେ ବି ପୁରସ୍କାର ଅର୍ଥ ରହିଛି। ଦୋଳମୁଣ୍ଡାଇ ଛକରେ ପୂର୍ଣ୍ଣମା ରେଷ୍ଟୁରାଣ୍ଟରେ ପଶିଲୁ। ପେଟଭରି ଭାତ ଓ କଲିଜା ଭଜା ଖାଇଲୁ।

ଖାଇସାରି ଅଳ୍ପ ଦୂରରେ ଥିବା ବୋର୍ଡ଼ ଅଫିସ୍‌ର କାନ୍ଥରେ ହାଇସ୍କୁଲ ପରୀକ୍ଷାର ଘୋଷିତ ଫଳାଫଳର ଟାଇପ୍ କରା ପୃଷ୍ଠା ସବୁ ଅଠା ସାହାଯ୍ୟରେ କାନ୍ଥରେ ଲାଗିଥାଏ। ସକାଳ ଓଳି ପ୍ରକାଶ ପାଇଥିବାରୁ ବିଶେଷ ଭିଡ଼ ନ ଥିଲା। କିଛି କିଛି କାଗଜ ଚିରା ହୋଇ ନିଶ୍ଚିହ୍ନ ହୋଇଥିଲା। ସୌଭାଗ୍ୟବଶତଃ ଆମର ଅଂଶବିଶେଷଟି କାନ୍ଥରେ ଲାଗିଥିଲା। ତାପସ କାଢ଼ି ଆଣିଲା। ଉତ୍ସବ ପାଇଁ ଉପାଦାନ ନାହିଁ। ଆମ

ସ୍କୁଲରୁ ଚାରି ଜଣ ପ୍ରଥମ ଶ୍ରେଣୀ ପାଇଥିଲେ। ମୁଁ ସେମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ପାଇଥିଲି। ବୋର୍ଡ଼ ପରୀକ୍ଷାରେ ଶ୍ରେଷ୍ଠ ଦଶଜଣଙ୍କ ତାଲିକାରେ ସ୍ଥାନ ପାଇବାର ସ୍ୱପ୍ନ ଅପୂରିତ ରହିଲା। ସେ ବର୍ଷ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲର ପ୍ରିୟଦର୍ଶୀ ଦାଶ ପ୍ରଥମ ଶ୍ରେଣରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ।

ଧୀରେ ଧୀରେ ମନର ଅସ୍ଥିରତା କମିଗଲା। ମନକୁ ସଜାଡ଼ି ନେବାକୁ ଚେଷ୍ଟା କଲି। ପରୀକ୍ଷାରେ ଯେଉଁ ସ୍ତରର ସଫଳତା ମିଳିଛି ତାହାକୁ ସମ୍ୱଳ କରି ରେଭେନ୍ସାରେ ପ୍ରବେଶ କରିବା ସହଜ ହେବ। ମୋର ବନ୍ଧୁମାନେ (ମନି, ତାପସ ଓ କେଦାର) ଦ୍ୱିତୀୟ ଶ୍ରେଣୀ ପାଇଥିଲେ। ସୁତରାଂ ସେମାନେ ଖ୍ରୀଷ୍ଟ କଲେଜ ଓ ଷ୍ଟୁଆର୍ଟ ବିଜ୍ଞାନ କଲେଜ କଥା ଚିନ୍ତା କରୁଥିଲେ। ପିଉସୀ ଘରେ ରହି ରେଭେନ୍ସା କଲେଜର ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେବାର ଯୋଜନା ହୋଇ ସାରିଥିଲା।

ବିଧିର କି ବିଡ଼ମ୍ୱନା! ପିଉସୀ ଘରକୁ ଆସିଥିଲି ସ୍କୁଲ ଶିକ୍ଷାର ପରିସମାପ୍ତି ପାଇଁ। ସ୍କୁଲ ଶିକ୍ଷା ପରେ ବାପାଙ୍କ ତତ୍ତ୍ୱାବଧାନକୁ ଫେରି ଯିବାର ଥିଲା। ମାତ୍ର ଠିକ୍ ପରୀକ୍ଷା ସମୟରେ ଅଦୃଷ୍ଟର ଇଙ୍ଗିତରେ ଭିନ୍ନ କଥା ଘଟିଲା। ମୋର ପିଇସା ପିଇସୀ ମଧ୍ୟ ବିନା ଦ୍ୱିଧାରେ ମୋତେ ଆପଣାର କରିନେଲେ। ମୁଁ ପିତୃମାତୃହୀନ ହୋଇ ସର୍ବହରା ହୋଇଛି ବୋଲି ମାନସିକ ଦୈନ୍ୟର ବୋଝ ମୋ ଉପରେ ଲଦି ଦେଲେ ନାହିଁ। ବଳରାମ ଭାଇ ରୋଜଗାର କରିବାକୁ ଆରମ୍ଭ କରିଥାଆନ୍ତି। ତାଙ୍କର ଉଦାରତା ଓ ସମ୍ବେଦନଶୀଳତା ମୋର ଗତିପଥକୁ ବାଧାହୀନ କରିଦେଲା।

ସେ ସମୟର ଶିକ୍ଷା ବ୍ୟବସ୍ଥା ଅନୁଯାୟୀ ମାଧ୍ୟମିକ ସ୍ତରରେ ଏକାଦଶ ଶ୍ରେଣୀ ଶେଷ କଲାପରେ ଡିଗ୍ରୀ (ସ୍ନାତକ) କୋର୍ସ ଚାରିବର୍ଷିଆ ପାଠ୍ୟକ୍ରମ ରହିଥିଲା। ପ୍ରଥମ ବର୍ଷଟି କଲେଜରେ ପ୍ରାକ୍ ବିଶ୍ୱବିଦ୍ୟାଳୟ କଳା (କିମ୍ୱା ବିଜ୍ଞାନ)। ଏହି ପାଠ୍ୟକ୍ରମର ବିଶ୍ୱବିଦ୍ୟାଳୟ ପରୀକ୍ଷା ବ୍ୟବସ୍ଥା ରହିଥିଲା। କଲେଜର ଦ୍ୱିତୀୟ ବର୍ଷଟିକୁ ପ୍ରଥମ ବାର୍ଷିକ କଳା କିମ୍ୱା ବିଜ୍ଞାନ କୁହାଯାଉଥିଲା। ଏହା ଶେଷ କଲେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାକୁ ପଡୁଥିଲା। ଏହା ଶେଷ କଲାପରେ ବୈଷୟିକ ଶିକ୍ଷା ଲାଭ ପାଇଁ ଇଚ୍ଛୁକ ଥିବା ଛାତ୍ରଛାତ୍ରୀମାନେ ଡାକ୍ତରୀ କିମ୍ୱା ଇଂଜିନିୟରିଂ କଲେଜରେ ପ୍ରବେଶ ପାଇଁ ପ୍ରବେଶିକା ପରୀକ୍ଷା ଦେଉଥିଲେ। ଅନ୍ୟମାନେ ଡିଗ୍ରୀ କୋର୍ସ ପାଇଁ ଦ୍ୱିତୀୟ ବାର୍ଷିକ କଳା/ବିଜ୍ଞାନ ଓ ତୃତୀୟ ବାର୍ଷିକ କଳା/ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେଉଥିଲେ।

ଶୁଣିଥିଲି ଯେ ପ୍ରଥମେ ବର୍ଷେ କିମ୍ୱା ଦୁଇବର୍ଷ ବିଜ୍ଞାନ ପଢ଼ିବା ପରେ ଡିଗ୍ରୀ କୋର୍ସ ବେଳକୁ କଳା ଶ୍ରେଣୀକୁ ପରିବର୍ତ୍ତନ କରିବା ସମ୍ଭବ ମାତ୍ର କଳା ଶ୍ରେଣୀରୁ ବିଜ୍ଞାନ ପର୍ଯ୍ୟାୟକୁ ଆସିବା ସମ୍ଭବ ନୁହେଁ। ପ୍ରାକ୍ ବିଶ୍ୱବିଦ୍ୟାଳୟର ବିଜ୍ଞାନ

ଶ୍ରେଣୀରେ ନାମ ଲେଖାଇବାର ନିଷ୍ପତ୍ତି ମୂଳରେ କୌଣସି ବାଧା ନ ଥିଲା। ସ୍କୁଲ ପରୀକ୍ଷାରେ ଉଚ୍ଚ ସଫଳତା ଆଧାରରେ ଓ ଜୁନିୟର କଲେଜ ବୃତ୍ତି ମିଳିବ ବୋଲି ଘୋଷଣାନାମା ଦେଖିଲି। ମାସକୁ ପଇଁତିରିଶ ଟଙ୍କା ମିଳିବ। ଆନନ୍ଦର କଥା।

ଆବେଦନ ପତ୍ର ପକାଇବା ଇତ୍ୟାଦିର ଆନୁସଙ୍ଗିକ କାମ ଜୁନ୍ ମାସରେ ସରିଲା। ଜୁଲାଇର ମଧ୍ୟ ଭାଗରେ ଚିଠି ଆସିଲା ଏବଂ କଲେଜରେ ନାମ ପଂଜୀକୃତ ହେଲା। ଯେଉଁଦିନ ରେଭେନ୍ସା କଲେଜର Boys Common Roomରେ ପଞ୍ଜୀକରଣ କାର୍ଯ୍ୟ ଚାଲିଥାଏ ଏବଂ ସଫଳ ଛାତ୍ରଛାତ୍ରୀମାନେ ନିକଟରେ ଉପସ୍ଥିତ ରହିଥାଆନ୍ତି, ସେଦିନର ଅନୁଭବରେ ଏକ ଅନନ୍ୟତା ରହିଥିଲା। "ମୁଁ ବର୍ତ୍ତମାନ ରେଭେନ୍ସାଭିଆନ୍, ରେଭେନ୍ସା କଲେଜର ବିଧିବଦ୍ଧ ଛାତ୍ର। ଏପରି ଏକ ସଚେତନତା ମନରେ ସ୍ପନ୍ଦନ ସୃଷ୍ଟି କରୁଥାଏ। ରେଭେନ୍ସା ପରିସରର ଗଛପତ୍ରର ହାୱାରେ ମାଦକତା ଥାଏ। ରେଭେନ୍ସା ମାଟିର ବାସ୍ନା କେମିତି ଏକ ଆମୋଦ ସୃଷ୍ଟି କରୁଥାଏ। ସେଦିନ ଏକ ନୂତନ ଉନ୍ମାଦନା ନେଇ ଘରକୁ ଫେରିଲି।

ପଞ୍ଜୀକରଣର ଅଳ୍ପଦିନ ପରେ ଅଧ୍ୟାପନା ଆରମ୍ଭ ହେଲା। ପ୍ରଥମ ଦିନର ସ୍ମୃତି ସଜଳ ରହିଛି। ରୁଟିନ୍ ମିଳିଥିଲେ ମଧ୍ୟ ପ୍ରଥମ ଦିନର ଇଂରାଜୀ କ୍ଲାସଟି କେଉଁଠି ହେବ, ସେ ବିଷୟରେ କିଛିଟା ଅନିଶ୍ଚିତତା ଥାଏ। ପ୍ରାକ୍-ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀରେ ଛାତ୍ରଛାତ୍ରୀ ସଂଖ୍ୟା ୨୫୬। ଦୁଇଟି ବିଭାଗ: କ ଓ ଖ। ଆମେ 'କ' ବିଭାଗର ଶିକ୍ଷାର୍ଥୀ ଦଳର ଅଗ୍ରଭାଗରେ ପ୍ରିୟଦର୍ଶୀ ଦାଶ-ବୋର୍ଡ଼ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର।

ଏପଟ ସେପଟ ହୋଇ କିଛି ସମୟ କଟିଯିବା ପରେ ଜାଣିଲୁ ଯେ କନିକା ପାଠାଗାରର ପାର୍ଶ୍ୱରେ ଥିବା ରସାୟନଶାସ୍ତ୍ର ବକ୍ତୃତା କକ୍ଷ-୧ରେ ଆମର ଇଂରାଜୀ ଅଧ୍ୟାପକ କ୍ଲାସ ନେବେ। କନିକା ପାଠାଗାରର ଗୋଟିଏ ପାର୍ଶ୍ୱରେ ପଦାର୍ଥ ବିଜ୍ଞାନର ବକ୍ତୃତା କକ୍ଷ ଏବଂ ଅନ୍ୟ ପାର୍ଶ୍ୱରେ ରସାୟନଶାସ୍ତ୍ର ବକ୍ତୃତା କକ୍ଷ-୧। ପାଠାଗାର ସାମନାରେ ବିସ୍ତୀର୍ଣ୍ଣ ସବୁଜ ପ୍ରାଙ୍ଗଣ ଏବଂ ମଧ୍ୟବର୍ତ୍ତୀ ସ୍ଥାନରେ ଇଂରାଜୀ ଶାସନ ଅମଳର ସୂର୍ଯ୍ୟଘଡ଼ି ଦୃଶ୍ୟ ଶୋଭନୀୟ ଓ ଉପଭୋଗ୍ୟ।

ପ୍ରଥମ ଇଂରାଜୀ ଶ୍ରେଣୀକୁ ଆସିଥିଲେ ସୁପରିଚିତ ପ୍ରାଧ୍ୟାପକ ତ୍ରିଲୋଚନ ମିଶ୍ର। ସେତେବେଳେ ଦକ୍ଷ ଓ ଅଭିଜ୍ଞ ଶିକ୍ଷକମାନେ ପ୍ରାକ୍-ବିଶ୍ୱବିଦ୍ୟାଳୟ ପରି ତଳ ଶ୍ରେଣୀରେ ପଢ଼ାଇବାର ସରକାରୀ ନିର୍ଦ୍ଦେଶନାମା ରହିଥିଲା। ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀ ସର୍ବେଶ୍ୱର ଦାସଙ୍କ ପରି ଦେବୋପମ ବ୍ୟକ୍ତିତ୍ୱଙ୍କ ସଂସର୍ଗରେ ଆସି ପାରିଥିଲୁ। ରସାୟନ ଶାସ୍ତ୍ର ପଢ଼ାଇବାକୁ ଯେଉଁ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଆସିଲେ କିମ୍ବା ଉଦ୍ଭିଦବିଜ୍ଞାନ ପଢ଼ାଇବାକୁ ଯେଉଁ ପ୍ରଫେସର୍ ହରିହର ପଟ୍ଟନାୟକ ଆସିଲେ

ଓଡ଼ିଆ ବୈଜ୍ଞାନିକ ହିସାବରେ ସେମାନଙ୍କ ପ୍ରତି ଗଭୀର ସମ୍ମାନ ରହିଥିଲା। ସେମାନଙ୍କ ଲିଖିତ ବିଜ୍ଞାନ ପୁସ୍ତକ ଆମେ ସ୍କୁଲରେ ପଢୁଥିଲୁ। ଅବଶ୍ୟ ଡଃ ଗୋକୁଳାନନ୍ଦ ମହାପାତ୍ର ଚାଉଳିଆଗଞ୍ଜରେ ରହୁଥିବାରୁ ମୁଁ ତାଙ୍କୁ ପୂର୍ବରୁ ଦେଖୁଥିଲି। ତଥାପି ସେମାନଙ୍କୁ ଦେଖିବା ଏବଂ ସେମାନଙ୍କ ଶ୍ରେଣୀରେ ବସିବାର ସୌଭାଗ୍ୟ ନୂଆ ପୁଲକ ସୃଷ୍ଟିକଲା।

ପଦାର୍ଥ ବିଜ୍ଞାନୀ କୁଳମଣି ସାମଲଙ୍କ ସରଳତମ ପରିପ୍ରକାଶ, ଉଦ୍ଭିଦବିଜ୍ଞାନୀ ଗଦାଧର ମିଶ୍ରଙ୍କ ନାଟକୀୟତା, ପ୍ରାଣୀବିଜ୍ଞାନୀ ବସନ୍ତ ବେହୁରାଙ୍କ ଆନ୍ତରିକତା ଏବଂ ଗଣିତଜ୍ଞ ରମାନାଥ ମହାନ୍ତିଙ୍କ ବିନମ୍ରତାର ସ୍ମୃତି ଛବି ଚିରଦିନ ଅମଳିନ ରହିବ। ରେଭେନ୍ସାର ବାତାବରଣରେ ପାଣ୍ଡିତ୍ୟର ପ୍ରବାହ ସହିତ ମହନୀୟ ବ୍ୟକ୍ତିତ୍ୱସବୁର ଯେଉଁ ମାଧୁର୍ଯ୍ୟ ରହିଥିଲା, ତାହାର ସ୍ପର୍ଶ ନିଶ୍ଚିତ ଭାବରେ ଦାରୁକୁ ଦିଅଁ କରିପାରିବ।

❖

(୧୫)

# ମୀନାବଜାର ଓ ବିଷୁମ ମିଳନ

କିଶୋର ଜୀବନର ଶେଷ ପର୍ଯ୍ୟାୟର ଯେଉଁ ଦୁଇଟି ସ୍ମୃତି ତେଜୋଦୀପ୍ତ ହୋଇ ପ୍ରବେଶ କରନ୍ତି ସେମାନେ ହେଉଛନ୍ତି କିଶୋର ମୀନାମଣ୍ଡଳୀ ଓ ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ ସମାରୋହ। ସମବୟସୀ ବନ୍ଧୁମାନଙ୍କ ସହିତ କିଛିଟା ସାମାଜିକ ସାଂଗଠନିକ କାର୍ଯ୍ୟର ଆଗ୍ରହ ବିସ୍ତାର ଲାଭ କରୁଥିଲା। ଏହା ସହିତ କଳା ସାହିତ୍ୟକୁ ଭଲ ପାଇବାର ଅଭିରୁଚି ନିଜ ଘରର ଚାରିକାନ୍ଥ ଡେ଼ଇଁ ବାହାରକୁ ପ୍ରସାରିତ ହେବାର ସୂଚନା ମିଳୁଥିଲା।

**କିଶୋର ମୀନାମଣ୍ଡଳୀ**

ଆମର ସ୍କୁଲ ବୟସରେ "ମୀନାମଣ୍ଡଳୀ" ଶବ୍ଦଟି ସହିତ ଲୋକମାନେ ବେଶ୍ ପରିଚିତ ଥିଲେ। ଓଡ଼ିଶାର ଲବ୍ଧ-ପ୍ରତିଷ୍ଠିତ ରାଜନୀତିଜ୍ଞ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ପରିଚାଳିତ ଦୈନିକ ସମ୍ବାଦପତ୍ର "ପ୍ରଜାତନ୍ତ୍ର" ସେ ସମୟରେ ଏକ ମୁଖ୍ୟ ଖବରକାଗଜ। ଏହି ସମ୍ବାଦପତ୍ରର ଏକ ମୁଖ୍ୟ ଶକ୍ତିସ୍ତମ୍ଭ ଓ ସହଯୋଗୀ ଅଂଶ ବିଶେଷ ରୂପେ ଏହାର ଏକ କ୍ରୋଡ଼ପତ୍ର (ସମ୍ଭବତଃ ସପ୍ତାହର ପ୍ରତି ବୁଧବାର ଦିନ) ମୀନାବଜାର ପ୍ରକାଶ ପାଉଥିଲା। ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀ ରାମପ୍ରସାଦ ମହାନ୍ତି ଏହା ଦାୟିତ୍ୱରେ ରହିଥିଲେ ଏବଂ ସେ ଜହ୍ନୁରୀ ଭାଇ ନାମରେ ସୁପରିଚିତ ଥିଲେ। ତାଙ୍କୁ ସାହାଯ୍ୟ କରିବା ପାଇଁ "ମିନି ଅପା" କୁହା ଯାଉଥିବା ଜଣେ ଭଦ୍ର ମହିଳା ପ୍ରଜାତନ୍ତ୍ର ପରିସରରେ "ମୀନା ବଜାର" କାର୍ଯ୍ୟାଳୟର ଦାୟିତ୍ୱ ସମ୍ଭାଳି ନେଉଥିଲେ।

କ୍ରୋଡ଼ପତ୍ର ମୀନାବଜାରରେ ପିଲାମାନଙ୍କର (ଚଉଦ ପନ୍ଦର ବର୍ଷରୁ କମ୍ ବୟସ) ଗଳ୍ପ, କବିତା, ରମ୍ୟ ରଚନା ଓ ଅନ୍ୟ ସବୁ ଲେଖା ପ୍ରକାଶ ପାଉଥିଲା। ଯେଉଁମାନେ ଔପଚାରିକ ଭାବରେ ମୀନାବଜାର ସଭ୍ୟ ହେବା ପାଇଁ ଆବେଦନ କରୁଥିଲେ ସେମାନଙ୍କ ନାମ ଓ ସଭ୍ୟ ନମ୍ବର "ତମକୁ ସଭ୍ୟ କରିନେଲୁ" ଶୀର୍ଷକ ଲେଖାରେ ପ୍ରକାଶ କରାଯାଉଥିଲା। ଏତଦ୍‌ବ୍ୟତୀତ ଓଡ଼ିଶାର ପୁରପଲ୍ଲୀରେ ନିର୍ଦ୍ଦିଷ୍ଟ ନାମ ସହ "ମୀନାମଣ୍ଡଳୀ ଗଠନ" କରିବାର ପ୍ରୋତ୍ସାହନ ଦିଆ ଯାଉଥିଲା।

ପ୍ରତି ସପ୍ତାହରେ କୌଣସି ନା କୌଣସି ମୀନାମଣ୍ଡଳୀ ସମ୍ପର୍କରେ ବିଶେଷ ସୂଚନା (ଯଥା:କ୍ରୀଡ଼ା ପ୍ରତିଯୋଗିତା, ସଙ୍ଗୀତ ଅନୁଷ୍ଠାନ, ଚିତ୍ରକଳା ପ୍ରଦର୍ଶନ ଇତ୍ୟାଦି) ପ୍ରକାଶ ପାଉଥିଲା। କହିବା ଅନାବଶ୍ୟକ ଯେ ଜହ୍ନୁରୀ ଭାଇଙ୍କ ବଳିଷ୍ଠ ନେତୃତ୍ୱ ଓ

ମିନିଅପାଙ୍କ ପରିଚାଳନା ଦକ୍ଷତା ମୀନାବଜାର କ୍ରୋଡ଼ପତ୍ରକୁ ଏକ ସ୍ୱାତନ୍ତ୍ର୍ୟ ଦେଇଥିଲା। ପ୍ରତି ସପ୍ତାହରେ ପ୍ରକାଶିତ "ଜହ୍ନୁରୀ ଭାଇଙ୍କ ଚିଠି" ପିଲାମାନଙ୍କ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ ରହିଥିଲା। କ୍ରୋଡ଼ପତ୍ର ବ୍ୟତୀତ ମାସିକ ପତ୍ରିକା 'ମୀନାବଜାର' ମଧ୍ୟ ବିଧିବଦ୍ଧ ପ୍ରକାଶ ପାଉଥିଲା। ବରେଣ୍ୟ ନେତା ଡ଼ଃ ହରେକୃଷ୍ଣ ମହତାବଙ୍କ ପ୍ରେରଣାରେ ମୀନାବଜାର ଏକ ନବ ଶିଶୁ ଆନ୍ଦୋଳନର ରୂପ ନେଇଥିଲା।

ଛପା ହୋଇଥିବା ନିଜର ନାମ ଓ କାର୍ଯ୍ୟାବଳୀକୁ ଦେଖି କେଉଁ ପିଲା ବା ଉତ୍ସାହିତ ନ ହେବ? ସଂଗଠିତ ଭାବରେ କିଛି କରିବା ପାଇଁ ଆମେ "କିଶୋର ମୀନାମଣ୍ଡଳୀ" ନାମରେ ମୀନାମଣ୍ଡଳୀଟିଏ ଗଠନ କଲୁ। ମୋର ପିଇସୀ ପୁଅ ଭାଇ ବଳରାମ ସାହୁଙ୍କର କଳା ଓ ସାହିତ୍ୟ ପ୍ରତି ଗଭୀର ଅନୁରାଗ। ଅତୀତରେ ସେ ନେତୃତ୍ୱ ନେଇ ଗୋଟିଏ ଦୁଇଟି ନାଟକ ମଞ୍ଚସ୍ଥ କରାଇଥିଲେ। ସେ ନିଜେ ମଧ୍ୟ ଗୋଟିଏ ଦୁଇଟି ନାଟକ ରଚନା କରିଥିଲେ। ତାଙ୍କରି ସଭାପତିତ୍ୱରେ କିଶୋର ମୀନାମଣ୍ଡଳୀ ଗଠିତ ହେଲା। ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ପଢୁଥିବା କିଛି ସମବୟସୀ ବନ୍ଧୁମାନଙ୍କ ସମ୍ମିଳିତ ସହଯୋଗରେ ସଂଗଠନ ଆରମ୍ଭ ହେଲା। ଆମେ କିଛି କିଛି କାର୍ଯ୍ୟକ୍ରମ ହାତକୁ ନେଲୁ ଏବଂ ଏହାର ବିବରଣୀ ଲିପିବଦ୍ଧ କଲୁ। ସମୟ ସମୟରେ ବିବରଣୀ ମୀନାବଜାରରେ ପ୍ରକାଶ ପାଇଲା। ଖୁବ୍ ଖୁସୀ ଲାଗିଲା। ଥରେ ଅଧେ ନିଜେ ଜହ୍ନୁରୀ ଭାଇ ଓ ମିନି ଅପା ଆମର ବିବରଣୀ ଲେଖାର ଶୈଳୀ ଦେଖି ଉଚ୍ଚ ପ୍ରଶଂସା କଲେ।

ଆମ ମୀନାମଣ୍ଡଳୀ ଗଠିତ ହେବାର ପ୍ରାୟ ଦୁଇତିନି ବର୍ଷ ପୂର୍ବରୁ କଟକରେ ଓଡ଼ିଶାର ସବୁ ମୀନାମଣ୍ଡଳୀକୁ ନେଇ ଏକ ମୀନାମେଳା ଅନୁଷ୍ଠିତ ହୋଇଥିଲା। ଏହି ସୁନ୍ଦର ସମାରୋହ ସମୟରେ ଆମର କିଶୋର ମୀନାମଣ୍ଡଳୀ ଗଠିତ ହୋଇ ନଥିବାରୁ ଏଥିରେ ଅଂଶ ନେବାର ପ୍ରଶ୍ନ ନ ଥିଲା। କିନ୍ତୁ ଆମ ମୀନାମଣ୍ଡଳୀ ଗଠିତ ହେବାର ଗୋଟିଏ ବର୍ଷ ପରେ କଟକର ତେଲେଙ୍ଗା ବଜାରର "ଦୀପଜ୍ୟୋତି ମୀନାମଣ୍ଡଳୀ" ଆନୁକୂଲ୍ୟରେ ଏକ ଆଞ୍ଚଳିକ ମୀନାମେଳାର ଆୟୋଜନ କରାଗଲା। ଏଥିରେ ଅଂଶ ଗ୍ରହଣ କରି ବିଭିନ୍ନ ପ୍ରତିଯୋଗିତାରେ ସାମିଲ୍ ହେବା ପାଇଁ ଆମେ ଆଗ୍ରହୀ ହୋଇ ଉଠିଲୁ।

ଏକାଂକିକା ମଞ୍ଚସ୍ଥ କରିବାକୁ ସ୍ଥିର କରାଗଲା। ସୌଭାଗ୍ୟର ବିଷୟ ଯେ ବିଶିଷ୍ଟ ନାଟ୍ୟକାର ଭୁବନେଶ୍ୱର ମହାପାତ୍ର ତାଙ୍କ ଲିଖିତ "ସାଉଁଟା ଫୁଲ" ମଞ୍ଚସ୍ଥ କରିବା ପାଇଁ ଅନୁମତି ଦେଲେ। ଅତୀତ ଅଭିଜ୍ଞତାକୁ ଆଧାର କରି ବଳରାମ ଭାଇ ନିର୍ଦ୍ଦେଶନା ଦେବା ପାଇଁ ସମ୍ମତ ହେଲେ। ଅଭିନେତା ଅଭିନେତ୍ରୀ ଚୟନ ସୁରୁଖୁରୁରେ

ହୋଇଗଲା। ଜୋରଦାର୍ ପ୍ରସ୍ତୁତି ଚାଲିଲା। ବସନ୍ତ କୁମାର ସାହୁ ନାମକ ପ୍ୟାରୀ ମୋହନ ଏକାଡେ଼ମୀର ଜଣେ ଛାତ୍ର ତାଙ୍କ ସ୍କୁଲର ବିଜ୍ଞାନ କ୍ଲବର ସମ୍ପାଦକ। ସେ ଆମ ମୀନାମଣ୍ଡଳୀର ସଭ୍ୟ ଥିବାରୁ ତାଙ୍କର ନେତୃତ୍ୱରେ ଆଞ୍ଚଳିକ ମୀନାମେଳାରେ ଆମ ମୀନାମଣ୍ଡଳୀ ଗୋଟିଏ ବିଜ୍ଞାନ ପ୍ରଦର୍ଶନୀ କରିବ ବୋଲି ସ୍ଥିର ହେଲା।

ସେ ସମୟରେ ମୁଁ ବକ୍ତୃତା ପ୍ରତିଯୋଗୀତାରେ ଭାଗ ନେଇ ପୁରସ୍କାର ପାଇବାର ଆମୋଦ ଅନୁଭବ କରୁଥାଏ। ସୁତରାଂ ଆଞ୍ଚଳିକ ମୀନାମେଳାରେ ବକ୍ତୃତା, ସାଧାରଣଜ୍ଞାନ ପ୍ରତିଯୋଗିତା, ପ୍ରବନ୍ଧ ଓ ପଦ୍ୟାନ୍ତରରେ ମୁଁ ଆମ ମୀନାମଣ୍ଡଳୀରେ ପ୍ରତିନିଧିତ୍ୱ କରିବି ବୋଲି ଆଗ୍ରହ ପ୍ରକାଶ କଲି। କଟକର କେତେକ ବିଶିଷ୍ଟ ବ୍ୟକ୍ତି ଏ ସବୁ ପ୍ରତିଯୋଗିତା ପରିଚାଳନା ଦାୟିତ୍ୱରେ ରହି ଥାଆନ୍ତି। କେତେକ ପ୍ରତିଯୋଗିତା ବିଶିଷ୍ଟ ଲେଖକ ଅନ୍ନଦା ପ୍ରସାଦ ରାୟଙ୍କ ବାସଭବନରେ ଅନୁଷ୍ଠିତ ହେଲା। ଅନ୍ୟମାନଙ୍କ ମଧ୍ୟରେ ବିଶିଷ୍ଟ ଶିଶୁ ସାହିତ୍ୟିକ ନଦିୟା ବିହାରୀ ମହାନ୍ତି, ବେତାର ପ୍ରଯୋଜକ ଶାରଦା ପ୍ରସନ୍ନ ନାୟକ ଏବଂ ନାରୀ ନେତ୍ରୀ ସରଳା ଦେବୀଙ୍କ ସାନ୍ନିଧ ଓ ଉତ୍ସାହ ଖୁବ୍ ପ୍ରେରଣାଦାୟକ ଥିଲା। ସୌଭାଗ୍ୟବଶତଃ ଆମର କିଶୋର ମୀନା ମଣ୍ଡଳୀ ଏକାଂକିକା ଓ ବିଜ୍ଞାନ ପ୍ରଦର୍ଶନୀ ପାଇଁ ପ୍ରଥମ ପୁରସ୍କାର ଲାଭ କଲା। ବକ୍ତୃତା ଓ ସାଧାରଣଜ୍ଞାନ ପ୍ରତିଯୋଗିତାରେ ମୁଁ ପ୍ରଥମ ପୁରସ୍କାର ଏବଂ ପ୍ରବନ୍ଧ ଓ ପଦ୍ୟାନ୍ତରରେ ଦ୍ୱିତୀୟ ପୁରସ୍କାର ଲାଭ କଲି। ବ୍ୟକ୍ତିଗତ ଭାବରେ ଏବଂ ସାମୂହିକ ଭାବରେ ଆମର ଉତ୍ସାହ ଓ ଆନନ୍ଦ ବହୁଗୁଣିତ ହୋଇ ଉଠିଲା।

ମୀନାମଣ୍ଡଳୀ ବ୍ୟତୀତ ଆଉ ଗୋଟିଏ ସମ୍ପୃକ୍ତି ବେଶ୍ ଉପଭୋଗ୍ୟ ଓ ଆନନ୍ଦବର୍ଦ୍ଧକ ରହିଥିଲା। ତାହା ହେଉଛି ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ଆୟୋଜିତ ବାର୍ଷିକ ବିଷୁବ ମିଳନ।

## ବିଷୁବ ମିଳନ ସମାରୋହ

ବର୍ତ୍ତମାନ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଓ କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ଆନୁକୂଲ୍ୟରେ ବର୍ଷ ମଧ୍ୟରେ ବହୁବାର ବିଭିନ୍ନ ଧରଣର ସାହିତ୍ୟିକ ସମାବେଶର ଆୟୋଜନ କରାଯାଉଛି। ବିଭିନ୍ନ ପତ୍ରପତ୍ରିକା ଓ ସାହିତ୍ୟ ଅନୁଷ୍ଠାନସବୁ ସାରସତ୍ ସମାରୋହର ଆୟୋଜନ କରୁଛନ୍ତି। ଶାରଳା ପୁରସ୍କାର, ଉତ୍କଳ ଭାରତୀ ପୁରସ୍କାର ସମେତ ଅନେକଗୁଡ଼ିଏ ପୁରସ୍କାର ପରିକଳ୍ପନା କରାଯାଇଛି। ବର୍ଷ ମଧ୍ୟରେ ତିନୋଟିରୁ ଅଧିକ ପୁସ୍ତକମେଳା ଅନୁଷ୍ଠିତ ହେଉଛି। ସାହିତ୍ୟ ବିଷୟକ ଚର୍ଚ୍ଚାର ପରିବେଶ ଓ ପରିସର ଯଥେଷ୍ଟ ବୃଦ୍ଧି ପାଇଛି। ମାତ୍ର ଷଷ୍ଠ ଓ ସପ୍ତମ ଦଶକରେ ଏସବୁ ଖୁବ୍ ସୀମିତ ଥିଲା। ଜଡ଼ତା ଓ ନିଷ୍କ୍ରିୟତା ଭଙ୍ଗ କରି ଡକ୍ଟର ମହତାବଙ୍କ ପ୍ରେରଣାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଏପ୍ରିଲ ମାସରେ ସାହିତ୍ୟର କୁମ୍ଭମେଳା ବିଷୁବ ସମାରୋହ ଆୟୋଜନ କରା ଯାଉଥିଲା।

ଏପ୍ରିଲ ମାସର ବିଷୁବ ସଂକ୍ରାନ୍ତି (ଏପ୍ରିଲ ୧୪ କିମ୍ବା ୧୫) ଏ ଉତ୍ସବର ଉଦ୍‌ଯାପନ ଦିବସ। ଚଉଦ ତାରିଖରେ ଉଦ୍‌ଯାପିତ ହେଉଥିବା ଉତ୍ସବ ୧୧ ତାରିଖ ଅପରାହ୍ଣରେ ଉଦ୍‌ଘାଟିତ ହେଉଥିଲା। ବର୍ତ୍ତମାନ ଯେଉଁ ପ୍ରେକ୍ଷାଳୟରେ ବିଷୁବ ମିଳନ ଅନୁଷ୍ଠିତ ହେଉଛି, ତାହା ଏକ ମୁକ୍ତ ପ୍ରାଙ୍ଗଣ ଥିଲା। ସେଠାରେ ସ୍ୱତନ୍ତ୍ର ଧରଣର ମଞ୍ଚ ଓ ସୁସଜ୍ଜିତ ବସିବା ସ୍ଥାନର ଆୟୋଜନ କରା ଯାଉଥିଲା। ପ୍ରଜାତନ୍ତ୍ର ପରିସରକୁ ପ୍ରବେଶ କରିବା ମାତ୍ରେ ବାମ ଭାଗରେ ଥିବା ବିରାଟ ପ୍ରାଙ୍ଗଣରେ ଉଦ୍‌ଘାଟନ ଦିବସରୁ ଆରମ୍ଭ କରି ଉଦ୍‌ଯାପନ୍ ଦିବସ ପର୍ଯ୍ୟନ୍ତ ଗୋଟିଏ ପୁସ୍ତକମେଳାର ବ୍ୟବସ୍ଥା ରହୁଥିଲା। ଅନ୍ତତଃ କଟକର ମୁଖ୍ୟ ପ୍ରକାଶକ ସଂସ୍ଥାସବୁ ସେମାନଙ୍କର ପୁସ୍ତକର ପ୍ରଦର୍ଶନ ଓ ବିକ୍ରୟ ବ୍ୟବସ୍ଥା କରୁଥିଲେ।

ଉଦ୍‌ଘାଟନ ଉତ୍ସବର ପରଦିନ କିମ୍ବା ତା'ପରଦିନ ସକାଳ ଅଧିବେଶନରେ କବିତା ପାଠୋତ୍ସବ ଅନୁଷ୍ଠିତ ହେଉଥିଲା। ଏହା ଖୁବ୍ ଆକର୍ଷଣୀୟ ଥିଲା। ଯେଉଁମାନେ ସାହିତ୍ୟକୁ ଭଲ ପାଆନ୍ତି, ସେମାନଙ୍କ ମଧ୍ୟରୁ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ବିଷୁବ ମିଳନକୁ ଆସନ୍ତି। ଅନ୍ତତଃ କବିତା ପାଠୋତ୍ସବକୁ ଆସନ୍ତି। ଆମ ପରି ସ୍କୁଲ ଛାଡ଼ି କଲେଜର ଦ୍ୱାର ଦେଶରେ ଥିବା ଛାତ୍ରଛାତ୍ରୀମାନେ ବହୁ ସଂଖ୍ୟାରେ ଆସନ୍ତି। ବିଷୁବ ମିଳନର ତିନିଚାରି ଦିନ ଭୋକଶୋଷ ଭୁଲି ଏଠାରେ ସମ୍ମିଳିତ ହେବାର ଆଉ ଏକ ପ୍ରଲୋଭନ ରହିଥାଏ। ଗୋଟିଏ ସ୍ଥାନରେ ଗୋଟିଏ ସମୟରେ ଶତାଧିକ କବି ଓ ସାହିତ୍ୟିକମାନଙ୍କୁ ସ୍ୱଚକ୍ଷୁରେ ଦେଖିବାର ଏ ଏକ ଅପୂର୍ବ ସୁଯୋଗ। କେବଳ କଟକର ନୁହେଁ, ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସାହିତ୍ୟିକମାନେ ଆସନ୍ତି।

ଏଠାରେ ଉଲ୍ଲେଖ କରିପାରେ ଯେ ମୋର ସ୍କୁଲ ଜୀବନରେ ଗୋଟିଏ ଲୋକପ୍ରିୟ ହିନ୍ଦୀ ଚଳଚ୍ଚିତ୍ର ଥିଲା ଦେବାନନ୍ଦଙ୍କ ଅଭିନୀତ "କାଲା ବଜାର"। ଏଇଟି ଖୁବ୍ ଉଚ୍ଚମାନର ଛବି ନୁହେଁ। ଦେବାନନ୍ଦ ସିନେମା ଟିକେଟ ବିକ୍ରୟ ପରିପ୍ରେକ୍ଷୀରେ କଳା ବଜାର କରୁଛନ୍ତି। ସିନେମା ଦେଖିବାକୁ ଆସିଥିବା ଚିତ୍ର ତାରକା ସବୁ ଆସୁଛନ୍ତି। ଏହି ପର୍ଯ୍ୟାୟରେ ଖୁବ୍ ଅଳ୍ପ ସମୟ ପାଇଁ ରାଜ୍ କାପୁର, ଅଶୋକ କୁମାର, ଦିଲ୍ଲୀପ କୁମାର ଇତ୍ୟାଦିଙ୍କର ଆର୍ବିଭାବ ଘଟୁଛି। ଅନେକ ଲୋକ କେବଳ କିୟତ୍ କାଳ ପାଇଁ ଏହି ଚିତ୍ର ତାରକାମାନଙ୍କୁ ଦେଖିବା ପାଇଁ ଏ ଚଳଚ୍ଚିତ୍ରଟି ଦେଖିବାକୁ ସିନେମା ହଲ୍‌କୁ ଯାଆନ୍ତି। ଠିକ୍ ସେହିପରି ବହୁଲୋକ ଗୋଟିଏ ସ୍ଥାନରେ କବି ଓ ସାହିତ୍ୟିକମାନଙ୍କୁ ଦେଖିବାର ସୁଯୋଗ ପାଇଁ ଏକତ୍ରିତ ହୁଅନ୍ତି।

କବିତା ପାଠୋତ୍ସବ ସମାରୋହ କେବଳ କବିପ୍ରାଣକୁ ପୁଲକିତ କରି ନଥାଏ, ଅନ୍ୟମାନଙ୍କ ପାଇଁ ମଧ୍ୟ ରସ ଆସ୍ୱାଦନର ନିର୍ଝର ସୃଷ୍ଟି କରେ। ବିଶେଷତଃ ପ୍ରବୀଣ ଓ ତରୁଣମାନଙ୍କ ମଧ୍ୟରେ ବୌଦ୍ଧିକତାର ଲଢ଼େଇ କିଛିଟା ଆମୋଦ ଦେଇଥାଏ।

ଗୋଟିଏ ଦୁଇଟି ଘଟଣା ମୋର ସ୍ପଷ୍ଟ ମନେଅଛି। ସବୁ କବିତା ପାଠୋତ୍ସବରେ ସୁପ୍ରତିଷ୍ଠିତ କବି ପୌରୋହିତ୍ୟ କରନ୍ତି ଏବଂ ସେ ପୂର୍ବରୁ ସଂଗୃହୀତ କବିତାର କବିମାନଙ୍କୁ ଆହ୍ୱାନ କରନ୍ତି। ବ୍ଲାଷ୍ଟ ଫର୍ଣ୍ଣେସ୍ କବି ଭାବରେ ପରିଚିତ କବି ରବି ସିଂହ ଜଗି ବସିଥିବେ ଏବଂ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ପରେ ସେ ଉଠିପଡ଼ି କବିତା ପଢ଼ିବାକୁ ଯିବେ। କବିତାଟିରେ ତାଙ୍କର ତୀବ୍ର ବ୍ୟଙ୍ଗୋକ୍ତି ସମସ୍ତେ ବୁଝି ପାରିନ୍ତି। ଥରେ ତାଙ୍କ କବିତାର ଶିରୋନାମା ଥିଲା "ବାଲୁବଜାରର କବିତା"। ଆରମ୍ଭଟି ଏହିପରି:

"କଟକ ସହରେ ଅତି ସୁବିଖ୍ୟାତ
ବଜାରର ନାମ ବାଲୁ
ସକାଳରୁ ସଞ୍ଜ ସେଠାରେ ବୁଲନ୍ତି
ଅନେକଗୁଡ଼ିଏ ଭାଲୁ।" ଇତ୍ୟାଦି ଇତ୍ୟାଦି

କହିବା ଅନାବଶ୍ୟକ ଯେ ଏପରି କବିତା ପାଠ ହାସ୍ୟରୋଳ ସୃଷ୍ଟି କରେ। ଗୋଟିଏ ସ୍ଥାନରେ ଦୀର୍ଘ ସମୟ ଧରି ବସି ରହିବାର ବିରସତା କଟାଇ ମନକୁ ହାଲୁକା କରେ।

ଦ୍ୱିତୀୟ ଓ ତୃତୀୟ ଦିନର ସନ୍ଧ୍ୟାରେ ସାହିତ୍ୟ ବିତର୍କର କାର୍ଯ୍ୟ ସୂଚୀ ରହିଥାଏ। ଏଠାରେ ମଧ୍ୟ ତର୍କ ବିତର୍କର ତୀବ୍ରତା ବାତାବରଣକୁ ବେଶ୍ ସରଗରମ ରଖେ। ପ୍ରବୀଣ ସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ର, ରାଧାମୋହନ ଗଡ଼ନାୟକ, ଶ୍ରୀରାମଚନ୍ଦ୍ର ଦାଶ ଓ କୁଞ୍ଜବିହାରୀ ଦାଶଙ୍କ ବକ୍ତବ୍ୟର ଅନ୍ୟ ପାର୍ଶ୍ୱରେ ତରୁଣ ଲେଖକ ରବି ସିଂହ, କୈଳାସ ଲେଙ୍କା ଓ ରବି ପଟ୍ଟନାୟକଙ୍କ ଯୁକ୍ତି ଆକର୍ଷଣୀୟ ବାତାବରଣ ସୃଷ୍ଟି କରେ।

ଉଦ୍‌ଯାପନ ଉତ୍ସବ (ବିଷୁବ ସଂକ୍ରାନ୍ତି ସକାଳ ଅଧିବେଶନ) ଖୁବ୍ ମନୋରମ। ଡକ୍ଟର ମହତାବଙ୍କ ଉପସ୍ଥିତି ଉତ୍ସବଟିକୁ ଅଧିକ କମନୀୟ କରୁଥିଲା। ଝଙ୍କାରର ସମ୍ପାଦକ ରୂପେ ବରେଣ୍ୟ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ ସ୍ୱାଗତ ଅଭିଭାଷଣ ଦେଉଥିଲେ। ମୁଖ୍ୟ ଅତିଥି ରୂପେ ଜାତୀୟ ସ୍ତରର ଜଣେ ବିଶିଷ୍ଟ ସାହିତ୍ୟିକ ଅଭିଭାଷଣ ପ୍ରଦାନ କରୁଥିଲେ। ସେ ସମୟରୁ ମୁଖ୍ୟ ଅତିଥିବର୍ଗ ହୁମାୟୁନ୍ କବୀର, ପ୍ରେମେନ୍ଦ୍ର ମିତ୍ର, ତ୍ରୈଲୋକ୍ୟନାଥ ଗୋସ୍ୱାମୀ ଏବଂ ସଚ୍ଚିଦାନନ୍ଦ ହୀରାନନ୍ଦ 'ବାତ୍ସାୟନ'ଙ୍କ ଉପସ୍ଥିତିର କଥା ମୋର ମନେ ଅଛି। ଏପରିକି ମୁଖ୍ୟ ଅତିଥି ବଙ୍ଗଳା ସାହିତ୍ୟର ପ୍ରଖ୍ୟାତ ଔପନ୍ୟାସିକ ପ୍ରେମେନ୍ଦ୍ର ମିତ୍ରଙ୍କର ଓଡ଼ିଆ ସାହିତ୍ୟ ସମ୍ପର୍କରେ କେତୋଟି ମନ୍ତବ୍ୟର ପ୍ରତିବାଦ କରିବା ପାଇଁ ଡଃ ମାୟାଧର ମାନସିଂହ ମଞ୍ଚ ଉପରକୁ

ଚାଲିଆସି କିଛି କହିଲେ। ତାଙ୍କର ବକ୍ତବ୍ୟ ଶେଷରେ ଡଃ ମହ୍‌ତାବ ନିଜେ କିଛି ବକ୍ତବ୍ୟ ରଖି ପରିବେଶଟିକୁ ପୁନଶ୍ଚ ଶାନ୍ତ ଓ ମନୋରମ କରିଦେଲେ।

ବିଷୁବ ମିଳନର ଉଦ୍‌ଯାପନ ଉତ୍ସବ ପ୍ରକୃତରେ ଭବ୍ୟ ଓ ମନୋଜ୍ଞ। ସେ ସମୟରେ ସାହିତ୍ୟ ସାଧନା ପାଇଁ ସାମଗ୍ରିକ ଅବଦାନ ପାଇଁ ବିଷୁବ ପୁରସ୍କାର ଏବଂ ପ୍ରବନ୍ଧ, ଗଳ୍ପ ଓ କବିତା ପାଇଁ ତିନୋଟି ଝଙ୍କାର ପୁରସ୍କାର ବ୍ୟତୀତ ଅନେକଗୁଡ଼ିଏ ପୁରସ୍କାର ଦିଆ ଯାଉଥିଲା। କଳା, ସଂଗୀତ, ଚିତ୍ରକଳା, ନୃତ୍ୟ ଏବଂ ବହୁବିଧ ଉତ୍କର୍ଷ ପାଇଁ ପୃଥକ୍ ପୃଥକ୍ ପୁରସ୍କାର ଥିଲା। ଏପରିକି ମୀନାବଜାର ପ୍ରତିଯୋଗିତା (ଶିଶୁମାନଙ୍କ ପାଇଁ) କରାଯାଇ ତିନୋଟି ବୟସ ଦଳ (ଛୋଟ, ମଧ୍ୟ ଓ ବଡ଼) ପାଇଁ ତିନୋଟି ବିଷୟ (ପ୍ରବନ୍ଧ, କବିତା ଓ ଗଳ୍ପ) ପୁରସ୍କାର ଦିଆ ଯାଉଥିଲା। ଗୋଟିଏ ବର୍ଷ ପ୍ରତିଯୋଗିତା ନେଇ ଆମେ କିଶୋର ମୀନାମଣ୍ଡଳୀରେ ଏତେ ଅଭିପ୍ରେରିତ ହୋଇ ପଡ଼ିଥିଲୁ ଯେ ତିନୋଟି ବିଭାଗରେ ସମ୍ଭାବ୍ୟ ୨୭ଟି ପୁରସ୍କାର ମଧ୍ୟରୁ ଆମ କିଶୋର ମୀନାମଣ୍ଡଳୀ ଆଠୋଟି କିମ୍ବା ନ'ଟି ପୁରସ୍କାର ପାଇଥିଲା। ଏହା ଆମ ସମସ୍ତଙ୍କୁ ଗଭୀର ତୃପ୍ତି ଦେଇଥିଲା।

ଦୁଇ ତିନି ବର୍ଷ ତଳେ (୨୦୧୫ ଏପ୍ରିଲ) ପ୍ରବନ୍ଧ ସାହିତ୍ୟ ପାଇଁ ବିଷୁବ ମିଳନରେ (୬୬ତମ ଉତ୍ସବ) "ଝଙ୍କାର ପୁରସ୍କାର" ମୁଁ ଗ୍ରହଣ କରିବା ସମୟରେ ମନଶ୍ଚକ୍ଷୁରେ ଅତୀତ ଓ ବର୍ତ୍ତମାନକୁ ତୁଳନା କରୁଥିଲି। ପୁରସ୍କାରର ସଂଖ୍ୟା କେବଳ ଚାରି ପାଞ୍ଚରେ ସୀମିତ ନୁହେଁ, ଏହାର ବିଶାଳତା ମଧ୍ୟ ହ୍ରାସ ପାଇଛି। ଏକମାତ୍ର ଉଲ୍ଲେଖଯୋଗ୍ୟ ସାହିତ୍ୟ ସମାରୋହ ଭାବରେ ବିଷୁବ ମିଳନର ବ୍ୟାପ୍ତି ଓ ଖ୍ୟାତି ପରିବର୍ତ୍ତିତ ରୂପରେଖ ନେଇଛି। ତଥାପି ଦୀର୍ଘ ଷାଠିଏ ସତୁରୀ ବର୍ଷର ବିରାଟ ଅବଦାନ ପାଖରେ ଆମର ମୁଣ୍ଡ ନଇଁବାର ଯଥାର୍ଥତା ରହିଛି।

❖

(୧୬)

# ଯୁଗଶ୍ରୀ କଳାବିଜ୍ଞାନ ସାଂସ୍କୃତିକ ସଂସଦ

ସ୍କୁଲ ପାଚେରୀ ଡେଇଁ ରେଭେନ୍ସା ମାଟିର ବାସ୍ନାରେ ଆମୋଦିତ ହେବା ସମୟକୁ ମୀନା ବୟସ ଅତିକ୍ରାନ୍ତ କରି ସାରିଥିଲି। ସାମାଜିକ, ସାଂସ୍କୃତିକ ପୃଷ୍ଠଭୂମିରେ କିଛି କରିବା ପାଇଁ ନୂଆ ମାଧ୍ୟମଟିଏ ଖୋଜୁଥିଲି। ସେହି ଅବସରରେ କିଛି ସମଧର୍ମୀ ବନ୍ଧୁଙ୍କ ସହିତ ଯୋଗାଯୋଗ ନିବିଡ଼ ହେଲା। ସେହିପରି ଜଣେ ବନ୍ଧୁ ହେଉଛନ୍ତି ଓଡ଼ିଆ ମଞ୍ଚ ଓ ଚଳଚ୍ଚିତ୍ର ଜଗତର ବିଶିଷ୍ଟ ଅଭିନେତା ଓ ନିର୍ଦ୍ଦେଶକ ଗୋପାଳ ଘୋଷଙ୍କ ପୁତ୍ର ଅଭିଜିତ୍ ଘୋଷ। ଅଭିଜିତ୍‌ର ଘର ଆମ ଘରଠାରୁ ମାତ୍ର ୫୦୦ ମିଟର ଦୂରରେ। ସେ ପି.ଏମ୍.ଏକାଡ଼େମୀରୁ ପାଶ୍ କରି ରେଭେନ୍ସା କଲେଜରେ ଭର୍ତ୍ତି ହୋଇଥିଲା। ଆମେ ଏକାଠି କଲେଜ ଯିବା ଆରମ୍ଭ କରିବାରୁ ବନ୍ଧୁତ୍ୱ ନିବିଡ଼ ହେଲା। ପ୍ୟାରୀ ମୋହନ ଏକାଡ଼େମୀର ଅନ୍ୟ କେତେକ ଛାତ୍ର ମଧ୍ୟ ମୋର ବନ୍ଧୁ ହୋଇଗଲେ।

ଆମର କିଶୋର ମୀନାମଣ୍ଡଳୀ ପରି ଅଭିଜିତ୍‌ଙ୍କର ଅଶୋକ ମୀନାମଣ୍ଡଳୀ ନାମରେ ଗୋଟିଏ ସଂଗଠନ ଥିଲା। ଥରେ ଅଧେ ସେମାନଙ୍କ ମୀନାମଣ୍ଡଳୀ ଦ୍ୱାରା ଆୟୋଜିତ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ସେମାନଙ୍କ ବାର୍ଷିକ ଉତ୍ସବରେ ପୁରସ୍କୃତ ହୋଇଥିଲି। ବର୍ତ୍ତମାନ କିଶୋର ଓ ଅଶୋକ ମୀନାମଣ୍ଡଳୀକୁ ମିଶାଇ ଦେଇ ତା' ସ୍ଥାନରେ ଉଚ୍ଚତର ଓ ବୃହତ୍ତର ସଂଗଠନଟିଏ ସ୍ଥାପନ କରିବା ପାଇଁ ଅଭିଜିତ୍ ଓ ମୁଁ ଯୋଜନା କଲୁ। ଦୁଇ ମୀନାମଣ୍ଡଳୀ ପାଇଁ କାର୍ଯ୍ୟ କରୁଥିବା କେତେକ ବନ୍ଧୁ ଏ ପ୍ରସ୍ତାବକୁ ଆନନ୍ଦର ସହିତ ଅନୁମୋଦନ କଲେ।

ଏପରି କଳ୍ପନାଜଳ୍ପନା ଚାଲିଥିବା ସମୟରେ ଅଭିଜିତ୍ ମୋତେ ଜଣେ ଶିକ୍ଷକଙ୍କ ଘରକୁ ଆଣିଲା। ତାଙ୍କର ନାମ ଲକ୍ଷ୍ମଣ କୁମାର ସାହୁ। ସେ ବ୍ୟକ୍ତି ଜଣକ ଉତ୍ସାହ ଓ ପ୍ରେରଣାର ଏକ ଗନ୍ତାଘର। ସେତେବେଳେ ମାରଓ୍ୱାଡ଼ି ହାଇସ୍କୁଲର ଶିକ୍ଷକ ଥିଲେ। କିଛି ମାସ ପୂର୍ବରୁ ସେ ସେଠାରେ ଶିକ୍ଷକ ହିସାବରେ ଯୋଗ ଦେଇଥିଲେ। ମୁଁ ମାରଓ୍ୱାଡ଼ି ସ୍କୁଲ ଛାଡ଼ିବା ପରେ ସେ ଯୋଗ ଦେଇଥିବାରୁ ମୁଁ ତାଙ୍କୁ ପୂର୍ବରୁ ଜାଣିବାର ସୁଯୋଗ ପାଇ ନ ଥିଲି। ଜାଣିବାକୁ ପାଇଲି ଯେ ସେ ପି.ଏମ୍. ଏକାଡ଼େମୀର ଶିକ୍ଷକ ଥିଲେ। ଛାତ୍ରଛାତ୍ରୀମାନଙ୍କର ଖୁବ୍ ପ୍ରିୟ ଥିଲେ। ମାତ୍ର ଛୁଟୀ ନେଇ ବି.ଏଡ୍. ଟ୍ରେନିଂ ସାରିବା ପରେ ପି.ଏମ୍.ଏକାଡ଼େମୀରେ ଟ୍ରେନ୍‌ଡ ପଦବୀ ଖାଲି ନ ଥିବାରୁ ବାଧ୍ୟ ହୋଇ ତାଙ୍କୁ ଅନ୍ୟତ୍ର ଚାକିରି ସନ୍ଧାନ କରିବାକୁ ପଡ଼ିଲା। ଏହି ପରିପ୍ରେକ୍ଷୀରେ ସେ ମାରଓ୍ୱାଡ଼ି ହାଇସ୍କୁଲରେ ଯୋଗଦାନ କରିଥିଲେ।

ପି.ଏମ୍.ଏକାଡ଼େମୀର ଠିକ୍ ସାମ୍ନାରେ ଗୋଟିଏ ଛୋଟ ଗଳିଟି ହେଉଛି "ବାଉଁଶ ଗଳି"। ଏ ଗଳିଟି ବିଶେଷ ପରିଚ୍ଛନ୍ନ ନୁହେଁ। ତେଲୁଗୁ ଭାଷାଭାଷୀ ଓ ସଂଖ୍ୟା ଲଘୁ ସମ୍ପ୍ରଦାୟର ଲୋକମାନେ ରହନ୍ତି। ତେବେ ଲକ୍ଷ୍ମଣ ବାବୁଙ୍କ ଘରଟି ବେଶ୍ ପରିଷ୍କାର। ସେ ଇଂରାଜୀ ଶିକ୍ଷକ ଥିଲେ ଏବଂ ଅବିବାହିତ ମଧ୍ୟ ଥିଲେ। ଦୁଇଟି କୋଠରୀ। ଗୋଟିଏ କୋଠରୀର ଛାତ୍ରଛାତ୍ରୀମାନେ ବସିବା ପାଇଁ ବେଞ୍ଚ, ଟେବୁଲ ପଡ଼ିଛି। ଟିଉସନ୍ ପଢ଼ାଇବା ପାଇଁ ବ୍ୟବସ୍ଥା ସତ୍ତ୍ୱେ ଟିଉସନ୍ ପଢ଼ାଇବା ପାଇଁ ତାଙ୍କର ବିଶେଷ ପ୍ରଲୋଭନ ଥିଲା ପରି ମନେହେଲା ନାହିଁ। ଅନ୍ୟ କୋଠରୀଟି ତାଙ୍କର ଶୋଇବା ଘର ରୂପେ ବ୍ୟବହୃତ ହୁଏ। କେତୋଟି ଆଲମୀରାରେ ବହିସବୁ ସୁସଜ୍ଜିତ ରହିଛି। ତାଙ୍କ ସହିତ କଥାବାର୍ତ୍ତା କଲେ ତାଙ୍କର ଇଂରାଜୀ ଭାଷାର ଜ୍ଞାନ ଓ କ୍ଲାସିକ୍ସ ପ୍ରତି ପ୍ରଗାଢ଼ ଅନୁରକ୍ତି ସହଜରେ ଜଣା ପଡ଼ିଯାଏ।

ଅଭିଜିତ୍ ଓ ମୁଁ ନୂତନ ସଂଗଠନଟିର ପରିକଳ୍ପନା ସମ୍ପର୍କରେ ସୂଚନା ଦେବା ମାତ୍ରେ ଲକ୍ଷ୍ମଣ ବାବୁ ଏହାର ନେତୃତ୍ୱ ନେବା ପାଇଁ କୌଣସି ଦ୍ୱିଧା ପ୍ରକାଶ କଲେ ନାହିଁ। ମୋର ରୁଚି ଜାଗିବା ମାତ୍ରେ ସଂଗଠନଟିର ନାମକରଣ ପାଇଁ ମୋତେ ଦାୟିତ୍ୱ ଦେଲେ। ଅଳ୍ପ କିଛିଦିନ ମଧ୍ୟରେ ମୁଁ "ଯୁଗଶ୍ରୀ କଳାବିଜ୍ଞାନ ସାଂସ୍କୃତିକ ସଂସଦ" ପ୍ରସ୍ତାବ ଦେଲି। ଲକ୍ଷ୍ମଣବାବୁ ଖୁସୀ ହେଲେ। ଲକ୍ଷ୍ମଣବାବୁଙ୍କ ଘରଟି ଆମ ସଂସ୍ଥାର କାର୍ଯ୍ୟସ୍ଥଳ ହୋଇ ଉଠିଲା। ତାଙ୍କର ଜଣେ ବନ୍ଧୁ ଯୁଗଶ୍ରୀର ମନୋଗ୍ରାମ କରିଦେଲେ। ଲକ୍ଷ୍ମଣବାବୁଙ୍କ ଅକ୍ଲାନ୍ତ ପରିଶ୍ରମ ଫଳରେ ଦୁଇମାସ ମଧ୍ୟରେ ଏହାର ପଞ୍ଜୀକରଣ ମଧ୍ୟ ହୋଇଗଲା। ଅଭିଜିତ୍ ଓ ମୋତେ ବାଦ୍ ଦେଇ ଅଂଶୁ କୁମାର ମିତ୍ର, ଉମାଶଙ୍କର ଲାଲ୍, ବ୍ରଜେନ୍ଦ୍ର ସାହୁ, କୁଞ୍ଜ ବିହାରୀ ସାମନ୍ତରାୟ, ତାପସ ଘୋଷ ଓ ମଦନ ମୋହନ ଶତପଥୀ ମୁଖ୍ୟ ଦାୟିତ୍ୱ ଗ୍ରହଣ କଲେ।

ଲକ୍ଷ୍ମଣ ବାବୁ ଏକ ଭିନ୍ନ ଧରଣର ବ୍ୟକ୍ତିତ୍ୱ। ସେ ପୂରାପୂରି ନିର୍ଲୋଭ। ଟିଉସନ୍ କରି ଅର୍ଥ ଉପାର୍ଜନ କରି ସମ୍ପତ୍ତି ବଢ଼ାଇବା ତାଙ୍କର ଅଭିଧାନରେ ନ ଥିଲା। ସୁତରାଂ "ଯୁଗଶ୍ରୀ" ସ୍ଥାପିତ ହେବା ପରେ ଧାରାବାହିକ ଭାବରେ କିଛି ନା କିଛି ଯୋଜନା ହାତକୁ ନେବା ପାଇଁ ସେ ଆମକୁ ପ୍ରେରଣା ଦେଉଥିଲେ। ପ୍ରଥମେ ଅନୁଷ୍ଠାନର ଲେଖା ପ୍ୟାଡ୍, ସଭ୍ୟ ଆବେଦନ ଫର୍ମ ଇତ୍ୟାଦିର ଆବଶ୍ୟକତା ରହିଛି। ପାଣ୍ଠି ସଂଗ୍ରହ ପାଇଁ ସଭ୍ୟମାନଙ୍କଠାରୁ କିମ୍ବା ଅନ୍ୟ ବ୍ୟକ୍ତିଠାରୁ ଚାନ୍ଦା ସଂଗ୍ରହ କରିବା ସପକ୍ଷରେ ସେ ନ ଥିଲେ। ଗୋଟିଏ Charity Film Show ଆୟୋଜନ ମାଧ୍ୟମରେ କିଛି ପାଣ୍ଠି ଯୋଗାଡ଼ କରିବାର ସେ ପ୍ରସ୍ତାବ ଦେଲେ।

ଏ ପ୍ରକଳ୍ପଟି ଖୁବ୍ ସଫଳ ହେଲା। ଅଭିଜିତ୍ଙ୍କ ବାପା ଗୋପାଳ ଘୋଷ୍ ଚଳଚ୍ଚିତ୍ର ବ୍ୟବସାୟ ସହିତ ସମ୍ପୃକ୍ତ ଥିବାରୁ ଏବଂ ବ୍ୟବସାୟ ସଂକ୍ରାନ୍ତରେ ସେ

ରୀତିମତ କଲିକତା ଯାଉଥିବାରୁ ଆମ ପାଇଁ ଫିଲିମ୍‌ଟି ଯୋଗାଡ଼ କରିଦେଲେ। ଫିଲିମ୍‌ଟି ହେଉଛି Cannes ଫିଲିମ୍ ପ୍ରତିଯୋଗୀତାରେ ସ୍ୱର୍ଣ୍ଣକମଳ ପ୍ରାପ୍ତ ଋଷିର ଫିଲିମ୍ Cranes Are Flying। ସେତେବେଳେ ଓଡ଼ିଶାର କଳାହାଣ୍ଡିରେ ମରୁଡ଼ି ପଡ଼ିଥାଏ। ମରୁଡ଼ିଗ୍ରସ୍ତ ଲୋକଙ୍କ ପାଇଁ ଆମ ଲାଭର ୫୦ ପ୍ରତିଶତ ସାହାଯ୍ୟ ଦାନ ଦେଇଦେବୁ ବୋଲି ଘୋଷଣା କଲୁ। ତେଣୁ କମର୍ସିଆଲ୍ ଟ୍ୟାକ୍ସରୁ ଅବ୍ୟାହତି ପାଇଲୁ। ସେତେବେଳେ ସାମୟିକ ଭାବରେ କଟକ ସହରର ବିରାଟ ସହୀଦ ଭବନ ଇଉନାଇଟେଡ୍ ଟକିଜ୍ ନାମରେ ସିନେମା ହଲ୍‌ର କାର୍ଯ୍ୟ କରୁଥାଏ। ଏକ ନିର୍ଦ୍ଦିଷ୍ଟ ଦିନ ଏଠାରେ Charity Showର ଫିଲିମ୍‌ଟି ପ୍ରଦର୍ଶିତ ହେବ ବୋଲି ପ୍ରଚାର ପତ୍ର ପ୍ରସାରିତ ହେଲା। ପଇସା ଖର୍ଚ୍ଚ କରି ବ୍ୟବସାୟିକ ସିନେମା ହଲ୍‌ର କର୍ମଚାରୀଙ୍କ ସାହାଯ୍ୟ ନ ନେଇ ଆମେ ଚାରି ପାଞ୍ଚ ଜଣ ରାତି ବାରଟା ପରେ ପ୍ରଚାର ପତ୍ର, ଶିଡ଼ି ଓ ଅଠା ନେଇ ରାତିସାରା କଟକ ସହର ବୁଲିଲୁ। ମଧ୍ୟ ରାତ୍ରିରେ କଟକକୁ ଅବଲୋକନ କରିବାର ଏ ଏକ ବିଚିତ୍ର ଅନୁଭବ। କେଉଁଠି ମିଠା ଦୋକାନରେ ରସଗୋଲା ତିଆରି ଚାଲିଥିବା ସମୟରେ ସେଠାରେ ବସି ମିଠା ଖାଇଲୁ। ଅନ୍ୟ କେଉଁଠାରେ ଖୋଲା ପାନ ଦୋକାନରେ ମିଠା ପାନ ନେଲୁ। ପ୍ରଚାର ପତ୍ର ସାରିଲା ବେଳକୁ ରାତି ପ୍ରାୟ ଶେଷ। ପାହାନ୍ତାରେ ଘରକୁ ଫେରି ଆସି ଶୋଇ ପଡ଼ିଲୁ।

ପ୍ରଥମ ଥର ପାଇଁ Charity Showର ଆୟୋଜନ କରୁଥିବାରୁ ପୂର୍ବର ଅଭିଜ୍ଞତା ନ ଥିଲା। ବ୍ୟକ୍ତିଗତ ଭାବେ ଲୋକଙ୍କୁ ଅନୁରୋଧ ଜଣାଇ ଅଧିକ ସଂଖ୍ୟକ ଟିକେଟ୍ ବିକି ପାରି ନଥିଲୁ। ତେବେ ବିଶେଷ ଭୟ ନ ଥିଲା। ଖର୍ଚ୍ଚ ମାତ୍ର ପାଞ୍ଚଶହ ଟଙ୍କାରେ ସୀମିତ ଥିଲା। ଫିଲିମ୍‌ଟିର ଭଡ଼ା ୧୨୫ ଟଙ୍କା ଏବଂ ହଲ୍ ଭଡ଼ା ମାତ୍ର ୧୨୫ଟଙ୍କା। ଆମେ ନିଜେ ଅନ୍ତତଃ ଭଲ ଫିଲିମ୍‌ଟିଏ ଦେଖିବାର ସୁଯୋଗ ପାଇବୁ ବୋଲି ଭାବିଥିଲୁ।

ମାତ୍ର ଆଶ୍ଚର୍ଯ୍ୟର କଥା। ଫିଲିମ୍ ପ୍ରଦର୍ଶନ ଦିନ ଲୋକାରଣ୍ୟ। ସବୁ ଟିକେଟ୍ ବିକ୍ରୀ ହୋଇଗଲା। ଆୟୋଜନକାରୀ ହିସାବରେ ଆମେ ନିଜେ ସିଟ୍‌ରେ ନ ବସି ବାଲ୍‌କୋନୀରେ ଠିଆ ହୋଇ ଫିଲିମ୍‌ଟି ଦେଖି ନେଲୁ। ଖୁବ୍ ଖୁସୀ ଲାଗିଲା। ପ୍ରଥମତଃ ଆନ୍ତର୍ଜାତିକ ସ୍ତରରେ ସମ୍ମାନିତ ହୋଇଥିବା ଏହି ଋଷୀୟ ଛବିଟି ଚମତ୍କାର। ଦ୍ୱିତୀୟତଃ ପଚିଶ ତିରିଶ ହଜାର ଟଙ୍କାର ଟିକେଟ୍ ବିକ୍ରୀର କଳ୍ପନା କରି ନଥିଲୁ। ଦଶ ପନ୍ଦର ହଜାର ଟଙ୍କା ଖର୍ଚ୍ଚ କରି ଅନୁଷ୍ଠାନ ପାଇଁ ସୁନ୍ଦର ପ୍ୟାଡ୍, ଆବେଦନ ପତ୍ର ଓ ଅନ୍ୟ କେତେକ ଷ୍ଟେସ୍‌ନାରୀ ଜିନିଷ କ୍ରୟ କଲୁ। ଆଲମାରୀ ମଧ୍ୟ କ୍ରୟ କରାଗଲା।

ଆମର ଘୋଷଣା ଅନୁଯାୟୀ ପ୍ରାୟ ପନ୍ଦର ହଜାର ଟଙ୍କାର ଗୋଟିଏ ବ୍ୟାଙ୍କ ଡ୍ରାଫ୍ଟ ଧରି ଲକ୍ଷ୍ମଣ ବାବୁ ରାଜଭବନ ଗଲେ। ରାଜ୍ୟପାଳ ହେଉଛନ୍ତି ଶ୍ରୀଯୁକ୍ତ ଅଯୋଧ୍ୟାନାଥ ଖୋସ୍‌ଲା। ସେ ଓଡ଼ିଶାବାସୀଙ୍କର ଖୁବ୍ ପ୍ରିୟ ଥିଲେ। ରାଜ୍ୟପାଳ ଭୂମିକା ବ୍ୟତୀତ ଓଡ଼ିଶାର ବହୁ ଲୋକହିତକର କାର୍ଯ୍ୟରେ ସଂଶ୍ଳିଷ୍ଟ ଥିଲେ। ଲକ୍ଷ୍ମଣ ବାବୁ ଭାବପ୍ରବଣ ବ୍ୟକ୍ତି। ସେ ନିଜ ହାତରେ ଶ୍ରୀଯୁକ୍ତ ଖୋସ୍‌ଲାଙ୍କ ସମ୍ମାନାର୍ଥେ ଏକ ପ୍ରଶସ୍ତିପତ୍ର ଲେଖିଥିଲେ। ଲକ୍ଷ୍ମଣ ବାବୁଙ୍କ ହସ୍ତାକ୍ଷର ଏତେ ସୁନ୍ଦର ଯେ ତାଙ୍କର ଲେଖା ଦେଖିଲେ ସହଜରେ ଜାଣି ହେବ ନାହିଁ ଯେ ଏହା ହାତ ଲେଖା କି ଭଲ ପ୍ରେସ୍‌ରେ ଛପା ହୋଇଥିବା ଅକ୍ଷର।

ରାଜ୍ୟପାଳ ମହୋଦୟଙ୍କ ସହିତ ସେଦିନ ଲକ୍ଷ୍ମଣ ବାବୁ ସାକ୍ଷାତର ସୁଯୋଗ ପାଇଲେ ନାହିଁ। ରାଜ୍ୟପାଳ ଭୁବନେଶ୍ୱରରେ ଅନୁପସ୍ଥିତ ଥିଲେ। ତାଙ୍କର ସେକ୍ରେଟାରୀ ଶ୍ରୀଯୁକ୍ତ ରବିନାରାୟଣ ଦାସ ଡ୍ରାଫ୍ଟ ଓ ଲେଖାଟି ରଖିଲେ। ଲକ୍ଷ୍ମଣବାବୁଙ୍କ ଲେଖାଟି ଯେ ତାଙ୍କର ହାତଲେଖା, ଏହା ଶ୍ରୀଯୁକ୍ତ ଦାସ ବିଶ୍ୱାସ କରିପାରିଲେ ନାହିଁ। ଲକ୍ଷ୍ମଣ ବାବୁ ଫେରି ଆସିଲେ।

ଆମ୍ଭମାନଙ୍କ ମଧ୍ୟରେ ଆନନ୍ଦ ଓ ବିସ୍ମୟର ଏକ ଲହରୀ ସୃଷ୍ଟିକରି ପରଦିନ ଲକ୍ଷ୍ମଣବାବୁଙ୍କ ଠିକଣାରେ ଟେଲିଗ୍ରାମ୍ ଆସିଲା। ଆମର ଯୁଗଶ୍ରୀ ଦଳ ଇଚ୍ଛା କଲେ ରାଜ୍ୟପାଳଙ୍କୁ ସାକ୍ଷାତ କରିପାରିବେ। ଏଥିପାଇଁ ରାଜ୍ୟପାଳ ମହୋଦୟ ଦୁଇଘଣ୍ଟା ସମୟ ଦେବେ। ଆମ ସହିତ ଫଟୋଗ୍ରାଫର୍ ଗଲେ ଆମେ ତାଙ୍କ ସହିତ ଫଟୋ ନେଇପାରିବୁ। ଅବଶ୍ୟ ପୂର୍ବରୁ ଯୋଗାଯୋଗ କରି ସମୟ ନିର୍ଘଣ୍ଟ ସ୍ଥିର କରିବାକୁ ହେବ ଏବଂ ଦଳରେ ଯାଉଥିବା ସମସ୍ତଙ୍କ ନାମର ତାଲିକା ଦେବାକୁ ପଡ଼ିବ। ଲକ୍ଷ୍ମଣବାବୁ ଏ ଦିଗରେ ପଦକ୍ଷେପ ନେଲେ।

ନିର୍ଦ୍ଧାରିତ ହୋଇଥିବା ଦିନ ଓ ସମୟରେ ଲକ୍ଷ୍ମଣବାବୁଙ୍କ ସହିତ ଆମେ ଦଶଜଣ କଟକରୁ ଭୁବନେଶ୍ୱର ଗଲୁ। ଆମ ସହିତ ଫଟୋଗ୍ରାଫର୍ ହିସାବରେ ଅଭିଜିତ୍‌ର ମାମୁ ଥିଲେ। ଯଥାରୀତି ଗେଟ୍ ପାଶ୍ ନେଇ ରାଜଭବନ ଦିଗରେ ଅଗ୍ରସର ହେଲା ବେଳେ ଭୟ, ବିସ୍ମୟ ଓ ଆନନ୍ଦ ମିଶାମିଶି ହୋଇ ଆମକୁ ସ୍ପର୍ଶ କରୁଥାଏ। ଗୋଟିଏ ସୁସଜ୍ଜିତ କୋଠରୀରେ ଆମେ ବସିବାର ଅଳ୍ପ ସମୟ ପରେ ମହାମାନ୍ୟ ରାଜ୍ୟପାଳ ଶ୍ରୀଯୁକ୍ତ ଅଯୋଧ୍ୟାନାଥ ଖୋସ୍‌ଲା ଆସିଲେ। ଆମେ ବିନମ୍ରତାର ସହ ଠିଆହେଲୁ। ସେ ବସିବାକୁ ଇଙ୍ଗିତ ଦେଲେ। ପାଖରେ ତାଙ୍କର ସେକ୍ରେଟାରୀ ଶ୍ରୀଯୁକ୍ତ ଦାସ ରହିଥାନ୍ତି। ସେ ଆମର ଓଡ଼ିଆ ବକ୍ତବ୍ୟକୁ ଭାଷାନ୍ତର କରି ରାଜ୍ୟପାଳ ମହୋଦୟଙ୍କୁ ଅବଗତ କରାଉଥିଲେ। ରାଜ୍ୟପାଳ ଖୁବ୍ ସନ୍ତୋଷ ପ୍ରକାଶ କରି କହିଲେ ଯେ ଆମେ ସବୁ ସ୍କୁଲ ସାରିଥିବା ବୟସର ପିଲା ଏବଂ ଏପରି ଅବସ୍ଥାରେ

କଳାହାଣ୍ଡିର ଦୁଃସ୍ଥ ଲୋକଙ୍କ କଥା ଭାବିବା ଏବଂ ସେମାନଙ୍କ ପାଇଁ କିଛି କରିବା କମ୍ କଥା ନୁହେଁ। ଆମେ ରହୁଥିବା ପରିପାର୍ଶ୍ୱର ଉନ୍ନତି ପାଇଁ ଆଉ କେଉଁ ସବୁ କାର୍ଯ୍ୟ ହାତକୁ ନେଉଛୁ ବୋଲି ପଚାରିଲେ। ଆମ୍ଭମାନଙ୍କ ପକ୍ଷରୁ ଲକ୍ଷ୍ମଣବାବୁ ଆମର ଆଗାମୀ ଯୋଜନା ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦେଲେ। ଆମ୍ଭମାନଙ୍କ ପାଇଁ ଜଳଯୋଗର ବ୍ୟବସ୍ଥା କରା ଯାଇଥିଲା। ରାଜ୍ୟପାଳଙ୍କ ସହିତ ଆମେ ଫଟୋ ନେଲୁ। ସେଦିନର ଆନନ୍ଦାନୁଭୂତି ପ୍ରକୃତରେ ସ୍ମୋତମୁଖର ରହିଥିଲା।

ଲକ୍ଷ୍ମଣବାବୁଙ୍କ ନେତୃତ୍ୱରେ ରାଜଭବନ ଯାଇଥିବା "ଯୁଗଶ୍ରୀ" ଦଳ ସେଦିନ ନୂତନ ଆତ୍ମ-ପରିଚିତି ନେଇ କଟକ ଫେରିଲା। ଆମ୍ଭେମାନେ ନୂତନ ଉତ୍ସାହରେ ଅଧିକରୁ ଅଧିକ ରଚନାତ୍ମକ କାର୍ଯ୍ୟକ୍ରମ ହାତକୁ ନେଲୁ। ବିଧିବଦ୍ଧ ଭାବରେ ସ୍କୁଲ ଓ କଲେଜ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବକ୍ତୃତା, ଆବୃତ୍ତି, ସାଧାରଣଜ୍ଞାନ, ପ୍ରବନ୍ଧ, ଗଳ୍ପ ଓ କବିତା ପ୍ରତିଯୋଗିତାର ଆୟୋଜନ କରା ଯାଉଥିଲା। ପି.ଏମ୍.ଏକାଡ଼େମୀର ପରିଚାଳନା ସମିତି ଓ ପ୍ରଧାନ ଶିକ୍ଷକ ସୁରେନ୍ଦ୍ର ତ୍ରିପାଠୀ ଆମକୁ ସଦୟ ଅନୁମତି ଦେଉଥିବାରୁ ବଡ଼ ବଡ଼ କାର୍ଯ୍ୟକ୍ରମ ପାଇଁ ସ୍ଥାନର ଅଭାବ ନ ଥିଲା।

ପ୍ରତିଯୋଗିତାର ଊର୍ଦ୍ଧ୍ୱକୁ ଯାଇ ଥରେ ଆମେ ଏକ ଅଭିନବ ଯୋଜନା କଲୁ। ସେ ସମୟରେ ରାଧାନାଥ ଟ୍ରେନିଂ କଲେଜ ଆନୁକୂଲ୍ୟରେ ରେଭେନ୍ସା କଲେଜିଏଟ୍‌ରେ କଟକର ବିଭିନ୍ନ ସ୍କୁଲମାନଙ୍କର ଷ୍ଟଲ୍ ସହିତ ବିଜ୍ଞାନ ମେଳାର ଆୟୋଜନ କରାଯାଉଥିଲା। ଆମେ ଅନ୍ୟ ଏକ ସମୟରେ ଅନୁରୂପ ବିଜ୍ଞାନ ମେଳାର ପରିକଳ୍ପନା କଲୁ। କଟକର ସବୁ ସ୍କୁଲକୁ ଆମନ୍ତ୍ରଣ ଜଣାଇଲୁ। ପି.ଏମ୍.ଏକାଡ଼େମୀର ବିରାଟ ପ୍ରେକ୍ଷାଳୟରେ ଏ ଷ୍ଟଲ୍ ସବୁ ସ୍ଥାନିତ ହେବାର ନିଷ୍ପତ୍ତି ହେଲା।

ବିଶିଷ୍ଟ ଓଡ଼ିଆ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା ଦିନ ଏଗାରଟାରେ ପ୍ରଦର୍ଶନୀ ଉଦ୍‌ଘାଟନ କରିବେ ଏବଂ ସନ୍ଧ୍ୟାରେ ଶିକ୍ଷାବିତ୍ ଆଞ୍ଚଳିକ ଶିକ୍ଷା କେନ୍ଦ୍ରର (ଭୁବନେଶ୍ୱର) ଅଧ୍ୟକ୍ଷ ଡଃ ରାଧାଚରଣ ଦାଶ ବୈଜ୍ଞାନିକ ସୃଜନଶୀଳତା ଉପରେ ଅଭିଭାଷଣ ପ୍ରଦାନ କରିବେ। ପରଦିନ ଶିକ୍ଷାମନ୍ତ୍ରୀ ବନମାଳି ପଟ୍ଟନାୟକ, ସଂସ୍କୃତି ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ର ଏବଂ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ପ୍ରଫେସର୍ ବିଧୁଭୂଷଣ ଦାସ ଯୋଗ ଦେଇଥିଲେ। ଏହି ବିରାଟ ଉତ୍ସବ ସହିତ ସଂଶ୍ଳିଷ୍ଟ ଗୋଟିଏ ଦୁଇଟି ଘଟଣାର ସ୍ମୃତି ବେଶ୍ କୌତୂହଳପ୍ରଦ।

ପ୍ରଥମ ଥର ପାଇଁ ଯୁଗଶ୍ରୀ କଳା ବିଜ୍ଞାନ ସାଂସ୍କୃତିକ ସଂସଦ ତରଫରୁ ଆୟୋଜିତ ବିଜ୍ଞାନମେଳାଟି ଦିନ ଏଗାରଟାରେ ବିଶିଷ୍ଟ ଓଡ଼ିଆ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା ଉଦ୍‌ଘାଟନ କରିବାର ସ୍ଥିର ହୋଇଥିଲା। ସ୍ଥାନ ହେଉଛି ପ୍ୟାରୀ ମୋହନ ଏକାଡ଼େମୀର ଏକ ବିରାଟ ପ୍ରେକ୍ଷାଳୟ। ଆମେ ଜାଣିଥିଲୁ ଯେ ଡକ୍ଟର ପରିଜା ଖୁବ୍

ସମୟ ସଚେତନ। ତାଙ୍କ ଲିଖିତ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ (ଯେଉଁଠାରେ ସେ ଅଧ୍ୟୟନ କରିଥିଲେ) ପ୍ରବନ୍ଧଟିରୁ ତାଙ୍କ ବିଷୟରେ ବେଶ୍ କିଛି ଜାଣିଥିଲୁ। ନିର୍ଦ୍ଦିଷ୍ଟ ସମୟର ଠିକ୍ ପାଞ୍ଚମିନିଟ୍ ପୂର୍ବରୁ ଡକ୍ଟର ପରିଜା ତାଙ୍କର ଘରୋଇ ରିକ୍ସାରେ ଏକାଡେ଼ମୀର ମୁଖ୍ୟ ପ୍ରବେଶ ଦ୍ୱାର ପାଖରେ ପହଞ୍ଚିଲେ। ଲକ୍ଷ୍ମଣବାବୁ ଏବଂ ଆମେ ଦୁଇଜଣ ତାଙ୍କୁ ସ୍ୱାଗତ ଜଣାଇ ପ୍ରେକ୍ଷାଳୟ ଦିଗରେ ପାଛୋଟି ନେଲୁ। ଆମର ଦୁର୍ଭାଗ୍ୟ ଯେ ଆମେ ପ୍ରେକ୍ଷାଳୟ ପାଖରେ ପହଞ୍ଚିବା ସମୟରେ ବୈଦ୍ୟୁତିକ ବିଭ୍ରାଟ ଘଟିଛି। ଆମର ସଭ୍ୟମାନଙ୍କ ମଧ୍ୟରୁ ଏପରି କାମ ଜଣାଥିବା ଜଣେ ବ୍ୟକ୍ତି ଟେବୁଲ୍ ଉପରେ ଠିଆ ହୋଇ ବାର୍ ଲାଇଟ୍‌ଟି ସଜାଡୁଛନ୍ତି। ଏହା ଦେଖି ଡକ୍ଟର ପରିଜା ଅନୁମାନ କଲେ ଯେ ଆମେ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ ନାହୁଁ। ସେ ଏକରକମ ଦୌଡି଼ବାକୁ ଆରମ୍ଭ କଲେ। ମୁଖ୍ୟ ପ୍ରବେଶ ଦ୍ୱାରକୁ ଫେରି ଆସି ରିକ୍ସାରେ ବସି ଘରକୁ ନେଇଯିବା ପାଇଁ ନିର୍ଦ୍ଦେଶ ଦେଲେ। ଲକ୍ଷ୍ମଣବାବୁ ଅସହାୟ ଶିଶୁଟି ପରି ରିକ୍ସା ପଛରେ ଦୌଡି଼ଲେ। ଆମ୍ଭେମାନେ ମଧ୍ୟ କିଛି ବାଟ ଗଲୁ। ମାତ୍ର ସେ ଦ୍ରୁତ ଗତିରେ ରିକ୍ସାରେ ଫେରିଗଲେ।

ଆମେ ସବୁ ବ୍ୟଥିତ ହେଲୁ। କିନ୍ତୁ ଶିକ୍ଷା ମଧ୍ୟ ପାଇଲୁ। ସୃଜନଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ସମୟ ଯେ କେତେ ମୂଲ୍ୟବାନ, ତାହା ଅନୁଭବ କଲୁ। ଆଜିକାଲି ସଭାସମିତିରେ ଏବଂ ଅନ୍ୟସବୁ ଆୟୋଜନରେ ସମୟର ଖାମ୍‌ଖେୟାଲୀ ବ୍ୟବହାର ଦେଖିଲେ ଦୁଃଖ ଲାଗେ। ଡକ୍ଟର ପରିଜାଙ୍କ ଚେତାବନୀ ସତର୍କ ଘଣ୍ଟି ହୋଇ ସଚେତନ କରାଏ।

ଦ୍ୱିତୀୟ ଘଟଣାଟି ପରଦିନ ସନ୍ଧ୍ୟାରେ ଘଟିଥିଲା। ତତ୍‌କାଳୀନ ସଂସ୍କୃତି ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ସେ ସନ୍ଧ୍ୟାରେ ମୁଖ୍ୟ ଅତିଥି ରହିଥିଲେ। କୌଣସି ଏକ ପ୍ରସଙ୍ଗରେ ମନ୍ତ୍ରୀ ମହୋଦୟ ଗୋଟିଏ ବାକ୍ୟ କହିଦେଲେ ଯେ "କପେ ଚା' ଓ ଗୋଟିଏ ସିଙ୍ଗଡ଼ା ଖାଇ ସାମ୍ବାଦିକମାନେ ଇଚ୍ଛାମତେ ଲେଖି ଦିଅନ୍ତି।" ଏହି ମନ୍ତବ୍ୟଟି ସାମ୍ବାଦିକ ଗୋଷ୍ଠୀରେ ହଟ୍ଟଗୋଳ ସୃଷ୍ଟି କଲା। ପରଦିନ ପ୍ରାୟ ସବୁ ଖବରକାଗଜରେ ପ୍ରତିବାଦ ମନ୍ତବ୍ୟମାନ ପ୍ରକାଶ ପାଇଲା। ସାମ୍ବାଦିକମାନେ ମନ୍ତ୍ରୀଙ୍କ କୌଣସି ସଭାରେ ଯୋଗ ଦେବେ ନାହିଁ ବୋଲି ଧମକ ଦେଲେ। ମନ୍ତ୍ରୀ ମଧ୍ୟ ନିଜର ସ୍ପଷ୍ଟୀକରଣ ଦେବାକୁ ଯାଇ ସେ ଏପରି ଅପମାନସୂଚକ ମନ୍ତବ୍ୟ ପ୍ରକାଶ କରିନାହାଁନ୍ତି ବୋଲି କହିଲେ। ଏ ତର୍କ ବିତର୍କ ପ୍ରାୟ ଦୁଇ ମାସ ଚାଲିଲା। ମାତ୍ର ପ୍ରତିଲେଖାର ଶିରୋନାମା ଥିଲା: "କପେ ଚା' ଓ ଗୋଟିଏ ସିଙ୍ଗଡ଼ା। ପୁଣି ପ୍ରତି ବକ୍ତବ୍ୟର ଅଗ୍ରବାକ୍ୟ ଥିଲା: "ସେଦିନ ଯୁଗଶ୍ରୀ କଳାବିଜ୍ଞାନ ସାଂସ୍କୃତିକ ସାଂସଦର ବିଜ୍ଞାନ ସଭାରେ-"। କହିବା ଅନାବଶ୍ୟକ ଯେ ଏପରି କୌତୂହଳପୂର୍ଣ୍ଣ ସମ୍ବାଦର ପୁନରାବୃତ୍ତି

ଫଳରେ ବହୁ ଲୋକଙ୍କର 'ଯୁଗଶ୍ରୀ' ଶବ୍ଦ ମୁଖସ୍ଥ ହୋଇଗଲା। ପରୋକ୍ଷଭାବରେ ଆମର ଖ୍ୟାତି ମଧ୍ୟ ବଢ଼ିଗଲା।

ଆମ କାର୍ଯ୍ୟକ୍ରମର ଅନ୍ୟତମ ଉଲ୍ଲେଖଯୋଗ୍ୟ ଶ୍ରୀପଦ ମିଶ୍ରଙ୍କ ପରିକଳ୍ପିତ ଓ ନିର୍ମିତ ରକେଟ୍ ମଡ଼େଲ୍। ଏଠାରେ ଶ୍ରୀପଦ ମିଶ୍ରଙ୍କ ବିଷୟରେ ପଦେ ଦୁଇପଦ ଉଲ୍ଲେଖ କରିବା ଉଚିତ୍ ମନେକରୁଛି। ଉପଯୁକ୍ତ ପରିବେଶ ଓ ପ୍ରୋତ୍ସାହନ ଅଭାବରୁ ପ୍ରଚ୍ଛନ୍ନ ପ୍ରତିଭା କିପରି ବିକଶିତ ହୋଇପାରୁ ନାହିଁ ଶ୍ରୀପଦ ମିଶ୍ରଙ୍କ ଜୀବନ ଏହାର ଏକ ନିଚ୍ଛକ ଉଦାହରଣ। ଶ୍ରୀପଦ ମିଶ୍ର ରେଭେନ୍ସା ବାଳିକା ବିଦ୍ୟାଳୟରେ ସଂସ୍କୃତ ପଣ୍ଡିତ ଆନନ୍ଦ ଚନ୍ଦ୍ର ମିଶ୍ରଙ୍କ ତୃତୀୟ ପୁତ୍ର। ପଣ୍ଡିତ ମହାଶୟଙ୍କ ଜ୍ୟେଷ୍ଠପୁତ୍ର ଦୁର୍ଗାପଦ ମିଶ୍ର ସୁଯୋଗ୍ୟ ସନ୍ତାନ। ସେ ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନର ଅଧ୍ୟାପକ ଥିଲେ। ଖୁବ୍ ଜ୍ଞାନଦୀପ୍ତ ଓ ଛାତ୍ରବତ୍ସଳ। ତାଙ୍କରି ପ୍ରେରଣା ଓ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଫଳରେ ଶ୍ରୀପଦ ସ୍କୁଲ ବୟସରେ ପଦାର୍ଥ ବିଜ୍ଞାନରେ ଅଧ୍ୟୟନ କରିଥିଲେ। ପି.ଏମ୍.ଏକାଡ଼େମୀରେ ପଢ଼ିବା ସମୟରେ ଏହି ସ୍କୁଲରେ ଥିବା ବିଜ୍ଞାନ କ୍ଲବ ତାଙ୍କୁ ପରୀକ୍ଷା ନିରୀକ୍ଷା କରି ସୁଯୋଗ ଦେଇଥିଲା। ତାଙ୍କର ପରିକଳ୍ପିତ ଓ ନିର୍ମିତ ରକେଟ୍‌ର ମଡ଼େଲଟି ବିଭିନ୍ନ ବିଜ୍ଞାନ ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲା।

ଦୁର୍ଭାଗ୍ୟବଶତଃ ଦୁର୍ଗାପଦ ବାବୁ ମସ୍ତିଷ୍କ ଟ୍ୟୁମର ଫଳରେ ଅକାଳ ମୃତ୍ୟୁବରଣ କଲେ। ଭେଲୋର୍ ପରି ପ୍ରଖ୍ୟାତ ଚିକିତ୍ସାଳୟରେ ଶଲ୍ୟ ଚିକିତ୍ସା କରାଯିବା ସତ୍ତ୍ୱେ ଦୁର୍ଗାପଦବାବୁଙ୍କର ମୃତ୍ୟୁ ଘଟିଲା। ପୁତ୍ରଶୋକରେ ଅଧୀର ହୋଇ ପଣ୍ଡିତ ମହାଶୟ ମାନସିକ ସ୍ଥିରତା ହରାଇଲେ। ଶ୍ରୀପଦର ପାରିବାରିକ ସହଯୋଗର ପ୍ରଶ୍ନ ନ ଥିଲା। କଲେଜ ଶିକ୍ଷାର ପ୍ରଶ୍ନ ନ ଥିଲା। ତଥାପି ମହାକାଶ ବିଜ୍ଞାନ ସମ୍ପର୍କରେ ବିଜ୍ଞାନ ପୁସ୍ତକ ରଚନା କରିବା, ଏହାକୁ ବିକ୍ରୟ କରି ଯତ୍‌କିଞ୍ଚିତ୍ ସମ୍ବଳ ସଂଗ୍ରହ କରିବା ଏବଂ ସ୍ୱଚେଷ୍ଟାରେ କିଛି ଅଧ୍ୟୟନ କରିବାର ପ୍ରବୃତ୍ତି ଜାରୀ ରଖିଥିଲେ। ଆମେ ଯୁଗଶ୍ରୀ ତରଫରୁ ତାଙ୍କୁ ଅନୁରୋଧ ଜଣାଇଥିଲୁ ଆମର ବିଜ୍ଞାନ ମେଳାରେ ନୂଆ କରି ରକେଟ୍ ମଡ଼େଲ୍‌ଟି ପ୍ରସ୍ତୁତ କରିବା ପାଇଁ। ସେ ଏହା କରିଥିଲେ ଏବଂ ଏହା ଦର୍ଶକମାନଙ୍କର ଉଚ୍ଚ ପ୍ରଶଂସା ଲାଭ କରିଥିଲା।

ଶ୍ରୀପଦ ବାବୁଙ୍କ ଜୀବନ ଇତିହାସ ଏକ ବ୍ୟକ୍ତିଗତ ଇତିହାସ ନୁହେଁ। ଏହା ସଂଗ୍ରାମଶୀଳ ଯୁବ ପ୍ରତିଭାର ଅସହାୟତାର କାହାଣୀ। ଏବେ ମଧ୍ୟ ସେ ସକ୍ରିୟ ସଂଗ୍ରାମରେ ବଞ୍ଚି ରହିଛନ୍ତି। (ତାଙ୍କୁ ଶ୍ରୀପଦ ବାବୁ କହୁଛି କାରଣ ବୟସରେ ସମ୍ଭବତଃ ତିନିଚାରି ବର୍ଷ ମୋଠାରୁ ବଡ଼)।

ଯୁଗଶ୍ରୀର ଉନ୍ମେଷ ଓ ବିକାଶ ଆମ କେତେଜଣଙ୍କ ଜୀବନକୁ ଗଭୀର ଭାବେ ସ୍ପର୍ଶ କରିଥିଲା। ଆମର କେନ୍ଦ୍ରୀୟ ଦଳର ସଭ୍ୟମାନେ ସ୍ନାତକ ଶିକ୍ଷା ଶେଷ କରି

ଅନ୍ୟତ୍ର ଚାଲିଯିବାରୁ ଏହା କ୍ରମଶଃ ଦୁର୍ବଳ ହୋଇପଡ଼ିଲା। ତଥାପି ଏହାର କାର୍ଯ୍ୟକାଳ ମଧ୍ୟରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସଂସର୍ଗ ଓ ଉପଦେଶ ଆମ୍ଭମାନଙ୍କ ଜୀବନରେ ଉତ୍କର୍ଷ ଆସିଥିଲା। ଅନୁଷ୍ଠାନର ସଭାପତି ରୂପେ ପ୍ରଫେସର ସର୍ବେଶ୍ୱର ଦାସ, କଳାବିକାଶ କେନ୍ଦ୍ରର ତତ୍‌କାଳୀନ ମୁଖ୍ୟ ବ୍ୟବସ୍ଥାପକ ବିମଳ ଘୋଷ, ଯୀଶୁ ରାୟ ଏବଂ ଗଣିତଜ୍ଞ ମଦନମୋହନ ମହାନ୍ତିଙ୍କ ନାମ ସ୍ମରଣ ରହିଛି। ଇତି ମଧ୍ୟରେ ଯୁଗଶ୍ରୀର ସମ୍ପାଦକ ଏବଂ ପ୍ରାଣ-ଶକ୍ତିର ଆଧାର ଶିକ୍ଷକ ଲକ୍ଷ୍ମଣ କୁମାର ସାହୁଙ୍କର ଦେହାନ୍ତ ଘଟିଛି।

❖

(୧୭)

# ବିଜ୍ଞାନ ଶ୍ରେଣୀରେ ଦୁଇତିନି ବର୍ଷ

ଗଭୀର ଉତ୍ସାହ ଓ ଉନ୍ମାଦନା ନେଇ ରେଭେନ୍ସାରେ ଭର୍ତ୍ତି ହେଲି। ପ୍ରାକ୍ ବିଶ୍ୱବିଦ୍ୟାଳୟ ଶ୍ରେଣୀରେ ଦୁଇଟି ବିଭାଗ: କ ଓ ଖ। ମୁଁ ପ୍ରଥମ ବିଭାଗରେ ରହିଥିଲି। ପ୍ରତି ବିଭାଗରେ ୧୨୮ ଜଣ ଛାତ୍ରଛାତ୍ରୀ। ଛାତ୍ରୀମାନଙ୍କ ସଂଖ୍ୟା ସମ୍ଭବତଃ ତିରିଶ ମଧ୍ୟରେ ସୀମିତ ଥିଲା। ଶ୍ରେଣୀଗୃହରେ ଅଧ୍ୟାପକ ନ ଆସିବା ପର୍ଯ୍ୟନ୍ତ ଏମାନେ ଦ୍ୱାରର ପାଖାପାଖି ସ୍ଥାନରେ ଅପେକ୍ଷା କରନ୍ତି। ଅଧ୍ୟାପକ ଆସିବା ମାତ୍ରେ ହଲ୍‌ରେ ପ୍ରବେଶ କରନ୍ତି। ପ୍ରଥମ ଧାଡ଼ିରେ ବସନ୍ତି। ଶ୍ରେଣୀକାର୍ଯ୍ୟ ଶେଷ ହେବା ମାତ୍ରେ ଏମାନେ ପ୍ରଥମେ ବାହାରି ଯାଆନ୍ତି। ତା'ପରେ ଛାତ୍ରମାନେ ଯାଆନ୍ତି।

ବିଜ୍ଞାନ ଶ୍ରେଣୀର ଅଧିକାଂଶ କ୍ଲାସ ପଦାର୍ଥ ବିଜ୍ଞାନ ବକ୍ତୃତା କକ୍ଷ ଏବଂ ରସାୟନ ବକ୍ତୃତା କକ୍ଷ ୧ ଓ ୨ ରେ ହୋଇଥାଏ। ଗଣିତ, ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ସମସ୍ତେ ପଢ଼ନ୍ତି। ତେବେ ଚତୁର୍ଥ ବିଷୟ ରୂପେ କେତେକଙ୍କର ଜୀବବିଜ୍ଞାନ ରହିଥିଲା। ମୋର ମଧ୍ୟ ଥିଲା। କଳାବିଷୟକ ବିଷୟ ମଧ୍ୟରୁ ଇଂରାଜୀ ଓ ଓଡ଼ିଆ ସାହିତ୍ୟ ରହିଥିଲା। ସେତେବେଳେ ପ୍ରଥମ ଦୁଇବର୍ଷ (ପ୍ରାକ୍ ବିଶ୍ୱବିଦ୍ୟାଳୟ ଓ ପ୍ରଥମ ବାର୍ଷିକ ବିଜ୍ଞାନରେ) ଆଉ ଗୋଟିଏ ବିଷୟ ସମସ୍ତଙ୍କର ରହିଥିଲା। ଏହା ହେଉଛି ସାଧାରଣ ଜ୍ଞାନ ବିଷୟକ ଏକ ଶୃଙ୍ଖଳା General Studies। ବିଜ୍ଞାନ ଓ କଳା ଛାତ୍ରଛାତ୍ରୀମାନେ ଏହା ଅଧ୍ୟୟନ କରୁଥିଲେ। ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ରାଜନୀତି ବିଜ୍ଞାନ ଓ ଇତିହାସର କିଛି ମୁଖ୍ୟ ମୁଖ୍ୟ ବିଷୟ ଏହାର ଅନ୍ତର୍ଭୁକ୍ତ ଥିଲା। ବିଭିନ୍ନ ବିଭାଗର ଅଧ୍ୟାପକମାନେ ପର୍ଯ୍ୟାୟକ୍ରମେ ଏହାକୁ ପଢ଼ାଉଥିଲେ।

ପ୍ରଥମେ ପ୍ରଥମେ ଶ୍ରେଣୀର ଅନୁଭବ ଖୁବ୍ ସକାରାତ୍ମକ ଥିଲା। ସମ୍ଭବତଃ ରେଭେନ୍ସା ପରି ମହାନ ଓ ବିରାଟ କଲେଜକୁ ପ୍ରବେଶ କରିବାରେ କେମିତି ଏକ ଗର୍ବ ଓ ଆତ୍ମ-ପରିଚିତି ବଢ଼ି ଯାଇଥିଲା। କିନ୍ତୁ କ୍ରମେ କ୍ରମେ ସେହି ବିରାଟ ଛାତ୍ର ସମୁଦ୍ର ମଧ୍ୟରେ ନିଜର ଆତ୍ମ ପରିଚିତି ହଜିଗଲା ପରି ମନେହେଲା। ସ୍କୁଲର ଚାଳିଶ ପଚାଶଜଣଙ୍କ ମଧ୍ୟରେ ଯେଉଁ ସ୍ଥିତି ରହିଥିଲା, ଶିକ୍ଷକଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କର ଟାଣ ଖିଅଟିଏ ଥିଲା ଏବଂ ବନ୍ଧୁବଳୟରେ ଯେଉଁ ସ୍ନେହଶ୍ରଦ୍ଧାର ଆକର୍ଷଣ ଥିଲା ତାହାର ସେପରି ଅନୁଭବ ବର୍ତ୍ତମାନ ସମ୍ଭବ ନ ଥିଲା। ଛୋଟ ପୋଖରୀର ବଡ଼ ମାଛ ହିସାବରେ ଆନନ୍ଦାନୁଭୂତି ଅଧିକ ଥିଲା। ଅନ୍ୟ ପକ୍ଷରେ ବଡ଼ ପୋଖରୀରେ ସାନମାଛର ଅନୁଭୂତି ତୃପ୍ତିଦାୟକ ହେଲା ନାହିଁ।

କ୍ରମଶଃ ଉତ୍ସାହ ଓ ମାନସିକ ଶକ୍ତି କମିଗଲା ପରି ଅନୁଭୂତ ହେଲା। ଶାରୀରିକ କ୍ଳାନ୍ତି ମଧ୍ୟ କେତେକ ପ୍ରତିବନ୍ଧକ ସୃଷ୍ଟିକଲା। ଗବେଷଣାଗାରରେ ପ୍ରାକ୍ଟିକାଲ କ୍ଲାସ ପାଇଁ ଅଧିକାଂଶ ଦିନ ସକାଳ ଘ୭.୩୦ରେ କଲେଜ ଆସିବାକୁ ପଡୁଥିଲା। ପୁଣି ସେ ସମୟରେ ଜାତୀୟ ସମର ଶିକ୍ଷାର୍ଥୀବାହିନୀ (N.C.C.) ତାଲିମ ବାଧ୍ୟତାମୂଳକ ଥିବାରୁ ଅପରାହ୍ଣ ସାଢ଼େ ଚାରିଟାରୁ ଛ'ଟା ପର୍ଯ୍ୟନ୍ତ N.C.C. ଶିକ୍ଷାରେ ଯୋଗ ଦେବାକୁ ପଡୁଥିଲା। ସନ୍ଧ୍ୟା ସମୟରେ ଅଳ୍ପ କିଛି ସମୟ ବିଶ୍ରାମ ନେଇ କିଛି ପିଲାଙ୍କୁ ପଢ଼ାଇବାକୁ ବାହାରି ଯାଉଥିଲି। ପିଉସା ପିଉସୀ ମୋର ଯତ୍ନ ନେଲେ ମଧ୍ୟ ପକେଟ ଖର୍ଚ୍ଚ ପାଇଁ ମୋତେ ଟିଉସନ୍ କରିବାକୁ ପଡୁଥିଲା। ସୁତରାଂ ରାତି ସାଢ଼େ ନ'ଟାରେ ଫେରିବା ପରେ ଘଣ୍ଟାଏ ମାତ୍ର ପଢ଼ିବାର ସୁଯୋଗ ପାଉଥିଲି।

ଫଳାଫଳ ସହଜରେ ଅନୁମେୟ। ପ୍ରାକ୍ ବିଶ୍ୱବିଦ୍ୟାଳୟର ଶେଷ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ପାଇଲି। ୧୯୬୬ ମସିହାର ଫଳାଫଳ ବିଚିତ୍ର। ହାଇସ୍କୁଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିବା ପ୍ରିୟଦର୍ଶୀ ଦାଶ ମଧ୍ୟ ଦ୍ୱିତୀୟ ଶ୍ରେଣୀ ପାଇଲେ।

ପରବର୍ଷ ପ୍ରଥମ ବାର୍ଷିକ ବିଜ୍ଞାନ ଶ୍ରେଣୀରେ ମୋର ଶିକ୍ଷାଗତ ସଫଳତା ବୃଦ୍ଧି କରିବାକୁ ଉଦ୍ୟମ କଲି। କିନ୍ତୁ ସଫଳ ହୋଇ ପାରିଲି ନାହିଁ, ଦ୍ୱିତୀୟ ଶ୍ରେଣୀ ପାଇଲି। ପରବର୍ଷ କ'ଣ କରିବି, ସେପରି ଏକ ଦ୍ୱନ୍ଦ୍ୱ ମଧ୍ୟରେ ରହିଲି।

କଲେଜ ପାଠ ସମ୍ପର୍କିତ ସମସ୍ୟା ନେଇ କିଛିଟା ଅତୃପ୍ତି ରହିଥିଲେ ମଧ୍ୟ ଅନ୍ୟ କ୍ଷେତ୍ରରେ କିଛିଟା ଆନନ୍ଦ ଥିଲା। ବ୍ୟକ୍ତିଗତ ସ୍ତରରେ ସମୟ ସମୟରେ ଟାଉନହଲ୍ କିମ୍ବା ଶ୍ରୀରାମଚନ୍ଦ୍ର ଭବନକୁ ଯାଇ ସାହିତ୍ୟ ସଭା କିମ୍ବା ନାଚଗୀତ ଅନୁଷ୍ଠାନରେ ଯୋଗ ଦେବାର ତୃପ୍ତି ପାଉଥିଲି। ଯୁଗଶ୍ରୀ କଳାବିଜ୍ଞାନ ସାଂସ୍କୃତିକ ସଂସଦ ମାଧ୍ୟମରେ କିଛି କାର୍ଯ୍ୟକ୍ରମ ହାତକୁ ନେବାର ଆତ୍ମତୃପ୍ତି ମଧ୍ୟ କମ୍ ନ ଥିଲା।

ଅନ୍ୟ ଗୋଟିଏ ଦିଗ ବଳିଷ୍ଠ ହେବାକୁ ଲାଗିଥିଲା। ବିଶେଷତଃ ବକ୍ତୃତା ଦେବାର ଯେଉଁ ଉତ୍ସାହ ସ୍କୁଲ ଜୀବନର ଶେଷ ପର୍ଯ୍ୟାୟରୁ ଆରମ୍ଭ ହୋଇଥିଲା। ତାହା ଅଧିକ ବିକଶିତ ହେଲା। ରେଭେନ୍ସା ପରି ବିରାଟ ଅନୁଷ୍ଠାନରେ ଅଧିକାଂଶ ସନ୍ଧ୍ୟାରେ କୌଣସି ନା କୌଣସି ପରିପ୍ରେକ୍ଷୀରେ ବକ୍ତୃତାର (କିମ୍ବା ବକ୍ତୃତା ପ୍ରତିଯୋଗିତା)କାର୍ଯ୍ୟକ୍ରମ ରହିଥାଏ। ମୁଁ ପ୍ରାୟ ସବୁ ଓଡ଼ିଆ ବକ୍ତୃତା ପ୍ରତିଯୋଗିତାରେ ଭାଗ ନିଏ।

ମୋର ସୌଭାଗ୍ୟ ଯେ ରେଭେନ୍ସା କଲେଜର ପ୍ରତିନିଧିତ୍ୱ କରି ମୁଁ ଆନ୍ତଃକଲେଜ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଛି। ଖ୍ରୀଷ୍ଟ କଲେଜ ଦ୍ୱାରା ଆୟୋଜିତ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ନେହେରୁ କପ୍ ଏବଂ ଭଦ୍ରକ କଲେଜର ପ୍ରଥମ ପୁରସ୍କାର ହେମେନ୍ଦ୍ର ଶିଲ୍ଡ କ୍ରମାଗତ ଭାବରେ ତିନି ବର୍ଷ ଧରି ପାଇ ପାରିଥିଲି।

ସାମନ୍ତ ଚନ୍ଦ୍ର ଶେଖର କଲେଜରୁ ମଧ୍ୟ ଶିଲ୍ଡ ପାଇଥିଲି। ଏପରି ପୁରସ୍କାର ସବୁ ରେଭେନ୍ସା କଲେଜରୁ ଆଣିବା ପରେ କଲେଜ ଇଉନିୟନ ସଭାପତିଙ୍କ ନିର୍ଦ୍ଦେଶରେ କନିକା ପାଠାଗାରରେ ଏକ ମୁଖ୍ୟ ସ୍ଥାନରେ ପ୍ରଦର୍ଶିତ ହୁଏ। ପାଠାଗାରକୁ ଆସୁଥିବା ଛାତ୍ରଛାତ୍ରୀମାନେ ପ୍ରାୟ ଦୁଇ ସପ୍ତାହ ପର୍ଯ୍ୟନ୍ତ ଏହି ଫଳକ ଓ ମୋର ସାଫଲ୍ୟର ସୂଚନା ଦେଖନ୍ତି। ଅଭିନନ୍ଦନ ମିଳିଲେ ଖୁସୀ ଲାଗେ। ମୋର ଓଡ଼ିଆ ବକ୍ତୃତା କାଳେ ଖରାପ ହୋଇଯିବ ସେଥିପାଇଁ ଅନେକ ଶୁଭେଚ୍ଛୁ ମୋତେ ପରାମର୍ଶ ଦେଇଥିଲେ ଇଂରାଜୀ ବକ୍ତୃତାରେ ଭାଗ ନ ନେବା ପାଇଁ। ତଥାପି ମୁଁ ଇଂରାଜୀ ତର୍କ ପ୍ରତିଯୋଗିତାରେ କେବେ କେବେ ଭାଗ ନେଇଛି। ଓଡ଼ିଆ ବକ୍ତୃତା ପ୍ରତିଯୋଗିତାର ପ୍ରାୟ ପୂର୍ଣ୍ଣତମ ସଫଳତା ପରି ଏଠାରେ ସଫଳ ନ ହେଲେ ମଧ୍ୟ ତିନି ଚାରିଥର ପୁରସ୍କାର ପାଇଛି।

ଦୁଇ ବର୍ଷର ବିଜ୍ଞାନ ଶିକ୍ଷା ପର୍ଯ୍ୟାୟରେ ମନ ମଧ୍ୟରେ ଅଭାବବୋଧ ରହି ଯାଇଥିଲେ ମଧ୍ୟ କେତେକ ଜିନିଷ ଛାପ ପକାଇଥିଲା। ବିଜ୍ଞାନ ଶ୍ରେଣୀରେ ଇଂରାଜୀ ପତ୍ରଟି ଏକ ମୁଖ୍ୟ ବିଷୟ ହୋଇ ନଥିଲେ ମଧ୍ୟ ଅଧ୍ୟାପକମାନଙ୍କର ଉନ୍ନତ ଶୈଳୀ ଓ ଅନ୍ତପ୍ରେରଣା ପ୍ରଭାବ ସୃଷ୍ଟି କରିଥିଲା। ବିଶେଷତଃ ପ୍ରଫେସରସମୂହ ସର୍ବେଶ୍ୱର ଦାସ, ସୌଭାଗ୍ୟ କୁମାର ମିଶ୍ର, ପ୍ରଫୁଲ୍ଲ ମହାନ୍ତି, ପରେଶ ରାଉତ, ଧୀରେନ୍ଦ୍ର କୁମାର ରାୟ ଏବଂ ମହାଜିତେଶ୍ୱର ଦାସଙ୍କ କ୍ଲାସର ବହୁ ଅନୁଭୂତି ଏବେ ସୁଦ୍ଧା ମନେଅଛି। ଓଡ଼ିଆ ସାହିତ୍ୟରେ ପ୍ରବୀଣଙ୍କ ଅପେକ୍ଷା ନବୀନଙ୍କ ପ୍ରଭାବ ଆମ ଉପରେ ଅଧିକ ରହିଥିଲା। ବିଜ୍ଞାନ କ୍ଷେତ୍ରରେ ବିଭାଗ ହିସାବରେ ରସାୟନ ବିଭାଗ ଖୁବ୍ ସକ୍ରିୟ ଥିଲା। ପ୍ରଫେସର୍ ଗୋକୁଳାନନ୍ଦ ମହାପାତ୍ର ଏବଂ ରବୀନ୍ଦ୍ର ନାଥ ନନ୍ଦଙ୍କୁ ଆମେ ସବୁ ଗଭୀର ଭକ୍ତି କରୁଥିଲୁ। ଅଧ୍ୟାପକ ପ୍ରାଣବନ୍ଧୁ ତ୍ରିପାଠୀ, ସୁରେନ୍ଦ୍ର ମହାନ୍ତି ଏବଂ ବିଚିତ୍ରାନନ୍ଦ ନନ୍ଦଙ୍କ ଶ୍ରେଣୀ ଖୁବ୍ ଉପଭୋଗ୍ୟ ଥିଲା।

ଦୁଇ ବର୍ଷ କଟିଯିବା ପରେ ଦ୍ୱନ୍ଦ୍ୱ ବଢ଼ିଗଲା। ତୃତୀୟ ବର୍ଷ କ'ଣ କରିବି, ସେ ନିଷ୍ପତ୍ତିରେ ଅସ୍ଥିରତା ଦେଖାଗଲା। ସତ କହିବାକୁ ଗଲେ ମୋର କେହି ମାର୍ଗଦର୍ଶକ ନ ଥିଲେ। ସୁତରାଂ ନିଷ୍ପତ୍ତି ପ୍ରକ୍ରିୟା ଜଟିଳ ହୋଇପଡ଼ିଲା।

ଭାବିଥିଲି ଗଣିତରେ ଅନର୍ସ ନେଇ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ପଢ଼ିବି। ସେତେବେଳର ଇଞ୍ଜିନିୟରିଂ ପଢ଼ିବା ପାଇଁ ରାଉରକେଲା କିମ୍ବା ବୁର୍ଲାରେ ମନୋନୀତ ହେବା ସହଜ ଥିଲେ ମଧ୍ୟ ଆମ ଘରୁ ଏତେ ପରିମାଣରେ ଟଙ୍କା ପଠାଇବା ସମ୍ଭବ ନ ଥିଲା। ସୁତରାଂ କଟକରେ ରହି କଟକରେ ପଢ଼ିବା ଏକମାତ୍ର ରାସ୍ତା ଥିଲା। ପରିସ୍ଥିତି ଅଧିକ ଜଟିଳ ହୋଇପଡ଼ିଲା। ମୁଁ ଦେଖିଲି ଯେ ବହୁ କଲେଜରେ ଅନର୍ସ ଶିକ୍ଷାର ବ୍ୟବସ୍ଥା ନ ଥିବାରୁ କଟକ ବାହାର ବହୁ ଶିକ୍ଷାର୍ଥୀ ରେଭେନ୍ସା ପାଇଁ

ଆବେଦନ କରିଛନ୍ତି। ସୁତରାଂ ଗଣିତରେ ଅନର୍ସ ନେଇ ସ୍ନାତକ ଶ୍ରେଣୀରେ ଭର୍ତ୍ତି ହେବା ଅସମ୍ଭବ ମନେହେଲା।

ମୁଁ ବାଧ୍ୟ ହୋଇ ଭୂତତ୍ତ୍ୱରେ ଅନର୍ସ ନେଲି। ଅନ୍ୟ ଦୁଇଟି ବିଷୟ ଥିଲା ରସାୟନ ଓ ପଦାର୍ଥ ବିଜ୍ଞାନ। ଜୁଲାଇରୁ ଡିସେମ୍ବର ଜାନୁଆରୀ (୧୯୬୮) ପର୍ଯ୍ୟନ୍ତ ଭୂତତ୍ତ୍ୱରେ ଅନର୍ସ ପଢ଼ିଲି। ଡିସେମ୍ବର ମାସରେ ତୀବ୍ର ଶୀତ ମଧ୍ୟରେ କେନ୍ଦୁଝର ଗନ୍ଧମାର୍ଦ୍ଦନ ଅଞ୍ଚଳରେ ପ୍ରାୟ ଦଶଦିନ ରହି କିଛି ତାଲିମ ଗ୍ରହଣ କଲି। ଭିନ୍ନ ଏକ ଅନୁଭୂତି। ସମ୍ଭବତଃ ଏପରି ଛାତ୍ର ଜୀବନ ପାଇଁ ମୋର ବିଶେଷ ମାନସିକ ପ୍ରସ୍ତୁତି ନ ଥିଲା। ଏଥି ସହିତ ଗଣିତ ବିଷୟଟି ମୋ ସ୍ନାତକ କୋର୍ସର ଅନ୍ତର୍ଭୁକ୍ତ ନ ଥିବାରୁ ପଦାର୍ଥ ବିଜ୍ଞାନର ଶ୍ରେଣୀରେ ବୁଝିବା ପାଇଁ ଅସୁବିଧା ହେଲା। ବେଶି ନିରସ ବୋଧ ହେଲା। କିଛି ମାସ ନଷ୍ଟ ହୋଇଯିବାର ଭୟ ଥିଲେ ମଧ୍ୟ ମୁଁ ବିଜ୍ଞାନ ଶ୍ରେଣୀ ତ୍ୟାଗ କରି ୧୯୬୮ ଜୁଲାଇରୁ (ଶିକ୍ଷା ବର୍ଷ ଆରମ୍ଭରୁ) କଳାରେ ସ୍ନାତକ କରିବା ପାଇଁ ସ୍ଥିର କଲି।

❖

(୧୮)

# ମନସ୍ତତ୍ତ୍ୱର ମୋହ

ମନସ୍ତତ୍ତ୍ୱ ଓ ରେଭେନ୍ସା କଲେଜର ମନସ୍ତତ୍ତ୍ୱ ବିଭାଗ ସହିତ ମୋର ଜୀବନ ଓ ଜୀବିକା ଏତେ ବେଶୀ ସଂଶ୍ଳିଷ୍ଟ ହୋଇଯିବ ତାହା ୧୯୬୮ ମସିହାର ଶିକ୍ଷାବର୍ଷ ଆରମ୍ଭର ତିନିମାସ ପୂର୍ବରୁ ମୁଁ ଜାଣି ନ ଥିଲି। ମୁଁ ପୂର୍ବରୁ ସୂଚନା ଦେଉଛି ଯେ ୧୯୬୭ ମସିହାରେ ଭୂତତ୍ତ୍ୱରେ ଅନର୍ସ ନେଇ ସ୍ନାତକ ଶିକ୍ଷା ଆରମ୍ଭ କଲେ ମଧ୍ୟ ଆଗ୍ରହ ଧୀରେ ଧୀରେ କମିବାକୁ ଆରମ୍ଭ କଲା। ଗଣିତରେ ବିଶେଷ ଜ୍ଞାନ ଅଭାବରେ ପଦାର୍ଥବିଜ୍ଞାନର ଧାରଣାସବୁର ଆତ୍ମୀକରଣ ସମ୍ଭବ ହେଲା ନାହିଁ। କୌଣସି ମତେ ଜାନୁଆରୀ ମାସ ପର୍ଯ୍ୟନ୍ତ କଲେଜ ଗଲି। ତା'ପରେ ବିଜ୍ଞାନ ଶ୍ରେଣୀ ଛାଡ଼ି କଳା ଶ୍ରେଣୀରେ ଭର୍ତ୍ତି ହେବାର ଯୋଜନା କଲି।

ଜାନୁଆରୀ-ଏପ୍ରିଲ ପର୍ଯ୍ୟନ୍ତ (୧୯୬୮) ସମୟଟି ମୋ ପାଇଁ ମାନସିକ ଚାପର ସମୟ। ବନ୍ଧୁ ବନ୍ଧୁ ଇଂରାଜୀରେ ଅନର୍ସ ନେଇ କଳା ଶ୍ରେଣୀ ପଢ଼ିବାର ପରାମର୍ଶ ଦେଲେ। ଆଉ କେତେଜଣ ରାଜନୀତି ବିଜ୍ଞାନ କିମ୍ବା ଇତିହାସରେ ଅନର୍ସ ନେବାର ପ୍ରସ୍ତାବ ରଖିଲେ। ଏ ସମସ୍ତ ବିଷୟ ଭାରତୀୟ ପ୍ରଶାସନିକ ପରୀକ୍ଷାରେ ବିଶେଷ ସହାୟକ ହେବ ବୋଲି ଯୁକ୍ତି ବାଢ଼ିଲେ। ଯୁଗଶ୍ରୀର ସମ୍ପାଦକ ଲକ୍ଷ୍ମଣବାବୁଙ୍କର ସୁନ୍ଦର ଲାଇବ୍ରେରୀଟିଏ ଥିଲା। ସେ ଦଶଟା ବେଳକୁ ସ୍କୁଲ ଚାଲିଗଲା ପରେ ଘର ଖାଲି। ସେ ମୋ ହାତରେ ଘରର ଚାବିଟ ମଧ୍ୟ ଟେକି ଦେଉଥିଲେ। ସୁତରାଂ ସ୍ୱାଧୀନ ଭାବରେ ମୁଁ ସେଠାରେ ପଢ଼ାପଢ଼ି କରିପାରୁଥିଲି।

ଏଇ କିଛି ମାସ ସ୍ୱାଧୀନ ଭାବରେ ଅଧ୍ୟୟନ କରିବାର ସୁଯୋଗ ମିଳିଲା। ଲକ୍ଷ୍ମଣବାବୁଙ୍କ ସଂଗୃହୀତ ପୁସ୍ତକ ମଧ୍ୟରେ ଇଂରାଜୀ ସାହିତ୍ୟର ଭଲ ଭଲ ବହି ଏବଂ ଇତିହାସର ବହି ସବୁ ଥିଲା। ଯଥା ସମ୍ଭବ ପଢ଼ିଲି। ଲିପ୍‌ସନ୍ ଏବଂ ଅନ୍ୟ ସବୁ ବିଶିଷ୍ଟ ଐତିହାସିକମାନଙ୍କର ବହି ପଢ଼ି ମୁଗ୍ଧ ହେଲି। ଇତିହାସ ଲେଖକମାନଙ୍କର ଇଂରାଜୀ ଭାଷାଶୈଳୀ ଦେଖି ଚମତ୍କୃତ ହେଲି। କିନ୍ତୁ ଇଂରାଜୀ କିମ୍ବା ଇତିହାସକୁ ମାଧ୍ୟମ କରି ସ୍ନାତକ ଶ୍ରେଣୀରେ ଆଗୁଆ ଛାତ୍ର ହୋଇ ପାରିବାର ଦୃଢ଼ ଭରସା ଆସିଲା ନାହିଁ। ନୂଆ ପଥ ନୂଆ ବିକଳ୍ପ ଖୋଜିବାରେ ମନ ଦେଲି। ଆମ ଘରେ ପାଠପଢ଼ା ସମ୍ପର୍କରେ ପୂର୍ବରୁ କୌଣସି ଚାପ ନ ଥିଲା କି ଏବେ ମଧ୍ୟ ନ ଥିଲା।

ସେ ସମୟରେ 'ଯୁଗଶ୍ରୀ'ର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟ ଜୋର୍‌ଦାର୍ ଚାଲିଥାଏ। ଅନ୍ୟତମ ସକ୍ରିୟ ସଭ୍ୟ ହେଉଛନ୍ତି ଅଂଶୁ କୁମାର ମିତ୍ର। ସେ ମୋର ସମସାମୟିକ।

ସେ ମନସ୍ତତ୍ତ୍ୱରେ ଅନର୍ସ ନେଇ ଦ୍ୱିତୀୟ ବର୍ଷରେ ପ୍ରବେଶ କରିଥାଆନ୍ତି। ତାଙ୍କ ଘର ଆମ ଘରଠାରୁ ମାତ୍ର ଦୁଇଶହ ମିଟର ଦୂରରେ ଅବସ୍ଥିତ। ବଡ଼ କଥା ହେଉଛି ଯେ ଅଂଶୁର ଜ୍ୟେଷ୍ଠ ଭ୍ରାତା ଅଶୋକ କୁମାର ମିତ୍ର ସେତେବେଳେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ। ଅଶୋକ ବାବୁଙ୍କୁ ମୁଁ ଯଥେଷ୍ଟ ସମ୍ମାନ କରୁଥିଲି ଏବଂ ପ୍ରତିବେଶୀ ହିସାବରେ ତାଙ୍କ ସହ ବହୁବାର ସାକ୍ଷାତ ହେଉଥିଲା। ପରେ ଜାଣିବାକୁ ପାଇଲି ଯେ ଅଶୋକ ବାବୁ ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ସ୍ନାତକୋତ୍ତର ବିଭାଗର ପ୍ରଥମ ଦଳର ଛାତ୍ର (୧୯୬୦)। ତଥାପି ପୂର୍ବରୁ ତାଙ୍କ ସହ ମନସ୍ତତ୍ତ୍ୱ ସମ୍ପର୍କରେ କୌଣସି ଆଲୋଚନା ହୋଇ ନଥିଲା। ମାତ୍ର ମୋ ମନରେ ଏକରକମ ବିକ୍ଷିପ୍ତତା ଥିବା ସମୟରେ ମୋର ବନ୍ଧୁ ଅଂଶୁକୁମାର ମିତ୍ର କହିଲେ, "ତୁମେ ମନସ୍ତତ୍ତ୍ୱର ଅନର୍ସ ନେଇ ପଢୁନାହଁ କାହିଁକି? ଏଥିରେ ଏମ୍.ଏ. କଲେ ବିଦେଶ ଯିବାର ବହୁ ସମ୍ଭାବନା ରହିଛି।" ସମ୍ଭବତଃ କଥାଟି ନିର୍ଣ୍ଣାୟକ ଥିଲା। ଯୋଗକୁ ଠିକ୍ ସେତିକିବେଳେ "ମନସ୍ତତ୍ତ୍ୱର ଅଧ୍ୟାପକଙ୍କ ଉଚ୍ଚଶିକ୍ଷା ପାଇଁ ବିଦେଶଯାତ୍ରା" (ସମ୍ଭବତଃ ବିରଞ୍ଚି ନାରାୟଣ ପ୍ରଧାନଙ୍କ ବିଦେଶ ଯାତ୍ରା) ଦୈନିକ ଖବରକାଗଜରେ ପ୍ରକାଶ ପାଇଥିଲା। ମୁଁ ମନସ୍ତତ୍ତ୍ୱ ପଢ଼ିବାକୁ ସ୍ଥିର କରିନେଲି।

ମନସ୍ତତ୍ତ୍ୱରେ ଅନର୍ସ ନେଇ ସ୍ନାତକ ଶିକ୍ଷା ଗ୍ରହଣ କରିବାର ନିଷ୍ପତ୍ତି ଏହି କ୍ରମରେ ଆସିଥିଲେ ମଧ୍ୟ ପୂର୍ବରୁ କିଛି ମଞ୍ଜି ଯେ ବୁଣା ହୋଇ ନଥିଲା ସେ କଥା ମୁଁ କହିପାରିବି ନାହିଁ। ମୁଁ ପୂର୍ବରୁ ମନସ୍ତତ୍ତ୍ୱର କୌଣସି ପାଠ୍ୟ ପୁସ୍ତକ ପଢ଼ି ନ ଥିଲି। ମାତ୍ର ଗୋଟିଏ ଦୁଇଟିର ମୃଦୁସ୍ପର୍ଶ ମୋତେ ମୋହିତ କରିଥିଲା। ସେ ସମୟରେ ଦୈନିକ ପ୍ରଜାତନ୍ତ୍ର (ଅନ୍ତତଃ କଟକ ସହରରେ) ଏକ ଜନପ୍ରିୟ ସମ୍ବାଦପତ୍ରର ସମ୍ମାନ ଲାଭ କରିଥିଲା। ସପ୍ତାହର ବିଭିନ୍ନ ଦିନରେ କ୍ରୋଡ଼ପତ୍ରରେ ବିଶେଷ ଲେଖା ସବୁ ପ୍ରକାଶ ପାଉଥିଲା। ସପ୍ତାହର କୌଣସି ଏକ ଦିନରେ ମହାଲିକ ବାବୁଙ୍କ ଲିଖିତ 'ମନଗହନ' ସ୍ତମ୍ଭଟି ଖୁବ୍ ଲୋକପ୍ରିୟ ଥିଲା। ଏଥିରେ ପ୍ରକାଶ ପାଉଥିବା ମନସ୍ତାତ୍ତ୍ୱିକ ଲେଖା ସବୁ ବେଶ୍ ଶିକ୍ଷାପ୍ରଦ ଓ ଆକର୍ଷଣୀୟ ଥିଲା। ଏହାର ମାଧ୍ୟମରେ ସିଗମଣ୍ଡ୍ ଫ୍ରଏଡ୍, ସ୍ୱପ୍ନ ବୃତ୍ତାନ୍ତ ଏବଂ ଅନ୍ୟ କିଛି ମନସ୍ତାତ୍ତ୍ୱିକ ପ୍ରବନ୍ଧର ଅନୁଭବ ପାଇଥିଲି।

ବର୍ତ୍ତମାନ ଆନ୍ତର୍ଜାତିକ ସ୍ତରରେ ଖ୍ୟାତନାମା ମନସ୍ତାତ୍ତ୍ୱିକ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ୍‌ଙ୍କୁ ବ୍ୟକ୍ତିଗତ ଭାବେ ସେତେବେଳେ ଜାଣି ନ ଥିଲି। ମାତ୍ର ତାଙ୍କ ଲିଖିତ 'ମାନସିକ ବ୍ୟାଧି' ପୁସ୍ତକଟି ମୋର ଅନ୍ୟତମ ପ୍ରିୟ ବନ୍ଧୁଙ୍କ (ମଦନମୋହନ ଷଡପଥୀ)ଘରେ ପଢ଼ିବାକୁ ପାଇଥିଲି। ଏହା ମୋ ମନରେ ମନସ୍ତତ୍ତ୍ୱପ୍ରୀତି ଉଦ୍ରେକ କରିଥିଲା। ପରେ ଜାଣିଲି ଯେ ଜଗନ୍ନାଥ ବାବୁ କେବଳ ଜଣେ ପ୍ରଖ୍ୟାତ ଗବେଷକ

ନୁହଁନ୍ତି, ଜନପ୍ରିୟ ବିଜ୍ଞାନ ଲେଖକ ହିସାବରେ ତାଙ୍କର ସ୍ଥାନ ମଧ୍ୟ ଅଦ୍ୱିତୀୟ। ତାଙ୍କର ପତ୍ନୀ ଗୀତା ଦାସ ମଧ୍ୟ ଜଣେ ସୁଲେଖିକା।

ଓଡ଼ିଶାରେ ମନସ୍ତତ୍ତ୍ୱର ଶିକ୍ଷା ଓ ପ୍ରସାର କ୍ଷେତ୍ରରେ ମୂଳ ହେଉଛନ୍ତି ଡଃ ରାଧାନାଥ ରଥ। ୧୯୬୭ ମସିହାରେ ମୁଁ ପ୍ରଥମେ ତାଙ୍କୁ ଜାଣିବାର ସୁଯୋଗ ପାଇଲି। ସେ ସମୟରେ ବାରବାଟୀ ଷ୍ଟାଡ଼ିୟମ୍‌ର ଗୋଟିଏ କୋଠରୀରେ ଭାରତ-ସୋଭିଏଟ୍ ସାଂସ୍କୃତିକ ପରିଷଦର କାର୍ଯ୍ୟାଳୟ ସକ୍ରିୟ ଥାଏ। ମନୀ, ତାପସ ଓ ମୁଁ ଏହି ଅନୁଷ୍ଠାନକୁ ଆସୁଥିଲୁ। ବାରବାଟୀ ଷ୍ଟାଡ଼ିୟମ୍ ପରିକଳ୍ପନାର ସୂତ୍ରଧର ଶ୍ରୀ ଭୈରବ ଚନ୍ଦ୍ର ମହାନ୍ତି ଏହି ଅନୁଷ୍ଠାନର ସଭାପତି ଥିଲେ। ତାଙ୍କର ବଳିଷ୍ଠ ନେତୃତ୍ୱରେ ବର୍ଷର ବିଭିନ୍ନ ସମୟରେ ଶୋଭନୀୟ କାର୍ଯ୍ୟକ୍ରମ ଚାଲୁ ରହିଥିଲା। ଋଷ ଦେଶର ବାଲେ ନୃତ୍ୟର ପ୍ରଦର୍ଶନ ଏକ ବିଶେଷ ଆକର୍ଷଣ। ଆଉ ଥରେ ଭୈରବ ବାବୁଙ୍କ ନେତୃତ୍ୱରେ ଏହି ପରିଷଦର ଏକ ଜାତୀୟ ସମ୍ମିଳନୀ କଟକ ଓ ବ୍ରହ୍ମପୁରରେ ଅନୁଷ୍ଠିତ ହୋଇଥିଲା। ଅତିଥିମାନଙ୍କ ମଧ୍ୟରେ ବିଶିଷ୍ଟ ତାରକା ବଲରାଜ ସାହାଣୀ ମଧ୍ୟ ଆସିଥିଲେ। ବିଭିନ୍ନ ସାଂସ୍କୃତିକ କାର୍ଯ୍ୟରେ ସ୍ୱେଚ୍ଛାସେବୀ ରୂପେ ଆମେ କାର୍ଯ୍ୟକରିବା ସହିତ କିଛି ବିଶିଷ୍ଟ ବ୍ୟକ୍ତିଙ୍କ ସଂସର୍ଗରେ ଆସିଥିଲୁ। ପରିଷଦର ଉପଦେଷ୍ଟା ରୂପେ ଡକ୍ଟର ରଥ ମଧ୍ୟ ଆସୁଥିଲେ। ସେଠାରେ ପ୍ରଥମେ ଡକ୍ଟର ରାଧାନାଥ ରଥଙ୍କୁ ଦେଖିବାର ସୁଯୋଗ ପାଇଲି।

ଡକ୍ଟର ରଥଙ୍କୁ ଜାଣିବାର ଅନ୍ୟ ଗୋଟିଏ ମାଧ୍ୟମ ଥିଲା ତାଙ୍କର ପ୍ରକାଶିତ ଆଲୋଚନାଧର୍ମୀ ସାହିତ୍ୟ ପତ୍ରିକା "ସାମ୍ମୁଖ୍ୟ"। ଡକ୍ଟର ରଥ ଏହାର ମୁଖ୍ୟ ସମ୍ପାଦକ ଥିଲେ। ଏହା ସେ ସମୟରେ ଏକ ରୁଚିଶୀଳ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା। ଖୁବ୍ ଅଳ୍ପ ସଂଖ୍ୟକ ସୁନିର୍ବାଚିତ କବିତା ପ୍ରକାଶ ପାଉଥିଲା। ସମସାମୟିକ ରାଜନୀତି, ସାମାଜିକ ବିଶ୍ଳେଷଣ ଓ ବିଶ୍ୱ ଘଟଣା ମୁଖ୍ୟ ସ୍ଥାନ ଅଧିକାର କରୁଥିଲା। ପତ୍ରିକାଟିର ଶେଷାଂଶରେ "ଅନ୍ଧାରୀ ମନ" ଶୀର୍ଷକ ସ୍ତମ୍ଭ ରହୁଥିଲା। ଏ ସ୍ତମ୍ଭରେ ଲୋକମାନଙ୍କର ମନସ୍ତାତ୍ତ୍ୱିକ ପ୍ରଶ୍ନ ସବୁର ଉତ୍ତର ଡକ୍ଟର ଦେଉଥିଲେ। ଏହା ଖୁବ୍ ଜନପ୍ରିୟ ଥିଲା। କହିବା ଅନାବଶ୍ୟକ ଯେ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ସୂତ୍ରଧର ରୂପେ ମୁଁ ଡକ୍ଟର ରଥଙ୍କୁ ଜାଣିବା ପୂର୍ବରୁ ଜଣେ ମନସ୍ତତ୍ତ୍ୱବିତ୍ ଓ ପ୍ରଗତିଶୀଳ ଚିନ୍ତାନାୟକ ରୂପେ ୧୯୬୭ ମସିହାରୁ ସମ୍ମାନ ଜଣାଇଥିଲି।

ମନସ୍ତତ୍ତ୍ୱକୁ ଭଲ ପାଇବାର ମଞ୍ଜି ଯେଉଁ ସୂତ୍ରରୁ ଆସିଥାଉ ନା କାହିଁକି ଅନୁକୂଳ ବାତାବରଣ ମଧ୍ୟରେ ୧୯୬୮ ମସିହା ଜୁନ୍/ଜୁଲାଇରେ ଏହା ବିକଶିତ ହେଲା। ମୁଁ ରେଭେନ୍ସା କଲେଜରେ ମନସ୍ତତ୍ତ୍ୱ ଅନର୍ସରେ ଭର୍ତ୍ତି ହେଲି। ପ୍ରଥମ ଦିନଟି ମିଶ୍ର-ଅନୁଭୂତିର ଦିନ। ପ୍ରଥମ କ୍ଲାସଟି କିଏ ନେଉଥିଲେ ତାହା ମୋର ମନେନାହିଁ। ମାତ୍ର

ଉପସ୍ଥିତି ଚିହ୍ନିତ କରିବା ସମୟରେ ଅଧ୍ୟାପକ ମୋର ରୋଲ୍ ନମ୍ବର ୩୦୪ ଡାକିଲେ କି ନାହିଁ, ତାହା ଶୁଣି ପାରିଲି ନାହିଁ। ଧରିନେଲି ଯେ ମୋ ରୋଲ୍ ନମ୍ବରଟି ତାଲିକାଭୁକ୍ତ ହୋଇନାହିଁ। ସେ ସମୟର ବିଧି ଅନୁଯାୟୀ କୌଣସି ରୋଲ୍ ନମ୍ବର ଉପସ୍ଥାନ ଖାତାରେ ଲେଖା ନ ଥିଲେ କଲେଜର ମୁଖ୍ୟ ଅଫିସ୍‌କୁ ଯାଇ ସେଠାରୁ ଗୋଟିଏ ଛୋଟ ଟିପ୍ପଣୀ ଆଣିବାକୁ ପଡୁଥିଲା। ତଦନୁସାରେ ମୁଁ ମୁଖ୍ୟ ଅଫିସ୍‌କୁ ଗଲି ଏବଂ ସମ୍ପୃକ୍ତ କିରାଣୀ ଛୋଟିଆ କାଗଜରେ ଲେଖିଦେଲେ: ରୋଲ୍ ନମ୍ବର ୩୦୪ ତାଲିକାଭୁକ୍ତ କରନ୍ତୁ। କାଗଜଟି ନେଇ ମନସ୍ତତ୍ତ୍ୱ ବିଭାଗର ମୁଖ୍ୟ କର୍ମଚାରୀ ବିଷ୍ଣୁ ଚରଣ ଚୌଧୁରୀଙ୍କୁ ଦେଲି। କାଗଜଟି ବଢ଼ାଇଦେଇ ଫେରିବା ପାଇଁ ଉଦ୍ୟତ ହେଉଥିବା ସମୟରେ ଅଫିସ୍‌ର ଦ୍ୱାର ଦେଶରେ ମୁଁ ଏକ ବିରାଟ ଚିତ୍କାର ଶୁଣିଲି। ମୁଁ ଚମକି ପଡ଼ି ପଛକୁ ଚାହିଁଲି। ଦେଖିଲି ଯେ ବିଷ୍ଣୁବାବୁ ମୋ ଉପରେ କ୍ଷୁବ୍ଧ। ଉପସ୍ଥାନ ଖାତାରେ ପୂର୍ବରୁ ମୋର ରୋଲ୍ ନମ୍ବର ରହିଛି ଅଥଚ ମୁଁ ଟିପ୍ପଣୀ ଆଣି ତାଙ୍କର କାମ ବଢ଼ାଇଛି-ଏହା ତାଙ୍କୁ କ୍ଷୁବ୍ଧ କରିଛି। ମୁଁ କ୍ଷମା ମାଗିଲି। ଚିତ୍କାର ଶୁଣି ପାଖ କୋଠରୀରୁ ବିଭାଗୀୟ ମୁଖ୍ୟ ଡଃ ଗୁରୁପଦ ପରିଡ଼ା ଚାଲି ଆସିଲେ।

ଗୁରୁପଦ ବାବୁ ମୃଦୁ ଭର୍ତ୍ସନା କରି କହିଲେ- "ବିଷ୍ଣୁବାବୁ! ଆପଣ ରାଗି ଯାଉଛନ୍ତି କାହିଁକି? ସେ ପିଲାଟି ଆମ ବିଭାଗରେ ନୂଆ। ତା'କୁ ବୁଝାଇବା ବଦଳରେ ପାଟି କରିବାର ଦରକାର କ'ଣ?" ଏହା କହିସାରି ଡକ୍ଟର ପରିଡ଼ା ମୋତେ ତାଙ୍କ କୋଠରୀକୁ ଡାକିଲେ। ମୁଁ ପୂର୍ବରୁ କେଉଁଠାରେ ପଢୁଥିଲି ବୋଲି ପଚାରିଲେ। ମୁଁ ଏହି ରେଭେନ୍ସାର ଛାତ୍ର ଏବଂ ବିଜ୍ଞାନ ଶ୍ରେଣୀରୁ ଆସିଛି କହିବାରୁ ସନ୍ତୋଷ ପ୍ରକାଶ କଲେ। କହିଲେ: "ତୁମର ପଢ଼ାପଢ଼ିରେ କୌଣସି ଅସୁବିଧା ହେଲେ ମୋତେ ଜଣାଇବ। କ୍ଲାସ ହେଉ ନଥିବା ସମୟରେ କୌଣସି କୋଠରୀରେ ତୁମେ ପଢ଼ାପଢ଼ି କରିବାକୁ ଇଚ୍ଛା କଲେ ମୁଁ ତାହାର ବ୍ୟବସ୍ଥା କରିଦେବି।" ପ୍ରବେଶର ପ୍ରଥମ ଦିନରେ ଡକ୍ଟର ଗୁରୁପଦ ପରିଡ଼ାଙ୍କ ବ୍ୟକ୍ତିଗତ ଶ୍ରଦ୍ଧା ମୋତେ ଖୁବ୍ ଭଲ ଲାଗିଥିଲା। ମୋ ଜୀବନର ଏକ ବିଶିଷ୍ଟ ଶୁଭେଚ୍ଛୁ ହିସାବରେ ମୁଁ ଡଃ ପରିଡ଼ାଙ୍କୁ ସ୍ମରଣ କରିବି।

ମନସ୍ତତ୍ତ୍ୱରେ ଅନର୍ସ ନେଇ ଦୁଇ ବର୍ଷ ପଢ଼ିବାର ଅନୁଭବ ଖୁବ୍ ପ୍ରୀତିପଦ ଥିଲା। ନୟାଗଡ଼ କଲେଜରୁ ଆସିଥିବା ଏବଂ ନୟାଗଡ଼ର ବିଶିଷ୍ଟ ବ୍ୟକ୍ତି ରଘୁନାଥ ମହାପାତ୍ରଙ୍କ ପୁତ୍ର ଚିତ୍ତରଂଜନ ସହିତ ବିଶେଷ ବନ୍ଧୁତ୍ୱ ହେଲା। ସାଙ୍ଗସାଥୀମାନେ ମଧ୍ୟ ବେଶ୍ ଭଲ ଥିଲେ। ଆମେ ପରୀକ୍ଷା ପୂର୍ବରୁ ବିଭାଗରେ ଅନୁଷ୍ଠିତ ବିଭିନ୍ନ ପରୀକ୍ଷାରେ ଭଲ ନମ୍ବର ରଖିବାରୁ ଅଧ୍ୟାପକମାନଙ୍କର ସ୍ନେହଶ୍ରଦ୍ଧା ଲାଭ କଲି। ବିଭାଗୀୟ ମୁଖ୍ୟ ଡଃ ପରିଡ଼ା ଅନେକ ସମୟରେ ଭଲମନ୍ଦ ପଚାରୁଥିବାରୁ ତାଙ୍କର

ସମ୍ବେଦନଶୀଳତା ମାନସିକ ଶକ୍ତି ଦେଉଥିଲା। ଶ୍ରୀ ପାର୍ଥସାରଥୀ ସିଂହଙ୍କର ଉନ୍ନତ ଅଧ୍ୟାପନା ପ୍ରଣାଳୀ, ପ୍ରହ୍ଲାଦ ନନ୍ଦଙ୍କ ଆନ୍ତରିକତା ଏବଂ ସୁଚିତ୍ରା କଲ୍ୟାଣଙ୍କ ଅମାୟିକ ବ୍ୟବହାର ବେଶ୍ ମନେଅଛି। ସୁଚିତ୍ରା କଲ୍ୟାଣ ଲଣ୍ଡନରେ ରହୁଥିବା ଜଣେ ଓଡ଼ିଆ ଡାକ୍ତରଙ୍କୁ ପରେ ବିବାହ କରିଥିଲେ। ତାଙ୍କର ଅକାଳ ବିୟୋଗ ବାର୍ତ୍ତା ପାଇବା ଦିନ ମୁଁ ଗଭୀର ମର୍ମାହତ ହୋଇଥିଲି।

ସ୍ନାତକକାଳୀନ ଏକ ସୁନ୍ଦର ସ୍ମୃତି ହେଉଛି ଦିବାଧ୍ୟାୟୀ ଛାତ୍ରସଂଘର ସହ ସମ୍ପାଦକ ଭୂମିକା। ପୂର୍ବବର୍ଷ ଏହି ପଦବୀରେ ଅଜିତ୍ କୁମାର ତ୍ରିପାଠୀ (ପରବର୍ତ୍ତୀ ସମୟରେ ରାଜ୍ୟର ମୁଖ୍ୟ ଶାସନ ସଚିବ) ରହିଥିଲେ। ତାଙ୍କ ସହ କିଛି କାର୍ଯ୍ୟ କରିଥିଲି। ରେଭେନ୍ସା କଲେଜର ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ସହ ସମ୍ପାଦକ ରୂପେ ନିର୍ବାଚିତ ହେଲି। ଆକସ୍ମିକ ସଂଯୋଗ ଯେ ମନସ୍ତତ୍ତ୍ୱ ବିଭାଗର ଦୀପକ୍ କୁମାର ପରିଜା ସମ୍ପାଦକ ରୂପେ ନିର୍ବାଚିତ ହେଲେ।

ମୋର ଉପର ଶ୍ରେଣୀରେ ପଢୁଥିବା ଦୀପକ୍ ବାବୁ ଖୁବ୍ ଉତ୍ସାହୀ ଓ ସକ୍ରିୟ ବ୍ୟକ୍ତି ଥିଲେ। ତାଙ୍କର ବ୍ୟକ୍ତିଗତ ଉଦ୍ୟମ ଫଳରେ ପାଣ୍ଠି ଯୋଗାଡ଼ କରାଗଲା ଏବଂ ଦୁଇତିନି ଧରି ଦିବାଧ୍ୟାୟୀ ଛାତ୍ର ସଂଘର ରଜତ ଜୟନ୍ତୀ ଉତ୍ସବ ପାଳନ କରାଗଲା। ବିଶିଷ୍ଟ ଅତିଥି ରୂପେ ରାଜସ୍ୱ ମନ୍ତ୍ରୀ ଓ ବନ ବିଭାଗର ମନ୍ତ୍ରୀ ଆସିଥିଲେ। ମୁଖ୍ୟ ବକ୍ତା ରୂପେ ପ୍ରଫେସର ଗୋଲୋକବିହାରୀ ଧଳଙ୍କ ଅଭିଭାଷଣ "ସଂସ୍କୃତି ଓ ପୋଷାକ" ଗଭୀର ଉନ୍ମାଦନା ସୃଷ୍ଟିକଲା। ପ୍ରଖ୍ୟାତ ସାହିତ୍ୟିକ ଓ ଦାର୍ଶନିକ ରତ୍ନାକର ପତିଙ୍କର ଅଭିଭାଷଣ ପ୍ରେରଣାଦାୟୀ ରହିଥିଲା। ସେ ସମୟରେ ପ୍ରଫେସର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଦିବ୍ୟାଧ୍ୟାୟୀ ଛାତ୍ର ସଂଘର ଉପଦେଷ୍ଟା ଥିଲେ ଏବଂ ବିଶିଷ୍ଟ ଗାଣିତିକ ଡକ୍ଟର ରମାନାଥ ମହାନ୍ତି କଲେଜର ଅଧକ୍ଷ ଥିଲେ। ରଜତ ଜୟନ୍ତୀ ପାଳନ ଅବସରରେ ଦିବାଧ୍ୟାୟୀ ଛାତ୍ର ସଂଘର ସମସ୍ତ ପୂର୍ବତନ ସମ୍ପାଦକ ଓ ସହ ସମ୍ପାଦକ ଅତିଥି ରୂପେ ଆମନ୍ତ୍ରିତ ହୋଇଥିଲା। ଆକର୍ଷଣୀୟ ସାଂସ୍କୃତିକ କାର୍ଯ୍ୟକ୍ରମ ବେଶ୍ ଶୋଭନୀୟ ଥିଲା।

ଅନର୍ସର ଶେଷ ବିଶ୍ୱବିଦ୍ୟାଳୟ ପରୀକ୍ଷା ଶେଷ ହେବା ଏବଂ ସ୍ନାତକୋତ୍ତର ଶ୍ରେଣୀରେ ପ୍ରବେଶ କରିବା ପୂର୍ବରୁ ଆଉ ଗୋଟିଏ ଅଭିଜ୍ଞତାର ସୁଯୋଗ ମିଳିଲା। ମନୋବିଜ୍ଞାନ ବିଭାଗରେ ଜୀବନ ଆରମ୍ଭ ସମୟରୁ ଡକ୍ଟର ପରିଡ଼ା ମୋ ପ୍ରତି ତାଙ୍କର ଶ୍ରଦ୍ଧା ବ୍ୟକ୍ତ କରୁଥିଲେ। ପରୀକ୍ଷା ସରିବା ପରେ ସେ ମୋତେ ତାଙ୍କ ଗବେଷଣା କାର୍ଯ୍ୟରେ ସମ୍ପୃକ୍ତ କଲେ। ସେତେବେଳେ ସେ ଗୋଟିଏ ବଡ଼ ଧରଣର ଗବେଷଣା ପ୍ରକଳ୍ପର ନିର୍ଦ୍ଦେଶକ ଥିଲେ। ଓଡ଼ିଆମାନଙ୍କର ମନୋବୃତ୍ତି ଉପରେ ଶିଳ୍ପାୟନର ପ୍ରଭାବ ଶୀର୍ଷକ ଗବେଷଣାଟି କରାଯାଉଥିଲା। ଏ ପରିପ୍ରେକ୍ଷୀରେ ଅଧିକ

ଶିକ୍ଷାୟିତ ସହର, ମଧ୍ୟମ ଧରଣର ଶିକ୍ଷାୟିତ ସହର ଓ ଅଳ୍ପ ଶିକ୍ଷାୟିତ ସ୍ଥାନମାନଙ୍କରୁ ଗବେଷଣା ପ୍ରଶ୍ନାବଳୀ ବ୍ୟବହାର କରି ତଥ୍ୟ ସଂଗ୍ରହ କରିବାର ଲକ୍ଷ୍ୟ ଧାର୍ଯ୍ୟ କରା ଯାଇଥିଲା।

ଡକ୍ଟର ପରିଡ଼ାଙ୍କ ନେତୃତ୍ୱରେ ବିଷ୍ଣୁ ଚରଣ ଚୌଧୁରୀ ଓ ମୁଁ ପୂର୍ବ ପରିକଳ୍ପିତ ସ୍ଥାନକୁ ଯାଉ। ସେଠାର ବ୍ୟବସ୍ଥା ଓ କର୍ମସଂସ୍ଥା ସହିତ ପରିଚିତି ସ୍ଥାପନ କରାଇ ଡକ୍ଟର ପରିଡ଼ା କଟକ ଫେରି ଆସନ୍ତି। ଆମେ କିଛିଦିନ ସେଠାରେ ରହି କର୍ମଚାରୀମାନଙ୍କୁ ସାକ୍ଷାତ କରି ପ୍ରଶ୍ନାବଳୀ ମାଧ୍ୟମରେ ତଥ୍ୟ ସଂଗ୍ରହ କରୁ। କାର୍ଯ୍ୟଟି କଷ୍ଟକର ଥିଲେ ମଧ୍ୟ ଏପରି ଅନୁଭବ ମୋତେ ଅଧିକ ପରିପକ୍ୱତା ପ୍ରଦାନ କରିଥିଲା।

ଆମର ପ୍ରଥମ ଯାତ୍ରା ଥିଲା ସୁନାବେଡ଼ାର ହିନ୍ଦୁସ୍ଥାନ ଏରୋନଟିକ୍ସ। ସେତେବେଳେ ଯିବା ପାଇଁ ସିଧାସଳଖ ବସ୍ ନ ଥିଲା। ଟ୍ରେନ୍‌ର ସଂଖ୍ୟା ମଧ୍ୟ ସୀମିତ ଥିଲା। ଆମେ ସନ୍ଧ୍ୟାରେ ଇଷ୍ଟକୋଷ୍ଟ ଏକ୍ସପ୍ରେସ୍‌ରେ ବାହାରି ପାହାନ୍ତାର କିଛି ସମୟ ପୂର୍ବରୁ ବିଜୟନଗରମ୍ ଷ୍ଟେସନ୍‌ରେ ପହଞ୍ଚିଲୁ। ସକାଳେ ଦାନ୍ତଘଷିବା ପରେ ଜଳଖିଆ ଖାଇସାରି ଦେଖିଲୁ ଯେ ସୁନ୍ଦର ସୁନ୍ଦର ବସ୍ ସବୁ ଜୟପୁର (କୋରାପୁଟ) ପାଇଁ ପ୍ରସ୍ତୁତ। ନିକଟରେ ବଙ୍ଗାଳୀ ପାନ ବୋଲି କୁହାଯାଉଥିବା ମିଠାପାନ ଖାଇ ବସ୍‌ରେ ବସିଲୁ। ଖାଇବା ସମୟ ବେଳକୁ ସୁନାବେଡ଼ାରେ ପହଞ୍ଚିଲୁ। ପରିଷ୍କାର ପରିଚ୍ଛନ୍ନ। ପୂର୍ବରୁ ଡ଼ଃ ପରିଡ଼ା ଆମର ରହିବା ସ୍ଥାନ ସ୍ଥିର କରିଥିଲେ। ହାଲ୍‌ର କିଛି ଅଫିସର୍‌ମାନଙ୍କ ସହିତ ଆମକୁ ପରିଚିତ କରାଇ ଡ଼ଃ ପରିଡ଼ା ଫେରି ଆସିଲେ। ଆମେ ପ୍ରାୟ ଗୋଟିଏ ସପ୍ତାହ ରହିଲୁ। ସକାଳେ ଲୋକମାନଙ୍କୁ ଭେଟି ପ୍ରଶ୍ନାବଳୀ ଦେଉ ଓ ବୁଝାଇଦେଉ। ସନ୍ଧ୍ୟା ପୂର୍ବରୁ ପୁନଶ୍ଚ ଯାଇ ସେ ସବୁ ସଂଗ୍ରହ କରୁ। ଗୋଟିଏ ସପ୍ତାହର ରହଣୀ ମଧ୍ୟରେ ଦିନେ ବସ୍‌ରେ କୋରାପୁଟ୍ ଓ ଜୟପୁର ଚାଲିଗଲୁ। ସେଠାରେ କିଛି ସମୟ ବୁଲାବୁଲି କରି ସନ୍ଧ୍ୟାରେ ଫେରି ଆସିଲୁ।

ଏହି ଗବେଷଣା ପ୍ରକଳ୍ପ ପରିପ୍ରେକ୍ଷୀରେ ବରଗଡ଼ର ହୀରା ସିମେଣ୍ଟ କାରଖାନା, ସମ୍ବଲପୁରର କିଛି ଶିକ୍ଷାନୁଷ୍ଠାନ ଏବଂ ସତ୍ୟବାଦୀ ଅଞ୍ଚଳର କୁଟୀର ଶିଳ୍ପାଞ୍ଚଳରୁ ସର୍ବେକ୍ଷଣ ତଥ୍ୟ ସଂଗ୍ରହ କରିଥିଲେ। ମଝିରେ ମଝିରେ ଡକ୍ଟର ପରିଡ଼ାଙ୍କ ଘରେ ଏବଂ ତାଙ୍କ ପୁଅର ସହଯୋଗରେ Data Sheet ପ୍ରସ୍ତୁତ କରୁ। ଗବେଷଣାରେ ସହାୟତା ପାଇଁ ଗୁରୁପଦ ବାବୁ କିଛି ପାରିତୋଷିକ ଦେଉଥିଲେ। କିନ୍ତୁ ସ୍ନାତୋକତ୍ତର ଶିକ୍ଷା ଆରମ୍ଭ ପୂର୍ବରୁ ଗବେଷଣା କ୍ଷେତ୍ରରେ ଏପରି ସକାରାତ୍ମକ ଅନୁଭୂତି ନିଶ୍ଚିତ ଭାବରେ ମୂଲ୍ୟବାନ ସମ୍ବଳର ଅଧିକାରୀ କରିଥିଲା।

ସ୍ନାତକ ପରୀକ୍ଷା ଫଳ ପ୍ରକାଶ ପାଇବାର ଦିନଟି ଆନନ୍ଦର ଦିନ। ସେ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତି ବିଭାଗର ମୁଖ୍ୟ ପ୍ରଫେସର୍ ଓ ଦୀର୍ଘଦିନ ସିଣ୍ଡିକେଟ୍ ସଭ୍ୟ ରହିଥିବା ଡଃ ଶ୍ରୀରାମ ଚନ୍ଦ୍ର ଦାଶ ସାଧାରଣତଃ ଫଳାଫଳ ପ୍ରକାଶ ପାଇବା ମାତ୍ରେ ତାହାର ବିବରଣୀ ଧରି ତାଙ୍କର କୁକୁରିଆପଦା (ଦୋଳମୁଣ୍ଡାଇ ନିକଟ) ବାସଭବନକୁ ନେଇ ଆସନ୍ତି। ସନ୍ଧ୍ୟାବେଳେ ଫଳାଫଳ ଜାଣିବା ପାଇଁ ତାଙ୍କ ବାସଭବନରେ ଭିଡ଼ ଜମେ। ଅବଶ୍ୟ ଭିଡ଼ ମଧ୍ୟରେ ପାଟିକରି ଘୋଷଣା କରିବା ପାଇଁ ତାଙ୍କର କେତେକ ସହଯୋଗୀ ରହିଥାଆନ୍ତି। ଖବର ପାଇ ଆମେ ପହଞ୍ଚିବା ବେଳକୁ ବିଶେଷ ଭିଡ଼ ନ ଥିଲା। ମାତ୍ର ପନ୍ଦର ମିନିଟ୍ ପୂର୍ବରୁ ଡଃ ଦାଶ୍ ପହଞ୍ଚିଥିଲେ। ସୁତରାଂ ଆମେ ଜାଣିବାର ସୁଯୋଗ ପାଇଲୁ। ମୋର ଆନନ୍ଦାନୁଭୂତି ବଢ଼ିଗଲା। ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିବାର ଘୋଷଣା ମୋତେ ହର୍ଷବିଭୋର କରିଦେଲା।

❖

(୧୯)

# ବାଣୀବିହାରରେ ବାଣୀ-ଆରାଧନା

ରେଭେନ୍ସା କଲେଜ ପରି ସାରସ୍ୱତ ପୀଠରେ ସ୍ନାତକ ଶିକ୍ଷା ଶେଷ କରିବା ପରେ ସ୍ନାତକୋତ୍ତର ଅଧ୍ୟୟନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣୀବିହାର ସ୍ୱାଭାବିକ ପଦକ୍ଷେପ। ଓଡ଼ିଶାର କେବଳ ବାଣୀବିହାର ପରିସରରେ ସ୍ନାତକୋତ୍ତର ଶିକ୍ଷା ବ୍ୟବସ୍ଥା ଥିଲା। ପ୍ରଫେସର ରାଧାନାଥ ରଥ ପଞ୍ଚମ ଦଶକରେ ମନୋବିଜ୍ଞାନରେ ଅନର୍ସ ଏବଂ ପରେ ସ୍ନାତକୋତ୍ତର ଶିକ୍ଷା କାର୍ଯ୍ୟକ୍ରମ ରେଭେନ୍ସାରେ ଆରମ୍ଭ କରିଥିଲେ। ସେ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର କାର୍ଯ୍ୟାଳୟ ମଧ୍ୟ କଟକରେ ରହିଥିଲା। ୧୯୬୦ ମସିହାରେ ମନସ୍ତତ୍ତ୍ୱ ବିଭାଗର ଛାତ୍ରଛାତ୍ରୀ ପ୍ରଥମ ଥର ପାଇଁ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଉପାଧି ପାଇଲେ। ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୬୨ ମସିହାରେ ବାଣୀବିହାର ପରିସରକୁ ସ୍ଥାନାନ୍ତରିତ ହେଲା।

ଅନର୍ସ ପରୀକ୍ଷାର ଫଳାଫଳ ପ୍ରକାଶ ପାଇବା ପରେ ମନରେ ଗଭୀର ଉତ୍ସାହ ଓ ଉଦ୍ଦୀପନା ଥିଲା। ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନର ପ୍ରାପ୍ତି ମନରେ ଅଧିକ ଅଭୀପ୍ସା ଜନ୍ମାଇଲା। ମୋର ବନ୍ଧୁ ଓ ସହପାଠୀ ଚିତ୍ତରଞ୍ଜନ ମଧ୍ୟ ପ୍ରଥମ ଶ୍ରେଣୀ ପାଇଥିଲା। ଆମର ବନ୍ଧୁତ୍ୱ ଦୃଢ଼ତର ହେଲା। ସ୍ନାତକୋତ୍ତର ଶ୍ରେଣୀରେ ପ୍ରବେଶ ପୂର୍ବରୁ ଏହାର ବିଭାଗୀୟ ମୁଖ୍ୟ ପ୍ରଫେସର ରାଧାନାଥଙ୍କୁ ଜାଣିଥିଲି ଏବଂ ତାଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନବୋଧ ଥିଲା। ପୂର୍ବରୁ ସୂଚନା ଦେଇଛି "ସାମ୍ମୁଖ୍ୟ" ପତ୍ରିକାର ମୁଖ୍ୟ ସମ୍ପାଦକ ରୂପେ ମୋର ଭକ୍ତି ଥିଲା। ଏତଦ୍‌ବ୍ୟତୀତ ଅନର୍ସ ପରୀକ୍ଷାରେ ବାହ୍ୟ ପରୀକ୍ଷକ ହିସାବରେ ସେ ରେଭେନ୍ସାକୁ ଆସିଥିଲେ ଏବଂ ଆମକୁ ପ୍ରଶ୍ନ ପଚାରିଥିଲେ। ବିଭାଗର ଅନ୍ୟତମ ବରିଷ୍ଠ ଅଧ୍ୟାପକ ଡକ୍ଟର ସରୋଜ କୁମାର ମିଶ୍ରଙ୍କ ସହିତ ମୋ ପାରମ୍ପାରିକ ଭାବ ବିନିମୟ ଘଟି ନ ଥିଲେ ମଧ୍ୟ ସାକ୍ଷାତ ହୋଇଥିଲା। ମୋର ଅନର୍ସ କ୍ଲାସ ଶେଷ ପର୍ଯ୍ୟାୟରେ ଥିବା ସମୟରେ ଅଶୋକ କୁମାର ମିତ୍ର ତାଙ୍କ କାଠଗଡ଼ା ସାହି ବାସଭବନରେ ଗୋଟିଏ ବନ୍ଧୁ ମିଳନର ଆୟୋଜନ କରିଥିଲେ। ରାତ୍ରିଭୋଜନର ବ୍ୟବସ୍ଥା ଥିଲା। ଅଶୋକ ବାବୁଙ୍କ ସାନଭାଇ ଅଂଶୁ ବନ୍ଧୁ ହିସାବରେ ନିମନ୍ତ୍ରଣ କରିଥିଲା। ଅଧିକନ୍ତୁ କିଛି ମାସ ପୂର୍ବରୁ ସରୋଜ ବାବୁ କାନାଡ଼ାରୁ ଫେରିଥାଆନ୍ତି ତାଙ୍କର ପି.ଏଚ୍.ଡ଼ି. ଶେଷ କରି। ସୁତରାଂ ତାଙ୍କୁ ଦେଖିବାର ମଧ୍ୟ ଆଗ୍ରହ ରହିଥାଏ।

ମନସ୍ତତ୍ତ୍ୱ ବିଭାଗର ପରିବେଶ ପୂରାପୂରି ନୂଆ ଲାଗୁ ନ ଥାଏ। ବିଭାଗର ତୃତୀୟ ବ୍ୟକ୍ତି ପୂର୍ଣ୍ଣେନ୍ଦୁଲାଲ୍ ଘୋଷ ମୋର ଅତି ପରିଚିତ। କାଠଗଡ଼ା ସାହିରେ ଆମର ଘର ଏବଂ ଘୋଷ୍‌ବାବୁଙ୍କ ଘର ମଝିରେ କେବଳ ଗୋଟିଏ ରାସ୍ତା ଯାଇଛି। ଆମ ଘରର ମୋର ଶୋଇବା କୋଠରୀରୁ ପୂର୍ଣ୍ଣେନ୍ଦୁ ବାବୁଙ୍କ ପଢ଼ା ଘରଟି ପରିଷ୍କାର ଦେଖାଯାଏ। ହସହସ ମୁହଁ ଏବଂ କୋମଳ କଥା ତାଙ୍କ ବ୍ୟକ୍ତିତ୍ୱକୁ ଏକ କମନୀୟ ରୂପ ଦେଉଥିଲା। ବିଭାଗର ଅନ୍ୟତମ ଶିକ୍ଷକ ଶିକ୍ଷୟିତ୍ରୀ ରୂପେ ଶ୍ରୀମତୀ କସ୍ତୁରୀ ଯାଚକ, ଶାନ୍ତିଲତା ସାହୁ ଏବଂ ଅଜିତ୍ କୁମାର ମହାନ୍ତି ଏହି ବିଭାଗର ବାତାବରଣକୁ ଋଦ୍ଧିମନ୍ତ କରୁଥିଲେ।

ସ୍ନାତକୋତ୍ତର ଶ୍ରେଣୀର ପ୍ରଥମ ବର୍ଷରେ ସାଧାରଣତଃ ବାଧ୍ୟତାମୂଳକ ବିଷୟ ସବୁ ପଢ଼ାଯାଏ। ସ୍ନାତକୋତ୍ତର ଶ୍ରେଣୀରେ ଆମେ ୩୨ ଜଣ ଛାତ୍ରଛାତ୍ରୀ ଥିଲୁ। ଦୁଇ ତୃତୀୟାଂଶ ଛାତ୍ର ଏବଂ ଏକ ତୃତୀୟାଂଶ ଛାତ୍ରୀ। ଆମର ଅଧ୍ୟାପକ ଅଧ୍ୟାପିକାମାନେ ଆମକୁ ଯେଉଁ ଶିକ୍ଷା ଦେଉଥିଲେ ତାହାର ପ୍ରଭାବ ସମ୍ପର୍କରେ ଦୁଇତିନୋଟି କଥା ସ୍ପଷ୍ଟ ମନେଅଛି।

ଡକ୍ଟର ରଥ ଆମକୁ ପଢ଼ାଇବା ସମୟରେ ଆମର ସ୍ପଷ୍ଟ ଉପଲବ୍ଧ ହେଉଥିଲା ଯେ ସେ ଜଣେ ଅନନ୍ୟ ନେତୃତ୍ୱ ଶୈଳୀର ଅଧିକାରୀ। ସେ ଆମକୁ ଲିଉନ୍‌ଙ୍କ କ୍ଷେତ୍ରୀୟ ତତ୍ତ୍ୱ (Field Theory)ପଢ଼ାଉଥିଲେ। ସେ ପାଠ୍ୟ ବିଷୟକୁ ଜୀବନ ସହିତ ଏତେ ସମ୍ପର୍କିତ କରୁଥିଲେ ଯେ ପୁସ୍ତକଗତ ଜ୍ଞାନର ବିସ୍ମରଣ ଘଟିଲେ ମଧ୍ୟ ପ୍ରୟୋଗାତ୍ମକ ଦିଗ ଅମଳିନ ରହିବ। ପ୍ରୟୋଗାତ୍ମକ ଦୃଷ୍ଟିକୋଣରୁ ସେ ଜଣେ ଖୁବ୍ ପ୍ରଭାବଶାଳୀ ଶିକ୍ଷକ।

ମନସ୍ତତ୍ତ୍ୱ ପରି ଏକ ବିକାଶମୁଖୀ ଶୃଙ୍ଖଳାକୁ ଉଚ୍ଚତର ପର୍ଯ୍ୟାୟକୁ ନେବା ପାଇଁ ସେ ଅକ୍ଳାନ୍ତ ଉଦ୍ୟମ କରୁଥିଲେ। ବାରମ୍ବାର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏବଂ ଅନ୍ୟ ସବୁ ଉଚ୍ଚତର ସଂସ୍ଥାକୁ ଯାଉଥିଲେ। ତଥାପି ତାଙ୍କର ଜୀବନଧର୍ମୀ ଅଧ୍ୟାପନାକୁ ଆମେ ଚାହିଁ ବସି ରହୁଥିଲୁ। ଡକ୍ଟର ରଥ ତାଙ୍କର କଟକସ୍ଥିତ ବାସଭବନରେ ରହୁଥିଲେ ଏବଂ ପ୍ରତିଦିନ ତାଙ୍କ ଘରୋଇ କାର୍‌ରେ ଯିବା ଆସିବା କରୁଥିଲେ। ତାଙ୍କର ଅନୁପସ୍ଥିତିରେ ଡକ୍ଟର ସରୋଜ କୁମାର ମିଶ୍ର ବିଭାଗୀୟ ଦାୟିତ୍ୱ ସମ୍ଭାଳି ନେଉଥିଲେ।

ଡକ୍ଟର ସରୋଜ କୁମାର ମିଶ୍ର ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରି କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟରେ ତାଙ୍କର ପି.ଏଚ୍.ଡ଼ି. ଉପାଧି ପାଇଥିଲେ। ସେ ୧୯୬୯ ମସିହା ଶେଷ ଭାଗକୁ ଉତ୍କଳକୁ ଫେରି ଆସିଲେ। ଆମ୍ଭେମାନେ ୧୯୭୦ ଜୁଲାଇରେ ସ୍ନାତକୋତ୍ତର ବିଭାଗରେ ପ୍ରବେଶ କରିବା ସମୟରେ ସେ ନୂତନ ତଥ୍ୟ

ଓ ନୂତନ ଉଦ୍ଦୀପନା ନେଇ ଅଧାପନାରତ। ଆମର ପ୍ରଥମ ଅନୁଭବ ହେଉଛି ନୂତନତ୍ୱର ବାସ୍ନା। ତାଙ୍କରି ନେତୃତ୍ୱରେ ବିଗତ ବର୍ଷରୁ (୧୯୬୯ରୁ)ଅଧିକାଂଶ ଅନୁମୋଦିତ ବହିସବୁର ପରିବର୍ତ୍ତନ କରାଯାଇ ନୂତନ ଓ ବିଦେଶୀ ବହି ସବୁ ସିଲାବସ୍‌ରେ ସ୍ଥାନିତ କରାଯାଇଥିଲା। ସେ ନିଜେ ମଧ ଖୁବ୍ ନୂତନ ଓ ସୂଚନାଧର୍ମୀ ତଥ୍ୟ ପ୍ରଦାନ କରୁଥିଲେ।

ସରୋଜ ବାବୁଙ୍କର ଆଉ ଗୋଟିଏ ଭୂମିକା ଆମ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା। ମନସ୍ତତ୍ତ୍ୱ ବିଭାଗର କାର୍ଯ୍ୟ ନିର୍ଘଣ୍ଟରେ ସପ୍ତାହର ଗୋଟିଏ ଦିନର ଶେଷ ଦୁଇ ପିରିୟଡ୍‌ରେ ସେମିନାର କାର୍ଯ୍ୟକ୍ରମ ଥାଏ। ଏହି ସେମିନାର କାମରେ ଡକ୍ଟର ରଥ (କିମ୍ବା ତାଙ୍କ ଅନୁପସ୍ଥିତିରେ ଡକ୍ଟର ମିଶ୍ର) ସଭାପତିତ୍ୱ କରନ୍ତି। ଜଣେ ଛାତ୍ର ବା ଛାତ୍ରୀ କୌଣସି ଅଧାପକଙ୍କ ପରାମର୍ଶ କ୍ରମେ ଗୋଟିଏ ସେମିନାର ଲେଖା ଉପସ୍ଥାପନ କରନ୍ତି। ଉପସ୍ଥାପନ ଶେଷରେ ଆମ୍ଭେମାନେ ପ୍ରଶ୍ନ ପଚାରିଥାଉ। ଉପସ୍ଥିତ ଅଧାପକମାନେ କିଛି ବକ୍ତବ୍ୟ ରଖି ପାରନ୍ତି। ଶେଷରେ ସଭାପତି ତାଙ୍କର ଅଭିଭାଷଣ ଦିଅନ୍ତି। ଆମେ ଲକ୍ଷ୍ୟ କଲୁ ଯେ ମନସ୍ତାତ୍ତ୍ୱିକ ଉପସ୍ଥାପନଟି ଯାହା ହେଉନା କାହିଁକି, ସଭାପତି ଅଭିଭାଷଣ ପୂର୍ବରୁ ସରୋଜ ବାବୁ କିଛି ନୂତନ ତଥ୍ୟ ନୂତନ ସୂଚନା ଦିଅନ୍ତି। ଆମେ ଜାଣି ନ ଥିବା ଅଥଚ ମୂଲ୍ୟବାନ ହୋଇଥିବା ଗବେଷଣା ସାମଗ୍ରୀ କିଛି ଉପସ୍ଥାପନ କରନ୍ତି। ଡକ୍ଟର ରଥ ମଧ ତାଙ୍କର ଏପରି ବକ୍ତବ୍ୟକୁ ଉତ୍ସାହିତ କରନ୍ତି। ତାଙ୍କର ବକ୍ତବ୍ୟ ଓ ମନ୍ତବ୍ୟ ମାଧମରେ ଆମେ ଉନ୍ନତ ବିଦେଶୀ ବିଶ୍ୱବିଦ୍ୟାଳୟର ପ୍ରଶିକ୍ଷଣର ପ୍ରଭାବ ଉପଲବ୍ଧି କରୁ। ଡକ୍ଟର ମିଶ୍ରଙ୍କ ଉପସ୍ଥିତି ଓ ସମ୍ପୃକ୍ତି ବିଭାଗର ରୂପରେଖ ପରିବର୍ତ୍ତନରେ ସହାୟକ ହୋଇଥିଲା। ସଦ୍ୟ ପ୍ରକାଶିତ ବହିମାନ ସିଲାବସ୍‌ରେ ସ୍ଥାନ ପାଇଲା।

ଡକ୍ଟର ସରୋଜ କୁମାର ମିଶ୍ର କାନାଡ଼ାରେ ଯେଉଁ ଉଚ୍ଚତର ଶିକ୍ଷା ଲାଭ କରିଥିଲେ ଏବଂ ଗବେଷଣା କରିଥିଲେ, ତାହା ମନସ୍ତତ୍ତ୍ୱର ଶରୀରଭିତ୍ତିକ ମନୋବିଜ୍ଞାନ (Physiological Psychology)। ତାଙ୍କର ପ୍ରଶିକ୍ଷଣକୁ ଚାହିଁ ବିଭାଗରେ ସେ ଗୋଟିଏ ପ୍ରାଣୀ ଗବେଷଣାଗାର (Animal Lab) ପ୍ରତିଷ୍ଠା କଲେ। ଏଠାରେ ଛୋଟ ଛୋଟ ଯନ୍ତାରେ ମୂଷାମାନଙ୍କୁ ରଖାଗଲା। ଅବଶ୍ୟ ଏସବୁ ଗୃହରୁ ସଂଗୃହୀତ ମୂଷା ନୁହେଁ। କଲିକତାର ଏକ ସଂସ୍ଥା ବୈଜ୍ଞାନିକ ପଦ୍ଧତିରେ ଗୋଟିଏ ବଂଶାନୁଗତିରୁ ଉତ୍ପନ୍ନ ହୋଇଥିବା ସଂଖ୍ୟାଧିକ ମୂଷା। ମୂଷା ପରି ଛୋଟ ଛୋଟ ପ୍ରାଣୀମାନଙ୍କର ପରିବେଶକୁ ନିୟନ୍ତ୍ରଣ କରି ବ୍ୟବହାର ସମ୍ପର୍କରେ ପରୀକ୍ଷା ଓ ପର୍ଯ୍ୟବେକ୍ଷଣ ଅପେକ୍ଷାକୃତ ସହଜ ହୋଇଥିବାରୁ ମନୋବିଜ୍ଞାନୀମାନେ ପ୍ରଥମେ ପ୍ରାଣୀ ବ୍ୟବହାର ସମ୍ପର୍କରେ ସିଦ୍ଧାନ୍ତ ଗଠନ କରନ୍ତି। ପରେ ମନୁଷ୍ୟ ବ୍ୟବହାରର ଅଧୟନ ପାଇଁ

ପ୍ରଯତ୍ନ କରନ୍ତି । ଏହି ଗବେଷଣାଗାରର ପ୍ରତିଷ୍ଠା ଓ ପ୍ରାଣୀ ବ୍ୟବହାର ଅନୁଶୀଳନର ବାତାବରଣ ବାଣୀବିହାର ପରିସରରେ ଏକ ଚମତ୍କାରିକ ସୃଷ୍ଟି କଲା । ସ୍ନାତକୋତ୍ତର ଶିକ୍ଷାର ଦ୍ୱିତୀୟ ବର୍ଷରେ ଦୁଇଟି ଇଚ୍ଛାଧୀନ ବିଷୟ ପଢ଼ିବାର ସୁଯୋଗ ମିଳେ । ଏହି ଇଚ୍ଛାଧୀନ ବିଷୟ ରୂପେ ଅଳ୍ପ କିଛି ଛାତ୍ରଛାତ୍ରୀଙ୍କୁ ଥିସିସ୍ ବା ଗବେଷଣାମୂଳକ ପ୍ରକଳ୍ପର ବିଷୟ ଦିଆଯାଏ । ଆମ ଉପର ବ୍ୟାଚ୍‌ରେ ସର୍ବୋଚ୍ଚ ନମ୍ବର ହାସଲ କରିଥିବା ଶ୍ରୀକାନ୍ତ ଦାଶ ଓ ବନମାଳୀ ମହାନ୍ତି, ଡଃ ସରୋଜ କୁମାର ମିଶ୍ରଙ୍କ ତତ୍ତ୍ୱାବଧାନରେ ଏହାକୁ ଇଚ୍ଛାଧୀନ ବିଷୟର ଅନୁମୋଦନ ପାଇଲେ । ପ୍ରାଣୀ ଗବେଷଣାଗାରରେ କାମ କରୁଥିବା ସମୟରେ ଶ୍ରୀକାନ୍ତ ବାବୁ ଓ ବନମାଳୀ ବାବୁ ଡାକ୍ତରଙ୍କ ପରି ଧଳା ଆପ୍ରୋନ୍ ପିନ୍ଧି କାନ୍ଧରେ କିମ୍ବା ହାତରେ ମୂଷା ଧରି କିଛି ସମୟ ବାହାରେ ବୁଲନ୍ତି । ବାଣୀବିହାରର ପ୍ରଥମ ଦୁଇଟି ଛାତ୍ରାବାସ ପାଖାପାଖି ଅବସ୍ଥିତ ହୋଇଥିବାରୁ ଏପରି ବିରଳ ଦୃଶ୍ୟ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ମନସ୍ତତ୍ତ୍ୱ ବିଭାଗର ପ୍ରାକ୍ଟିକାଲ ନାମରେ କାରବାର ଯେ କେବଳ କାଗଜ ପତ୍ରର ପ୍ରଶ୍ନାବଳୀ ଏବଂ କାଠ ତିଆରି ଉପକରଣ ମଧ୍ୟରେ ସୀମିତ ନୁହେଁ,. ଏହା କ୍ରମଶଃ ହୃଦ୍‌ବୋଧ ହେଲା ।

ପଞ୍ଚବର୍ଷ ସେହି ନିୟମାନୁସାରେ ମୁଁ ଓ ଚିତ୍ତ ଏ ବିଷୟଟି ଇଚ୍ଛାଧୀନ ବିଷୟ ରୂପେ ପାଇଥିଲୁ । ଏତଦ୍‌ବ୍ୟତୀତ ଅନ୍ୟତମ ଇଚ୍ଛାଧୀନ ବିଷୟ ରୂପେ ପରିସଂଖ୍ୟାନ(Statistics) ମଧ୍ୟ ମୋତେ ମିଳିଥିଲା ।

ସରୋଜ ବାବୁଙ୍କ ବ୍ୟତୀତ ଅନ୍ୟ ଶିକ୍ଷକ ଶିକ୍ଷୟିତ୍ରୀ ମଧ୍ୟ ଆମର ଖୁବ୍ ପ୍ରିୟ ଥିଲେ । ଅଧ୍ୟାପକ ପୂର୍ଣ୍ଣେନ୍ଦୁଲାଲ ଘୋଷ ଖୁବ୍ ମିଷ୍ଟଭାଷୀ ଏବଂ ସ୍ନେହଶୀଳ । ସେ ଆମ୍ଭମାନଙ୍କୁ ସାଧାରଣ ମନୋବିଜ୍ଞାନର ଅଭିପ୍ରେରଣା (Motivation) ପରିଚ୍ଛେଦଟି ପଢାଉଥିଲେ । ଛାତ୍ରଛାତ୍ରୀମାନଙ୍କ ସହିତ ତାଙ୍କର ସାମାଜିକ ସମ୍ପର୍କ ଅତ୍ୟନ୍ତ ମଧୁର ଥିଲା । ମୁଁ କାନାଡାରେ ଥିବା ସମୟରେ ୧୯୮୧ ମସିହାର ମାର୍ଚ୍ଚ ମାସରେ ଏକ ସଡ଼କ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ସମ୍ବାଦ ପାଇ ଗଭୀର ମର୍ମାହତ ହୋଇଥିଲି । ତାଙ୍କର ବିୟୋଗ ବ୍ୟକ୍ତିଗତ ସ୍ତରରେ ମୋତେ ବେଶ୍ ଆଘାତ ଦେଇଥିଲା । ଅଧ୍ୟାପିକା କସ୍ତୁରୀ ଜାଚକ ଆମକୁ ଅସ୍ୱାଭାବୀ ମନୋବିଜ୍ଞାନ ପଢ଼ାଉଥିଲେ । ଅଧ୍ୟାପିକା ଶାନ୍ତିଲତା ସାହୁ ମନୁଷ୍ୟର ଶିକ୍ଷଣ (Learning) ପଢ଼ାଉଥିଲେ । ଏ ଦୁଇଜଣ ଭଦ୍ରମହିଳାଙ୍କୁ ଆମ୍ଭେମାନେ ଯଥାକ୍ରମେ କସ୍ତୁରୀ ଅପା ଏବଂ ଶାନ୍ତି ଅପା ବୋଲି ସମ୍ବୋଧନ କରୁଥିଲୁ । ଅଧ୍ୟାପକ ଅଜିତ୍ କୁମାର ମହାନ୍ତି ଆମ୍ଭମାନଙ୍କଠାରୁ ମାତ୍ର ତିନି ଚାରି ବର୍ଷ ପୂର୍ବରୁ ଏମ୍.ଏ. ସାରିଥିବାରୁ ତାଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରହିଥିଲା । ସେ ଆମ୍ଭମାନଙ୍କୁ ସାମାଜିକ ମନୋବିଜ୍ଞାନ ପଢ଼ାଉଥିଲେ ।

ବାଣୀବିହାର ଜୀବନ ମୋଟାମୋଟି ଭାବରେ ସୁଖକର ଥିଲା। ଅନର୍ସରେ ପ୍ରଥମ ଶ୍ରେଣୀ ପାଇଥିବା ଛାତ୍ରଛାତ୍ରୀଙ୍କୁ ଜାତୀୟ ବୃତ୍ତି ମିଳିଥାଏ। ଛାତ୍ରାବାସରେ ନ ରହିଲେ ମାସିକ ଶହେ ଟଙ୍କା ଏବଂ ଛାତ୍ରାବାସରେ ରହିଲେ ଶହେ ଦଶଟଙ୍କା ମିଳିବାର ବ୍ୟବସ୍ଥା ଥିଲା। ମୁଁ ପ୍ରଥମ ବର୍ଷଟି କଟକରୁ ଯିବା ଆସିବା କରିବା ପାଇଁ ସ୍ଥିର କରିଥିଲି। ଦ୍ୱିତୀୟ ବର୍ଷ ଛାତ୍ରାବାସରେ ରହିବାକୁ ସ୍ଥିର କଲେ ମଧ୍ୟ ଭଲ କୋଠରୀଟିଏ ମିଳିଲା ନାହିଁ। ବିଶ୍ୱବିଦ୍ୟାଳୟର ଦ୍ୱିତୀୟ ଛାତ୍ରାବାସର (ମଧୁସୂଦନ ଛାତ୍ରାବାସ) ସ୍ନାନାଗାର ନିକଟସ୍ଥ ୧୨୮ ନମ୍ବର କୋଠରୀଟି ମୋତେ ମିଳିଥିଲା। ପାଣି ଝରୁଥିବା ଏହି କୋଠରୀଟି ବଦଳାଇବାର ସମସ୍ତ ଚେଷ୍ଟା ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ଏହା ସଫଳ ହୋଇ ନ ଥିଲା।

ପ୍ରଥମ ବର୍ଷଟିରେ କଟକରୁ ଯିବା ଆସିବାରେ କୌଣସି ଅସୁବିଧା ହେଉ ନ ଥିଲା। ସେତେବେଳେ କଟକର ମୁଖ୍ୟ ବସ୍‌ଷ୍ଟାଣ୍ଡ ବାଦାମବାଡ଼ିରେ ନିର୍ମିତ ହୋଇ ନ ଥିଲା। ବସ୍ ସବୁ ଚାନ୍ଦିନୀଚୌକ ବସ୍‌ଷ୍ଟାଣ୍ଡରୁ ବାହାରୁ ଥିଲା। ଅବଶ୍ୟ କଟକରୁ ଭୁବନେଶ୍ୱର ଆସୁଥିବା ସବୁ ବସ୍ ସହର ଭିତରେ ଯାତାୟାତ କରୁ ନ ଥିଲେ। ତେବେ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ ସହରର ମୁଖ୍ୟ ରାସ୍ତା ଦେଇ ଭୁବନେଶ୍ୱର ଯାଉଥିଲା। ଏଥିରେ ଯାତାୟାତ କରୁଥିବା ଅଧିକାଂଶ ଯାତ୍ରୀ ରିହାତି ଦରର ମାସିକ ଟିକେଟ୍ ବ୍ୟବହାର କରୁଥିବାରୁ ଏହାକୁ ପାଶ୍ ବସ୍ କୁହାଯାଉଥିଲା। ପୂର୍ଣ୍ଣେନ୍ଦୁ ବାବୁ ଓ ମୁଁ ଗୌରୀ ଶଙ୍କର ପାର୍କ ପାଖରୁ ଉଠୁଥିଲୁ? ବସ୍‌ଟି ଠିକ୍ ସାଢ଼େ ଦଶଟାରେ ବାଣୀବିହାର ପହଞ୍ଚେ ଏବଂ ଅପରାହ୍ନ ସାଢ଼େ ଚାରିଟାରେ ବାଣୀବିହାର ଛାଡ଼ିଥାଏ। ଅଳ୍ପ କେତେଜଣ ଶିକ୍ଷକଙ୍କ ବ୍ୟତୀତ କଟକରୁ ଯିବା ଆସିବା କରୁଥିବା ବିଶ୍ୱବିଦ୍ୟାଳୟର କର୍ମଚାରୀ ଏବଂ ଛାତ୍ରଛାତ୍ରୀମାନେ ଏଥିରେ ଅଭ୍ୟାସଗତ ଭାବରେ ଯିବା ଆସିବା କରନ୍ତି।

ସମାନ ଧରଣର ଯାତ୍ରୀ ପ୍ରତିଦିନ ଯିବା ଆସିବା କରିବା ଫଳରେ ବସ୍ ମଧ୍ୟରେ ଗୋଟିଏ "ସମାଜ" ଗଠିତ ହେବା ପରି ମନେହେଲା। ସେତେବେଳେ କଟକର କାଠଯୋଡ଼ି ନଦୀବନ୍ଧ ପାର ହେବା ପରେ ଭୁବନେଶ୍ୱର ପର୍ଯ୍ୟନ୍ତ ପାଞ୍ଚ ନମ୍ବର ଜାତୀୟ ରାଜପଥ କଡ଼ରେ ପ୍ରାୟ କୌଣସି ଘରଦ୍ୱାର ନ ଥିଲା। କେବଳ ତେଲେଙ୍ଗାପେଣ୍ଠରେ ଆକବର ଖାଁ ଗୁଡ଼ାଖୁ କମ୍ପାନୀ ଏବଂ ଫୁଲନଖରା ଛକରେ ଓମ୍‌ଫେଡ଼ର ଅଫିସ୍‌ଟି ଦୃଷ୍ଟିଗୋଚର ହୁଏ। ପାହାଳରେ ଅଳ୍ପ କିଛି ରସଗୋଲା ଦୋକାନ ଆରମ୍ଭ ହୋଇଥାଏ। ବାଣୀବିହାରରୁ ଫେରିବା ସମୟରେ ବେଳେବେଳେ ଡ୍ରାଇଭର୍ ବାବୁଙ୍କୁ କହି ବସ୍‌ଟି ଅଟକି ରହେ। ଆମେ ସବୁ ଏକାଠି ଯାଇ ରସଗୋଲା ଖାଇଥାଉ। ଡ୍ରାଇଭର୍ ଏବଂ ତାଙ୍କର ସହଯୋଗୀମାନେ ମଧ୍ୟ ମାଗଣାରେ ରସଗୋଲା ଖାଇ ଖୁସୀ ହୁଅନ୍ତି।

ବାଣୀବିହାର ଆସିବା ସମୟରେ ଆମେ ଯାତ୍ରାର ପ୍ରାୟ ଆରମ୍ଭ ସମୟରୁ (ଗୌରୀଶଙ୍କର ପାର୍କ) ବସ୍‌ରେ ଉଠୁଥିବାରୁ ସହଜରେ ବସିବା ପାଇଁ ସିଟ୍ ମିଳିଯାଏ। କିନ୍ତୁ ଯିବା ସମୟରେ କିଛି ଅସୁବିଧା ଥାଏ କାରଣ ବସ୍‌ଟି ଭୁବନେଶ୍ୱର ବସ୍‌ଷ୍ଟାଣ୍ଡ (ପୁରୁଣା ବସ୍‌ଷ୍ଟାଣ୍ଡ)ରୁ ବାହାରି ଆଞ୍ଚଳିକ ଶିକ୍ଷା ସଂସ୍ଥା ଓ ସହିଦ୍‌ନଗର ଦେଇ ବାଣୀବିହାର ଆସିଥାଏ। କଟକରୁ ଆସୁଥିବା ଆମେ କେତେଜଣ ଛାତ୍ର କ୍ଲାସ ସରିବା ପରେ ସିଟ୍ ପାଇବା ଆଶାରେ ଦ୍ରୁତଗତିରେ ଚାଲି ଚାଲି ସହିଦ୍‌ନଗର ରୂପାଲୀ ଛକ ପର୍ଯ୍ୟନ୍ତ ଚାଲିଯାଉ। ସହିଦ୍‌ନଗରର ସେ ଛକ ପାଖାପାଖି ଅଞ୍ଚଳ ପ୍ରାୟ ନିର୍ଜନ ଥିଲା। କୌଣସି ଦୋକାନ କିମ୍ବା ରେଷ୍ଟୁରାଣ୍ଟ ନ ଥିଲା। ସମ୍ଭବତଃ ବେଶ୍ କିଛି ବର୍ଷ ପରେ ରୂପାଲି ନାମରେ ରେଷ୍ଟୁରାଣ୍ଟଟି ଏ ଛକରେ ମୁଣ୍ଡ ଟେକିଲା। ତା'ରି ନାମ ଅନୁସାରେ ଏ ପର୍ଯ୍ୟନ୍ତ ଏ ଛକର ନାମ ରୂପାଲୀ ଛକ ହୋଇ ଯାଇଛି।

ବାଣୀବିହାର ପରିସର ମଧ୍ୟରେ ବିଶେଷ ଭଲ ରେଷ୍ଟୁରାଣ୍ଟ ନ ଥିଲା। ଦୁଇଟି କାମଚଳା ରେଷ୍ଟୁରାଣ୍ଟ ଥିଲା। ଦ୍ୱିତୀୟ ବର୍ଷ ମୁଁ ଛାତ୍ରାବାସରେ ରହିବା ପରେ ସାମୟିକ ଭାବରେ ବ୍ୟବହାର କରିଥାଏ। ତେବେ ବନ୍ଧୁମାନଙ୍କ ସହିତ ଏକାଠି ହୋଇ ମନଖୁସିରେ କିଛି ଖାଇବାର ଇଚ୍ଛା ହେଲେ ଆଗେ ଟାଉନ୍‌ବସରେ ଭୁବନେଶ୍ୱରର କେନ୍ଦ୍ରସ୍ଥଳକୁ (ରାଜମହଲ୍ ଛକ) ଯାଉ। ସେଠାରେ ଥିବା ସାଉଥ୍ ଇଣ୍ଡିଆନ୍ ହୋଟେଲ୍‌ରେ ମିଲ୍ କିମ୍ବା ଜଳଖିଆ ଖାଇଥାଉ। ଅଦୂରରେ ଗଢ଼ି ଉଠିଥିବା ବନାରସୱାଲାରେ ମଧ୍ୟ ଦହିବରା ସମେତ ଲୋଭନୀୟ ଜଳଖିଆ ମିଳିଥାଏ। ଗମନାଗମନ ପାଇଁ ବାଣୀବିହାରରୁ ଟାଉନ୍ ବସ୍ ଚାଲିଥିଲା। ଓଡିଶା ରୋଡ୍ ଟ୍ରାନ୍ସପୋର୍ଟର କଟକ-ଭୁବନେଶ୍ୱର ବସ୍ ମଧ୍ୟରୁ କେତେକ ବସ୍ ବାଣୀବିହାର ମଧ୍ୟ ଦେଇ ଯାତାୟାତ କରେ। ବାଣୀବିହାରର ପାଣି ଟାଙ୍କି ପାଖରେ ଏ ବସ୍‌ଗୁଡ଼ିକ ଅଳ୍ପ ସମୟ ଅଟକି ରହେ।

ପ୍ରଥମ ବର୍ଷ ଅପେକ୍ଷା ଦ୍ୱିତୀୟ ବର୍ଷ ପଢ଼ାର ଚାପ ଅଧିକ ଥିଲା। ଦ୍ୱିତୀୟ ବର୍ଷର ଶେଷ ଛ'ମାସ ମୁଁ ପୂରାପୂରି ଛାତ୍ରାବାସରେ ରହିବା ସ୍ଥିର କଲି। ଯଥାରୀତି ଏପ୍ରିଲ୍ (୧୯୭୨)ରେ କ୍ଲାସ ପଢ଼ା ସରିଗଲା। ମାତ୍ର ଶେଷ ପରୀକ୍ଷାଟି ବିଳମ୍ବିତ। ପୂର୍ବବର୍ଷ (୧୯୭୦ ଏପ୍ରିଲ/ମଇ)ଆଖିଧରା ରୋଗ (Conjuctivitis) ଖୁବ୍ ବ୍ୟାପୀ ଥିବାରୁ ଛାତ୍ରଛାତ୍ରୀମାନେ ଠିକ୍ ସମୟରେ ପରୀକ୍ଷା ଦେବାକୁ ଅନିଚ୍ଛୁକ ଥିଲେ। ସୁତରାଂ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଚକ୍ଷୁ ବିଶେଷଜ୍ଞଙ୍କ ପରାମର୍ଶ କ୍ରମେ ଶେଷ ପରୀକ୍ଷା ଚାରିମାସ ଘୁଞ୍ଚାଇ ଦେଇଥିଲେ। ଏ ବର୍ଷ ମଧ୍ୟ ତାହାହିଁ ଘଟିଲା। ଶେଷ ପରୀକ୍ଷା ଏପ୍ରିଲ/ମଇ ପରିବର୍ତ୍ତେ ନଭେମ୍ବର ମାସରେ ହେବ ବୋଲି ଘୋଷଣା କରାଗଲା। ଆମେ ସବୁ ଷଷ୍ଠବର୍ଷର ପାଠପଢ଼ା ସାରିଥିବାରୁ ଆମ୍ଭମାନଙ୍କୁ ସପ୍ତମବର୍ଷର ଛାତ୍ରଛାତ୍ରୀ

କୁହାଗଲା। ସ୍ନାତକୋତ୍ତର ଶିକ୍ଷାକ୍ରମରେ ସପ୍ତମ ବର୍ଷଟା (Seventh Year) ଏକ ନୂଆ ପରିଭାଷା ତିଆରି କଲା।

ବାଣୀବିହାରରେ ଅଧ୍ୟୟନ ମାନସିକତାକୁ ଅଧିକ ଶକ୍ତି ଦେଲା। ବହି ବାହାରୁ ମଧ୍ୟ ଜୀବନ ପାଇଁ ଅନ୍ୟ କେତେକ ଉପାଦାନ ସଂଗ୍ରହ କଲି। ଦୁଇ ଦୁଇଥର ଅଧ୍ୟାପକ ଅଧ୍ୟାପିକାମାନଙ୍କ ସହିତ ଦଶ୍‌ବାର ଦିନ ଶିକ୍ଷା ଭ୍ରମଣର (Study Tour) ଅନୁଭୂତି ବେଶ୍ ସୁଖକର ଥିଲା। ଦାକ୍ଷିଣାତ୍ୟର ବହୁସ୍ଥାନ ବୁଲିବାର ସୁଯୋଗ ମିଳିଲା। ଏ ପର୍ଯ୍ୟନ୍ତ ଯେଉଁ ଭ୍ରମଣ କେବଳ ଓଡ଼ିଶା ମାଧ୍ୟମରେ ସୀମିତ ଥିଲା ତାହାର ପରିସୀମା ଡେଇଁ ବେଶ୍ କିଛି ସ୍ଥାନ ଦେଖିଲି ଓ ଶିଖିଲି।

ଅବଶ୍ୟ ଶେଷ ପରୀକ୍ଷାର ଫଳାଫଳ ମୋ ପାଇଁ ସୁଖକର ନ ଥିଲା। ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ମୁଁ ପ୍ରଥମ ଶ୍ରେଣୀରୁ ଦ୍ୱିତୀୟ ସ୍ଥାନ ପାଇଲି। ମୋର ବନ୍ଧୁ ଉଦୟନାଥ  ଦାଶ ପ୍ରଥମ ହୋଇଥିଲେ। ଭବିଷ୍ୟତ ପାଇଁ ଏ ଏକ ସତର୍କ ସଙ୍କେତ ପ୍ରଦାନ କଲା। ତେବେ ସେ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ମୁଁ ବିଶ୍ୱବିଦ୍ୟାଳୟ ଶ୍ରେଷ୍ଠ ବକ୍ତୃତା ପ୍ରତିଯୋଗୀ (ଓଡ଼ିଆ) ରୂପେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ସ୍ୱର୍ଣ୍ଣପଦକ ଲାଭ କରିବା ବେଶ୍ ଆନନ୍ଦଦାୟକ ଥିଲା।

❖

(୨୦)

# ଅଧ୍ୟାପକ ହେଲି

ମନସ୍ତତ୍ତ୍ୱ ଅଧ୍ୟୟନ କରିବା ସମୟର ସ୍ୱପ୍ନ ଥିଲା ଅଧ୍ୟାପକ ହୋଇ ଏ ପ୍ରେମକୁ ଅଧିକ ଗଭୀର କରିବା। ୧୯୬୩ ମସିହା ଅଗଷ୍ଟ ୪ ତାରିଖରେ ରେଭେନ୍ସା କଲେଜରେ ଅଧ୍ୟାପକ ହିସାବରେ ଯୋଗଦେଲି। ଅସ୍ଥାୟୀ (Ad hoc) ନିଯୁକ୍ତି। ସେ ସମୟରେ ଓଡ଼ିଆ ଲୋକସେବା ଆୟୋଗ (Orissa Public Service Commission)ଶୀଘ୍ର ମନୋନୟନ ବ୍ୟବସ୍ଥାର ଆୟୋଜନ କରି ନିଯୁକ୍ତି ଦେବା ସମ୍ଭବ ନ ଥିଲା। ଅସ୍ଥାୟୀ ନିଯୁକ୍ତି ପ୍ରଣାଳୀ ସହଜ ଥିଲା। ଉଚ୍ଚ ଶିକ୍ଷା ବିଭାଗର ନିର୍ଦ୍ଦେଶାଳୟରେ ପ୍ରତି ବିଭାଗରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀମାନଙ୍କର ଏକ ଯୋଗ୍ୟତା ତାଲିକା (Merit List) ପ୍ରସ୍ତୁତ କରା ଯାଉଥିଲା। ହାଇସ୍କୁଲଠାରୁ ଏମ୍.ଏ. ପର୍ଯ୍ୟନ୍ତ ହାସଲ କରିଥିବା ସଫଳତାକୁ ବିଚାର କରି ପ୍ରତିଟି ସ୍ତରର ସଫଳତା ପାଇଁ ମାର୍କ ଦେଇ ଏହି ତାଲିକା ପ୍ରସ୍ତୁତ କରା ଯାଉଥିଲା। ମନସ୍ତତ୍ତ୍ୱର ଯୋଗ୍ୟତା ତାଲିକାରେ ମୁଁ ସର୍ବୋଚ୍ଚ ସ୍ଥାନରେ ଥିବାରୁ କୌଣସି ନା କୌଣସି କଲେଜରେ ନିଯୁକ୍ତି ମିଳିବାର ଆଶା ଥିଲା। ତେବେ ରେଭେନ୍ସାର ନିଯୁକ୍ତି ମୋତେ ଅମାପ ଆନନ୍ଦ ଦେଲା।

ଶୁଣିଥିଲି ଯେ ଅସ୍ଥାୟୀ ନିଯୁକ୍ତି ସମୟରେ ଆରମ୍ଭରୁ ଦରମା ମିଳିବା କଷ୍ଟ। ଦରମା ପାଇଁ ଏ.ଜି. ଅଫିସ୍‌ର ପେ ସ୍ଲିପ୍ ଦରକାର। କିନ୍ତୁ ଏଥିରେ ପାଞ୍ଚ ଛ'ମାସ ଚାଲିଯାଏ। ପେ ସ୍ଲିପ୍ ପାଇଲା ପରେ ହୁଏତ ଏକାଠି ପାଞ୍ଚ ଛ'ମାସର ଦରମା ମିଳେ। ଏ ଦୃଷ୍ଟିରୁ ବାହାରେ ଚଳିବାକୁ ହେଲେ ଘରୁ କିଛି ଅର୍ଥ ନେବାକୁ ହେବ। ସୌଭାଗ୍ୟବଶତଃ ମୋର ଆଶଙ୍କାକୁ ଦୂରୀଭୂତ କରି ରେଭେନ୍ସା କଲେଜରେ ନିଯୁକ୍ତି ପାଇଲି।

ମନସ୍ତତ୍ତ୍ୱ ବିଭାଗର ଅଧିକାଂଶ ବ୍ୟକ୍ତି ମୋର ପୂର୍ବ ପରିଚିତ। ଡକ୍ଟର ଗିରୀଶବାଳା ମହାନ୍ତି ବିଭାଗୀୟ ମୁଖ୍ୟ। ଅନ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦ ଚନ୍ଦ୍ର ନନ୍ଦ, ଚିନ୍ତାମଣି ମିଶ୍ର ଓ ଜୟ ନାରାୟଣ ଦାସ। ଡଃ ମହାନ୍ତି ଓ ପ୍ରହ୍ଲାଦ ବାବୁ ମୋତେ ଏହି କଲେଜରେ ପଢ଼ାଇଥିଲେ। ପ୍ରହ୍ଲାଦବାବୁ ବହୁ ପୁରାତନ ଶିକ୍ଷକ। ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ବ୍ୟାଚ୍‌ର (୧୯୬୦) ଛାତ୍ର। ଶ୍ରୀଯୁକ୍ତ ମିଶ୍ର ପ୍ରଥମେ ବାଣପୁର କଲେଜରେ ଅଧ୍ୟାପନା କରୁଥିଲେ। ପରେ ରାଜ୍ୟ ସେବା ଆୟୋଗ ଦ୍ୱାରା ବିଧିବଦ୍ଧ ନିଯୁକ୍ତି ପ୍ରକ୍ରିୟା ମାଧ୍ୟମରେ ଏଠାକୁ ଆସିଥିଲେ। ଜୟ ନାରାୟଣ ଦାସ ଠିକ୍ ଆମ ଉପର ବ୍ୟାଚର ଛାତ୍ର। ସେ ମଧ୍ୟ ଓଡ଼ିଶା ସେବା ଆୟୋଗ ଦ୍ୱାରା ବିଧିବଦ୍ଧ

ନିଯୁକ୍ତି ପାଇଥିଲେ। ଆମେ ଦୁହେଁ ସମସାମୟିକ ଥିବାରୁ ବେଶ୍ ବନ୍ଧୁତ୍ୱ ଥିଲା। ତା'ଛଡ଼ା ସେ ଆମ ଘରର ଅଳ୍ପ ଦୂରରେ ବଙ୍ଗାଳୀ ସାହିର ବାମ୍ଫି ସାହିରେ ରହୁଥିବାରୁ ଆମେ ଦୁହେଁ ଏକାଠି ରିକ୍ସାରେ କଲେଜ ଆସୁଥିଲୁ ଏବଂ ଫେରୁଥିଲୁ। ଅନ୍ୟ ସମୟରେ ମୁଁ ସାଇକେଲ୍‌ରେ ଯିବା ଆସିବା କରୁଥିଲି। ଜୟ ନାରାୟଣ ବାବୁଙ୍କର ଡାକ ନାମ ଜଗୁ। ଜଗୁ ବାବୁଙ୍କର ବ୍ୟାଙ୍କ୍ ଅଫିସର୍ ହେବା ପାଇଁ ଅଭିଳାଷ ଥିଲା। ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କ୍‌ର ପ୍ରୋବେସନାରୀ ଅଫିସର୍ ହିସାବରେ ମନୋନୀତ ମଧ ହେଲେ। କେଉଁ ଏକ ମୁହୂର୍ତ୍ତରେ ସେ ରେଭେନ୍ସା ଛାଡ଼ି ଅନ୍ୟତ୍ର ଯିବାର ସମ୍ଭାବନା ଥିଲା। ତଥାପି ସେ ଯେତେଦିନ ରହିଥିଲେ ଅଧ୍ୟାପନା ପ୍ରତି ତାଙ୍କର ଗଭୀର ଅନୁରକ୍ତି ରହିଥିଲା।

ରେଭେନ୍ସାର ଯେଉଁ ମନସ୍ତତ୍ତ୍ୱ ବିଭାଗରେ ମୁଁ ପୂର୍ବରୁ ଦୁଇଟି ବର୍ଷ ଛାତ୍ର ହିସାବରେ କଟାଇଥିଲି ସେଠାରେ ଅଧ୍ୟାପକ ଆସନରେ ବସିବା ପାଇଁ ଖୁବ୍ ଭଲ ଲାଗୁଥାଏ। ମନସ୍ତତ୍ତ୍ୱ ବିଭାଗର ଅବସ୍ଥିତିଟି ଖୁବ୍ ଶୋଭନୀୟ। ରେଭେନ୍ସା କଲେଜର (ବର୍ତ୍ତମାନ ରେଭେନ୍ସା ବିଶ୍ୱବିଦ୍ୟାଳୟର) ପୂର୍ବପଟ ପ୍ରବେଶପଥର ସମ୍ମୁଖରେ ବିରାଟ ଗେଟ୍। ଏ ଗେଟ୍‌କୁ ଆସେମ୍ବ୍ଲି ଗେଟ୍ କୁହାଯାଏ, କାରଣ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ନ ହେବା ପର୍ଯ୍ୟନ୍ତ ଏହି ଗେଟ୍‌ଟି ଆସେମ୍ବ୍ଲିର ସାମନାରେ ରହିଥିଲା। ସେଠାରେ ଓଡ଼ିଶାର ବିଧାନସଭା ଚାଲିଥିଲା। ଏହି ଗେଟ୍‌ରେ ପ୍ରବେଶ କଲେ ବାମ ପାର୍ଶ୍ୱରେ ବିଭାଗୀୟ ମୁଖ୍ୟଙ୍କ ପ୍ରକୋଷ୍ଠ। ଦକ୍ଷିଣ ପାର୍ଶ୍ୱରେ ଷ୍ଟାଫ୍ କୋଠରୀ ଓ ଗବେଷଣାଗାର।

ଷ୍ଟାଫ୍ କୋଠରୀରେ ଆମେ ଚାରିପାଞ୍ଚ ଅଧ୍ୟାପକ। ସମ୍ଭବତଃ ଆମ ସହିତ ହେମନ୍ତ କୁମାର ଘଡ଼ାଇ ଥିଲେ ଏବଂ ସେ ବକ୍ସି ଜଗବନ୍ଧୁ କଲେଜକୁ ସ୍ଥାନାନ୍ତରିତ ହେଲେ। ପ୍ରହ୍ଲାଦ ବାବୁ ବରିଷ୍ଠ ଅଧ୍ୟାପକ। ସେ ମୋର ସାର୍ ଥିଲେ। ତା'ଛଡ଼ା ସେ ଖୁବ୍ ମେଳାପୀ। ତାଙ୍କର ପାଟି ଅନବରତ ଚାଲିଥାଏ। ସେ ଦିନ ମଧରେ ବେଶ୍ କେଇଥର ପିଅନକୁ ପଠାନ୍ତି ଚା' ଆଣିବା ପାଇଁ। ଆମେ ଚା' ଗ୍ରହଣ କରିବା ସମୟରେ ଅନ୍ୟ କେହି ଆଗନ୍ତୁକ ଆସିଗଲେ ଅଧିକା କପ୍‌ର ବ୍ୟବହାର କରାଯାଏ। ଚତୁର୍ଥ ଶ୍ରେଣୀ କର୍ମଚାରୀ ହିସାବରେ ପ୍ରାଣକୃଷ୍ଣ ଖୁବ୍ ମାନ୍ଦା ଥିଲା। ସୁତରାଂ ପ୍ରହ୍ଲାଦ ବାବୁଙ୍କ ମୃଦୁ ଭର୍ତ୍ସନାର ଶରବ୍ୟ ହେଉଥିଲା। ପରେ ଭାସ୍କର ନାମକ ଆଉ ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀ ଯୋଗ ଦେଲା। ସେ ଖୁବ୍ କର୍ମ ତତ୍ପର।

ପ୍ରହ୍ଲାଦ ବାବୁ ଖୁବ୍ ପଠନପ୍ରିୟ। ଖବରକାଗଜ ବ୍ୟତୀତ ସେ ବିଭିନ୍ନ ଧରଣର ପତ୍ରପତ୍ରିକା ପଢ଼ନ୍ତି। ସାହିତ୍ୟର ଜଣେ ଅନୁରକ୍ତ ପାଠକ। ତାଙ୍କ ସହିତ କଥାବାର୍ତ୍ତା କରିବାରେ ଆନନ୍ଦ ମିଳେ। ଏବେ ମଧ ସେ ଫୋନ୍ କଲେ ତାଙ୍କ କଥାରେ ବହୁ

ରଙ୍ଗ ବନ୍ଧୁ ବାସ୍ନାର ସ୍ପର୍ଶ ଥାଏ। ପ୍ରକୃତରେ ବ୍ୟାଙ୍କରେ ଯୋଗ ଦେବା ପାଇଁ ଜଙ୍ଗୁ ବାବୁ ବମ୍ବେ ଗଲେ। ତାଙ୍କୁ ବିଦାୟ ଜଣେଇବା ପାଇଁ ଏକତ୍ର ଭୋଜି, ଏକାଠି ସିନେମା ଦେଖିବାକୁ ଯିବାର ଆଲୋଚନା ଇତ୍ୟାଦି ହୋଇଥିଲା। ଆମେ କିଛି ହରାଇବା ପରି ଅନୁଭବ କଲୁ। ତାଙ୍କ ସ୍ଥାନରେ ତାଙ୍କର ବ୍ୟାଚ୍‌ର ଯୋଗେଶ୍ୱର ମହନ୍ତ ଅଧ୍ୟାପକ ହୋଇ ସେଠାକୁ ଆସିଲେ।

ଆମର ଚାରି ପାଞ୍ଚ ଜଣର ଅଧ୍ୟାପକ ଦଳଟି ଖୁବ୍ ସଂଗଠିତ ଥିଲା। ପିଲାଙ୍କୁ ନେଇ କୌଣସି ସମସ୍ୟା ଉପୁଜିବାର ଘଟଣା ମୋର ସ୍ମରଣ ନାହିଁ। ପ୍ରଫେସର ମହେନ୍ଦ୍ର କୁମାର ରାଉତ ଅଧ୍ୟକ୍ଷ ଥିଲେ। ସେ ଜଣେ ଦକ୍ଷ ପ୍ରଶାସକ ଥିଲେ। ଏତଦ୍‌ବ୍ୟତୀତ ସେ କେତେକ ବିକାଶମୂଳକ କାର୍ଯ୍ୟର ଆରମ୍ଭ କଲେ। ପ୍ରତ୍ୟେକ ଅଧ୍ୟାପକ ନିଜେ ପଢ଼ାଉଥିବା ବିଷୟର ପୂର୍ବ ଯୋଜନା ପ୍ରସ୍ତୁତ କରିବେ ଏବଂ ଅଗ୍ରଗତି ସମ୍ପର୍କରେ ଲିଖିତ ସୂଚନା ରଖିବେ। ସେହିପରି ଯଥାସମ୍ଭବ ସବୁକ୍ଲାସ ଯେପରି କାର୍ଯ୍ୟକାରୀ ହୁଏ, ତାହାର ତଦାରଖ କରୁଥିଲେ। ଆମ ବିଭାଗର ଅଧ୍ୟାପକମାନେ ଅଧ୍ୟକ୍ଷଙ୍କ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରୁଥିଲେ।

ପୂରା ବର୍ଷଟି ଅଧ୍ୟାପନାରେ ପ୍ରଚୁର ଆନନ୍ଦ ପାଇଲି। ଗୋଟିଏ ବର୍ଷ ପରେ (୧୯୭୪ର ଅଗଷ୍ଟ ସେପ୍ଟେମ୍ବର ପରେ) ମନରେ ଆଉ ଗୋଟିଏ ସ୍ୱପ୍ନ ରୂପ ନେଲା। ମୁଁ ମନସ୍ତତ୍ତ୍ୱ ପଢ଼ିଲି କାହିଁକି? ବିଦେଶ ଯିବାର ଅଭୀପ୍‌ସା ନେଇ ମୁଁ ଏ ଯାତ୍ରା ଆରମ୍ଭ କରିଥିଲି। ତେବେ ସେ ଦିଗରେ ମୁଁ କରିଛି କ'ଣ? ଏ ପ୍ରଶ୍ନଟି ଆଲୋଡ଼ନ ସୃଷ୍ଟି କଲା।

ମୁଁ ଜାଣିବାକୁ ପାଇଲି ଯେ ମୋର ଉପର ବ୍ୟାଚର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଶ୍ରୀକାନ୍ତ ଦାଶ ରାଜ୍ୟଗୋଷ୍ଠୀ ବୃତ୍ତି ପାଇବାରେ ସଫଳ ହୋଇଛନ୍ତି। ସେ ୧୯୭୪ ସେପ୍ଟେମ୍ବର ମାସରେ କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟକୁ ପି.ଏଚ୍.ଡ଼ି. ଡିଗ୍ରୀ ପାଇଁ ଯାତ୍ରା କରିବେ। ଏ ସମ୍ବାଦ ମୋତେ ଅଧିକ ସକ୍ରିୟ କରିଦେଲା। ଅବଶ୍ୟ ଏ କ୍ଷେତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ଗୌରବମୟ ଇତିହାସ ରହିଥିଲା। ୧୯୫୮ ମସିହାରେ ରାଜ୍ୟଗୋଷ୍ଠୀ ବୃତ୍ତି ଆରମ୍ଭ ହେବା ଦିନଠାରୁ ଅତୀତରେ ସାତଜଣ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରିଥିଲେ। ପ୍ରଥମ ଅଧ୍ୟାପକ ରୂପେ ରବୀନ୍ଦ୍ର ନାଥ କାନୁନ୍‌ଗୋ କାନାଡ଼ା ଯିବା ପରେ ଅର୍ଜ୍ଜୁନ ପୁରୋହିତ (ଅଷ୍ଟ୍ରେଲିଆ), ପୂର୍ଣ୍ଣିମା ମାଥୁର (କାନାଡ଼ା) ଏବଂ ସରୋଜ କୁମାର ମିଶ୍ର ସମେତ ସାତ ଜଣ (୧୯୭୫ ପୂର୍ବରୁ)ଏ ସୌଭାଗ୍ୟର ଅଧିକାରୀ ହୋଇଥିଲେ। ଅଷ୍ଟମ ସଫଳତା ହାସଲ ପାଇଁ ମୋ ପ୍ରାଣ ବ୍ୟାକୁଳ ହୋଇ ଉଠିଲା।

ସେହି ସମୟରେ ମୁଁ ଆଉ ଏକ ଛକ ରାସ୍ତାରେ ଠିଆ ହେଲି। ୧୯୭୪ ମସିହାରେ ଆୟୋଜିତ ଓଡ଼ିଶା ସେବା ଆୟୋଗଙ୍କର ଅଧ୍ୟାପକ ସାକ୍ଷାତ୍‌କାର ସରିଥିଲା ଏବଂ ଦୁଇଟି ବ୍ୟାଚ୍ (୧୯୭୨ ର ଏମ୍.ଏ. ଏବଂ ୧୯୭୩ର ଏମ୍.ଏ.) ପାଇଁ ଅନୁଷ୍ଠିତ ମୌଖିକ ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଥିବାର ସୂଚନା ପାଇଲି। ଔପଚାରିକ ଚିଠିଟି ଆସିବା ପରେ ମୋର ଅସ୍ଥାୟୀ (Ad hoc) ଚାକିରି ସ୍ଥାୟୀ ରୂପ ନେବ। କିନ୍ତୁ ସରକାରୀ କଲେଜରେ ଅଧ୍ୟାପକ ରହିବା ପାଇଁ ମୋର ଦ୍ୱିଧା ଥିଲା। ମୁଁ ଶୁଣିଥିଲି ଯେ ସରକାରୀ କଲେଜରୁ କୌଣସି ଅଧ୍ୟାପକ ଉଚ୍ଚ ଶିକ୍ଷା ପାଇଁ ଆବେଦନ କଲେ ତାହା ପ୍ରଥମେ ଅଧ୍ୟକ୍ଷ ଅନୁମୋଦନ କରନ୍ତି। ତାହାପରେ ଉଚ୍ଚଶିକ୍ଷା ନିର୍ଦ୍ଦେଶକ, ଉଚ୍ଚଶିକ୍ଷା ବିଭାଗର ସେକ୍ରେଟାରୀ ଏବଂ ଶେଷରେ ମନ୍ତ୍ରୀ ମହୋଦୟଙ୍କ ଅନୁମୋଦନ ପାଇଲା ପରେ ହିଁ ଆବେଦନ ପତ୍ରଟି ବୃତ୍ତି ମନୋନୟନ ସଂସ୍ଥାକୁ ପଠାଯାଏ। ଏପରି ପ୍ରକ୍ରିୟା ସମୟସାପେକ୍ଷ ହୋଇଥିବାରୁ ପ୍ରକୃତ ମନୋନୟନ ପୂର୍ବରୁ ଆବେଦନ ପତ୍ର ପହଞ୍ଚିବାରେ ଆଶଙ୍କା ରହିଥାଏ।

ଏପରି ଆଶଙ୍କାର ମୂଳୋତ୍ପାଟନ ପାଇଁ ମୁଁ ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ ରୂପେ ଆବେଦନ କରିବାକୁ ଚାହୁଁଥିଲି। ଦୈବାତ୍ ସେପରି ଏକ ଆଶାର କିରଣ ଉଦ୍‌ଭାସିତ ହେଲା। ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ ଅଜିତ୍ କୁମାର ମହାନ୍ତି ସ୍ୱକୀୟ ଉଦ୍ୟମ ଫଳରେ କାନାଡ଼ାର ଆଲବର୍ଟା ବିଶ୍ୱବିଦ୍ୟାଳୟକୁ ଉଚ୍ଚତର ଶିକ୍ଷା ପାଇଁ ଯାତ୍ରା କଲେ। ତାଙ୍କର ଅଧ୍ୟାପକ ପଦବୀ ଖାଲି ପଡ଼ିଲା ଏବଂ ଏଥିପାଇଁ ବିଜ୍ଞାପନ ବାହାରିଲା। ତାଙ୍କର ଦୁଇତିନିବର୍ଷର ଛୁଟି ପାଇଁ ଏହା ଏକ ଅସ୍ଥାୟୀ ଅଧ୍ୟାପକ ପଦ। ତଥାପି ମୁଁ ଆବେଦନ କରିବା ପାଇଁ ସ୍ଥିର କଲି। ମୁଁ ଜାଣିଥିଲି ଯେ ଏହା ଏକ ଅସ୍ଥାୟୀ ପଦ ହେଲେ ମଧ୍ୟ ସେ ସମୟରେ ଗୋଟିଏ ସହାୟକ ନିୟମ ଥିଲା। ନିୟମ ଥିଲା ଯେ ଜଣେ ଅଧ୍ୟାପକ ଅସ୍ଥାୟୀ ପଦରେ ଥିବା ସମୟରେ ସରକାର କିମ୍ବା ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ କୌଣସି ସ୍ଥାୟୀପଦ ସୃଷ୍ଟି କଲେ ଏହି ଅସ୍ଥାୟୀ ପଦର ବ୍ୟକ୍ତିକୁ ସେହି ସ୍ଥାୟୀ ପଦଟି ମିଳିବ। ତାକୁ ପୁନଶ୍ଚ ମନୋନୟନରେ ସାକ୍ଷାତ୍‌କାରର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ। ଅବଶ୍ୟ କୌଣସି ସ୍ଥାୟୀ ପଦ ସୃଷ୍ଟି ହେବା ପୂର୍ବରୁ ଉଚ୍ଚ ଶିକ୍ଷା ପାଇଁ ଛୁଟିରେ ଯାଇଥିବା ବ୍ୟକ୍ତି ଜଣକ ଫେରି ଆସିଲେ ଅସ୍ଥାୟୀ ବ୍ୟକ୍ତି ଚାକିରି ହରାଇବେ।

ମୁଁ ଆବେଦନ କରିଥିବା ଅସ୍ଥାୟୀ ପଦ ପାଇଁ ମନୋନୀତ ହେଲି। ଗୋଟିଏ ଦିଗରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ସ୍ଥାୟୀ ଚାକିରି ଏବଂ ଅନ୍ୟ ଦିଗରେ ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ଅସ୍ଥାୟୀ ଅଧ୍ୟାପକ ପଦବୀ। ମୋ ମନରେ ବିଶେଷ ଦ୍ୱିଧା ନ ଥିଲା। ଆଗାମୀ ସ୍ୱପ୍ନକୁ ଆଖିରେ ରଖି ୧୯୭୫ ମସିହା ଜାନୁଆରୀ

୨୧ ତାରିଖରେ ମୁଁ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ଯୋଗ ଦେଲି। କ୍ଷତିର ସମ୍ଭାବନା ଥିବା ସତ୍ତ୍ୱେ ମୋର ଏ ନିଷ୍ପତ୍ତି ଠିକ୍ ଥିଲା ବୋଲି ପରେ ପ୍ରମାଣିତ ହେଲା।

ମନସ୍ତତ୍ତ୍ୱ ବିଭାଗରେ ଯୋଗ ଦେବା ପରେ ଦେଖିଲି ଯେ ମୋର ଛାତ୍ରାବସ୍ଥାରେ ଯେଉଁମାନେ ଅଧ୍ୟାପନା କରୁଥିଲେ ପ୍ରାୟତଃ ସେମାନେ ଅଛନ୍ତି। କେବଳ ଅଜିତ୍ କୁମାର ମହାନ୍ତି ଉଚ୍ଚଶିକ୍ଷା ପାଇଁ କାନାଡ଼ା ଯାଇଛନ୍ତି ଏବଂ ମୁଁ ଯୋଗଦେବାର ପ୍ରାୟ ଏକ ବର୍ଷ ପୂର୍ବରୁ ମୋର ବନ୍ଧୁ ଓ ସହପାଠୀ ଉଦୟ ନାଥ ଦାଶ ଯୋଗ ଦେଇଛନ୍ତି। ମୁଁ ପୂର୍ବ ପରି କଟକରୁ ଯିବା ଆସିବା ଆରମ୍ଭ କଲି। ପୂର୍ବରୁ ସୂଚନା ଦେଇଥିବା ପାଶ୍ ବସ୍‌ରେ ଆସି ସାଢ଼େ ଚାରିଟା ସମୟରେ ଫେରି ଯାଉଥିଲି। ଅଧ୍ୟାପକ ହିସାବରେ ମୁଁ ମୁଖ୍ୟତଃ ସାମାଜିକ ମନୋବିଜ୍ଞାନ ପଢ଼ାଉଥିଲି। ପିଲାଙ୍କ ସହିତ ସୁସମ୍ପର୍କ ରହିଥିଲା। ବିଶେଷତଃ ରେଭେନ୍ସାର ଯେଉଁ ଛାତ୍ରମାନଙ୍କୁ ମୁଁ ଅନର୍ସ ଶ୍ରେଣୀର ପ୍ରଥମ ଓ ଦ୍ୱିତୀୟ ବର୍ଷରେ ପଢ଼ାଇ ମୋର ଅଧ୍ୟାପକ ଜୀବନ ଆରମ୍ଭ କରିଥିଲି, ସେମାନେ ପ୍ରାୟ ସମସ୍ତେ ମୋ ଆସିବାର ଚାରିପାଞ୍ଚ ଦିନ ପରେ ବାଣୀବିହାର ଆସିଲେ। ମୁଁ ସେମାନଙ୍କୁ ପଞ୍ଚମ ବାର୍ଷିକ ଛାତ୍ରଛାତ୍ରୀ ରୂପେ ପଢ଼ାଇବାର ସୁଯୋଗ ପାଇଲି। ସେମାନଙ୍କ ମଧ୍ୟରୁ କେତେକ ଛାତ୍ର ଖୁବ୍ ବୁଦ୍ଧିଦୀପ୍ତ ଓ ସୃଜନଶୀଳ ଥିଲେ। ସେମାନଙ୍କୁ ପଢ଼ାଇବାରେ ମୋତେ ଆତ୍ମତୃପ୍ତି ମିଳୁଥିଲା।

ଅକ୍ଟୋବର ମାସର ପୂଜାଛୁଟି। ଉଦୟ ଓ ମୁଁ ପିଲାମାନଙ୍କୁ ନେଇ ଶିକ୍ଷା ଭ୍ରମଣରେ ବାହାରିଲୁ। ମୁଁ ନିଜେ ଛାତ୍ର ଥିବା ଅବସ୍ଥାରେ ଏପରି ଭ୍ରମଣରେ ଯଥେଷ୍ଟ ଆନନ୍ଦ ଉପଭୋଗ କରିଥିଲି। ସୁତରାଂ ଏଥର ଅଧିକ ଉପଭୋଗ୍ୟ ହେବ ବୋଲି ଆଶା ରଖିଲି। କିଛି ନୂଆ ସ୍ଥାନ ବୁଲିବାର ଯୋଜନା ରଖିଲୁ। ସେଥିମଧ୍ୟରୁ ଗୋଆ ଅନ୍ୟତମ। ଆମେ ଦୁହେଁ ଆଗ୍ରହରେ ପିଲାଙ୍କ ଦାୟିତ୍ୱ ନେଇ ବାହାରୁଥିଲେ ମଧ୍ୟ ମନରେ ଗୋଟିଏ ପ୍ରଶ୍ନ ଥିଲା। ଉଦୟ ମଧ୍ୟ ମୋ ପରି ରାଜ୍ୟଗୋଷ୍ଠୀ ବୃତ୍ତିର ଆବେଦନ ପାଇଁ ଆଗ୍ରହୀ ଥିଲା। ବୃତ୍ତି ପାଇଁ ବିଜ୍ଞାପନ ସାଧାରଣତଃ ଅକ୍ଟୋବର ନଭେମ୍ବରରେ ମୁଖ୍ୟ ସମ୍ବାଦପତ୍ରରେ ପ୍ରକାଶ ପାଇଥାଏ। ଅକ୍ଟୋବରରେ ଆମେ ବିଭିନ୍ନ ସ୍ଥାନ ଭ୍ରମଣ କରିବାର ସମ୍ଭାବନା ଦୃଷ୍ଟିରୁ ସମ୍ବାଦପତ୍ରର ବିଜ୍ଞାପନ ଦୃଷ୍ଟିଗୋଚର ନ ହୋଇପାରେ। ତେବେ ଠିକ୍ କଲୁ ଯେ ଭ୍ରମଣରେ ଯିବା ପୂର୍ବରୁ ଭାରତ ସରକାରଙ୍କ ଶିକ୍ଷା ବିଭାଗର ବୃତ୍ତି ପ୍ରଦାନ ଅଫିସରଙ୍କୁ ଫର୍ମ ପାଇଁ ଚିଠିଟିଏ ଲେଖିଦେବୁ। ଦୁହେଁ ତାହାହିଁ କଲୁ। ଗୋଆ ଓ ତ୍ରିଭେନ୍ଦ୍ରମ ସମେତ ଦାକ୍ଷିଣାତ୍ୟର ଅନ୍ୟ କେତୋଟି ସହର ବୁଲିଲୁ। ଯାତ୍ରା ଖୁବ୍ ଉପଭୋଗ୍ୟ ଥିଲା। ସୌଭାଗ୍ୟବଶତଃ ଭ୍ରମଣରୁ ଫେରିଆସି ଦେଖିଲୁ ଯେ ରାଜ୍ୟଗୋଷ୍ଠୀ ବୃତ୍ତି ଆବେଦନର ଫର୍ମ ଆମ ଠିକଣାରେ ଆସି ଯାଇଛି। ଖୁସୀ ଲାଗିଲା।

ଜାନୁଆରୀ ୨୦ ତାରିଖ ଦିନ ଦିଲ୍ଲୀରେ ଶିକ୍ଷା ବିଭାଗର ଶାସ୍ତ୍ରୀ ଭବନରେ ସାକ୍ଷାତ୍‌କାର। ଦୁହେଁ ପ୍ରସ୍ତୁତ ହେଲୁ। ସଙ୍ଗରେ ଅଧିକ କିଛି କାଗଜପତ୍ର ନେଇଯିବା ପାଇଁ ନିର୍ଦ୍ଦେଶ ଥାଏ। ଆମ ବିଭାଗର ଜଣେ ପୂର୍ବତନ ଛାତ୍ର ଦୀପକ ରାୟ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲା। ସେ କୌଣସିମତେ ଆମ ଯିବାର ସୂଚନା ପାଇ ତାଙ୍କର (JNU) ହଷ୍ଟେଲରେ ରହିବାର ବନ୍ଦୋବସ୍ତ କଲା। ସେ ନିଜେ ଆସି ଆମକୁ ନିଜାମୁଦ୍ଦିନ୍ ଷ୍ଟେସନରୁ ନେଇଗଲା। ଗୋଟିଏ ମାତ୍ର ଟ୍ରେନ: ଉତ୍କଳ ଏକ୍ସପ୍ରେସ୍। ଆମେ ନିଜାମୁଦ୍ଦିନ୍ ଷ୍ଟେସନ୍‌ରେ ଅପରାହ୍ନ ୩ଟାରେ ପହଞ୍ଚିଲୁ। ଦୀପକ୍ ଏବଂ ତା'ର ଜଣେ ବନ୍ଧୁ ଟୁଟୁ ଆସିଥିଲେ। ସେମାନଙ୍କ ସହିତ ହଷ୍ଟେଲ୍ ଗଲୁ। ଜାନୁଆରୀ ମାସର ଦିଲ୍ଲୀ ଶୀତ। ମାତ୍ର ଦୀପକ ସୁବ୍ୟବସ୍ଥା କରିଥିଲା। ସେମାନେ ଆମକୁ ପୂରା କୋଠରୀଟି ଛାଡ଼ିଦେଇ ନିଜ ପାଇଁ ଅନ୍ୟତ୍ର ଶୋଇବାର ବ୍ୟବସ୍ଥା କଲେ।

ଦିନ ଏଗାରଟାରେ ସାକ୍ଷାତ୍‌କାର ଥିବାରୁ ସକାଳ ନ'ଟାରୁ ବାହାରିଲୁ। ଅଳ୍ପ କିଛି ଟାଇପ୍ କରିବାର ଥିଲା। ଦୀପକ ଆମ୍ଭମାନଙ୍କୁ ସୂଚନା ଦେଲା ଯେ ଲାଇବ୍ରେରୀର ଗୋଟିଏ ଅଂଶରେ ଗୋଟିଏ ଟାଇପ୍ ମେସିନ୍ ରଖା ଯାଇଛି। ଲାଇବ୍ରେରୀ ମଧ୍ୟକୁ ପ୍ରବେଶ କରିଥିବା ବ୍ୟକ୍ତିମାନେ ଇଚ୍ଛା କଲେ ଏହାର ଉପଯୋଗ କରିପାରିବେ। ଆମେ ଦୁହେଁ ଭିତରକୁ ଗଲୁ। ସୁରକ୍ଷାକର୍ମୀ ହାତରେ ପ୍ରବେଶ ଦ୍ୱାର ପାଖରେ ଆମର ବ୍ୟକ୍ତିଗତ ବହି ଇତ୍ୟାଦି ହାତକୁ ବଢ଼ାଇଦେଲୁ। ପୁନଶ୍ଚ ଫେରିବା ସମୟରେ ଆମର ଜିନିଷ ତାଙ୍କଠାରୁ ନେଇ ଆସିଲୁ।

ଠିକ୍ ସମୟରେ ଶାସ୍ତ୍ରୀ ଭବନରେ ପହଞ୍ଚିଲୁ। ସାକ୍ଷାତ୍‌କାରର ଅନୁଭୂତି ବିଚିତ୍ର ଧରଣର। ଆମେ ଆଶା କରିଥିଲୁ ଯେ ଆମେ ସେଠାରେ ସେହିଦିନ ଯେଉଁ ସବୁ କାଗଜପତ୍ର ଦେଲୁ, ସେଥିରେ ଆମର ପ୍ରସ୍ତାବିତ ଗବେଷଣା ଯୋଜନାର ଲେଖାଟି ରହିଥିଲା। ଆମେ କାନାଡ଼ାର ବିଶ୍ୱବିଦ୍ୟାଳୟରେ କ'ଣ କରିବୁ, ସେ ବିଷୟରେ ଦୁଇତିନି ପୃଷ୍ଠାର ଲେଖା ସଙ୍ଗରେ ନେଇଯିବା ପାଇଁ ନିର୍ଦ୍ଦେଶ ଥିଲା। ମାତ୍ର ସେଠାରେ ପହଞ୍ଚି ଅନୁଭବ କଲି ଯେ ମନସ୍ତତ୍ତ୍ୱ ପାଇଁ ସ୍ୱତନ୍ତ୍ର ମନୋନୟନ କମିଟି ନାହିଁ। ପ୍ରକୋଷ୍ଠ ମଧ୍ୟରେ ବିଚାରକ ଚେୟାର୍‌ଗୁଡ଼ିକରେ ପ୍ରାୟ ଦଶବାର ଜଣ ବସିଛନ୍ତି। ସମ୍ଭବତଃ ସେମାନଙ୍କ ମଧ୍ୟରେ ଜଣେ ଦୁଇଜଣ ମନସ୍ତତ୍ତ୍ୱ ବିଶେଷଜ୍ଞ ଥାଇପାରନ୍ତି। ମାତ୍ର ବିଭିନ୍ନ ଶୃଙ୍ଖଳାର ଲୋକ ଅଛନ୍ତି। ଭାରତସ୍ଥିତ-କାନାଡ଼ା ଦୂତାବାସର ଜଣେ ଦୁଇଜଣ ଶ୍ୱେତାଙ୍ଗ ଅଫିସର୍ ମଧ୍ୟ ଅଛନ୍ତି। ପ୍ରଶ୍ନ ସବୁ ଅବାନ୍ତର ନୁହେଁ କିନ୍ତୁ ବହୁବିଧ। ଗୋଟିଏ ପ୍ରଶ୍ନର ଉତ୍ତରରୁ ଅନ୍ୟ ପ୍ରଶ୍ନଟି ଜନ୍ମ ନେଉଛି, ତାହା ଅନ୍ୟ ଜଣେ ପଚାରୁଛନ୍ତି। ପ୍ରଶ୍ନଗୁଡ଼ିକ ଗଭୀରତାଧର୍ମୀ ନ ହୋଇ ବିସ୍ତୃତଧର୍ମୀ ହୋଇ

ଉଠିଛି। ଏପରି ଏକ ଆବାହାଓ୍ୱା ମୋ ପ୍ରସ୍ତୁତିର ସହାୟକ ହେବା ପରି ମନେହେଲା। ଗଭୀର ଆତ୍ମତୃପ୍ତି ନେଇ ମୁଁ ସାକ୍ଷାତକାର ପ୍ରକୋଷ୍ଠରୁ ବାହାରିଲି। ଉଦୟ ଅନୁରୂପ ଆତ୍ମସନ୍ତୋଷ ଲାଭ କରିନାହିଁ ବୋଲି ମୋତେ ଜଣାଇଲା।

ସନ୍ଧ୍ୟାରେ ଛାତ୍ରାବାସକୁ ଫେରିଲୁ। କିଛି ସମୟ ଜବାହାର୍‌ଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟର ପରିସର ଓ ତା'ର ଆଖପାଖ ଅଞ୍ଚଳରେ ବୁଲିଲୁ। ଜାନୁଆରୀ ମାସର ଶୀତର ପ୍ରକୋପ ଯୋଗୁ ବେଶୀ ଦୂରକୁ ଗଲୁନାହିଁ। ରାତିରେ ଶୋଇବା ସମୟରେ ଉଦୟ ଗୋଟେ ପ୍ରଶ୍ନ ପଚାରିଲା। ପଚାରିଲା: "ତୁମେ ସକାଳେ ଲାଇବ୍ରେରୀରୁ ବାହାରିବା ସମୟରେ ସୁରକ୍ଷାକର୍ମୀଙ୍କୁ କ'ଣ କହିଲ?" ମୁଁ ଠିକ୍ ମନେପକାଇ ପାରିଲି ନାହିଁ। ଉଦୟ କହିଲା- "ତୁମେ ଭିତରକୁ ପ୍ରବେଶ କରିବା ସମୟରେ ଯେଉଁ ବହିପତ୍ର ଛାଡ଼ି ଦେଇ ଯାଇଥିଲ, ସେଗୁଡ଼ିକ ତୁମ ହାତକୁ ବଢ଼ାଇ ଦେଇ ସୁରକ୍ଷାକର୍ମୀ କହିଲେ- "ଏ କ୍ୟା ଆପ୍‌କା କିତାବ ହୈ?" ତୁମେ କହିଲ- 'ହାଁ, ଆପ୍‌କା କିତାବ ହୈ?" ଉଦୟ ଏ ବାକ୍ୟଟି ସମାପ୍ତ କଲା ମାତ୍ରେ ଆମେ ଦୁହେଁ ହସିବାକୁ ଆରମ୍ଭ କଲୁ। ସାକ୍ଷାତ୍‌କାର ଚାପରେ ସେ ପର୍ଯ୍ୟନ୍ତ ହସିପାରି ନ ଥିଲୁ। ଆମେ ଦୀର୍ଘ ସମୟ ହସି ହସି କେତେବେଳେ ଶୋଇପଡ଼ିଛୁ।

ତା'ପରଦିନ ଦୀପକ୍ ଓ ଟୁଟୁ ଆମ ଆଗ୍ରା ଯାତ୍ରାର ବନ୍ଦୋବସ୍ତ କରିଥିଲେ। ଆମେ ତାଜମହଲ ଓ ଅନ୍ୟ ସବୁ ଦର୍ଶନୀୟ ସ୍ଥାନ ଦେଖି ଫେରିଲୁ। ତା'ପରଦିନ ଉତ୍କଳ ଏକ୍ସପ୍ରେସ୍‌ରେ ଓଡ଼ିଶା ଫେରିଲୁ। ଫେରିବା ସମୟରେ ଆମ ସହିତ JNUର ଆନ୍ତର୍ଜାତିକ ଶିକ୍ଷା କେନ୍ଦ୍ରରେ ଅଧ୍ୟୟନରତ ରାଜନୀତିବିଜ୍ଞାନର ଜୟକୃଷ୍ଣ ବରାଳ ଫେରୁଥିଲେ। ଭଲ ଭଲ କଥାର ଚର୍ଚ୍ଚା ମଧ୍ୟରେ ସମୟ କଟିଗଲା।

❖

(୨୧)

# ଜୀବନର ଯତିପାତ:ବିବାହ

ଜୀବନର ସବୁଠାରୁ ଅଧିକ ସୁଖାନୁଭୂତି ଦେଇଥିବା ଦୁଇ ଦୁଇଟି ଘଟଣା ଖୁବ୍ ଅଳ୍ପ ବ୍ୟବଧାନରେ ପ୍ରାୟ ଏକ ସମୟରେ ଘଟିବ ବୋଲି କଳ୍ପନା କରି ନ ଥିଲି। ଗୋଟିଏ ଘଟଣା ହେଉଛି ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରିବାର ସଫଳତାର ସମ୍ବାଦ ଏବଂ ଅନ୍ୟଟି ହେଉଛି ମୋର ବିବାହ।

**ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ**

ମୁଁ ଜାଣିନାହିଁ କାହିଁକି କେଜାଣି ମଇ ମାସର ୮ ତାରିଖଟି ମୋ ଜୀବନରେ କେତେଥର ଶୁଭ ସକାଳର ଭୂମିକା ନେଇଛି। ମୋର ହାଇସ୍କୁଲ ଶେଷ ପରୀକ୍ଷାଫଳ ନେଇ ମୁଁ ବିଶେଷ ଖୁସୀ ନ ଥିଲେ ମଧ୍ୟ ସେ ଦିନ୍ ଫଳାଫଳ ଘୋଷିତ ହୋଇଥିଲା। ଘୋଷଣାର ପୂର୍ବ ମୁହୂର୍ତ୍ତରେ ରେଡ୍‌କ୍ରସର ପ୍ରତିଷ୍ଠାତା ହେନେରୀ ଡୁନାଣ୍ଟଙ୍କ ଜନ୍ମ ଦିବସରେ ଅନୁଷ୍ଠିତ ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ପୁରସ୍କାର ଲାଭ କରି ଖୁସି ମନାଇବାର ମୁହୂର୍ତ୍ତ ମଧ୍ୟ ଜୁଟିଥିଲା।

ସେ ଦିନଟି ମଧ୍ୟ ମଇ ମାସ ୮ ତାରିଖ। ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରୀଷ୍ମ ଅବକାଶ ପୂର୍ବରୁ ଶେଷ କାର୍ଯ୍ୟରତ ଦିବସ। ଶିକ୍ଷାବର୍ଷର ଶେଷ ଦିନଟି ହୋଇଥିବାରୁ ମନୋବିଜ୍ଞାନ ବିଭାଗରେ ପ୍ରାୟ ସବୁ କର୍ମଚାରୀ ଥାଆନ୍ତି। ଛୁଟି ପୂର୍ବରୁ ବିଭାଗୀୟ ବାକିଥା କାମ ଶେଷ କରିବାକୁ ହେବ। ସୁତରାଂ ସମସ୍ତେ କର୍ମତତ୍ପର ଥାଆନ୍ତି। ପ୍ରାୟ ଦିନ ଏଗାରଟା ବେଳକୁ ପିଅନ ଆସି ମୋତେ ଗୋଟିଏ ଚିଠି ଦେଇଗଲା। ଗୋଟିଏ ଅନ୍ତର୍ଦେଶୀୟ ଇନ୍‌ଲାଣ୍ଡ ଚିଠି। ଉପରୁ ଦେଖିଲି କାନାଡାରୁ ଆସିଛି। ମୋର ହୃଦ୍‌ସ୍ପନ୍ଦନ ବଢ଼ିଗଲା। ଜାଣିଲି ରାଜ୍ୟଗୋଷ୍ଠୀ ବୃତ୍ତି ସମ୍ବନ୍ଧୀୟ ଚିଠି। ଖୋଲିବା ସମୟରେ ହାତରେ କିଛି ପରିମାଣରେ ଅସ୍ଥିରତା ଥାଏ।

ଖୋଲିଲା ମାତ୍ରେ ପ୍ରଥମ ବାକ୍ୟଟି ପଢ଼ି ଆନନ୍ଦରେ ଚମକି ଉଠିଲି। ପ୍ରଥମ ବାକ୍ୟରେ ଲେଖାଥିଲା ଯେ ଭାରତରେ ଥିବା ରାଜ୍ୟଗୋଷ୍ଠୀ ମନୋନୟନ କମିଟି (ଭାରତ ସରକାରଙ୍କ ଶିକ୍ଷାବିଭାଗ) ଗତ ଫେବୃଆରୀ ମାସରେ ରାଜ୍ୟଗୋଷ୍ଠୀ ପାଇଁ ମୋର ନାମ ସୁପାରିଶ କରିଛନ୍ତି। ଅଗଷ୍ଟ ଶେଷ ସପ୍ତାହରେ ମୋତେ କାନାଡ଼ା ଯାତ୍ରା କରିବାକୁ ହେବ। ପ୍ରସ୍ତୁତି ପାଇଁ ମୋତେ ପଦକ୍ଷେପ ଗ୍ରହଣ କରିବା ପାଇଁ ନିର୍ଦ୍ଦେଶ ଦିଆ ଯାଇଛି।

ସେ ସମୟରେ ରାଜ୍ୟଗୋଷ୍ଠୀ ଯୋଜନାରେ ଉଚ୍ଚଶିକ୍ଷା ପାଇଁ କାନାଡାକୁ ଯିବା ଉଦ୍ଦେଶ୍ୟରେ ଭିସାର ପ୍ରୟୋଜନ ନ ଥିଲା। କେବଳ କାନାଡ଼ାର ହାଇକମିଶନ ଅଫିସ୍‌ର ଏକ ଚିଠି ଆବଶ୍ୟକ। ସେଥିପାଇଁ କଲିକତା ଯାଇ ହାଇକମିଶନ ଅନୁମୋଦିତ ସ୍ୱାସ୍ଥ୍ୟ କେନ୍ଦ୍ରରେ ସ୍ୱାସ୍ଥ୍ୟର ପରୀକ୍ଷା କରାଇ ନେବାକୁ ହେବ। କୌଣସି ସ୍ୱାସ୍ଥ୍ୟଗତ ସମସ୍ୟା ନାହିଁ ବୋଲି ସୂଚନା ପାଇଲା ପରେ ହାଇକମିଶନ ଅଫିସ୍ ଅନୁମୋଦନ ପତ୍ର ପଠାଇବେ। ଏଥିପାଇଁ ଦିଲ୍ଲୀସ୍ଥିତ କାନାଡ଼ାର ହାଇକମିଶନ ଅଫିସ୍ ସହିତ ଯୋଗାଯୋଗ କରିବା ପାଇଁ ଚିଠିରେ ନିର୍ଦ୍ଦେଶ ଥିଲା।

ସମ୍ବାଦଟି ପାଇ ମୁଁ ଏତେ ଖୁସି ହୋଇଗଲି ଯେ ମୁଁ ପ୍ରଥମେ କାହାକୁ ଏ ସୁଖବର ଜଣାଇବି ତାହା ସ୍ଥିର କରିପାରିଲି ନାହିଁ। ଫୋନ୍ କିମ୍ବା ମୋବାଇଲ୍ ଫୋନ୍‌ର ସମ୍ଭାବନା ନ ଥିଲା। ମୁଁ ମୋ କୋଠରୀରେ ଏକୁଟିଆ ଥିଲି। ସମ୍ଭବତଃ ସେତେବେଳେ ବିଭାଗୀୟ ମୁଖ୍ୟ (ଯେ କି ପ୍ରତିଦିନ କଟକରୁ ଯିବା ଆସିବା କରନ୍ତି ତାଙ୍କର ଘରୋଇ କାର୍‌ରେ) ଆସି ନ ଥିଲେ। ପ୍ରଥମେ ମୁଁ ମୋର ପରମ ସମ୍ମାନୀୟ ପ୍ରଫେସର୍ ବିଶ୍ୱବନ୍ଧୁ ଚାଟାର୍ଜୀଙ୍କ କୋଠରୀକୁ ଯାଇ ନମ୍ର ଭାବରେ ଖବରଟି ଦେଲି। ଉଲ୍ଲସିତ ହୋଇ ସେ ମୋତେ ଅଭିନନ୍ଦନ ଜଣାଇଲେ। ଭାରତରେ ପ୍ରସ୍ତୁତିମୂଳକ କାର୍ଯ୍ୟ (ପାସ୍‌ପୋର୍ଟ କରାଇବା, ଅନୁମୋଦିତ ସ୍ଥାନରେ ସ୍ୱାସ୍ଥ୍ୟ ପରୀକ୍ଷା କରାଇବା ଇତ୍ୟାଦି) ସମୟସାପେକ୍ଷ ହୋଇଥିବାରୁ କାର୍ଯ୍ୟ ସବୁ ତୁରନ୍ତ ଆରମ୍ଭ କରିବାକୁ ଦୃଢ଼ ସ୍ୱରରେ କହିଲେ। ପ୍ରସ୍ତୁତି ପାଇଁ ତିନିମାସ ଅଧିକ ସମୟ ନୁହେଁ ବୋଲି ଦୋହରାଇଲେ।

ଅନ୍ୟମାନଙ୍କର ଅବଗତି ନିମିତ୍ତ ପ୍ରଫେସର୍ ବିଶ୍ୱଭୂଷଣ ଚାଟାର୍ଜୀଙ୍କ ସମ୍ପର୍କରେ ସୂଚନା ଦେବା ପାଇଁ ମୁଁ ଆଗ୍ରହୀ। ସେ ଜ୍ଞାନ ଦୃଷ୍ଟିରୁ ଯେପରି ବିଶାଳ ବ୍ୟକ୍ତିତ୍ୱ ଦୃଷ୍ଟିରୁ ମଧ୍ୟ ସେପରି ବିସ୍ତୃତ। ପ୍ରଫେସର ଚାଟାର୍ଜୀ ବାରାଣାସୀର ଅଧିବାସୀ। ପ୍ରଥମେ ସେ ବାରାଣାସୀର ଗାନ୍ଧୀ ଅନୁଧ୍ୟାନ କେନ୍ଦ୍ରରେ ପ୍ରଫେସର ଥିଲେ। ଯୁକ୍ତରାଷ୍ଟ୍ର ଆମେରିକାର ଇଲିନୟ ବିଶ୍ୱବିଦ୍ୟାଳୟରୁ ତାଙ୍କର ଡକ୍ଟରେଟ୍ ଉପାଧି ହାସଲ କରିଥିଲେ। ବନାରସର ଏହି ଗବେଷଣାଧର୍ମୀ ଶିକ୍ଷାକେନ୍ଦ୍ରରେ ସେ ବରିଷ୍ଠ ପ୍ରଫେସର୍ ରୂପେ କାର୍ଯ୍ୟ କରୁଥିଲେ ମଧ୍ୟ ଏହି କେନ୍ଦ୍ରର ଗବେଷଣା ସମ୍ବଳ (ଆର୍ଥିକ ଅନୁଦାନ) କ୍ରମଶଃ ସଙ୍କୁଚିତ ହୋଇପଡ଼ିଲା। ସେ ଅନ୍ୟତ୍ର ଆସିବାକୁ ଚାହିଁଲେ। ଜୀବନର ପରିଣତ ବୟସରେ (ପ୍ରାୟ ସମ୍ଭବତଃ ୧୯୭୫ ମସିହାରେ) ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ରୂପେ ଯୋଗଦାନ କଲେ। ଆମ୍ଭମାନଙ୍କର ପରମ ସୌଭାଗ୍ୟ ଯେ ତାଙ୍କ ଭଳି ପ୍ରଖ୍ୟାତ ଶିକ୍ଷକ ଓ ଗବେଷକଙ୍କର ସଂସର୍ଗ ଲାଭ କଲୁ। ବ୍ୟକ୍ତିଗତ ସ୍ତରରେ ମୁଁ ତାଙ୍କ ବାଣୀବିହାର ବାସଭବନକୁ ଯାଇ ଇଂରାଜୀ ଓ ବଙ୍ଗଳା

ସାହିତ୍ୟ ସମ୍ପର୍କରେ ଆଲୋଚନା କରୁଥିଲି। ଅବଶ୍ୟ ସଂସର୍ଗର ଅବଧି ବିସ୍ତୃତ ନ ଥିଲା। ମୁଁ କାନାଡ଼ା ଯିବାର ମାତ୍ର ଗୋଟିଏ ବର୍ଷ ପୂର୍ବରୁ ସେ ଉତ୍କଳ ଆସିଥିଲେ। ପୁଣି ମୁଁ ୧୯୮୧ରେ କାନାଡ଼ାରୁ ଫେରିବାର ମାତ୍ର ଦୁଇବର୍ଷ ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କଲେ। ଅବସର ଗ୍ରହଣ ପରେ ଅଳ୍ପ କିଛି ବର୍ଷ ପାଇଁ ଆଇଜଲ୍‌ର କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଦାୟିତ୍ୱ ନିର୍ବାହ କରିଥିଲେ। ସେଠାରେ ଅଚାନକ ଭାବରେ ହୃଦ୍‌ଘାତରେ ତାଙ୍କର ଦେହାନ୍ତ ଘଟିଲା। ତାଙ୍କର ବିୟୋଗ ମୋର ବ୍ୟକ୍ତିଗତ ଓ ପାରିବାରିକ ଜୀବନର ଏକ ବିରାଟ କ୍ଷତ।

ଉତ୍କଳ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ପ୍ରଫେସର ଚାଟାର୍ଜୀ ରହୁଥିବା ପର୍ଯ୍ୟନ୍ତ (କାନାଡ଼ାରୁ ଫେରିବା ପରେ) ମୁଁ ଓ ମୋର ପତ୍ନୀ ତାଙ୍କ ବାସଭବନକୁ ସପ୍ତାହରେ ଅନ୍ତତଃ ଥରେ ଆସୁଥିଲୁ। ଆମର ନବଜନ୍ମିତ କନ୍ୟା ଭୂମିକା ମଧ୍ୟ ଆସୁଥିଲା। ବିମଳ ହାସ୍ୟରସ ସୃଷ୍ଟି କରିବାକୁ ଯାଇ 'ଭୂମିକା' ନାମଟି ଟିକେ ଭାରୀ ହୋଇଗଲା ଭଳି ମନ୍ତବ୍ୟ ଦେଉଥିଲେ। ତାଙ୍କ କଥାରେ ଯେପରି ବୌଦ୍ଧିକତା ଥିଲା ସେପରି ମିଷ୍ଟତା, ସାମାଜିକତା ଓ ହାସ୍ୟ ରସିକତା ମଧ୍ୟ ରହିଥିଲା। ସେ ବାଣୀବିହାର ଛାଡ଼ିବା ବେଳେ ଆମେ କିଛି ପରିମାଣରେ ଅଭାବବୋଧ ଅନୁଭବ କଲୁ।

ପ୍ରଫେସର ଚାଟାର୍ଜୀଙ୍କ କୋଠରୀରୁ ବାହାରି ମୁଁ, ମୋର ବନ୍ଧୁ ଓ ସହକର୍ମୀ ଉଦୟକୁ ଜଣାଇଲି। ଆମେ ଦୁହେଁ ଏକାଠି ସାକ୍ଷାତକାର ପାଇଁ ଦିଲ୍ଲୀ ଯାଉଥିଲୁ। ଉଦୟର ମଧ୍ୟ ପ୍ରତ୍ୟାଶା ଥିଲା। ମୁଁ ସମବେଦନା ଜଣାଇଲି। ତା'ପରେ ମୋର ଶିକ୍ଷକ ଶିକ୍ଷୟିତ୍ରୀ ସରୋଜ ବାବୁ, ପ୍ରଧାନ ବାବୁ, କସ୍ତୁରୀ ଅପା, ଶାନ୍ତି ଅପାଙ୍କୁ ଜଣାଇବା ପରେ ଅନ୍ୟ ସବୁ ସହକର୍ମୀ ଓ କର୍ମଚାରୀମାନଙ୍କୁ ଜଣାଇଲି। ସମସ୍ତଙ୍କର ଅଭିନନ୍ଦନ ଗ୍ରହଣ କଲି।

ମୁଁ ପାଖ୍ ବସ୍‌ରେ କଟକରୁ ଆସେ ଏବଂ ସେହି ବସ୍‌ରେ ସାଢ଼େ ଚାରିଟାରେ ଫେରିଥାଏ। ସେ ଦିନଟି ମୋ ପାଇଁ ଏକ ସ୍ୱତନ୍ତ୍ର ଦିନ। ମୁଁ ଫେରନ୍ତା ବସ୍‌ରେ ମୋର ନିତ୍ୟନୈମିତ୍ତିକ ଗୌରୀଶଙ୍କର ପାର୍କ ଷ୍ଟପେଜ୍ ପର୍ଯ୍ୟନ୍ତ ନ ଯାଇ ଖପୁରିଆ (ମଧୁପାଟଣା) ଷ୍ଟପେଜ୍‌ରେ ଓହ୍ଲାଇ ପଡ଼ିଲି। ଉଦ୍ଦେଶ୍ୟ ଥିଲା ଏକ ଏବଂ ଲକ୍ଷ୍ୟ ଥିଲା ଗୋଟିଏ। ଉଦ୍ଦେଶ୍ୟ ଥିଲା ମୋ ଜୀବନ-କେନ୍ଦ୍ରର ଖୁବ୍ ନିକଟ ହୋଇ ଆସିଥିବା ଏବଂ ମୋର ବିବାହ ସ୍ଥିର ହୋଇ ଯାଇଥିବା ବ୍ୟକ୍ତି ରୀତା(ଅଞ୍ଜୁ) ଦତ୍ତକୁ ଖବରଟି ଜଣାଇବା ପାଇଁ।

ଓହ୍ଲାଇ ପଡ଼ି ରିକ୍ସାରେ ବସିବା ମାତ୍ରେ ମୋର ବ୍ୟଗ୍ରତା ବାଧା ପାଇଲା। ମଇ ମାସର କାଳବୈଶାଖୀର ଝଡ଼। ପ୍ରବଳ ବର୍ଷା ସହିତ ବିଜୁଳି ଓ ଘଡ଼ଘଡ଼ି। ଆଗେଇବାର ସମ୍ଭାବନା ନ ଥିଲା। ବାଧ୍ୟ ହୋଇ ଗୋଟିଏ ପ୍ରାଥମିକ ବିଦ୍ୟାଳୟର

ପିଣ୍ଡାରେ ଠିଆହେଲି। ରିକ୍ସାକୁ ଅପେକ୍ଷା କରିବାକୁ କହିଲି। ସମୟ କିନ୍ତୁ ନ ଥାଏ। ଦୀର୍ଘ ସମୟର ବର୍ଷା, ମୁଁ ଉପାୟହୀନ। କୌଣସି ମତେ ବର୍ଷ କମିବା ପରେ ମୁଁ ମୋ ଜୀବନର ନିକଟତମ ବ୍ୟକ୍ତି ଅଞ୍ଜୁ ପାଖରେ ବାର୍ତ୍ତାଟି ପହଞ୍ଚାଇ ପାରିଥିଲି।

## ବିବାହର ଶୁଭଲଗ୍ନ

ସବୁ ସଫଳତା ଓ ପ୍ରାପ୍ତି ବିନା ବାଧାରେ ଆସି ନଥାଏ। ମୋର ବିବାହ ମଧ୍ଯ ସେହିପରି ଏକ ପ୍ରାପ୍ତି ଓ ସଫଳତା। ମୋର ସ୍ନାତକ ଶିକ୍ଷା ସମୟରେ ହିଁ ଅଞ୍ଜୁ ସହିତ ମୋର ପ୍ରଥମ ପରିଚୟ ଘଟିଥିଲା। ମୋର ସ୍ନାତକୋତ୍ତର ଶିକ୍ଷା ସମୟରେ ଏହା ଗଭୀର ହେଲା ଏବଂ ମୁଁ ବାଣୀବିହାରରେ ଅଧ୍ୟାପକ ବୃତ୍ତି ଆରମ୍ଭ କରିବା ପରେ ବିବାହ ଲାଗି ନିଷ୍ପତ୍ତି ନେଇଥିଲୁ। ଦୁଇ ପରିବାରର ଲୋକମାନଙ୍କୁ ବିଧିବଦ୍ଧ ଭାବେ ଜଣାଇବା ପୂର୍ବରୁ ସେମାନେ ପରୋକ୍ଷରେ ସୂଚନା ପାଇଲେ।

ଦୁଇଟିଯାକ ପରିବାର ସ୍ନେହଶୀଳ ଅଥଚ ରକ୍ଷଣଶୀଳ ମଧ୍ୟ। ମୁଁ ଓଡ଼ିଆ ବୈଶ୍ୟ ପରିବାରର ସନ୍ତାନ, ସେ ପ୍ରବାସୀ ବଙ୍ଗଭାଷୀ କାୟସ୍ଥ କନ୍ୟା। ଏପରି ଭିନ୍ନତାକୁ ଗ୍ରହଣ କରିନେବା ଲାଗି ଯେଉଁ ମାନସିକତା ଆବଶ୍ୟକ, ସେଥିରେ ଅଭାବ ଥିଲା। ସୁତରାଂ କେବେ କ'ଣ କରାଯିବ ତାହା ନେଇ କିଛିଦିନ ଅସ୍ଥିରତା ଲାଗି ରହିଲା। କେତେକ ବିଶ୍ୱାସ କରୁଥିଲେ ଯେ ଚାପର ବଶବର୍ତ୍ତୀ ହୋଇ ଆମେ ଦୁଇଜଣ ମତ ପରିବର୍ତ୍ତନ କରିବୁ। ମାତ୍ର ଦିନକୁ ଦିନ ଏପରି ସମ୍ଭାବନା କ୍ଷୀଣ ହେବାକୁ ଲାଗିଲା। ପ୍ରତିକୂଳ ସ୍ରୋତ ତୁଳନାରେ ଅନୁକୂଳ ବତାସ ବଢ଼ିବାର ମୁଁ ଲକ୍ଷ୍ୟ କଲି।

୧୯୭୬ ମସିହା ମାର୍ଚ୍ଚ ମାସର ଏ ଶୁଭ ସକାଳରେ ମୋତେ ଜଣେ ଶୁଭେଚ୍ଛୁ ଖବର ଦେଲେ ଯେ ଅଞ୍ଜୁଙ୍କ ପରିବାରର ଲୋକମାନେ ବିବାହ ଦେବା ପାଇଁ ସମ୍ମତ ହୋଇଛନ୍ତି। ପ୍ରକୃତରେ ଅଚଳ ଅବସ୍ଥାକୁ ଦୂର କରି ଆମ ଦୁଇଜଣଙ୍କର ବୈବାହିକ ବନ୍ଧନକୁ ବାସ୍ତବ ରୂପ ଦେବା ପାଇଁ ଅଞ୍ଜୁର ମଝିଆ ମାମୁ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ।

ଅଞ୍ଜୁର ମଝିଆ ମାମୁ ହେଉଛନ୍ତି ଶ୍ରୀ କୃଷ୍ଣକୁମାର ବସୁ। କଟକର ବକ୍ସିବଜାରରୁ ହାଓ୍ୱାଡ଼ା ମୋଟରସ୍ ସାମନାରେ ତାଙ୍କର ବିରାଟ ପ୍ରାସାଦ: ମହାଶ୍ରମଣ। ସେ ଆଡ୍‌ଭୋକେଟ୍ ଓ ବିତ୍ତଶାଳୀ। ବିରାଟ ଜମିଦାର। ଅଞ୍ଜୁର ସାନମାମୁଁ ତାଙ୍କ ପାଖରେ ଆମ ସମ୍ପର୍କର ସୂଚନା ଦେବା ପରେ ପତିପତ୍ନୀ ଦୁହେଁ ପ୍ରକୃତ ସତ୍ୟାସତ୍ୟର ଅନୁଧ୍ୟାନ କଲେ। ତାଙ୍କର ଦୁଇ ସୁଯୋଗ୍ୟ ସନ୍ତାନ ହେଉଛନ୍ତି ଦୀପକ୍ ଓ ତାପସ। ମଝିଆ ମାମୁଁଙ୍କ ନିର୍ଦ୍ଦେଶରେ ଦୀପକ୍- ବାବୁ ମୋ ସହିତ ସଂଯୋଗ ସ୍ଥାପନ କଲେ। ଜଣେ ଦାୟିତ୍ୱସମ୍ପନ୍ନ ଅଭିଭାବକ ରୂପେ ସେ ମୋର ଉଚ୍ଚ କର୍ତ୍ତୃପକ୍ଷ ପ୍ରଫେସର୍ ରାଧାନାଥ ରଥଙ୍କଠାରୁ ମୋ ସମ୍ପର୍କରେ ପ୍ରାଥମିକ ତଥ୍ୟ ସଂଗ୍ରହ କଲେ। ଅଳ୍ପଦିନ ପରେ ସେ ମୋତେ କଟକ କ୍ଲବକୁ ଡାକି ଚା'ପାନ ସମୟରେ କଥାବାର୍ତ୍ତା କଲେ।

ମୁଁ ନିଷ୍କପଟ ଭାବରେ ତାଙ୍କୁ ସବୁ କଥା ଜଣାଇଲି। ମୁଁ ରାଜ୍ୟ ଗୋଷ୍ଠୀ ବୃତ୍ତି ପାଇଁ ଜାନୁଆରୀ ମାସରେ ଭାରତ ସରକାରଙ୍କ ଶିକ୍ଷା ବିଭାଗରେ ସାକ୍ଷାତକାର ଦେଇଛି। ଯେ କୌଣସି ମୁହୂର୍ତ୍ତରେ ସଫଳତାର ବାର୍ତ୍ତା ଆସିପାରେ। ଏପରି ଖବର ଆସିବା ସଙ୍ଗେ ସଙ୍ଗେ ଅଳ୍ପଦିନ ମଧ୍ୟରେ ଆମର ବିବାହ ଅନୁଷ୍ଠିତ ହେବା ଉଚିତ୍। ମୁଁ ସପତ୍ନୀକ କାନାଡ଼ା ଯିବା ପାଇଁ ସ୍ଥିର କରିଛି-ଏ କଥା ଜଣାଇଲି। ମୋର ଯାହା ବୃତ୍ତି ମିଳିବ, ସେଥିରେ ପରିବାର ପାଇଁ କୌଣସି ଚାପ ନାହିଁ। ବିମାନ ଯାତ୍ରାର ସମସ୍ତ ଖର୍ଚ୍ଚ ମଧ୍ୟ ମୋ ପାଇଁ ମିଳିଯିବ। କେବଳ ପତ୍ନୀ ପାଇଁ ଏକ-ତୃତୀୟାଂଶ ଦେବାକୁ ପଡ଼ିବ। ଏତିକି ମାତ୍ର ଆର୍ଥିକ ଚାପ। ଆୟୋଜନଟି ଶୀଘ୍ର କରିବା ପାଇଁ ମୁଁ ଦୀପକ ବାବୁଙ୍କୁ ଅନୁରୋଧ କଲି। ମୋର ଅନୁମାନ ଯେ ସେ ମୋର ବକ୍ତବ୍ୟ ଠିକ୍ ଭାବରେ ଅଞ୍ଜୁର ମଝିଆ ମାମୁ ଓ ମାଇଁଙ୍କୁ ଜଣାଇଥିବେ।

ମଇ ୮ ତାରିଖରେ ରାଜ୍ୟଗୋଷ୍ଠୀ ବୃତ୍ତିର ସଫଳତା ଖବର ପାଇବା ପରେ ଅଞ୍ଜୁ ଓ ଆମ ଘରେ ସମସ୍ତଙ୍କୁ ଜଣାଇଲି। ପରଦିନ କୌଣସି ମତେ ଦୀପକ ବାବୁଙ୍କ କାନରେ ଏ କଥାଟି ପକାଇଦେଲି। ଆଶା କରୁଥିଲି ଏପରି ଅଚାନକ ଖବର ସେମାନଙ୍କ ପ୍ରସ୍ତୁତି ପର୍ବର ଗତିକୁ ଖୁବ୍ ଗତିଶୀଳ କରିବ। ତାହାହିଁ ହେଲା। ସମ୍ପୃକ୍ତ ପରିବାର (ଅଞ୍ଜୁର ଭାଇଭାଉଜ, ମାମୁଘର ଏବଂ ଆମ ଘର) ମଧ୍ୟରେ ଘନଘଟା ସଂଯୋଗ ଓ ଭାବର ଆଦାନପ୍ରଦାନ ଚାଲିଲା। ମଇ ୨୫ ତାରିଖରେ ବିବାହ ସମ୍ପନ୍ନ ହେବ ଏବଂ ଏହା ମାମୁଙ୍କ ବିରାଟ ପ୍ରାସାଦରେ ଅନୁଷ୍ଠିତ ହେବ ବୋଲି ସମ୍ମତି ପ୍ରକାଶ ପାଇଲା।

ମଇ ୨୫ ତାରିଖଟି ମୋ ପାଇଁ କେବଳ ଅବିସ୍ମରଣୀୟ ନୁହେଁ ଅକଳ୍ପନୀୟ ଆନନ୍ଦର ମୁହୂର୍ତ୍ତ। ପୂର୍ବର ବାଦପ୍ରତିବାଦ ସତ୍ତ୍ୱେ ଦୁଇଟି ପରିବାର ଏକାଠି ହୋଇଥିଲେ। କେବଳ ଆମର କାଠଗଡ଼ା ସାହି ଘରଟି ସୁସଜ୍ଜିତ (ଯାହା ଉତ୍ସବରେ କରାଯାଏ) ହୋଇ ନଥିଲା। କିନ୍ତୁ ମୋର ତିନି ପିଇସୀ (ମୋର ନିଜ ପିଇସୀ ଓ ତାଙ୍କର ଦୁଇଜଣ ଯା') ବର ବିଦାୟ ସମୟରେ ଆଶୀର୍ବାଦ ଦେଇଥିଲେ। ଗୋଟିଏ ଗ୍ଲାସରେ କ୍ଷୀର ପିଇବାକୁ ଦେଇଥିଲେ। ସାଙ୍ଗରେ ମଝି ପିଇସୀଙ୍କ ପୁଅ 'ବାବୁ' (ବିରାଜ) ମାର୍କୁଣ୍ଡି ହିସାବରେ ମୋ ସହିତ ବିବାହ ସ୍ଥଳକୁ ଯାଇଥିଲା। ବଳରାମ ଭାଇ ବରକର୍ତ୍ତା ରୂପେ ଉପସ୍ଥିତ ରହିଥିଲେ। କୃତଜ୍ଞତାର ରଜ୍ଜୁରେ ମୁଁ ଚିରଦିନ ପାଇଁ ବନ୍ଦୀ ହୋଇଗଲି।

ଶ୍ରୀ କୃଷ୍ଣକୁମାର ବସୁଙ୍କ ବିରାଟ ସୁଦୃଶ୍ୟ ପ୍ରାସାଦ "ମହାଶ୍ରମଣ"ରେ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥିଲା। ବିବାହର ସମସ୍ତ ବିଧିବିଧାନ ବଙ୍ଗୀୟ ରୀତିରେ ପାଳିତ ହୋଇଥିଲା। ମୋର ପରିବାରର ସଭ୍ୟମାନଙ୍କ ବ୍ୟତୀତ ମୋର ଶିକ୍ଷକ ଓ

ବନ୍ଧୁମାନେ ଉପସ୍ଥିତ ଥିଲେ। ଅଞ୍ଜୁର ଆତ୍ମୀୟସ୍ୱଜନ ଓ ବାନ୍ଧବୀମାନେ ମଧ୍ୟ ଯୋଗ ଦେଇଥିଲେ। ମାମୁ ମାଇଁଙ୍କ ଉତ୍ସାହ ଏବଂ ଦୀପକ ଓ ତାପସ ବାବୁଙ୍କ ଅକ୍ଳାନ୍ତ ପରିଶ୍ରମରେ ଉତ୍ସବଟି ବେଶ୍ ଶୋଭନୀୟ ହୋଇଥିଲା। ସେମାନଙ୍କ କିଶୋର କିଶୋରୀ ପିଲାମାନେ ମଧ୍ୟ ଅନ୍ୟମାନଙ୍କୁ ଆନନ୍ଦ ଦେବା ପାଇଁ ଯଥୋଚିତ ବ୍ୟବସ୍ଥା କରିଥିଲେ। ମଇ ମାସର ରୌଦ୍ର ତାପ ସତ୍ତ୍ୱେ ଚାରିଟା ପାଞ୍ଚଟା ବେଳେ ଅସରାଏ ବର୍ଷା ହୋଇଗଲା। ସନ୍ଧ୍ୟା ସମୟରେ ଆକାଶ ମେଘହୀନ ଥିଲା। କିଛିଟା ଶୀତଳତା ଥିଲା।

ତା'ପର ଦିନ ଜ୍ଞାତି କୁଟୁମ୍ବଙ୍କ ପାଇଁ ଏକ ପ୍ରୀତିଭୋଜନର ଆୟୋଜନ କରାଯାଇଥିଲା। ଆମେ ଦୁଇଜଣ ଅନ୍ୟମାନଙ୍କ ସହ ଖାଦ୍ୟ ଗ୍ରହଣ କଲୁ। ସେଦିନ ସନ୍ଧ୍ୟାରେ ଆମେ ଭୁବନେଶ୍ୱର, ସହିଦନଗରକୁ ଚାଲିଆସିଲୁ। ସେଠାରେ ଆମ ଦାମ୍ପତ୍ୟ ଜୀବନର ଶୁଭାରମ୍ଭ ହେଲା।

❖

(୨୨)

# ରାଜ୍ୟଗୋଷ୍ଠୀ ବୃତ୍ତି ଓ କାନାଡ଼ା ଯାତ୍ରା

ରାଜ୍ୟଗୋଷ୍ଠୀ ବୃତ୍ତି ଲାଭର ସମ୍ବାଦ ପାଇବା ଦିନଟି ଉତ୍କଳ ବିଶ୍ୱବିଦ୍ୟାଳୟର ଶିକ୍ଷା ବର୍ଷର ଶେଷ କାର୍ଯ୍ୟ ଦିବସ। ମୁଁ ମୋର ବନ୍ଧୁ, ସହଯୋଗୀ ଓ ବିଭାଗୀୟ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ମୋର ଆନନ୍ଦ ବାଣ୍ଟି ପାରିଥିଲେ ମଧ ମୋର ପ୍ରିୟ ଛାତ୍ରଛାତ୍ରୀମାନଙ୍କୁ ସମଷ୍ଟିଗତ ଭାବେ ଜଣାଇ ପାରି ନ ଥିଲି। ସେ ଦିନ ଉପସ୍ଥାନ ସଂଖ୍ୟା ଖୁବ୍ କମ୍ ଥିଲା। ତଥାପି ବିଭାଗୀୟ ବାରଣ୍ଡାରେ ଏ ଖବରଟି ଯେଉଁ ଛାତ୍ରଛାତ୍ରୀମାନଙ୍କ କାନରେ ପଡ଼ିଥିଲା, ସେମାନେ ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଥିଲେ। ପରଦିନଠାରୁ ଗ୍ରୀଷ୍ମାବକାଶ ଆରମ୍ଭ ହୋଇଥିଲେ ମଧ ଶୁଣାଶୁଣି ହୋଇ ପ୍ରାୟ ସମସ୍ତେ ଏ ବିଷୟରେ ଅବଗତ ଥିଲେ।

ମୋର ବିବାହ ଉତ୍ସବ ନେଇ ମୁଁ ପ୍ରତି ଛାତ୍ରଛାତ୍ରୀଙ୍କୁ ବ୍ୟକ୍ତିଗତ ଭାବେ ଆମନ୍ତ୍ରଣ କରିବାର ସୁଯୋଗ ନ ପାଇଲେ ମଧ ବେଶ୍ କିଛି ଛାତ୍ରଛାତ୍ରୀ ମୋର ସହିଦନଗର ଭଡ଼ା ଘରକୁ ଆସି ମୋତେ ସାହାଯ୍ୟ କରିଥିଲେ। ବିଶେଷତଃ ଯେଉଁ ଛାତ୍ରଛାତ୍ରୀମାନଙ୍କୁ ମୁଁ ମୋ କର୍ମମୟ ଜୀବନର ଆରମ୍ଭରେ ରେଭେନ୍ସା କଲେଜର ଅନର୍ସ ଶ୍ରେଣୀରେ ପଢ଼ାଇବା ଆରମ୍ଭ କରିଥିଲି ଏବଂ ପୁନଶ୍ଚ ସ୍ନାତକୋତ୍ତର ଶ୍ରେଣୀରେ ବାଣୀବିହାରରେ ପଢ଼ାଇଲି ସେମାନେ ପ୍ରାୟ ସମସ୍ତେ ଆସିଥିଲେ। ସେମାନଙ୍କ ମଧ୍ୟରୁ କେତେକ ଛାତ୍ରଛାତ୍ରୀ କଟକ ମଧ ଯାଇଥିଲେ। ଆମ ବିଭାଗରେ କାର୍ଯ୍ୟ କରୁଥିବା ମୋର ବନ୍ଧୁ ଓ ସହପାଠୀ ରବୀନ୍ଦ୍ର ନାଥ ସାହୁ ଓ ଜାନକୀ ବଲ୍ଲଭ ସ୍ୱାଇଁ ଏ ଦିଗରେ ସମନ୍ୱୟ ରକ୍ଷାର ବ୍ୟବସ୍ଥା କରିଥିଲେ।

ପ୍ରଫେସର୍ ଚାର୍ଟାର୍ଜୀଙ୍କ ଚେତାବନୀ ସତ୍ତ୍ୱେ କାନାଡ଼ା ଯାତ୍ରାର ପ୍ରସ୍ତୁତି ପାଇଁ ମୁଁ ବିଶେଷ ଅଗ୍ରଗତି କରିପାରିଲି ନାହିଁ। ବିବାହ ପୂର୍ବରୁ ମଇମାସର ରୌଦ୍ରତାପ ଓ ପରିଶ୍ରମ ଫଳରେ ଜୁନ୍ ମାସରେ ଅସୁସ୍ଥତାର ଶରବ୍ୟ ହେଲି। ଟାଇଫଏଡ୍ ମଧ କଷ୍ଟ ଦେଲା। କେବଳ ଜୁନ୍ ମାସର ଶେଷ ଭାଗ ବେଳକୁ ଟ୍ରାଭେଲ୍ ଏଜେଣ୍ଟଙ୍କ ସହାୟତାରେ ଆମେ ଦୁଇଜଣ ପାସ୍‌ପୋର୍ଟ ପାଇଁ ଆବେଦନ କଲୁ। ସେତେବେଳେ ଓଡ଼ିଶାରେ ପାସପୋର୍ଟ ଅଫିସ୍ ନ ଥିଲା। ଏହା ଥିଲା କଲିକତାରେ। ଟ୍ରାଭେଲ୍ ଏଜେଣ୍ଟ ଆମକୁ ଜଣାଇଲେ ଯେ ଆମେ ଏକମାସ ମଧ୍ୟରେ ରେଜେଷ୍ଟ୍ରୀ ଡାକରେ ପାସ୍‌ପୋର୍ଟ ପାଇପାରୁ। ଆବଶ୍ୟକ ହେଲେ ପାସ୍‌ପୋର୍ଟ ଅଫିସର୍ ଆମ୍ଭମାନଙ୍କୁ ବ୍ୟକ୍ତିଗତ ସାକ୍ଷାତକାର ପାଇଁ କଲିକତା ଡକାଇ ପାରନ୍ତି। ସୌଭାଗ୍ୟବଶତଃ ଜୁଲାଇ

ଦ୍ୱିତୀୟ ସପ୍ତାହ ମଧ୍ୟରେ ଆମେ ଦୁଇଜଣ ପାସ୍‌ପୋର୍ଟ ଡାକଯୋଗେ ପାଇଗଲୁ। ଗୋଟିଏ ମୁଣ୍ଡ ବ୍ୟଥା ଦୂର ହେଲା।

ଗ୍ରୀଷ୍ମାବକାଶ ପରେ ଆମ ବିଭାଗଟି ଜୁଲାଇ ୨ କିମ୍ବା ୩ରେ ଖୋଲିଲା। ଛାତ୍ରଛାତ୍ରୀମାନଙ୍କ ସହିତ ଆନନ୍ଦ ବାଣ୍ଟିବାର ସୁଯୋଗ ପାଇଲି। ଔପଚାରିକ ଭାବରେ ବିଦାୟ ସମ୍ବର୍ଦ୍ଧନା ଉତ୍ସବର ଆୟୋଜନ ଡ଼େରି (ଅଗଷ୍ଟରେ) ଥିବାରୁ କେତେକ ଛାତ୍ରଛାତ୍ରୀ ଏକାନ୍ତ ଜିଦ୍ ଧରିଲେ ଆମକୁ ଅନୌପଚାରିକ ରୀତିରେ ବିଦାୟ ଜଣାଇବା ପାଇଁ। ଆମେ ସମ୍ମତ ହେଲୁ। ନନ୍ଦନକାନନ ଗଲୁ। ବଣଭୋଜିର ଆୟୋଜନ କରାଗଲା। ଛାତ୍ରଛାତ୍ରୀମାନଙ୍କର ଆନ୍ତରିକତା ଆମକୁ ସ୍ପର୍ଶ କଲା। ଅଖ୍ତର, ପ୍ରତାପ, ପ୍ରଦୀପ, ବାବୁଲି, ଘନ, କସ୍ତୁରୀ, ପୁଷ୍ପଶ୍ରୀ, ଜ୍ୟୋତି ଏବଂ କବିତା ପ୍ରଭୃତିଙ୍କ ଶ୍ରଦ୍ଧା ଏ ପର୍ଯ୍ୟନ୍ତ ଭୁଲି ନାହିଁ।

କାନାଡ଼ାର କେଉଁ ବିଶ୍ୱବିଦ୍ୟାଳୟକୁ ଗବେଷଣା ପାଇଁ ଯିବି, ତାହା ଏକ ପ୍ରଶ୍ନ। ମୋ ପୂର୍ବରୁ ଡକ୍ଟର ସରୋଜ କୁମାର ମିଶ୍ର ଏଠାରେ ଅଧ୍ୟୟନ କରିଥିବାରୁ ଏବଂ ବର୍ତ୍ତମାନ ଶ୍ରୀକାନ୍ତ ଦାଶ ସେଠାରେ ଅଧ୍ୟୟନରତ ଥିବାରୁ କୁଇନ୍ସ ପାଇଁ ଆଗ୍ରହ ଥିଲା। ସଫଳତାର ଚିଠି ପାଇବା ପରେ ଏହି ବିଶ୍ୱବିଦ୍ୟାଳୟରେ ମୋତେ ସ୍ଥାନିତ କରିବା ପାଇଁ ରାଜ୍ୟଗୋଷ୍ଠୀ ବୃତ୍ତିର୍ କାନାଡ଼ା ସମିତିକୁ ଅନୁରୋଧ କରିବାକୁ ଡକ୍ଟର ମିଶ୍ର ପରାମର୍ଶ ଦେଲେ। ମୁଁ ତାହା ମାନିନେଲି। ଜୁନ୍ ମାସରେ କୁଇନ୍ସ ବିଶ୍ୱବିଦ୍ୟାଳୟରୁ ଚିଠି ଆସିଲା ଯେ ମୋତେ ସେମାନେ ପି.ଏଚ୍.ଡ଼ି. କାର୍ଯ୍ୟକ୍ରମରେ ସ୍ଥାନିତ କରିଛନ୍ତି। ବହୁ କ୍ଷେତ୍ରରେ କାନାଡ଼ା ଓ ଆମେରିକାର ବିଶ୍ୱବିଦ୍ୟାଳୟସବୁ ପ୍ରଥମେ ଏମ୍.ଏ. ପ୍ରୋଗ୍ରାମରେ ସ୍ଥାନିତ କରନ୍ତି ଏବଂ ଗୋଟିଏ ବର୍ଷର ସଫଳତା ପରେ ପି.ଏଚ୍.ଡ଼ି. ସ୍ତରକୁ ନେଇ ଯାଆନ୍ତି। ମୋତେ ସିଧା ସଳଖ ପି.ଏଚ୍.ଡ଼ି.ରେ ସ୍ଥାନିତ କରିଥିବାରୁ ଖୁସୀ ଲାଗିଲା।

ଜୁଲାଇ ମାସର ଦ୍ୱିତୀୟାର୍ଦ୍ଧରେ କାନାଡ଼ା ସରକାରଙ୍କ ଅନୁମୋଦିତ ଡାକ୍ତର ଓ ସ୍ୱାସ୍ଥ୍ୟ କେନ୍ଦ୍ରରେ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ କଲିକତା ଗଲୁ। କାନାଡ଼ା ଯିବା ପୂର୍ବରୁ ଆମେ ଦୁହେଁ ପୂରାପୂରି ରୋଗମୁକ୍ତ ହେବା ଆବଶ୍ୟକ। ଅବଶ୍ୟ କଲିକତା ଯିବା ପୂର୍ବରୁ ସାମାନ୍ୟ ଝଟ୍‌କା ଲାଗିଥିଲା। କାନାଡ଼ା ସରକାରଙ୍କ ନିୟମ ବ୍ୟତୀତ ଭାରତ ସରକାରଙ୍କର ମଧ୍ୟ ନିୟମ ରହିଥିଲା ଯେ ଆମର ସୁସ୍ଥତା ସମ୍ପର୍କରେ ସିଭିଲ୍ ସର୍ଜନଙ୍କର ସାର୍ଟିଫିକେଟ୍ ହାସଲ କରିବୁ ଏବଂ ଏହାକୁ ଭାରତ ସରକାରଙ୍କ ଶିକ୍ଷା ବିଭାଗକୁ ପଠାଇବୁ। ସେହି ପରିପ୍ରେକ୍ଷୀରେ କଟକରେ ଛାତିର "ଏକ୍ସ-ରେ" କରାଗଲା। ଏକ୍ସ-ରେ ରିପୋର୍ଟରେ ଟେକ୍ନୋଲୋଜିଷ୍ଟ କ'ଣ ଲେଖିଲା କେଜାଣି ତାହା ମନରେ ଭୀତି ସଞ୍ଚାର କଲା। ଭୟପୂର୍ଣ୍ଣ ମନରେ ମୁଁ ସନ୍ଧ୍ୟାବେଳେ ସେ

ରିପୋର୍ଟଟି ନେଇ ଛାତିରୋଗ ବିଶେଷଜ୍ଞ ଡାକ୍ତର ଦାଶଙ୍କ ମଙ୍ଗଳାବାଗ୍ କ୍ଲିନିକ୍‌କୁ ଗଲି। ଡାକ୍ତରଙ୍କ ଅମାୟିକ ବ୍ୟବହାର ମୋତେ ମୁଗ୍ଧ କଲା। ମୁଁ ପୂରାପୂରି ସମସ୍ୟାମୁକ୍ତ ବୋଲି ସେ ଜଣାଇଲେ। ସେ ମୋର ସ୍ୱାସ୍ଥ୍ୟ ସମ୍ପର୍କରେ ଗୋଟିଏ ସାର୍ଟିଫିକେଟ୍ ଦେଲେ। ତାହା ଦେଖି ସିଭିଲ୍ ସର୍ଜନଙ୍କ ସାର୍ଟିଫିକେଟ୍ ପାଇବା ଖୁବ୍ ସହଜ ଓ ସ୍ୱାଭାବିକ ଥିଲା।

ବେଶୀ ଭୟ କଟି ଯାଇଥାଏ, ତଥାପି କିଛି ଥାଏ। କଲିକତାରେ ରକ୍ତ ପରୀକ୍ଷା ଏକ୍‌ସ-ରେ ଇତ୍ୟାଦି କରାଗଲା। ମୁଖ୍ୟ ଡାକ୍ତରଙ୍କ ସହାୟକଜଣକ ଓଡ଼ିଆ ଲୋକ, ନାମ ଦାଶରଥି ଦାସ। ଆମେ କିଛି ପରିମାଣରେ ଚକିତ ବିସ୍ମିତ ହେଲୁ। ଦାଶରଥି ବାବୁ ଆମ ସହିତ କଥାବାର୍ତ୍ତା କଲାବେଳେ ଖୁବ୍ ଶାନ୍ତ ସରଳ ଗାଉଁଲି ଲୋକଟିଏ, ମାତ୍ର ଡାକ୍ତରଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ତାଙ୍କର ଇଂରାଜୀ ଭାଷାରୁ ଶୁଦ୍ଧ ଉଚ୍ଚାରଣ, ବୁଦ୍ଧିମତା ଓ ଉନ୍ନତ କାର୍ଯ୍ୟକୌଶଳ ଦେଖି ଅବାକ୍ ଲାଗିଲା। ବିନମ୍ରତା ଯେ ଦକ୍ଷତାର ଏକ ସୂଚକ ଏହା ଉପଲବ୍ଧ ହେଲା। ଆମର ଭୟ କଟିଗଲା। ଆମେ ସ୍ୱାଭାବିକ୍ ଭାବରେ ସକାରାତ୍ମକ ମନୋଭାବ ନେଇ ଭୁବନେଶ୍ୱର ଫେରିଲୁ।

ଅଗଷ୍ଟ ମାସର ମଧ୍ୟଭାଗ ପର୍ଯ୍ୟନ୍ତ ସବୁ କିଛି ଚୁପ୍‌ଚାପ୍। ଭବିଷ୍ୟତ ଭାଗ୍ୟ ବିଧାତା ଆମ ପାଇଁ କ'ଣ ବିଧାନ କରୁଛନ୍ତି, ସେ ବିଷୟରେ କୌଣସି ଧାରଣା ନ ଥାଏ। କେବଳ ଅପେକ୍ଷା କରିବା ହିଁ ସାର। ଅଗଷ୍ଟ ୧୫ ପାଖାପାଖି କାନାଡ଼ାରୁ ଚିଠିଟିଏ ଆସିଲା ଯେ ଆମକୁ ଅଗଷ୍ଟ ୩୧ ତାରିଖ ରାତିରେ ବ୍ରିଟିଶ ଏୟାରୱେଜ୍ ଯୋଗେ କଲିକତା ଛାଡ଼ିବାକୁ ହେବ। ଚିଠି ଆସିଲା ଅଥଚ ଏୟାର୍ ଟିକେଟ୍ ନାହିଁ। ଦ୍ୱନ୍ଦ୍ୱରେ ପଡିଲୁ।

୧୯୭୭ ଜାନୁଆରୀରେ ବିଜ୍ଞାନ କଂଗ୍ରେସ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହେବ ଏବଂ ଆମର ବିଭାଗୀୟ ମୁଖ୍ୟ ପ୍ରଫେସର୍ ରଥ ଏହାର ସ୍ଥାନୀୟ ସମ୍ପାଦକ ଦାୟିତ୍ୱରେ ରହିବେ। ଏହି ସୂତ୍ରରେ ଆମ ବିଭାଗର ଉପର ମହଲାରୁ ଶେଷ କୋଠରୀଟିରେ ବିଜ୍ଞାନ କଂଗ୍ରେସର ଅଫିସ୍ ଆରମ୍ଭ ହୋଇଥାଏ। ଗୋଟିଏ ଡାଇରେକ୍ଟ ଟେଲିଫୋନ୍ ଲାଇନ୍ ମଧ୍ୟ ଦିଆ ଯାଇଥାଏ। ବିଭାଗ ପାଇଁ ଏ ଗୋଟିଏ ସୁବର୍ଣ୍ଣ ସୁଯୋଗ। ଉତ୍କଳ ବିଶ୍ୱବିଦ୍ୟାଳୟର ଅନ୍ୟ ସବୁ ଟେଲିଫୋନ୍ PBX ଦ୍ୱାରା ପରିଚାଳିତ। ଏହା ମାଧ୍ୟମରେ ବାହାରକୁ ଫୋନ୍ କରିବା କଷ୍ଟ। ମାତ୍ର ବିଜ୍ଞାନ କଂଗ୍ରେସର ଏହି ସିଧା ସଳଖ ଟେଲିଫୋନ୍ ମାଧ୍ୟମରେ କଲିକତାର ବ୍ରିଟିଶ ଏୟାରୱେଜ୍ ସହିତ ସଂଯୋଗ ସ୍ଥାପନ କଲି। ଜାଣିବାକୁ ପାଇଲି ଯେ ସେମାନେ ମୋର ପ୍ରସ୍ତାବିତ କାନାଡ଼ା ଯାତ୍ରା ସମ୍ପର୍କରେ ଅବଗତ। ମାତ୍ର କାନାଡ଼ା ସରକାର ଆମର ସ୍ୱାସ୍ଥ୍ୟ ରିପୋର୍ଟ ଅନୁମୋଦନ କରି ଚିଠି ପଠାଇଲେ ଆମେ ଟିକେଟ୍ ପାଇ ପାରିବୁ।

ଏପରି ସଂଯୋଗର ମାତ୍ର ଦୁଇ ତିନିଦିନ ପରେ ଟେଲିଗ୍ରାମ୍ ଆସିଲା। କଲିକତାସ୍ଥିତ ବ୍ରିଟିଶ ଏୟାରୱେଜ୍‌ରୁ ଟିକେଟ୍ ସଂଗ୍ରହ କରିବାକୁ ନିର୍ଦ୍ଦେଶ ଥିଲା। ହୃଦ୍‌ସ୍ପନ୍ଦନ ବଢ଼ିଗଲା। ହାତରେ ଆଉ ମାତ୍ର ଦଶଦିନ। ଏଠାର କେତେକ ରୁଟିନ୍ ଦାୟିତ୍ୱ ସାରିବାକୁ ହେବ। କଲିକତାରୁ ଟିକେଟ୍ ସଂଗ୍ରହ କରି ପୁନଶ୍ଚ ଭୁବନେଶ୍ୱର ଫେରିବାର ପ୍ରଶ୍ନ ଉଠୁନାହିଁ। ସ୍ଥିର କରାଗଲା ଯେ ଅଗଷ୍ଟ ୨୩/୨୪ ବେଳକୁ କଲିକତା ଯିବୁ ଏବଂ ସେଠାରୁ ଟିକେଟ୍ ସଂଗ୍ରହ କରି ଅଗଷ୍ଟ ୩୧ ତାରିଖରେ ଭାରତ ଛାଡ଼ିବୁ।

ଏହା ମଧ୍ୟରେ ଦୁଇଟି ବିଶେଷ କାର୍ଯ୍ୟର ଆବଶ୍ୟକତା ଥିଲା। ପ୍ରଥମତଃ ମୋର ଅଧ୍ୟାପକ ପଦବୀ ସେ ପର୍ଯ୍ୟନ୍ତ ସ୍ଥାୟୀ ପଦବୀର ରୂପ ନେଇ ନ ଥିଲା। ସୁତରାଂ ଛୁଟି ପାଇବାରେ କିଛିଟା ଅନିଶ୍ଚିତି ଥିଲା। ବୃତ୍ତି ପାଇବାର ଖବର ପାଇବା ମାତ୍ରେ ମୁଁ ଛୁଟି ପାଇଁ ଆବେଦନ କରିଥିଲି। ମାତ୍ର ବିଶ୍ୱବିଦ୍ୟାଳୟର ଅମଲାତାନ୍ତ୍ରିକ କାରବାର ଦୟନୀୟ। ଅବଶ୍ୟ ଡକ୍ଟର ରଥ ଏ ଦିଗରେ ଚିନ୍ତିତ ନ ହେବା ପାଇଁ ପରାମର୍ଶ ଦେଇଥିଲେ। ରାଜ୍ୟଗୋଷ୍ଠୀ ବୃତ୍ତି ଆମର ବିଭାଗ ଓ ବିଶ୍ୱବିଦ୍ୟାଳୟ ପାଇଁ ଗୌରବର ବିଷୟ ହୋଇଥିବାରୁ ଏ ଦିଗରେ ଅସୁବିଧା ଉପୁଜିବ ନାହିଁ ବୋଲି ଆଶ୍ୱାସନା ଦେଇଥିଲେ। ବିଦେଶ ଯାତ୍ରାର ଦିନ ସ୍ଥିର ହେବା ପରେ ମୁଁ ଡକ୍ଟର ରଥଙ୍କୁ ଏ କଥା ଜଣାଇଲି। ସେ ସମୟରେ ହାଇଦ୍ରାବାଦ ଓସ୍‌ମାନିଆ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିର ଅବସରପ୍ରାପ୍ତ ପ୍ରଫେସର ଗୌତମ ମାଥୁର୍ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ। ଦକ୍ଷ ପ୍ରଶାସକର ଖ୍ୟାତି ଥିବା ପ୍ରଫେସର ଶ୍ରୀନିବାସ ସାହୁ ରେଜିଷ୍ଟ୍ରାର୍ ଥିଲେ। ଡକ୍ଟର ରଥ ଏବଂ କୁଳପତି ଓ ରେଜିଷ୍ଟ୍ରାରଙ୍କ ମିଳିତ ଆଲୋଚନା ପରେ ମୋତେ ଅବ୍ୟାହତି ଦେବା ପାଇଁ ଅଗଷ୍ଟ ୨୧/୨୨ ବେଳକୁ ରେଜିଷ୍ଟ୍ରାର୍‌ଙ୍କ ଅଫିସ୍‌ରୁ ଚିଠି ଆସିଲା। ମୋର ଛୁଟିର ରୂପରେଖ ପରେ ନିର୍ଦ୍ଧାରିତ ହେବ ବୋଲି ଚିଠିରେ ଉଲ୍ଲେଖ କରାଯାଇଥିଲା। ମୁଁ ଚିଠି ପାଇବା ମାତ୍ରେ ବିଭାଗୀୟ ଦାୟିତ୍ୱ ହସ୍ତାନ୍ତର କରି ଆଂଶିକ ମୁକ୍ତ ହୋଇଗଲି।

ମୁଣ୍ଡରେ ଆଉ ଗୋଟିଏ ଚାପ ଥିଲା। ରାଜ୍ୟଗୋଷ୍ଠୀ ବୃତ୍ତିର ସର୍ତ୍ତ ଅନୁଯାୟୀ ମୋତେ ବୃତ୍ତି ମିଳିବ। ପତ୍ନୀଙ୍କୁ ମଧ୍ୟ କିଛି ଅର୍ଥ ମିଳିବ। ବିମାନ ଯାତ୍ରାର ଖର୍ଚ୍ଚ ବାବଦକୁ ମୋର ସମସ୍ତ ଖର୍ଚ୍ଚ ମିଳିପାରିବ। ମାତ୍ର ପତ୍ନୀଙ୍କ ବିମାନ ଯାତ୍ରାର ଏକ ତୃତୀୟାଂଶ ମୋତେ ଦେବାକୁ ହେବ। ସେ ସମୟରେ ଭାରତରୁ କାନାଡ଼ାକୁ ବିମାନ ଖର୍ଚ୍ଚ ପ୍ରାୟ ବାର ହଜାର ଟଙ୍କା। ସୁତରାଂ ପତ୍ନୀଙ୍କ ପାଇଁ ପ୍ରାୟ ଚାରିପାଞ୍ଚ ହଜାର ଟଙ୍କା ଯୋଗାଡ଼ କରିବାର ଦାୟିତ୍ୱ ରହିଥାଏ। ବିମାନ ଯାତ୍ରାଟି ଠିକ୍ ବିବାହର ପରେ ପରେ ଘଟୁଥିବାରୁ ଆର୍ଥିକ ଅସୁବିଧା ସ୍ୱାଭାବିକ। ଏପରି ପରିସ୍ଥିତିରେ ବାଧ୍ୟ ହୋଇ

ଅଞ୍ଜୁର ଗହଣାସବୁ ବନ୍ଧକ ହିସାବରେ ଷ୍ଟେଟ୍ ବ୍ୟାଙ୍କ୍‌ରେ ରଖି ସ୍ୱର୍ଣ୍ଣରଣ ନେଲି। ବିବାହର ପରେ ପରେ ପତ୍ନୀଙ୍କ ଗହଣାକୁ ଏପରି କାର୍ଯ୍ୟରେ ଲଗାଇବାରେ ଘୋର ସଙ୍କୋଚ ରହିଥିଲା। ହେଲେ ଉପାୟ ନ ଥିଲା।

ଏବେ ପ୍ରସ୍ତୁତିର ଗାଡ଼ି ବେଗବତୀ ହେବାକୁ ଲାଗିଲା। ଦିନେ ଦୁଇଦିନ ମଧ୍ୟରେ ସବୁ କାର୍ଯ୍ୟ ଶେଷ କରିବାକୁ ହେବ। ମନସ୍ତତ୍ତ୍ୱ ବିଭାଗର ବିଦାୟ ସମ୍ବର୍ଦ୍ଧନାରେ ଭାଗ ନେଲି। ସହିଦନଗରର ଭଡ଼ା ଘରୁ ଜିନିଷ ସବୁର ସୁବ୍ୟବସ୍ଥା କରିବାର ସମୟ ନ ଥିଲା। ମୋର ସାନଭାଇ ଅଚ୍ୟୁତକୁ ଘରର ଗୋଟିଏ ଅଧିକା ଚାବି ଦେଇ ନିର୍ଦ୍ଦେଶ ଦେଲି ଯେ ମୁଁ ଛାଡ଼ିବା ପରେ ସେ ଘରଟି ତନଖି ଦେଖିବ। ଯାହା ରଖିବାର ଦ୍ରବ୍ୟ ତାହା ରଖିବ। ଅନ୍ୟସବୁ ଫୋପାଡ଼ି ଦେଇ ଚାବିଟି ଘର ମାଲିକଙ୍କୁ ଦେଇଦେବ।

ଘର ଛାଡ଼ିବା ପର୍ଯ୍ୟନ୍ତ ବ୍ୟସ୍ତତା ଲାଗି ରହିଥିଲା। ସେ ଦିନ ରାତ୍ରି ଭୋଜନ ପାଇଁ ପଡ଼ୋଶୀ ଶାନ୍ତା ନାନୀ ଆମକୁ ନିମନ୍ତ୍ରଣ କରିଥିଲେ। ତାଙ୍କର ସାନ ଝିଅ ମୋତେ ସାହୁଆ ବାବୁ ବୋଲି ଡାକେ। ସେ ବାରମ୍ବାର ଆସି ଆମକୁ ଖାଇବାକୁ ଯିବା ପାଇଁ ଡାକୁଥାଏ। ଏବେ ମୋତେ ବିଦାୟ ଜଣାଇବା ପାଇଁ ମୋର ବନ୍ଧୁ ସହକର୍ମୀ ଓ କେତେକ ଛାତ୍ରଛାତ୍ରୀ ଉପସ୍ଥିତ ଥିଲେ। ଡକ୍ଟର ସରୋଜ କୁମାର ମିଶ୍ର, ବନମାଳୀ ମହାନ୍ତି ଓ ସୁଧାକର ରଥ ଯିବା ମୁହୂର୍ତ୍ତ ପର୍ଯ୍ୟନ୍ତ ଉପସ୍ଥିତ ଥିଲେ। କାଗଜପତ୍ର ଠିକ୍ ସଜାଡ଼ିବା ଏବଂ ଅନ୍ୟ ସବୁ ଛୋଟକାଟିଆ କାମ ଚାଲିଥିଲା। ରେଳ ଯୋଗେ କଲିକତା ଯିବାର ଯୋଜନା ଥିଲା। ବିଳମ୍ବ ଘଟିବାରୁ ପୁରୀ-ହାଓଡ଼ା ଏକ୍ସପ୍ରେସ୍‌ରେ ନ ଯାଇ ବିଳମ୍ବିତ ପ୍ରହରରେ ଭୁବନେଶ୍ୱର ଷ୍ଟେସନ ଛାଡୁଥିବା ଜଗନ୍ନାଥ ଏକ୍ସପ୍ରେସ୍‌ରେ ଯିବା ପାଇଁ ନିଷ୍ପତ୍ତି ହେଲା। ସେତେବେଳେ ଜଗନ୍ନାଥ ଏକ୍ସପ୍ରେସ୍ କଟକ ନ ଯାଇ ନରାଜ ପଟ ଦେଇ ଚାଲି ଯାଉଥିଲା। ସୁତରାଂ ଆମକୁ ବିଦାୟ ଜଣାଇବାକୁ କଟକ ଷ୍ଟେସନରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ପାଇଁ କ୍ଷମା ପ୍ରାର୍ଥନା ଜଣାଇ ବାର୍ତ୍ତା ପଠାଇଲୁ।

ଆମେ ସମ୍ଭବତଃ ଅଗଷ୍ଟ ୨୪ କିମ୍ବା ୨୫ ତାରିଖ ସକାଳେ କଲିକତାରେ ପହଞ୍ଚିଲୁ। ଆମ ସହିତ ମୋର ଶାଳକ ଶେଖର ଦତ୍ତ (ଅଞ୍ଜୁର ଠିକ୍ ଉପର ଭାଇ) କଲିକତା ଯାଇଥିଲେ। ଆମେ ପୂର୍ବରୁ ଉତ୍କଳ ଭବନରେ ରହିବାର ବ୍ୟବସ୍ଥା କରା ଯାଇଥିଲା। କଲିକତାରେ ପହଞ୍ଚି ଆମେ ସେଠାରେ ବିଶ୍ରାମ ନେଲୁ।

ମୋର ପତ୍ନୀଙ୍କ (ଅଞ୍ଜୁ)ପରିବାର ସମ୍ପର୍କରେ ଏଠାରେ ସଂକ୍ଷିପ୍ତ ସୂଚନା ଦେଉଛି। ଅଞ୍ଜୁର ପିତା ବିଭୂତି ଭୂଷଣ ଦତ୍ତ ଓଡ଼ିଶା ସରକାରଙ୍କ ଇଲେକ୍‌ଟ୍ରିକାଲ ବିଭାଗର ଉଚ୍ଚପଦସ୍ଥ ଅଫିସର୍ ଥିଲେ। ନାଟ୍ୟକଳାରେ ତାଙ୍କର ଅପୂର୍ବ ପାରଦର୍ଶିତା ଥିଲା। ହାସ୍ୟରସ ସୃଷ୍ଟି ପାଇଁ ସେ ଆଶୁ କବି ଥିଲେ। ତତ୍‌କ୍ଷଣାତ୍ ଗୀତ ରଚନା କରି ସେ

ଅନ୍ୟଙ୍କୁ ଆମୋଦିତ ଓ ହର୍ଷ ବିଭୋର କରି ପାରିଥିଲେ। ଖାଦ୍ୟ ପ୍ରତି ତାଙ୍କର ଖୁବ୍ ଦୁର୍ବଳତା ଥିଲା। ଅଞ୍ଜୁଙ୍କୁ ମାତ୍ର ତିନି ବର୍ଷ ହୋଇଥିବା ସମୟରେ ତାଙ୍କର ଦେହାନ୍ତ ଘଟିଥିଲା। ସେତେବେଳେ ମଧୁମେହ ରୋଗର ଚିକିତ୍ସା ପାଇଁ ଇନ୍ସୁଲିନ୍ ମଧ୍ୟ ନ ଥିଲା। ମୋର ଶାଶୂ ଏବଂ ଅଞ୍ଜୁର ମା' ହେଉଛନ୍ତି ଶାନ୍ତିଲତା ଦତ୍ତ। ମୁଁ ତାଙ୍କୁ ମା' ବୋଲି ସମ୍ବୋଧନ କରେ। ସେ ଖୁବ୍ ରୁଚିଶୀଳ ଓ ସଂଗୀତ ପ୍ରିୟ। ସଦା ସର୍ବଦା ପଠନରତ। ଓଡ଼ିଆ ଓ ବଙ୍ଗଳା ଭାଷାର ଅଧିକାଂଶ ଉପନ୍ୟାସ ଓ ଭଲ ବହି ସହିତ ତାଙ୍କର ପରିଚିତି ରହିଛି। ବଂଶାନୁକ୍ରମେ ଅଞ୍ଜୁ ଏପରି ମାନସିକତା ମା'ଙ୍କଠାରୁ ପାଇଛି ବୋଲି ମୋର ମନେହୁଏ।

ଅଞ୍ଜୁର ବଡ଼ ଭାଇ ଶ୍ୟାମଳେନ୍ଦୁ ଦତ୍ତ। ସେ ମୂଳରୁ ଲୌହ ଶିଳ୍ପଭିତ୍ତିକ କାରଖାନା ସହିତ ସମ୍ପୃକ୍ତ। କିଛି ବର୍ଷ ଟାଟାରେ ଚାକିରି କଲାପରେ ବଡ଼ବିଲ ନିକଟସ୍ଥ କଳିଙ୍ଗ ନଗରର କଳିଙ୍ଗ ଆଇରନ୍ ୱାର୍କସ୍‌ରେ ଦୀର୍ଘଦିନ ଧରି ଚାକିରି କରିଥିଲେ। ଦୂରରେ ରହୁଥିବାରୁ ତାଙ୍କ ସହ ସଂଯୋଗ ଅପେକ୍ଷାକୃତ କମ୍ ଥିଲା। ତରୁଣ ବୟସରେ ସେ ଖ୍ୟାତନାମା ଫୁଟବଲ୍ ଖେଳାଳୀ ଥିଲେ। କଳିଙ୍ଗ ଟ୍ୟୁବସ୍ ପରି ଖ୍ୟାତନାମା ଦଳରେ ସେ ଖେଳିଥିଲେ। ଦ୍ୱିତୀୟ ସନ୍ତାନ ଅଶୋକ କୁମାର ଦତ୍ତ। ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଟେଲିଫୋନ୍ ବିଭାଗର ବରିଷ୍ଠ କର୍ମଚାରୀ ଥିଲେ। ତୃତୀୟ ସନ୍ତାନ ଶେଖର ଦତ୍ତ ସେ ଭୁବନେଶ୍ୱରସ୍ଥିତ ଭାରତ ସରକାରଙ୍କ ଜନଗଣନା ବିଭାଗର ବରିଷ୍ଠ କର୍ମଚାରୀ ଥିଲେ। ଅଞ୍ଜୁ ହେଉଛି କନିଷ୍ଠ କନ୍ୟା।

ଅଞ୍ଜୁଙ୍କର ଗ୍ରାମ ହେଉଛି ବାରଦା। କଟକ ପାରାଦୀପ ରୋଡ଼ରେ ଓ.ଏମ୍.ପି. ଛକଠାରୁ ପ୍ରାୟ ୨୦ କିଲୋମିଟର ଦୂରରେ ମହାନଦୀ କୂଳରେ ଏହି ଗ୍ରାମଟିର ଅବସ୍ଥିତି। ପ୍ରାକୃତିକ ଶୋଭା ମନୋରମ। ଏହି ଗ୍ରାମଠାରୁ ଅଳ୍ପ ଦୂରରେ ଅବସ୍ଥିତ ସିର୍ଲୋ ଗ୍ରାମରୁ କଟକ ସହରର ଦୁର୍ଗାପୂଜାର ଉତ୍ପତ୍ତି ଘଟିଥିଲା। ଓଡ଼ିଶାରୁ ବହୁ ନାଟ୍ୟଶିଳ୍ପୀ ଓ ଚିତ୍ରଶିଳ୍ପୀଙ୍କ ଗ୍ରାମ ରୂପେ ସିର୍ଲୋର ଏକ ଖ୍ୟାତି ରହିଛି।

ଅଞ୍ଜୁଙ୍କ ପରିବାରର ସ୍ୱାକ୍ଷର ଅନ୍ୟତ୍ର ପରିଦୃଷ୍ଟ ହୁଏ। ଅଞ୍ଜୁର ଏକମାତ୍ର ପିଇସା ଗୋଲକ ବିହାରୀ ରାୟ (ପୁରୀ) ଓଡ଼ିଶାର ପ୍ରଥମ ଇଞ୍ଜିନିୟର୍ ଏବଂ ପିଇସୀ ପ୍ରମିଳା ରାୟ ବିଖ୍ୟାତ ନାରୀ ନେତ୍ରୀ ଥିଲେ। ତା'ର ଜଣେ ପିତୃବ୍ୟ (କାକା) ବ୍ୟାସକବି ଫକୀର ମୋହନ ସେନାପତିଙ୍କ ନାତୁଣୀଙ୍କୁ (ମୋହିନୀ ମୋହନ ସେନାପତିଙ୍କ କନ୍ୟା) ବିବାହ କରିଥିଲେ।

ଆମ ସହିତ ଶେଖର ଦତ୍ତ କଲିକତା ଆସିଥିଲେ। କଲିକତାରେ ରହୁଥିବା ତାଙ୍କର ଶଳାଙ୍କ (ବାବୁଦା)ସହାୟତାରେ କିଛି କିଣାକିଣି କରିବାର ଯୋଜନା ଥିଲା। ମଝିଆ ଭାଇ ଅଶୋକ କୁମାର ଦତ୍ତ ଦିନେ ଦୁଇଦିନ ପରେ କଲିକତାରେ ପହଞ୍ଚିବେ

ବୋଲି କହିଥିଲେ। ସତକୁ ସତ ଦୁଇଦିନ ପରେ ଅଶୋକ ଦତ୍ତ (ଯାହାଙ୍କୁ ଆମେ ମେସ୍‌ଦା ବୋଲି ଡାକିଥାଉ) ଆସି ପହଞ୍ଚିଲେ। ତାଙ୍କ ସହିତ ମା'। ମା' ଅଞ୍ଜୁକୁ ଥଟ୍ଟା କରି କହିଲେ, "ଦେଖିଲୁ, ତୁ ପ୍ଲେନ୍‌ରେ ବସିବା ପୂର୍ବରୁ ମୁଁ ପ୍ରଥମେ ବସିଗଲି। ପ୍ଲେନ୍‌ରେ ଡରିବୁ ନାହିଁ। ଭୟ କରିବାର କିଛି ନାହିଁ।" ଆମେ ସବୁ ହସି ଉଠିଲୁ। ମା'ଓ ମେସ୍‌ଦା ପ୍ଲେନ୍ ଯୋଗେ ଭୁବନେଶ୍ୱରରୁ କଲିକତା ଆସିଥିଲେ। ବାବୁଦା'ଙ୍କ ସହାୟତାରେ ଆମେ କିଛି କିଣାକିଣି କଲୁ। ବିଶେଷତଃ ଗୋଟାଏ ବାକ୍ସ ଓ ତୂଳା ନିର୍ମିତ ଗଂଜି ଇତ୍ୟାଦି କିଣିବାର ଯୋଜନା ଥିଲା। ଏହା ସହଜରେ ହୋଇଗଲା।

ଆମ ସହିତ ଆଉ କେତେକ ଶୁଭେଚ୍ଛୁ ଏକାଠି ହେବାରୁ ଆମକୁ ହାଲୁକା ଲାଗୁଥାଏ। ଅଞ୍ଜୁଙ୍କ ଗାଁର ଜଣେ କିଶୋର ଚୈତନ୍ୟ କଲିକତାରେ ଚାକିରି କରେ। ସେ ପହଞ୍ଚିଲା। ମୋର ରେଭେନ୍ସା ଜୀବନର ଦୁଇଜଣ ପୂର୍ବତନ ସହକର୍ମୀ ଜୟ ନାରାୟଣ ଦାସ ଓ ଯୋଗେଶ୍ୱର ମହନ୍ତ ମଧ୍ୟ ଉତ୍କଳ ଭବନ ଆସିଥିଲେ। ଆମ ସହିତ ସାକ୍ଷାତ୍ ହେଲା। ଜୟ ନାରାୟଣ ବାବୁ ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କର ଅଫିସର୍ ଏବଂ ଯୋଗେଶ୍ୱର ବାବୁ ଆନ୍ଥ୍ରପୋଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆର ଗବେଷକ ରୂପେ କାର୍ଯ୍ୟ କରୁଥିଲେ। ଏତେଗୁଡ଼ିଏ ଲୋକଙ୍କ ଗହଣରେ ଖୁସୀ ଲାଗୁଥାଏ।

ଦୁଇଦିନ ପୂର୍ବରୁ (ଅଗଷ୍ଟ ୨୯) ବ୍ରିଟିଶ ଏୟାରୱେଜରୁ ଟିକେଟ୍ ସଂଗ୍ରହ କଲୁ। ଅଞ୍ଜୁ ଟିକେଟ୍‌ର ଏକ ତୃତୀୟାଂଶ ପ୍ରାୟ ଚାରି ହଜାର ଟଙ୍କା ପଇଠ କଲି। ସେ ସମୟରେ ବୈଦେଶିକ ମୁଦ୍ରା ଜନିତ ନିୟମ ଖୁବ୍ କଠୋର ଥିଲା। ନିୟମ ଅନୁଯାୟୀ ରିଜର୍ଭ ବ୍ୟାଙ୍କ୍ ଯାଇ ସେଠାରେ P-Form ପୂରଣ କରିବାକୁ ହେଲା। ସେଠାରେ ଆମକୁ ମାତ୍ର ବାର ଡଲାର (ଜଣକୁ ଛ' ଡଲାର) ମିଳିଲା। ଏତେ ଅଳ୍ପ ପଇସା ଧରି ଆମେ ଏତେ ଦୂର ଯିବୁ, ଅଥଚ ବାଟରେ କିଛି ଆବଶ୍ୟକତା ପଡ଼ିଲେ କ'ଣ କରିବୁ ବୋଲି ଚିନ୍ତା କରି ଚାଲିଥିଲୁ। ଅବଶ୍ୟ କାନାଡ଼ାରୁ ଆସିଥିବା ଚିଠିରେ ଲେଖାଥିଲା ଯେ କାନାଡାର ଟରୋଣ୍ଟୋ ବିମାନ ବନ୍ଦରରେ ପହଞ୍ଚିବା ପରେ ଜଣେ ସମାଜ କର୍ମୀ ଆସି ଆମ ହାତରେ ତିରିଶ ଡଲାର୍ ଦେବେ। ସୁତରାଂ ମନରେ କିଛିଟା ସାହସ ଥିଲା।

ଅଗଷ୍ଟ ୩୧ ତାରିଖ ମଧ୍ୟରାତ୍ରରୁ ଆମର ବିଦାୟ ମୁହୂର୍ତ୍ତ। କଲିକତାରେ କିଣା ହୋଇଥିବା ଦୁଇଟି ଛୋଟ ଛୋଟ ବ୍ୟାଗ୍‌ରେ ପୋଷାକପତ୍ର ରହିଥାଏ। ଆମେ ଅଧିକା କିଛି ରଖି ନ ଥିଲୁ। ସଙ୍ଗରେ ମୁଁ ମୋର ଅତିପ୍ରିୟ ଓଡ଼ିଆ ଭାଗବତର ଏକାଦଶ ସ୍କନ୍ଧ ରଖିଥାଏ। ସୁରକ୍ଷା ପାଇବା ପାଇଁ ସେ ବଳୟରେ ପଶିବା ପୂର୍ବରୁ ଆମ ସହିତ

ମା', ମେସ୍‌ଦା, ଦାଦାଭାଇ (ଶେଖର ଦତ୍ତ), ଚୈତନ୍ୟ ଓ ବାବୁଦା ଉପସ୍ଥିତ ଥିଲେ। ମୁଁ ଲକ୍ଷ୍ୟ କଲି ମା' ଅଶ୍ରୁଳ। କିଛି ସମୟ ପାଇଁ ଅଞ୍ଜୁକୁ ଜାବୋଡ଼ି ଧରିଲେ। ମେସ୍‌ଦାଙ୍କ ଆଖି ମଧ୍ୟ ଓଦା। ମୁଁ କିଛି ସମୟ ଅଟକି ରହିଲି। ବ୍ରିଟିଶ ଏୟାର୍‌ୱେଜ୍‌ର କର୍ମଚାରୀମାନେ ଆଗକୁ ଯିବା ପାଇଁ ଆହ୍ୱାନ କରୁଥାଆନ୍ତି। ମୁଁ ଅଞ୍ଜୁର ହାତ ଧରି ଆଗେଇବାକୁ ସୂଚନା ଦେଲି। ଆମେ ଦୁଇଜଣ ନିଜର ବ୍ୟାଗ୍ ଦେଇଦେବା ପରେ ବୋର୍ଡ଼ିଂବ୍ରିଜ୍ ଦିଗରେ ଆଗେଇଗଲୁ। ପଛକୁ ଫେରି ଚାହିଁ ଦେଖିଲୁ ଯେ ମା' ଓ ଅନ୍ୟମାନେ କାଚର ପ୍ରତିବନ୍ଧକୁ ଜୋର୍‌ରେ ସ୍ପର୍ଶ ଦେଇ ଆମକୁ ଚାହିଁଛନ୍ତି। ଅଞ୍ଜୁ ମଧ୍ୟ ଅଶ୍ରୁଭରା। ବ୍ୟୋମଯାନରେ ବସିବାର ନିର୍ଦ୍ଦେଶର ପୁନରାବୃତ୍ତି ଆମ ପାଦର ଗତି ବଢ଼ାଇ ଦେଲା। କଲିକତା ବିମାନ ବନ୍ଦରର ଉଜ୍ଜ୍ୱଳ ଆଲୋକ ଧୀରେ ଧୀରେ ଦୂରେଇଗଲା।

❖

## (୨୩)

# ନୂଆ ଦେଶ, ନୂଆ ପରିବେଶ

କଲିକତା ବିମାନ ବନ୍ଦରରେ ଉପସ୍ଥିତ ଥିବା ଅଳ୍ପକେତେକ ପ୍ରିୟଜନଙ୍କଠାରୁ ବିଦାୟ ନେଇ ସୁରକ୍ଷା ବଳୟ ମଧ୍ୟକୁ ଅଞ୍ଜୁ ଓ ମୁଁ ପ୍ରବେଶ କଲୁ। ଅଞ୍ଜୁ ତା'ର ଦୁଇ ଭାଇ ଓ ମା'ଙ୍କଠାରୁ ବିଦାୟ ନେଉଥିବାରୁ ତା'ର ଆଖି ଅଶ୍ରୁଳ ଥାଏ। ମୋ ଆଖିର ପତା ମଧ୍ୟ ଓଦା ଥିଲା। ସେ ସମୟରେ କାନାଡ଼ା ପରି ବିଦେଶ ଭୂମିକୁ ଯାତ୍ରା କରିବା ଆମର ପ୍ରିୟଜନଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ ହେଲେ ମଧ୍ୟ ବିଦାୟ ମୁହୂର୍ତ୍ତ ସବୁବେଳେ ଦୁଃଖଦ। ତଥାପି ସୁରକ୍ଷା ନିୟମର ସବୁ ପରଖ ସରିବା ପରେ ଆମେ ବ୍ରିଟିଶ୍ ଏୟାରୱେଜ୍‌ର ବିମାନର ବୋର୍ଡ଼ିଂବ୍ରିଜ୍ ଦିଗରେ ଆଗେଇଲୁ।

ସେ ଦିନ ୧୯୭୬ ମସିହାର ଅଗଷ୍ଟ ମାସ ୩୧ ତାରିଖ। ଠିକ୍ ସମୟଟି ହେଉଛି ଅଗଷ୍ଟ ୩୦ ତାରିଖର ମଧ୍ୟରାତ୍ରୀ ପର ହେବାର ୧୫ ମିନିଟ୍। ସୁତରାଂ ଅଗଷ୍ଟ ୩୧ ତାରିଖ। ଶୁଣିଥିଲୁ ଯେ କାନାଡ଼ା ଏକ ପାଶ୍ଚାତ୍ୟ ଦେଶ ହୋଇଥିବାରୁ ସମୟ ମଣ୍ଡଳ ପଛେଇ ରହିଥାଏ। ଭାରତରୁ କାନାଡ଼ାକୁ ଗଲେ ପ୍ରାୟ ୧୦ ଘଣ୍ଟା ଲାଭ କରାଯାଏ। ସୁତରାଂ ଆମେ କଲିକତା ଛାଡ଼ିବା ସମୟରେ ଆମେ ଯାଉଥିବା ସ୍ଥାନର ସ୍ଥାନୀୟ ସମୟ ୩୦ ତାରିଖ ଅପରାହ୍ନ ଦୁଇଟା ହୋଇଥିବ। ଯାହାହେଉ ବିମାନରେ ପ୍ରବେଶ କରି ଜାଣିଲୁ ଯେ ବିମାଟି ହଙ୍ଗ୍‌କଙ୍ଗ୍‌ରୁ ଆସିଛି ଏବଂ ଲଣ୍ଡନ୍ ଯିବ। ଲଣ୍ଡନ୍‌ରେ ଆମକୁ ବିମାନ ବନ୍ଦରରେ ଚାରି ପାଞ୍ଚ ଘଣ୍ଟା ପ୍ରତୀକ୍ଷା କରିବାକୁ ହେବ। ତା'ପରେ ଏୟାର କାନାଡ଼ା ବିମାନରେ ଟରୋଣ୍ଟୋ ଯିବାକୁ ପଡ଼ିବ। ଟରୋଣ୍ଟୋରେ ଗୋଟିଏ ରାତିରେ ବିଶ୍ରାମ ପରେ ପରଦିନ ଦିନ ଦଶଟା ବେଳେ ଟ୍ରେନ୍ ଯୋଗେ କିଙ୍ଗ୍‌ସଟନ୍ ଯିବୁ। ପ୍ରାୟ ଦୁଇଘଣ୍ଟା ଲାଗିବ। କୁଇନ୍ସ ବିଶ୍ୱବିଦ୍ୟାଳୟ କିଙ୍ଗ୍‌ସଟନ୍ ସହରରେ ଅବସ୍ଥିତ।

କିଛି ଉନ୍ମାଦନା କିଛି ସଙ୍କୋଚ ନେଇ ବିମାନରେ ବସିଲୁ। ଭିତରେ ସାମାନ୍ୟ ଶୀତ ଲାଗୁଥାଏ। ଆମ୍ଭମାନଙ୍କୁ କମ୍ବଳ ଦିଆଗଲା। ବିମାନ ପରିଚାରିକାଙ୍କ ଭାଷା ବୁଝିବାରେ ଅସୁବିଧା ହେଉଥାଏ। କାନ ଅଭ୍ୟାସ ହୋଇ ନ ଥାଏ। କଥାଟି ପୁନରାବୃତ୍ତି କରିବାକୁ ପଡୁଥାଏ। ଆମେ କ'ଣ ଖାଇବୁ ଏବଂ କ'ଣ ନ ଖାଇବୁ ତାହା ବହୁ ପୂର୍ବରୁ ଏୟାରୱେଜ୍‌କୁ ଜଣାଇବାର କଥା। ତଥାପି ବିଶେଷ ଅସୁବିଧା ହେଲା ନାହିଁ। ସମ୍ପୃକ୍ତ ପରିଚାରିକାଙ୍କୁ ଜଣାଇବାରୁ ସେ ଗ୍ରହଣୀୟ ଅଂଶ ଆମକୁ ଦେଲେ ଏବଂ ଅନ୍ୟ ସବୁ ଫେରାଇନେଲେ। ଚା', କଫି ଓ ଫଳରସର ଅଭାବ

ନ ଥିଲା। କଲିକତାର ବିଳମ୍ବିତ ରାତିରେ ଖାଇବା ପରେ ନିଜ ନିଜ ସିଟ୍‌ରେ ଶୋଇ ପଡ଼ିଲୁ। ଆକାଶର କାହିଁ କେତେ ଉଚ୍ଚରେ ଦ୍ରୁତଗତିରେ ବିମାନଟି ଗତି କରୁଥିଲା। ଈଶ୍ୱରଙ୍କ ପାଦରେ ପ୍ରଣତି ଜଣାଇ ଆଗାମୀ ଦିନର ଦାୟିତ୍ୱ ବିଷୟରେ ଚିନ୍ତାହୀନ ହେବାର ପ୍ରୟାସ କଲୁ।

ଯାତ୍ରୀମାନେ ଯେପରି ଆରାମରେ ଶୋଇ ପାରିବେ ସେଥିପାଇଁ ବିମାନର ଆଲୋକ ସବୁ ନିସ୍ତେଜ କରା ଯାଇଥିଲା। ହଠାତ୍ ଆଲୋକ ସବୁ ଜଳି ଉଠିଲା। ଏହି ବିମାନର ପରିଚାରିକ ବ୍ରେକ୍‌ଫାଷ୍ଟ, ବ୍ରେକ୍‌ଫାଷ୍ଟ କହି ମଝି ବାଟରେ ଚାଲିଗଲେ। ପ୍ରାୟ ସମସ୍ତେ ଉଠି ପଡ଼ିଲେ। ଜାଣିଲୁ ଯେ ସ୍ଥାନୀୟ ସମୟ ଅନୁଯାୟୀ ସକାଳର ମୁହୂର୍ତ୍ତ। ସଙ୍ଗେ ସଙ୍ଗେ ପ୍ରାତଃ ଭୋଜନ ଲାଗି ପ୍ରସ୍ତୁତ ହୋଇଗଲୁ। ଖାଇବା ପାଇଁ ବିଶେଷ ଭୋକ ନ ଥାଏ। ମାତ୍ର ଚା' ପିଇବାର ପ୍ରବଳ ଇଚ୍ଛା। ଚୀନାଦେଶୀୟ ପରିଚାରିକାଟି 'ଟି' କହୁଥିଲେ ମଧ୍ୟ ଆମ କାନକୁ 'ଚି' 'ଚି' ବୋଲି ଶୁଣା ଯାଉଥାଏ। ଆମେ ଚା' ପିଇ ସ୍ୱାଭାବିକ ଅନୁଭବ କଲୁ।

ବେଶ୍ କିଛି ସମୟ ପରେ ଘୋଷଣା କରାଗଲା ଯେ ବିମାନର ଅବତରଣ ପୂର୍ବରୁ ଆମ୍ଭମାନଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯିବ। ଦିଆଗଲା ମଧ୍ୟ। ଏଥର ବି ଅସୁବିଧାରେ ପଡିଲୁ। ବିମାନ ପରିଚାରିକାକୁ ବୁଝାଇବାକୁ ଚେଷ୍ଟା କଲୁ ମାତ୍ର ପୂରା ସଫଳ ହେଲୁ ନାହିଁ। ବିମାନ ଯାତ୍ରା ପୂର୍ବରୁ ଖାଦ୍ୟ ସମ୍ପର୍କରେ ନିଜର ରୁଚି ଜଣାଇବା ଆବଶ୍ୟକ ବୋଲି ଜାଣିବାକୁ ପାଇଲି। ଦିଆ ଯାଉଥିବା ଖାଦ୍ୟ ମଧ୍ୟରୁ କିଛି କିଛି ବାଛି ନେଇ କୌଣସି ମତେ ପେଟ ପୂରାଇଲୁ।

ଲଣ୍ଡନ୍‌ର ସ୍ଥାନୀୟ ସମୟ ପ୍ରାୟ ଦିନ ଏଗାରଟା ବେଳେ ବିମାନ ଅବତରଣର ସୂଚନା ଦିଆଗଲା। ଆମ ପରି ଅନ୍ୟତ୍ର ଯାଉଥିବା ବ୍ୟକ୍ତିମାନେ ବିମାନ ବନ୍ଦର ମଧ୍ୟରେ ପ୍ରତୀକ୍ଷା ଲାଉଞ୍ଜ୍‌ରେ ଅପେକ୍ଷା କରିବେ ଏବଂ ଲଣ୍ଡନ ଗନ୍ତବ୍ୟସ୍ଥଳ ହୋଇଥିଲେ ଇମିଗ୍ରେସନ ପଥ ଦେଇ ପ୍ରସ୍ଥାନ ଦ୍ୱାରକୁ ଚାଲିଯିବେ। ଅବତରଣ ପରେ ଭୂମିରେ ସ୍ଥିର ରହିଥିବା ବିମାନରୁ ବାହାରି ଲାଉଞ୍ଜ୍‌କୁ ଯିବାରେ କୌଣସି ଅସୁବିଧା ନ ଥିଲା। ତଥାପି ମନରେ କିଛିଟା ଭୟ ଥାଏ। ମଝିରେ ମଝିରେ ସୂଚନା ଦେବା ପାଇଁ ବ୍ରିଟିଶ ଏୟାରୱେଜ୍‌ର କର୍ମଚାରୀମାନେ ରହିଥାଆନ୍ତି। ଆମକୁ ଟ୍ରାନ୍‌ଜିଟ୍ ଯାତ୍ରୀ ଜାଣିବା ପରେ ଜଣେ କର୍ମଚାରୀ ଆମକୁ ବତାଇଦେଲେ ଯେ ଲାଉଞ୍ଜ୍ ପାଖାପାଖି ଏୟାର କାନାଡ଼ାର କାଉଣ୍ଟର ରହିଛି। ଆମର ପରବର୍ତ୍ତୀ ବିମାନ ଯାତ୍ରା ପାଇଁ ସେ କାଉଣ୍ଟରରୁ ବୋର୍ଡିଂ ପାସ୍ (ବିମାନରେ ବସିବାସ୍ଥାନର ସୂଚନା ଥିବା) ସଂଗ୍ରହ କରିବାକୁ ହେବ। ସେ ପୁଣି କହିଲେ ଯେ ଏୟାର୍ କାନାଡ଼ାର ଉଡ଼ାଣ ସମୟ ଚାରିପାଞ୍ଚ ଘଣ୍ଟା ଦୂର ଥିବାରୁ ଆମର ବ୍ୟସ୍ତ ବିବ୍ରତ ହେବାର ଆବଶ୍ୟକତା ନାହିଁ।

ଲଣ୍ଡନ୍‌ର ହିଥ୍ରୋ ବିମାନ ବନ୍ଦର। ପ୍ରଥମ ଥର ପାଇଁ ଏକ ବିଦେଶୀ ଅନ୍ତର୍ଜାତୀୟ ବିମାନ ବନ୍ଦର। ବହୁ ଦେଶର ଲୋକ। ଅଧିକାଂଶ ଶ୍ୱେତାଙ୍ଗ। ଅବଶ୍ୟ ବିମାନ ବନ୍ଦରରେ ସେବା କାର୍ଯ୍ୟ କରୁଥିବା ଲୋକମାନଙ୍କ ମଧ୍ୟରେ ଭାରତୀୟ ବଂଶୋଦ୍‌ଭବ ଲୋକ ମଧ୍ୟ ରହିଥିଲେ। ଅଧିକାଂଶ ଦେଶର ଏୟାରୱେଜ୍‌ର କାଉଣ୍ଟର ସବୁ ରହିଛି। ଆମେ କାଳ ବିଳମ୍ବ ନ କରି ଏୟାର୍ କାନାଡ଼ା କାଉଣ୍ଟର୍‌ରୁ ଦୁଇ ଜଣଙ୍କର ବୋର୍ଡ଼ିଂ ପାଶ୍ ସଂଗ୍ରହ କଲୁ।

ବିମାନ ବନ୍ଦରର ବିସ୍ତୃତ ଆଭ୍ୟନ୍ତରୀଣ ପରିସର। ମଝିରେ ମଝିରେ ରେଷ୍ଟୋରାଁ। ବହୁ ଲୋକ ଖାଉଥିବାର ଦୃଶ୍ୟ ମଧ୍ୟ ଏକରକମ ଆକର୍ଷଣୀୟ। ବିମାନ ଯାତ୍ରୀ ହିସାବରେ ଯାହା ଖାଉଥିଲେ ସେଥିରେ ପେଟରେ ଆଉ ଭୋକ ନ ଥିଲା। ତଥାପି ଏତେ ଲୋକଙ୍କୁ ଖାଇବାର ଦେଖି ଟିକେ ଟିକେ ପ୍ରଲୋଭନ ଆସୁଥାଏ। କିନ୍ତୁ ଆମ ହାତରେ ମାତ୍ର ବାର ଡ଼ଲାର। କାଳେ ଚା’ କଫି ମଧ୍ୟ ଏହାଠାରୁ ଟପିଯିବ ଏହି ଭୟରେ କୌଣସି ରେଷ୍ଟୋରାଁ ମଧ୍ୟକୁ ପ୍ରବେଶ କରିବାର ସାହସ ନ ଥାଏ। ଆଲୋକର ବୈଚିତ୍ର୍ୟ, ପୋଷାକପତ୍ରର ବିଭିନ୍ନତା, ଭାଷାର ବିବିଧତା ଏବଂ ଚାଲିଚଳଣର ପାର୍ଥକ୍ୟ ଦେଖୁ ଦେଖୁ ସମୟ କଟିଗଲା। ଏୟାର୍ କାନାଡ଼ାର ଘୋଷଣା ଶୁଣି ନିର୍ଦ୍ଧାରିତ ଗେଟ୍ ଦିଗରେ ଆଗେଇଲୁ।

ଆକାଶ ମାର୍ଗରେ ବ୍ରିଟିଶ୍ ଏୟାର୍‌ୱେଜ୍ ବିମାନରେ ଅଧାଅଧି ସମୟ (ପ୍ରାୟ ଆଠ ଘଣ୍ଟା) କଟିଥିଲା। ବର୍ତ୍ତମାନ ଆଉ ଆଠ ଘଣ୍ଟା ବିମାନରେ କାଟିବାର ସମୟ। ଶାରୀରିକ ସ୍ତରରେ କିଛିଟା କ୍ଳାନ୍ତି ଥିଲେ ମଧ୍ୟ ମାନସିକ ସ୍ତରରେ ପ୍ରସ୍ତୁତି ଜାରୀ ରଖିଥିଲୁ। ଏୟାର କାନାଡ଼ାର ବୋଇଂ ବିମାନ। ପ୍ରାୟ ଚାରିଶହ ପାଞ୍ଚ ଶହ ଯାତ୍ରୀ ଏକତ୍ରିତ ଦେଖିବା ପାଇଁ ବଡ଼ ବଡ଼ ସ୍କ୍ରିନ୍ ରହିଛି। ପୂର୍ବପରି ଖାଇବା ନେଇ କିଛିଟା ଅସୁବିଧା ଥିଲେ ମଧ୍ୟ ଯାତ୍ରା ଆରାମ ଦାୟକ ଥିଲା। ଗୋଟିଏ ଇଂରାଜୀ ଛବି ଦେଖିଲୁ। ଉପଭୋଗ କଲୁ। ପ୍ରାୟ ସାତ ଆଠ ଘଣ୍ଟାର ବିମାନ ଯାତ୍ରା ପରେ ଆମେ କାନାଡ଼ାର ଅନ୍ୟତମ ଅନ୍ତର୍ଜାତୀୟ ବିମାନ ବନ୍ଦରରେ ପହଞ୍ଚିଲୁ। ସ୍ଥାନୀୟ ସମୟ ଅପରାହ୍ନ ପାଞ୍ଚଟା ପାଖାପାଖି।

କାନାଡ଼ାର ବିଶ୍ୱବିଦ୍ୟାଳୟମାନଙ୍କରେ ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହରୁ ଶିକ୍ଷାବର୍ଷ ଆରମ୍ଭ ହୁଏ। ଯୁକ୍ତରାଷ୍ଟ୍ର ଆମେରିକାରେ କିଛିଟା ବିଳମ୍ବରେ ଶିକ୍ଷାବର୍ଷ ଆରମ୍ଭ ହୁଏ। ସେପ୍ଟେମ୍ବର ମାସଟି ଶରତ ଋତୁ। ସେ ସମୟରେ ଗଛରୁ ପ୍ରାୟ ସବୁ ପତ୍ର ଝଡ଼ିଯାଏ। ତେଣୁ ଏ ଋତୁକୁ କାନାଡ଼ାରେ ଫଲ୍ (Fall) ଋତୁ ବୋଲି କୁହନ୍ତି। ରାସ୍ତାର ଦୁଇ କଡ଼ରେ ଅସଂଖ୍ୟ ମାପଲ୍ ଗଛ। ଏହି ଗଛର ପତ୍ର କାନାଡ଼ାର ଜାତୀୟ ପତାକାରେ ସ୍ଥାନ ପାଇଛି। ପତ୍ର ସବୁ ଝଡ଼ିଗଲା ପରେ ଅକ୍ଟୋବର ଆରମ୍ଭ

ବେଳକୁ ଗଛମାନଙ୍କରେ ଯେଉଁ ନୂଆ ପତ୍ର ପଲ୍ଲବିତ ହୁଏ ତାହା ରଙ୍ଗୀନ୍, ବୈଭବମୟ। ଚାରିଆଡ଼େ ରଙ୍ଗର ବୈଭବ ଦେଖି ସହଜରେ ଅନୁଭବ ଆସେ ଯେ ଋତୁ ପ୍ରକୃତରେ ବଦଳିଛି। ପ୍ରକୃତିର ଏ ଅନିର୍ବଚନୀୟ ଶୋଭା ନ ଦେଖିଲେ ସହଜରେ ବିଶ୍ୱାସ କରିହେବ ନାହିଁ।

ସେପ୍ଟେମ୍ବର ଆରମ୍ଭରୁ ଶିକ୍ଷାବର୍ଷ ଆରମ୍ଭ ହେଉଥିବାରୁ ବିଦେଶାଗତ ଛାତ୍ରଛାତ୍ରୀମାନେ ସାଧାରଣତଃ ଅଗଷ୍ଟ ଶେଷ ସପ୍ତାହ କିମ୍ବା ସେପ୍ଟେମ୍ବର ପ୍ରଥମ ସପ୍ତାହରେ କାନାଡ଼ାରେ ପହଞ୍ଚନ୍ତି। ସୁତରାଂ ଆମ ପରି ଦେଶ ବିଦେଶରୁ ଆସିଥିବା ବହୁ ଛାତ୍ରଛାତ୍ରୀଙ୍କ ଯୋଗୁଁ ସାମାନ୍ୟ ଭିଡ଼ ଥିଲା। ବିମାନ ଅବତରଣ ପରେ ଆମେ ପ୍ରସ୍ଥାନ ଦ୍ୱାର ଦେଇ ବାହାରିବା ପୂର୍ବରୁ ଇମିଗ୍ରେସନ ପରଖ ପାଇଁ ଆମକୁ ଗୋଟିଏ ବିରାଟ ହଲ୍‌ରେ ବସିବାକୁ କୁହାଗଲା। ବିଦେଶାଗତ ବହୁ ଛାତ୍ରଛାତ୍ରୀ ବସିଥାଆନ୍ତି। ଆମେ ଲକ୍ଷ୍ୟ କଲୁ ଯେ ସେହି ହଲ୍ ମଧ୍ୟରେ କେତେକ ଇମିଗ୍ରେସନ ଅଫିସର୍ ବୁଲୁଛନ୍ତି। ସେମାନଙ୍କ ହାତରେ ଖଣ୍ଡେ ଖଣ୍ଡେ ବ୍ୟାଗ ମାତ୍ର। ସେମାନଙ୍କ ମଧ୍ୟରୁ କେହି ଜଣେ ଅଫିସର୍ ଜଣେ ଛାତ୍ର ବା ଛାତ୍ରୀଙ୍କ ସାମନାରେ ଚେୟାର ଟାଣି ବସୁଛନ୍ତି। କାଗଜ ପତ୍ର ଦେଖୁଛନ୍ତି ଏବଂ ଦୁଇ ତିନୋଟି ପ୍ରଶ୍ନ ପଚାରି ଗୋଟିଏ ଫର୍ମରେ କିଛି ଲେଖିଦେଇ ସ୍ୱାକ୍ଷର କରୁଛନ୍ତି। ଏହି କାଗଜଟି ପାସ୍‌ପୋର୍ଟରେ ଷ୍ଟାପଲ୍ କରିଦେଇ ପ୍ରସ୍ଥାନ ଦ୍ୱାରକୁ ଚାଲିଯିବା ପାଇଁ ନିର୍ଦ୍ଦେଶ ଦେଉଛନ୍ତି।

ଆମ କ୍ଷେତ୍ରରେ ମଧ୍ୟ ତାହାହିଁ ହେଲା। ଅଫିସର୍ ନିଜେ ଆସି ଆମ ସାମନାରେ ବସିଲେ ଏବଂ ଆମ ରାଜ୍ୟଗୋଷ୍ଠୀ ବୃତ୍ତିର ଚିଠି ଦେଖିଲେ। ପ୍ରାୟ କିଛି ପଚାରିଲେ ନାହିଁ। ତାଙ୍କର ଫର୍ମଟି ପୂରଣ କରି ମୋ ପାସ୍‌ପୋର୍ଟରେ ଲଗାଇ ଦେଲେ। ଅଞ୍ଜୁର ପାସ୍‌ପୋର୍ଟରେ କେବଳ ଲେଖିଦେଲେ ଯେ ଅନୁମୋଦନ ପତ୍ରଟି ମୋ ପାସ୍‌ପୋର୍ଟରେ ସଂଲଗ୍ନ କରାଯାଇଛି। ଅଫିସର୍ ଜଣକ ଆମକୁ ଜଣାଇଲେ ଯେ କାନାଡ଼ାରେ ପ୍ରବେଶ କରୁଥିବା ପ୍ରତି ଛାତ୍ରଛାତ୍ରୀଙ୍କୁ ଶିକ୍ଷାବର୍ଷର ଶେଷ ତାରିଖ (ମଇ ୩୧) ପର୍ଯ୍ୟନ୍ତ ଅନୁମୋଦନ ଏଠାରେ ଦିଆଯାଉଛି। ମଇ ୩୧ ତାରିଖ ପୂର୍ବରୁ ରହୁଥିବା ସହରର ଇମିଗ୍ରେସନ୍ ଅଫିସ୍‌ରେ କାଗଜପତ୍ର ଦେଖାଇ ସମୟସୀମା ବର୍ଦ୍ଧିତ କରାଯିବ। ଆମେ କ୍ଳାନ୍ତ ଥିଲେ ମଧ୍ୟ ପ୍ରାୟ ଘଣ୍ଟାଏ ମଧ୍ୟରେ କାଗଜପତ୍ର କାମ ସରି ଯାଇଥିବାରୁ ଖୁସି ଲାଗିଲା। ପିଅନ ଓ କିରାଣୀଙ୍କ ଦୌରାତ୍ମ୍ୟ ନାହିଁ ଦେଖି ଅନେକ ଭଲ ଲାଗିଲା।

ନିଷିଦ୍ଧାଞ୍ଚଳରୁ ବାହାରିବା ମାତ୍ରେ ଦେଖିଲୁ ଯେ ମୋର ନାମ ଉଲ୍ଲେଖ ଥିବା କାର୍ଡ଼ଟି ଧରି ଦୁଇ ଜଣ ଆମକୁ ଅପେକ୍ଷା କରିଛନ୍ତି। ମହିଳା ଜଣକ ଆମକୁ ପ୍ରଥମେ ସ୍ୱାଗତ ଜଣାଇଲେ ଏବଂ ରାଜ୍ୟଗୋଷ୍ଠୀ ବୃତ୍ତି ସମିତି ପକ୍ଷରୁ ଆକସ୍ମିକ ଖର୍ଚ୍ଚ ପାଇଁ ତିରିଶ ଡଲାର ଦେଲେ। ଆମକୁ ପୁଣି କହିଲେ ଯେ ଆମେ କିଙ୍ଗ୍‌ସଟନ୍‌ରେ ପହଞ୍ଚିବା

ପରେ ଆମର ଅସ୍ଥାୟୀ ଠିକଣା କମିଟିକୁ ଜଣାଇଲେ ସେମାନେ ଦିନେ ବା ଦୁଇଦିନ ମଧ୍ୟରେ ପ୍ରାରମ୍ଭିକ ଚଳଣୀ ପାଇଁ କିଛି ଅର୍ଥ ପଠାଇଦେବେ। ଏହା କହି ସେ ବିଦାୟ ନେଲେ। ଅନ୍ୟ ଜଣେ ଦୀର୍ଘକାୟ ତରୁଣ। ସେ ଆମକୁ ସ୍ୱାଗତ କରି ନିଜର ପରିଚୟ ଦେଲେ। ସେ କହିଲେ ଯେ ଟରଣ୍ଟୋର Y.M.C.A. ପକ୍ଷରୁ ତାଙ୍କ ପରି କେତେକ ସ୍ୱେଚ୍ଛାସେବୀ ବିମାନ ବନ୍ଦର ଆସିଛନ୍ତି। ଯେଉଁମାନଙ୍କର ଇମିଗ୍ରେସନ କାମ ସରିଛି, ସେମାନଙ୍କୁ ପ୍ରଥମେ Y.M.C.A. ଏବଂ ପରେ ପରେ ନିର୍ଦ୍ଧାରିତ ହୋଟେଲ୍‌କୁ ନେଇଯିବା ପାଇଁ ସେମାନଙ୍କୁ ଦାୟିତ୍ୱ ଦିଆ ଯାଇଛି।

ସୂଚନାଟି ପାଇବା ପରେ ଆମେ ଦୁଇଜଣ ବିମାନରୁ ଓହ୍ଲାଇ ନିରୂପିତ ସ୍ଥାନରେ ରଖା ଯାଇଥିବା ଆମର ବ୍ୟାଗ୍ ଦୁଇଟି ସଂଗ୍ରହ କରିବାକୁ ଗଲୁ। ସେଠାରେ ପହଞ୍ଚି ଦେଖିଲୁ ଯେ ଆମ ବ୍ୟାଗ୍ ଦୁଇଟିର କରୁଣ ଅବସ୍ଥା। ସମ୍ଭବତଃ ବ୍ରିଟିଶ ଏୟାରୱେଜ ବିମାନ ଓ ଏୟାର୍ କାନାଡ଼ାର ବିମାନ ଦୁଇଟିରେ ଲଗେଜ୍ କ୍ୟାବିନ୍‌ରେ ପକାଇବା ସମୟରେ ଦୁର୍ବଳ ବ୍ୟାଗ୍ ଦୁଇଟି ଶକ୍ତ ପ୍ରହାର ସମ୍ଭାଳି ପାରି ନାହାଁନ୍ତି। ମୋ ବ୍ୟାଗ୍ ମଧ୍ୟରେ ଥିବା ଶ୍ରୀଜଗନ୍ନାଥ ଓ ମା’ ଦୁର୍ଗାଙ୍କ କାଚବନ୍ଧା ଫଟୋ ଦୁଇଟିର କାଚ ନିଶ୍ଚୟ ଭାଙ୍ଗି ଯାଇଛି। ତେବେ ବ୍ୟାଗ୍‌ରେ ଥିବା ଜିନିଷପତ୍ର ବାହାରି ଯିବାର ସମ୍ଭାବନା ନାହିଁ। ପ୍ଲାଷ୍ଟିକ୍ ଦଉଡ଼ି ସାହାଯ୍ୟରେ ବାକ୍ସ ଦୁଇଟି ବନ୍ଧା ହୋଇଛି। ଆମେ ଚିହ୍ନିତ କରିବା ମାତ୍ରେ ସ୍ୱେଚ୍ଛାସେବୀଜଣକ ଅବଲୀଳାକ୍ରମେ ଏକାକୀ ଦୁଇଟି ଧରିଲେ ଏବଂ ଆଗେ ଆଗେ ଚାଲିଲେ।

ସେ ଆମକୁ ଗୋଟିଏ ଗାଡ଼ିରେ ବସାଇ ଦ୍ରୁତ ଗତିରେ ଗାଡ଼ି ଚଳାଇ ଟରଣ୍ଟୋ ନଗର ମଧ୍ୟକୁ ଚାଲିଲେ। ଚାରି ଲେନ୍‌ର ରାସ୍ତା। ଯିବା ରାସ୍ତାରେ ଚାରୋଟି ଏବଂ ଆସିବା ରାସ୍ତାରେ ଚାରୋଟି ଲେଖାଁଏ ଗାଡ଼ି ଆସୁଥାଏ। ସମୟ ସନ୍ଧ୍ୟା। ଶହ ଶହ ଗାଡ଼ି ଦ୍ରୁତ ଗତିରେ ଚାଲିଥାଏ। ସୁନ୍ଦର ଆଲୋକମାଳାରେ ରାସ୍ତା ଝଲସି ଉଠୁଥାଏ। ରାସ୍ତାରେ ଚାଲି ଯାଉଥିବାର ଲୋକ ନାହାନ୍ତି। ପରେ ଜାଣିଲୁ ଯେ ଜାତୀୟ ରାଜପଥରେ ପାଦରେ ଚାଲି ଯିବା ନିୟମ ବିରୁଦ୍ଧ।

ଘଣ୍ଟାଏ ଅଧଘଣ୍ଟାଏର ଯାତ୍ରା ପରେ ସେ ଆମକୁ ଗୋଟିଏ ବିରାଟ ପ୍ରାସାଦ ସମ୍ମୁଖରେ ଓହ୍ଲାଇବାକୁ କହିଲେ। ଆମକୁ ସୂଚନା ଦେଇଦେଲେ ଯେ ହୋଟେଲ୍ ଯିବା ପୂର୍ବରୁ Y.M.C.A.ର ସମ୍ପାଦକ ଶ୍ରୀଯୁକ୍ତ ଡେଭ୍‌କୁ ସାକ୍ଷାତ କରି ହୋଟେଲ୍ ଯିବୁ। Y.M.C.A.ର ଲାଉଞ୍ଜ୍‌ରେ ଶ୍ରୀ ଡେଭ୍ ବସିଥିଲେ। ସ୍ୱାଗତ ଜଣାଇବାର ଭଙ୍ଗୀରେ ସେ ଆମ ସହିତ କରମର୍ଦ୍ଦନ କଲେ। ସେ କହିଲେ ଯେ ଆମେ ନିଶ୍ଚୟ କ୍ଲାନ୍ତ ଥିବୁ। ଅଧିକ ସମୟ ସେ ଆମକୁ ଅଟକାଇବେ ନାହିଁ। ତେବେ କପେ କଫି ପିଇବା ପରେ ଆମେ ଚାଲି ଯିବୁ। କାନାଡ଼ାରେ ଶୀତଋତୁ ପ୍ରାୟ ନଭେମ୍ବର ମାସରୁ ଆରମ୍ଭ

ହୁଏ। ତେବେ ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ହାଲୁକା ଶୀତ ଥାଏ। ଗୋଟିଏ ହାଫ୍‌ସ୍ୱେଟର୍ ପିନ୍ଧିଦେଲେ ଆରାମ ଲାଗେ। ଏପରି ଅବସ୍ଥାରେ କଫି ଖୁବ୍ ଭଲ ଲାଗିଲା।

ପୂର୍ବର ସ୍ୱେଚ୍ଛାସେବୀ ଆମକୁ ହୋଟେଲ୍ ନେବାକୁ ପ୍ରସ୍ତୁତ ହେଲେ। ଶ୍ରୀ ଡେଭ୍ ଆମ୍ଭମାନଙ୍କୁ ଜଣାଇଲେ ଯେ ଦୁଇତିନିଦିନ ପରେ ଆମ୍ଭମାନଙ୍କୁ ପୁଣି ଟରଣ୍ଟୋ ଆସିବାକୁ ହେବ। କାନାଡ଼ାରେ ପ୍ରବେଶ କରିଥିବା ବିଦେଶୀ ଛାତ୍ରଛାତ୍ରୀଙ୍କ ପାଇଁ କାନାଡ଼ାର ମୁଖ୍ୟ ମୁଖ୍ୟ ସହରରେ ଏ ସମୟରେ ଶିବିର ଅନୁଷ୍ଠିତ ହୁଏ। କାନାଡ଼ାର ଇତିହାସ, କଳା, ସଂସ୍କୃତି ଓ ଶିକ୍ଷାଗତ ବାତାବରଣ ସମ୍ପର୍କରେ ସୂଚନା ଦିଆଯାଏ। ଏତଦ୍ ବ୍ୟତୀତ ପାଖାପାଖି ଦର୍ଶନୀୟ ସ୍ଥାନକୁ ବୁଲାଇ ନେବାର ବ୍ୟବସ୍ଥା କରାଯାଏ। ଏହା ଖୁବ୍ ଆନନ୍ଦ ଦାୟକ ହେବ। ଟରଣ୍ଟୋ ଶିବିରରେ ଶହେରୁ ଅଧିକ ଛାତ୍ରଛାତ୍ରୀ ଭାଗ ନେବେ।

ସ୍ୱେଚ୍ଛାସେବୀ ଆମକୁ ନେଇ ଯେଉଁ ହୋଟେଲ୍‌କୁ ଆସିଲେ, ତାହାର ନାମ ଟେଲ୍‌ସା ଇନ୍। ଶୁଣିଲୁ ଯେ ଟରଣ୍ଟୋର ଏହା ସବୁଠାରୁ ବଡ଼ ହୋଟେଲ୍। ଫ୍ରଣ୍ଟ ଡେସ୍କରେ ମୋର ନାମ ଉଲ୍ଲେଖ କରିବା ମାତ୍ରେ ଅଭ୍ୟର୍ଥନାକାରୀ ଆମ ପ୍ରକୋଷ୍ଠର ନମ୍ବର ଉଲ୍ଲେଖ କଲେ ଏବଂ ଜଣେ ସହାୟକଙ୍କୁ ନିର୍ଦ୍ଦେଶ ଦେଲେ ଆମର ପ୍ରକୋଷ୍ଠକୁ ନେଇଯିବା ପାଇଁ। ସ୍ୱେଚ୍ଛାସେବୀ ବିଦାୟ ନେବା ପୂର୍ବରୁ ଆମକୁ ଜଣାଇଲେ ଯେ ସେ ପରଦିନ ସାଢ଼େ ନ'ଟାରେ ଆସିବେ ଏବଂ ଆମର ରେଳଯାତ୍ରା ପାଇଁ ଷ୍ଟେସନକୁ ନେଇଯିବେ। ଆମେ ନିଜ କୋଠରୀରୁ ରୁମ୍ ସର୍ଭିସ୍‌କୁ ଫୋନ୍ କରି ଆଜିର ରାତ୍ରିଭୋଜନ ଓ ପରଦିନର ପ୍ରାତଃ ଭୋଜନର ବ୍ୟବସ୍ଥା କରିପାରିବୁ।

ରାତି ପ୍ରାୟ ଆଠଟା ସାଢ଼େ ଆଠଟା ହେବ। ପ୍ରକୋଷ୍ଠଟି ରାଜକୀୟ। ସାମାନ୍ୟ ଶୀତ ଲାଗୁଥାଏ। ହୋଟେଲ୍‌ଟି ପଇଁତିରିଶ ମହଲା। ଆମେ କେତେ ଉଚ୍ଚରେ ଥିଲୁ ସ୍ମରଣ ନାହିଁ। କିନ୍ତୁ ଝରକାରୁ ଚାହିଁଲେ ତଳେ ଥିବା କାର୍ ଗୁଡ଼ିକ ଛୋଟ ଦିଶୁଥିଲା। ଆମର ବ୍ୟାଗ୍ ନେଇ ଆସିଥିବା ଲୋକଟିକୁ କହିଲୁ ଥର୍ମୋଷ୍ଟାର୍ଟ ଠିକ୍ ପରିବର୍ତ୍ତନ କରି ଶୀତର ମାତ୍ରା କମାଇବାକୁ। ଆମେ ପରଦିନ ଯେଉଁ କିଙ୍ଗ୍‌ସଟନ୍ ସହରକୁ ଯିବୁ ସେଠାରେ ଦୁଇଜଣ ପରିଚିତ ବ୍ୟକ୍ତି ଥିଲେ। ମୋ ପରି ରାଜ୍ୟଗୋଷ୍ଠୀ ବୃତ୍ତି ପାଇ ଆମ ବିଭାଗର ଶ୍ରୀକାନ୍ତ ଦାଶ ଦୁଇବର୍ଷ ପୂର୍ବରୁ ଆସିଥିଲେ। ଏତଦ୍ ବ୍ୟତୀତ ବହୁବର୍ଷ ପୂର୍ବରୁ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରିଥିବା ଏବଂ ଅଷ୍ଟ୍ରେଲିଆରେ ପି.ଏଚ୍.ଡ଼ି. କରିଥିବା ଡଃ ଅର୍ଜୁନ ପୁରୋହିତ ମଧ କାନାଡ଼ାର ସ୍ଥାୟୀ ବାସିନ୍ଦା ରୂପେ କିଙ୍ଗ୍‌ସଟନ୍‌ରେ ବସବାସ କରୁଥିଲେ। ଆମର ପହଞ୍ଚିବାର ତାରିଖ ଓ ସମୟ ଇତ୍ୟାଦି ଡାକଯୋଗେ

ମୁଁ ଏମାନଙ୍କୁ ଜଣାଇଥିଲି। ବର୍ତ୍ତମାନ ପହଞ୍ଚିବା ପରେ ଶ୍ରୀକାନ୍ତ ବାବୁଙ୍କୁ ଫୋନ୍‌ରେ ଜଣାଇବା ଉଚିତ୍ ମନେକଲି। ହୋଟେଲ୍ ପ୍ରକୋଷ୍ଠରୁ ମୁଁ ତାଙ୍କୁ ଜଣାଇଲି। ସେ ଖୁସୀ ହେଲେ ଏବଂ ଆଗାମୀ କାଲି ଠିକ୍ ସମୟରେ କିଙ୍ଗ୍‌ସଟନ୍ ରେଲୱେ ଷ୍ଟେସନ୍‌ରୁ ଆମକୁ ନେଇ ଯିବାର ପ୍ରତିଶ୍ରୁତି ଦେଲେ।

ବର୍ତ୍ତମାନ ରାତ୍ରି ଭୋଜନରେ କ'ଣ ଖାଇବୁ ତାହା ଚିନ୍ତା କଲୁ। ଆମକୁ ଖାଦ୍ୟ ବାବଦରେ ପଇସା ଦେବାକୁ ପଡ଼ିବ କି ନାହିଁ ତାହା ଜାଣି ନ ଥାଉ। ପାଖରେ ବୟାଳିଶ ଡଲାର୍ ଥାଏ। ଭାରତରୁ ବାର ଡଲାର୍ ଆଣିଥିଲୁ ଏବଂ ଟରଣ୍ଟୋ ବିମାନ ବନ୍ଦରରେ ତିରିଶ ଡଲାର୍ ଦିଆଗଲା। ଠିକ୍ କଲୁ ଯେ ରୁମ୍ ସର୍ଭିସ୍ ଫୋନ୍‌ରେ ଖାଦ୍ୟର ବରାଦ କରିବୁ। ବ୍ରେଡ୍ ଓ ଆମ୍‌ଲେଟ୍ ସହଜିଆ ମାର୍ଗ ହେବ। ମୁଁ ଫୋନ୍ କଲି "ବ୍ରେଡ ଓ ଆମ୍‌ଲେଟ୍।" ପ୍ରଶ୍ନ ଆସିଲା: "କି ପ୍ରକାର ଆମ୍‌ଲେଟ୍? ବ୍ରିଟିଶ୍, ଫ୍ରେଞ୍ଚ, ସ୍ପାନିଶ୍ ଇତ୍ୟାଦି ଇତ୍ୟାଦି।" ମୋ ମୁଣ୍ଡ ଗରମ ହୋଇଗଲା। ମୁଁ ଅଡୁଆରେ ପଡ଼ିଲି। ହଠାତ୍ କହି ପକାଇଲି: ଯେ କୌଣସି ପ୍ରକାର (Any kind)।

ସତକୁ ସତ ପ୍ରାୟ ଅଧଘଣ୍ଟାକ ପରେ ଗୋଟିଏ 'ଟ୍ରେ'ରେ ଖାଦ୍ୟ ନେଇ ଜଣେ ହୋଟେଲ କର୍ମଚାରୀ କୋଠରୀରେ ପ୍ରବେଶ କଲେ ଏବଂ ଖାଦ୍ୟ ରଖି ଦେଇ ଚାଲିଗଲେ। ପ୍ରଚୁର ପରିମାଣର ବ୍ରେଡ ଏବଂ ପ୍ରଚୁର ପରିମାଣର ଫ୍ରେଞ୍ଚ ଫ୍ରାଏ। ତା'ସହିତ ଦେଉଳ ଆକାରର ଆମ୍‌ଲେଟ୍। ଏହା ଫ୍ରେଞ୍ଚ୍ କି ଇଟାଲିୟନ୍ ତାହା ଜାଣିବାର ଉପାୟ ବଡ଼ ନ ଥିଲା। କିନ୍ତୁ ଦେଖିଲୁ ଯେ ଆମ୍‌ଲେଟ୍ ଖୁବ୍ କଞ୍ଚା କଞ୍ଚା। ଏପରି ଖାଦ୍ୟରେ ଆମେ ଅଭ୍ୟସ୍ତ ହୋଇନାହୁଁ। ତେବେ ବ୍ରେଡ ଓ ଫ୍ରେଞ୍ଚ ଫ୍ରାଏ ଅଧିକ ଖାଇ ପେଟ ପୂରାଇବାରେ ବାଧା ନ ଥିଲା। ତାହା ହିଁ ଖାଇନେଲୁ। କ୍ଲାନ୍ତ ଥିବାରୁ ନିଦ ବେଶ୍ ଭଲ ହେଲା।

ସକାଳେ ନିତ୍ୟକର୍ମ ସାରିବା ପରେ ସ୍ଥିର କଲୁ ଯେ ତଳ ମହଲାକୁ ଚାଲିଯିବୁ। ସେଠାରେ ଡାଇନିଂ ହଲ୍‌ରେ ପ୍ରାତଃ ଭୋଜନ ଗ୍ରହଣ କରିବୁ। ତାହା ହିଁ କଲୁ। ସେଠାରେ ଖାଦ୍ୟ ସବୁ ସୁସଜ୍ଜିତ ରହିଥିଲା। ଚା', କଫି, କ୍ଷୀର ଓ କଦଳୀ ଇତ୍ୟାଦି ନେବାର ଅସୁବିଧା ନ ଥିଲା। ତେବେ କେକ୍ ଜାତୀୟ କେତେକ ପଦାର୍ଥ ଘୋମାଂସମୁକ୍ତ କି ନୁହେଁ, ତାହା ପଚାରିବାକୁ ଇଚ୍ଛା ହେଲା। ହୋଟେଲ କର୍ମଚାରୀଙ୍କୁ କହିଲୁ ଯେ ଆମେ ଶାକାହାରୀ (Vegeterian)। ସୁତରାଂ କେଉଁଥିରେ ମାଂସର ଅଂଶ ନାହିଁ, ତାହା ଜଣାଇ ଦିଅନ୍ତୁ। ସେ ଶାକାହାରୀ (Vegeterian) ଶବ୍ଦର ଅର୍ଥ ବୁଝି ପାରିଲେ ନାହିଁ। ଆଉ ଜଣେ ଦୁଇଜଣଙ୍କୁ ଡାକି ଆଣିଲେ। ସେମାନେ ମଧ୍ୟ ବୁଝି ପାରିଲେ ନାହିଁ। ଜଣେ ପଚାରିଲେ- "ଆପଣ ଗାଈର ଶରୀରରୁ ବାହାରି ଥିବା

କୌଣସି ପଦାର୍ଥ ଖାଆନ୍ତି ନାହିଁ। କ୍ଷୀର ପିଅନ୍ତି?" ଆମେ ଅନୁଭବ କଲୁ ଯେ ସେମାନଙ୍କୁ ବୁଝାଇବା କଷ୍ଟ। ପ୍ରକୃତରେ ସପ୍ତମ ଦଶକରେ ସେଠାରେ ଶାକାହାରୀ ଓ ମାଂସ ଭକ୍ଷଣକାରୀ ମଧ୍ୟରେ ପାର୍ଥକ୍ୟ ବୁଝୁ ନ ଥିଲେ। ପରେ ଧୀରେ ଧୀରେ ଏ ପାର୍ଥକ୍ୟ ବିଷୟରେ ସଚେତନ ହେଲେ। ଆମେ ସନ୍ଦେହ ଥିବା ଜିନିଷକୁ ବାଦ୍ ଦେଇ କ୍ଷୀର, କଦଳୀ ଓ ସିରିଏଲ୍ ଖାଇ ଆରାମରେ ପ୍ରସ୍ତୁତ ରହିଲୁ।

ସ୍ୱେଚ୍ଛାସେବୀ ଜଣକ ଠିକ୍ ସମୟରେ ହୋଟେଲ୍‌ରେ ପହଞ୍ଚିଲେ। ଆମେ ପ୍ରସ୍ତୁତ ଥିଲୁ। ଫ୍ରଣ୍ଟ ଡେସ୍କରେ ଆମେ ହୋଟେଲ ଛାଡ଼ିବୁ ବୋଲି ଜଣାଇଲୁ। ଆମେ ଯାଇପାରୁ ବୋଲି ସେମାନେ ଇଙ୍ଗିତ ଦେଲେ। ଜାଣିଲୁ ଯେ କେବଳ ଆମର ରହିବାର ଦେୟ ନୁହେଁ, ଖାଦ୍ୟ ପଦାର୍ଥ ମଧ୍ୟ ବୃତ୍ତି କମିଟି ବହନ କରିବ। ଆମେ ଖର୍ଚ୍ଚ ଭୟରେ ଆମର ଖାଦ୍ୟପେୟ ସଙ୍କୋଚନ କରି ଥିବାର କଥା ଭାବି ଲଜ୍ଜିତ ହେଲୁ। ସ୍ୱେଚ୍ଛାସେବୀ ଜଣକ ଆମକୁ ଗାଡ଼ିରେ ଆଣି ଗୋଟିଏ ପ୍ରାସାଦ ସମ୍ମୁଖରେ ରଖିଲେ ଏବଂ ଓହ୍ଲାଇବାକୁ ଇଙ୍ଗିତ ଦେଲେ। କହିଲେ ଯେ ଏହା ହେଉଛି ଇଉନିୟନ୍ ବିଲଡ଼ିଂ।

ବାହାରୁ ସୁନ୍ଦର ପ୍ରାସାଦଟିଏ। ରେଲଷ୍ଟେସନରେ କୌଣସି ସୂଚନା ନ ଥାଏ। ସେ ଆମର ବ୍ୟାଗ୍ ଦୁଇଟି ନେଇ ଭିତରେ ପ୍ରବେଶ କଲାପରେ ରେଳ ଧାରଣା ଦୃଷ୍ଟିଗୋଚର ହେଲା। ଆମ ଦେଶ ଭଳି ସେଠାରେ କୌଣସି ଗହଳ ଚହଳ ନଥିଲା। ନିରବତା ରକ୍ଷା କରି ଲୋକମାନେ ଯିବା ଆସିବା କରୁଥିଲେ। ଜଣେ ରେଲକର୍ମଚାରୀ ଆମ ପାଖକୁ ଆସି ଗନ୍ତବ୍ୟ ସ୍ଥଳ ପଚାରିବା ପରେ ସେ ଆମକୁ କିଙ୍ଗ୍‌ସଟନ୍ ବଗିଟି ଦେଖାଇଦେଲେ। ଆମେ ସ୍ୱେଚ୍ଛାସେବୀ ଜଣଙ୍କୁ ଧନ୍ୟବାଦ ଜ୍ଞାପନ କଲୁ। ସେ ବିଦାୟ ନେଲେ।

ନିର୍ଦ୍ଧାରିତ ସମୟ ପ୍ରାୟ ସାଢ଼େ ବାରଟା ସମୟରେ (ଦୁଇ ଘଣ୍ଟାର ଯାତ୍ରା ପରେ) କିଙ୍ଗ୍‌ସଟନ୍‌ରେ ପହଞ୍ଚିଲୁ। କିଙ୍ଗ୍‌ସଟନ୍ ଟରଣ୍ଟୋ ସହରର ପଶ୍ଚିମରେ ପ୍ରାୟ ୨୬୮ କି.ମି. ଦୂରରେ ଅବସ୍ଥିତ। ରେଲଯାତ୍ରା ଖୁବ୍ ଆରାମ ଦାୟକ ଥିଲା। ବହୁ ସ୍ଥାନ ଖାଲି ପଡ଼ିଥିଲା। ସୁତରାଂ ଲମ୍ବା ହୋଇ ଶୋଇବାରେ ମଧ୍ୟ ବାଧା ନ ଥିଲା। ତେବେ ଆମେ ପାର୍ଶ୍ୱବର୍ତ୍ତୀ ମନୋରମ ଦୃଶ୍ୟ ଦେଖିବାରେ ବ୍ୟସ୍ତ ଥିଲୁ। ପ୍ରତି ବଗିରେ ଗୋଟିଏ ଗୋଟିଏ ଛୋଟିଆ ଷ୍ଟୋର୍ ଥିଲା। ଚା', ବିସ୍କୁଟ ଓ ଅନ୍ୟ ସବୁ ଖାଦ୍ୟ ମିଳୁଥିଲା। ପ୍ରଥମେ ଲକ୍ଷ୍ୟ କଲୁ ଯେ କୌଣସି କୌଣସି ଯାତ୍ରୀ ଷ୍ଟୋରରୁ ଆଣିଥିବା ଠୁଙ୍ଗା ମଧ୍ୟରୁ ଚା' ବାହାର କରୁଛନ୍ତି। ଆମକୁ ଆଶ୍ଚର୍ଯ୍ୟ ଲାଗିଲା। ଆମେ ମଧ୍ୟ କିଣିବାକୁ ଗଲୁ। ଦେଖିଲୁ ଯେ ମେସିନ୍ ନିର୍ମିତ ଚା'କୁ ଗୋଟିଏ ପ୍ଲାଷ୍ଟିକ୍ ପାତ୍ରରେ ଭର୍ତ୍ତି କରି ଏପରି ଉପର ଢଙ୍କା ଦିଆଯାଇଛି ଯେ ଚା' ଢାଳିଯିବାର

ସମ୍ଭାବନା ନାହିଁ। ଦୁଇଘଣ୍ଟା ବେଶ୍ କଟିଗଲା। କିଙ୍ଗ୍‌ସଟନ୍ ଷ୍ଟେସନ୍‌ରେ ପହଞ୍ଚିବା ବେଳକୁ ଡକ୍ଟର ଅର୍ଜୁନ ବାବୁ ତାଙ୍କ ଗାଡ଼ିରେ ଆମକୁ ଶ୍ରୀକାନ୍ତ ବାବୁଙ୍କ ଘରକୁ ନେଇ ଆସିଲେ।

କୁଇନ୍ସ ବିଶ୍ୱବିଦ୍ୟାଳୟର ଅନେକଗୁଡ଼ିଏ ବାସଗୃହ କେନ୍ଦ୍ର ରହିଛି। ସେଥିମଧ୍ୟରୁ ଦୁଇଟି ବିବାହିତ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ। ସେଥିମଧ୍ୟରୁ ଗୋଟିଏ ହେଉଛି ସନ୍ତାନ ଥିବା ବିବାହିତ ବ୍ୟକ୍ତିଙ୍କ ପାଇଁ ଏବଂ ଅନ୍ୟଟିରେ ପିଲାପିଲି ନ ଥିବା ବ୍ୟକ୍ତିବିଶେଷଙ୍କ ପାଇଁ। ଶ୍ରୀକାନ୍ତବାବୁ ଯେଉଁ ବିବାହିତ ଛାତ୍ରଛାତ୍ରୀ ମଣ୍ଡଳରେ ରହୁଥିଲେ ସେଠାରେ ପିଲାମାନେ ମଧ୍ୟ ରହିପାରିବେ। ଆମେ ଶ୍ରୀକାନ୍ତବାବୁଙ୍କ ଘରପାଖରେ ପହଞ୍ଚିବା ମାତ୍ରେ ତାଙ୍କର ପାଞ୍ଚ ଛ'ମାସର ପୁଅ ବିଟୁଲ୍‌ର କାନ୍ଦ ଶୁଣିବାକୁ ପାଇଲୁ। ଆମେ ପ୍ରାରମ୍ଭିକ ପର୍ଯ୍ୟାୟରେ ଶ୍ରୀକାନ୍ତବାବୁଙ୍କ ଘରେ କିଛିଦିନ ରହିଲୁ। ପରେ ପରେ ସେହି ମଣ୍ଡଳରେ ଆମେ ଆପାର୍ଟମେଣ୍ଟ ପାଇଗଲୁ।

ପୂର୍ବ ସୂଚନା ଅନୁଯାୟୀ ଆମେ ଦୁଇତିନିଦିନ ମଧ୍ୟରେ ଟରଣ୍ଟୋ ଯିବା ପାଇଁ ଟେଲିଗ୍ରାମ୍ ପାଇଲୁ। ବଡ଼ ଆଗ୍ରହରେ ଟରଣ୍ଟୋ ଗଲୁ। ଟରଣ୍ଟୋର ଦ୍ୱିତୀୟ ବୃହତ୍ତମ ହୋଟେଲ୍‌ରେ (ୱେଷ୍ଟବୁରୀ)ବିଦେଶାଗତ ଛାତ୍ରଛାତ୍ରୀମାନଙ୍କର ରହିବାର ବ୍ୟବସ୍ଥା ହୋଇଥିଲା। ପ୍ରତିଦିନର ସୁନ୍ଦର ପ୍ରାତଃଭୋଜନ ପରେ କିଛି ସମାବେଶ ହୁଏ। ସେଠାରେ କାନାଡ଼ାର ଇତିହାସ, ସାଂସ୍କୃତିକ ଜୀବନ ଓ ଶିକ୍ଷା ବିଷୟରେ ଧାରଣା ଦିଆଯାଏ। ଅପରାହ୍ଣରେ କିଛି ଗାଇଡ୍‌ଙ୍କ ସହିତ ବୁଲାବୁଲିର ପର୍ବ।

ଏହି ରହଣୀ ମଧ୍ୟରେ ସବୁଠାରୁ ମନୋଜ୍ଞ ଓ ଚିତ୍ତାକର୍ଷକ ଅନୁଭବ ହେଉଛି ଓଣ୍ଟାରିଓ ପାର୍କ। ଏହା ଗୋଟିଏ ବିଶାଳ ଆମୋଦ ଉଦ୍ୟାନ। ଦିନସାରା ବୁଲିଲେ ମଧ୍ୟ ସମୟ ଅଣ୍ଟିବ ନାହିଁ। ଏହା ମଧ୍ୟରେ ଗୋଲାକୃତି ଏକ ହଲ୍ (Cinesphere) ମଧ୍ୟରେ ଅଧଘଣ୍ଟା ଲାଗି ଗୋଟିଏ Three-Dimensionର ଛବି ପ୍ରଦର୍ଶିତ ହୁଏ। ଏହାର ଅନୁଭବ ପ୍ରକୃତରେ ଅନନ୍ୟ। ବ୍ୟୋମଯାନଟି ଉଡୁଥିବା ସମୟରେ ହଠାତ୍ ସମ୍ମୁଖରେ ଗୋଟିଏ ପାହାଡ଼ ଚାଲି ଆସିଲେ ମନେହୁଏ ଯେ ସତେ ଯେପରି ମୁଁ ପିଚି ହୋଇଯିବି। ସେହିପରି ଦୋଳିର ଦୃଶ୍ୟ ଦେଖିବା ସମୟରେ ମନେହୁଏ ଯେ ମୁଁ ସତକୁ ସତ ଦୋଳିରେ ଝୁଲୁଛି। ପୂର୍ବରୁ ଏପରି ଅନୁଭବ ନ ଥିବାରୁ ବିଚିତ୍ର ଲାଗିଲା। ଟରଣ୍ଟୋର ଅବସ୍ଥାନ କାଳରେ ଦିନେ ଅଳ୍ପ ସମୟ ପାଇଁ ଆକାଶରୁ ତୂଳା ଭଳି ତୁଷାର ପାତ ହେଲା। ଆମ ପରି ଗ୍ରୀଷ୍ମ ପ୍ରଧାନ ଦେଶରୁ ଯାଇଥିବା ଲୋକଙ୍କ ପାଇଁ ଏ ଏକ ନୂଆ ଅନୁଭୂତି। ଖୁବ୍ ଅଳ୍ପ ସମୟ। ମନେହେଲା ସ୍ୱାଗତର ଭାଷା। ପରେ ଜାଣିଲୁ ଯେ କାନାଡ଼ାର ପୂର୍ବାଞ୍ଚଳରେ ନଭେମ୍ବର କିମ୍ବା ଡିସେମ୍ବର ମାସରେ ତୁଷାରପାତ ଆରମ୍ଭ ହୁଏ। ସେପ୍ଟେମ୍ବର ମାସର ଏ ଆଦ୍ୟସ୍ପର୍ଶ ଖୁବ୍ ବିରଳ।

ସପ୍ତାହର କାର୍ଯ୍ୟକ୍ରମ ମଧ୍ୟରେ ପୂରାପୂରି ବାଧ୍ୟବାଧକତା ନ ଥିଲା। ସ୍ୱାଧୀନ ଭାବରେ କିଛି ସମୟ ଲାଗି ବୁଲାବୁଲି କରିବାର ସୁଯୋଗ ମଧ୍ୟ ଥିଲା। ଆମକୁ ପ୍ରାତଃ ଭୋଜନ ଯୋଗାଉଥିବା ଜଣେ ଭାରତୀୟ ବଂଶୋଦ୍‌ଭବ ବ୍ୟକ୍ତି (ଯିଏ କି ଦକ୍ଷିଣ ଆଫ୍ରିକାରୁ କାନାଡ଼ା ଚିରଦିନ ପାଇଁ ଚାଲି ଆସିଥିଲେ) କହିଲେ ଯେ ଟରଣ୍ଟୋର ଗୋଟିଏ ବଡ଼ ଷ୍ଟ୍ରିଟ୍‌ରେ ସବୁ ଦୋକାନ ପ୍ରାୟ ଭାରତୀୟ। ଆମେ ଇଚ୍ଛା କଲେ ସେ ଆମକୁ ତାଙ୍କ ଗାଡ଼ିରେ ସେଠାରେ ଛାଡ଼ି ଦେଇ ପାରିବେ। କିନ୍ତୁ ଟ୍ରାମ୍ ନେଇ ଆମକୁ ଫେରିବାକୁ ହେବ।

ସେ ଆମକୁ ସକାଳୁ ନେଇଗଲେ। ଖୁବ୍ ଲମ୍ବା ଷ୍ଟ୍ରୀଟ୍, ଅଧାଅଧି ଭାରତୀୟ ଓ ଅନ୍ୟ ଅର୍ଦ୍ଧଟି ଚୀନା ଦେଶୀୟ। ପ୍ରକୃତରେ ସବୁପ୍ରକାର ଭାରତୀୟ ଦୋକାନ ରହିଛି। ମିଠା ଦୋକାନଠାରୁ ଆରମ୍ଭ କରି ଗୁପ୍‌ଚୁପ୍ ଦୋକାନ ମଧ୍ୟ ରହିଛି। କିଛି ଖାଇଲୁ। ଏପରିକି ସିନେମା ହଲ୍‌ରେ ଭାରତୀୟ ହିନ୍ଦୀ ଛବି। ଗୋଟିଏ ହଲ୍‌ରେ ଫିଲ୍ମ ଉତ୍ସବ ଚାଲିଥିବାରୁ ସେଠାରେ ପ୍ରବେଶ କଲୁ। ଦେଖିଲୁ ଯେ ଉଦ୍‌ଘାଟନ ଉତ୍ସବରେ ଶ୍ରୀ ବି.ଆର୍. ଚୋପ୍ରା, ତାରକା ସଞ୍ଜୀବ କୁମାର, ବିଦ୍ୟା ସିହ୍ନା ଏବଂ ଅମଳ ପାଲେକର୍ ଉପସ୍ଥିତ। ଭାରତରେ ଯେଉଁ ନିର୍ମାତା ଓ ଚିତ୍ର ତାରକାମାନଙ୍କୁ ଦେଖିବାକୁ ଏକରକମ ସାଧନା କରିବାକୁ ପଡ଼େ ସେମାନଙ୍କୁ ଏତେ ସହଜରେ ଦେଖିବାର କଳ୍ପନା କରି ନଥିଲୁ। ସୀମାତୀତ ଆନନ୍ଦ ନେଇ ହୋଟେଲ୍ ଫେରିଲୁ।

କାନାଡ଼ାର ପରିବେଶ ଏତେ ସୌନ୍ଦର୍ଯ୍ୟମୟ ଓ ଶୃଙ୍ଖଳିତ ଯେ ସମନ୍ୱୟଶୀଳତା ଶିକ୍ଷା କରିବା କଷ୍ଟକର ନ ଥିଲା। ପ୍ରାରମ୍ଭରେ ଟରଣ୍ଟୋର ଆଦ୍ୟ ପ୍ରେରଣା ଆମର ପ୍ରବେଶ ପଥକୁ ବେଶ୍ ସୁଗମ କଲା।

❖

# (୨୪)

# କୁଇନ୍ସ ପରିବାର

କୁଇନ୍ସ ବିଶ୍ୱବିଦ୍ୟାଳୟ କାନାଡ଼ାର ଏକ ଖ୍ୟାତନାମା ଅନୁଷ୍ଠାନ। କାନାଡ଼ାରେ ପ୍ରାୟ ପଚାଶ ପାଖାପାଖି ବିଶ୍ୱବିଦ୍ୟାଳୟ ରହିଛି। ଏଥି ମଧ୍ୟରେ ଅଧିକାଂଶ ବିଶ୍ୱବିଦ୍ୟାଳୟ ଦୁଇଟି ପ୍ରଗତିଶୀଳ ରାଜ୍ୟ ଓଣ୍ଟାରିଓ ଓ କ୍ୟୁବେକ୍‌ରେ ଅବସ୍ଥିତ। ଯୁକ୍ତରାଷ୍ଟ୍ର ଆମେରିକାରେ କିଛି କିଛି ବିଶ୍ୱବିଦ୍ୟାଳୟ ଘରୋଇ ବିଶ୍ୱ ବିଦ୍ୟାଳୟ। ଘରୋଇ ବିଶ୍ୱବିଦ୍ୟାଳୟ ସବୁ ଖୁବ୍ ଉନ୍ନତ ହୋଇପାରନ୍ତି କିମ୍ବା ପଛୁଆ ମଧ୍ୟ ହୋଇ ପାରନ୍ତି। ଆମେରିକାର ଅତି ବିକଶିତ ଷ୍ଟାନ୍‌ଫୋର୍ଡ଼ ଏକ ଘରୋଇ ବିଶ୍ୱବିଦ୍ୟାଳୟ। ଅନ୍ୟ ପକ୍ଷରେ କାନାଡ଼ାରେ ଘରୋଇ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥା ନାହିଁ। ସବୁ ବିଶ୍ୱବିଦ୍ୟାଳୟ ସ୍ୱୟଂଶାସିତ। ରାଜ୍ୟ ସରକାର ଅନୁଦାନ ଦିଅନ୍ତି, କିନ୍ତୁ ପରିଚାଳନାରେ ହସ୍ତକ୍ଷେପ କରନ୍ତି ନାହିଁ। କାନାଡ଼ାର ବିଶ୍ୱବିଦ୍ୟାଳୟମାନଙ୍କର ମାନଦଣ୍ଡରେ ଅଧିକ ତାରତମ୍ୟ ନାହିଁ। ତଥାପି ନିରପେକ୍ଷ ସଂସ୍ଥା ଦ୍ୱାରା ପ୍ରତିବର୍ଷ ବିଶ୍ୱବିଦ୍ୟାଳୟମାନଙ୍କର ମାନ୍ୟତା ପରଖ କରାଯାଏ। ଏହି କ୍ରମରେ ଅଧିକାଂଶ ବର୍ଷ ମଣ୍ଟ୍ରିଅଲ୍‌ରେ ଅବସ୍ଥିତ ମାକ୍‌ଗିଲ ବିଶ୍ୱବିଦ୍ୟାଳୟ ପ୍ରଥମ ସ୍ଥାନ ଅଧିକାର କରିବା ସ୍ଥଳେ କୁଇନ୍ସ ଦ୍ୱିତୀୟ ସ୍ଥାନରେ ରହିଥାଏ।

କିଙ୍ଗ୍‌ସଟନ୍ ଏକ ଛବିଳ ସହର। ଏହା ପ୍ରଥମେ କାନାଡ଼ାର ରାଜଧାନୀ ଥିଲା। (୧୮୬୪ରୁ ୧୮୬୯ ପର୍ଯ୍ୟନ୍ତ) କାନାଡ଼ାର ଭୌଗୋଳିକ ଅବସ୍ଥିତି ଉତ୍ତର ଗୋଲାର୍ଦ୍ଧରେ। ଏହା ଏକ ଶୀତ ବହୁଳ ଦେଶ। ଏହାର ଗୋଟିଏ ଦିଗରେ ଓଣ୍ଟାରିଓ ହ୍ରଦ ରହିଛି। ଏହାକୁ ହ୍ରଦ କାହିଁକି କୁହାଯାଏ, ତାହା ମୁଁ ଜାଣିନାହିଁ। ଶୀତଦିନେ ଏହାର ଜଳ ପୂରାପୂରି ବରଫରେ ରୂପାନ୍ତର ହୁଏ। ସେତେବେଳେ ଲୋକମାନେ ଏହା ଉପରେ ସ୍କେଟିଂ କରନ୍ତି। ସ୍ନୋ ମୋବାଇଲ୍ ନାମକ ଯାନରେ ଏହା ଉପରେ ଗତିକରି ଅନ୍ୟତ୍ର ଯାଇ ପାରନ୍ତି। ଓଣ୍ଟାରିଆ ହ୍ରଦର ଅପର ପାର୍ଶ୍ୱରେ ଯୁକ୍ତରାଷ୍ଟ୍ର ଆମେରିକାର ନିଉୟର୍କ ରାଜ୍ୟ। ଅବଶ୍ୟ ନିଉୟର୍କ ରାଜ୍ୟଟିର ଆୟତନ ଖୁବ୍ ବଡ଼। ନିଉୟର୍କ ନଗରଟି କିଙ୍ଗ୍‌ସଟନ୍‌ଠାରୁ ପ୍ରାୟ ଛ'ଶହ ସାତ ଶହ କିଲୋମିଟର ଦୂରରେ ଅବସ୍ଥିତ।

କାନାଡ଼ାକୁ ଗୋଟିଏ ବହୁ-ସଂସ୍କୃତି-ସମ୍ପନ୍ନ ଦେଶ କୁହାଯାଏ। ଆମେରିକା ଆବିଷ୍କୃତ ହେବା ପରେ ଇଉରୋପୀୟମାନେ ପ୍ରଥମେ ପ୍ରଥମେ ଦକ୍ଷିଣ ଭାଗରେ ବସତି ସ୍ଥାପନ କଲେ। ଉତ୍ତରରେ ଥିବା କାନାଡ଼ାର ଜଳବାୟୁ ଅଧିକ ଶୀତଳ

ଥିବାରୁ ଅପେକ୍ଷାକୃତ କମ୍ ଲୋକ କାନାଡ଼ାକୁ ଆସିଲେ। କ୍ରମଶଃ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିକାଶ ଫଳରେ ଲୋକମାନେ କାନାଡ଼ାକୁ ଆସିଲେ। ମୁଖ୍ୟ ବାସିନ୍ଦା ହିସାବରେ ବ୍ରିଟିଶ ଓ ଫରାସୀମାନେ ଆସିଲେ।

ଏବେ ମଧ୍ୟ ଜନ ବସତି ଦୃଷ୍ଟିରୁ ବ୍ରିଟିଶ ଲୋକ ସଂଖ୍ୟା ଅଧିକ। ବିଶେଷତଃ ସେମାନେ ଓଣ୍ଟାରିଆ ରାଜ୍ୟରେ ବସବାସ କରନ୍ତି। ସଂଖ୍ୟା ଦୃଷ୍ଟିରୁ ପରବର୍ତ୍ତୀ ଗୋଷ୍ଠୀ ହେଉଛି ଫରାସୀ ଭାଷାଭାଷୀ ବ୍ୟକ୍ତି। କ୍ୟୁବେକ୍ ରାଜ୍ୟରେ ସେମାନେ ସଂଖ୍ୟାଧିକ ଗୋଷ୍ଠୀ ହିସାବରେ ବସବାସ କରନ୍ତି। ଅନ୍ୟ ସବୁ ସମ୍ପ୍ରଦାୟକୁ ସେମାନଙ୍କର ଉତ୍ପତ୍ତିସ୍ଥଳ ଅନୁଯାୟୀ ନାମକରଣ କରାଯାଏ। ଜର୍ମାନୀରୁ ଆସି କାନାଡ଼ାରେ ସ୍ଥାୟୀ ଭାବେ ବସବାସ କରୁଥିବା ଲୋକଙ୍କୁ ଜର୍ମାନ୍-କାନାଡ଼ୀୟ କୁହାଯାଏ। ସେହିପରି ଡଚ୍-କାନାଡ଼ୀୟ, ଇଟାଲୀୟ-କାନାଡ଼ୀୟ ଇତ୍ୟାଦି ସଂଜ୍ଞା ଦିଆ ଯାଇଛି। ଇଉରୋପୀୟମାନେ କାନାଡ଼ାକୁ ଆସିବା ପୂର୍ବରୁ ଯେଉଁ ଆଦିମ ଅଧିବାସୀ ସେଠାରେ ରହୁଥିଲେ ସେମାନଙ୍କୁ ଇଣ୍ଡିଆନ୍ କୁହାଯାଏ। ସୁତରାଂ ଭାରତରୁ ଯାଇଥିବା ଲୋକମାନଙ୍କୁ ଇଣ୍ଡିଆନ୍ କୁହା ନ ଯାଇ ଇଷ୍ଟ-ଇଣ୍ଡିଆନ୍ କୁହାଯାଏ।

୧୭୭୬ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଲୋକମାନେ ବ୍ରିଟିଶ ଉପନିବେଶବାଦ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ଚଳାଇଥିବା ସମୟରେ ମଧ୍ୟ କାନାଡ଼ା ବ୍ରିଟିଶ କର୍ତ୍ତୃତ୍ୱରେ ରହିଥିଲା। ଯୁକ୍ତରାଷ୍ଟ୍ର ପୂରାପୂରି ସ୍ୱାଧୀନ ହେବା ପରେ ମଧ୍ୟ କାନାଡ଼ାର ଡୋମିନିୟନ ଅବସ୍ଥା ରହିଥିଲା। ଆମେରିକାର ସ୍ୱାଧୀନତା ସଂଗ୍ରାମ ଚାଲୁଥିବା ସମୟରେ ବ୍ରିଟିଶ କ୍ଷମତାକୁ ସମର୍ଥନ କରୁଥିବା କିଛି ଲୋକ ଓଣ୍ଟାରିଓ ହ୍ରଦରେ ସନ୍ତରଣ କରି କାନାଡ଼ା ଚାଲି ଆସିଲେ। କେତେକ ଲୋକ ମଧ୍ୟ ମୃତ୍ୟୁ ବରଣ କଲେ। ସନ୍ତରଣ କରି ନିଜକୁ ରକ୍ଷା କରିବାକୁ କାନାଡ଼ା ପାର୍ଶ୍ୱକୁ ଚାଲି ଆସିଥିବା ଲୋକମାନେ ଯେଉଁ ବିରାଟ ଗ୍ରାମଟି ସ୍ଥାପନ କଲେ ତାହା ବାଥ୍ ଗ୍ରାମ ଅର୍ଥାତ୍ ସ୍ନାନର ଗ୍ରାମ। ଏହା ଏବେ ମଧ୍ୟ ରହିଛି। ବ୍ରିଟିଶ ଅନୁଗତ କାନାଡ଼ା କାଳେ ବାରମ୍ବାର ଅପର ପାର୍ଶ୍ୱର ଯୁକ୍ତରାଷ୍ଟ୍ର ଦ୍ୱାରା ଆକ୍ରମଣ କରାଯିବ, ସେହି ଭୟରେ କିଙ୍ଗ୍‌ସଟନ୍‌ରୁ ରାଜଧାନୀ ଉଠାଇ ନିଆଗଲା। କିଙ୍ଗ୍‌ସଟନ୍‌ର ଉତ୍ତରରେ ୧୦୫ କି.ମି. ଦୂରରେ ଅଟୱାରେ ୧୮୬୯ ମସିହାରେ ନୂଆ ରାଜଧାନୀ ସ୍ଥାପିତ ହେଲା।

କାନାଡ଼ାକୁ ବହୁ ଦେଶରୁ ଲୋକ ଆସିଥିବାରୁ ଏହା ବିବିଧ ସଂସ୍କୃତିରେ ପରିପୂର୍ଣ୍ଣ। ବିଂଶ ଶତକର ସପ୍ତମ ଦଶକରେ କାନାଡ଼ାର ସରକାର ଏକ ରୟାଲ କମିଶନ୍ ନିଯୁକ୍ତ କରିଥିଲେ। ଭାଷା ଓ ସଂସ୍କୃତି ସମ୍ପର୍କରେ ପରାମର୍ଶ ଦେବା ପାଇଁ କମିଶନରର ଦାୟିତ୍ୱ ଥିଲା। କମିଶନ ଘୋଷଣା କରିଥିଲେ ଯେ କାନାଡ଼ାର ଦୁଇଟି ସରକାରୀ ଭାଷା ରହିଛି: ଇଂରାଜୀ ଓ ଫରାସୀ ଭାଷା। ମାତ୍ର କୌଣସି ସରକାରୀ

ସଂସ୍କୃତି ନାହିଁ। ପ୍ରତ୍ୟେକ ସଂସ୍କୃତିର ଲୋକ ଦେଶର ନିରାପତ୍ତାକୁ ବିପନ୍ନ ନ କରି ନିଜ ନିଜର ସଂସ୍କୃତିର ବିକାଶ କରି ପାରିବେ। ଏଥିପାଇଁ ଦେଶର ମନ୍ତ୍ରୀ ମଣ୍ଡଳରେ ଜଣେ ବହୁ-ସଂସ୍କୃତି-ବିଭାଗର ମନ୍ତ୍ରୀ ରୁହନ୍ତି। ଦେଶର ସରକାରୀ କାଗଜପତ୍ରରେ ଦୁଇଟି ଭାଷା ବ୍ୟବହାର କରାଯାଏ। ସରକାରୀ କିମ୍ବା ବିଶ୍ୱବିଦ୍ୟାଳୟ ପାଇଁ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କର ମୂଳଭାଷା ଇଂରାଜୀ ହୋଇଥିଲେ ସେମାନେ ଫରାସୀ ଶିଖିବାକୁ ପ୍ରୋତ୍ସାହିତ ହୁଅନ୍ତି। ସେହିପରି ଫରାସୀ ଭାଷାଭାଷୀ ଲୋକମାନଙ୍କୁ ଇଂରାଜୀ ଶିକ୍ଷା କରିବାକୁ ପ୍ରୋତ୍ସାହନ ଦିଆଯାଏ। କିନ୍ତୁ ବାଧ୍ୟବାଧକତା ନଥାଏ। ସାଧାରଣତଃ ଓଣ୍ଟାରିଆ ରାଜ୍ୟଟି ଇଂରାଜୀ ବହୁଳ ହେବା ସ୍ଥଳେ କ୍ୟୁବେକ୍ ରାଜ୍ୟଟିରେ ଫରାସୀର ଅଧିକ ପ୍ରଚଳନ ରହିଛି।

**କିଙ୍ଗ୍‌ସଟନ୍ ସହର**

ପୂର୍ବରୁ ସୂଚନା ଦିଆ ଯାଇଛି ଯେ କିଙ୍ଗ୍‌ସଟନ୍ କାନାଡ଼ାର ପ୍ରଥମ ରାଜଧାନୀ ଥିଲା। ଏହା ମୁଖ୍ୟତଃ ବିଶ୍ୱବିଦ୍ୟାଳୟ ସହର। ଲୋକସଂଖ୍ୟା ମାତ୍ର ଷାଠିଏ ହଜାର ଥିଲା। ଆମେ ଦ୍ୱିତୀୟ ଥର ୧୯୯୦ ମସିହାରେ ଯିବା ବେଳେକୁ ଏହାର ଲୋକ ସଂଖ୍ୟା ଏକ ଲକ୍ଷ ହୋଇ ସାରିଥିଲା।

ଏହାକୁ ଚୂନ ପଥର ସହର ବୋଲି ମଧ୍ୟ କୁହାଯାଏ। ଅଧିକାଂଶ ସ୍ଥାପତ୍ୟ ଚୂନପଥର ନିର୍ମିତ। ବିଶ୍ୱବିଦ୍ୟାଳୟର ବହୁ ସୌଧ ଚୂନ ପ୍ରସ୍ତର ନିର୍ମିତ। ଖୁବ୍ ରମଣୀୟ। ରାସ୍ତାଘାଟ ବନାନୀ ମନୋଜ୍ଞ ଦୃଶ୍ୟରେ ପରିପୂର୍ଣ୍ଣ।

ବିରାଟ ହ୍ରଦ କୂଳରେ ଅବସ୍ଥିତ ଥିବାରୁ ଏହାର ନୈସର୍ଗିକ ସୁଷମା ବୃଦ୍ଧି ପାଇଛି। ୧୯୭୬ ମସିହାର ଅଗଷ୍ଟ/ସେପ୍ଟେମ୍ବରରେ ଆମେ କାନାଡ଼ାରେ ପହଞ୍ଚିବା ସମୟରେ ସେ ବର୍ଷର ମଣ୍ଟ୍ରିଆଲ୍ ଅଲମ୍ପିକ୍ ଶେଷ ହୋଇ ଯାଇଥିଲା। ଶୁଣିଲୁ ଯେ କିଙ୍ଗ୍‌ସଟନ୍‌ରେ ନୌଚାଳନା ପ୍ରତିଯୋଗିତାର କେନ୍ଦ୍ର ଥିଲା। ଏଥି ନିମିତ୍ତ ସ୍ୱତନ୍ତ୍ର ଭାବେ ନିର୍ମିତ ହୋଇଥିବା "ଅଲମ୍ପିକ୍ ବନ୍ଦର" ଏବେ ବି ଶୋଭା ପାଉଛି। ବେଳେବେଳେ ସେଠାରେ କିଛି ସମୟ କାଟିବାର ଅଭ୍ୟାସ ହୋଇଥିଲା।

କିଙ୍ଗ୍‌ସଟନ୍‌ର ଅବସ୍ଥିତି ବେଶ୍ ଆକର୍ଷଣୀୟ। କାନାଡ଼ା ଭୌଗୋଳିକ ଦୃଷ୍ଟିକୋଣରୁ ଏକ ବିଶାଳ ଆୟତନର ଦେଶ। ପୂର୍ବ ପଟରେ ଆଟ୍‌ଲାଣ୍ଟିକ୍ ମହାସାଗର ଓ ପଶ୍ଚିମରେ ପ୍ରଶାନ୍ତ ମହାସାଗର। ଦୁଇ ମହାସାଗର ମଧ୍ୟରେ ବ୍ୟବଧାନ ପ୍ରାୟ ଚାରି ହଜାର କିଲୋମିଟର। କାନାଡ଼ାର ପୂର୍ବ ଭାଗରେ ଅବସ୍ଥିତ ଦୁଇଟି ମହାନଗର ଟରଣ୍ଟୋ ଓ ମଣ୍ଟିଆଲ୍‌ର ମଧ୍ୟ ସ୍ଥଳରେ କିଙ୍ଗ୍‌ସଟନ୍। ଏହାର ପୂର୍ବ ଦିଗରେ ୨୬୮ କି.ମି. ଦୂରରେ ଟରଣ୍ଟୋ ଏବଂ ପଶ୍ଚିମ ଦିଗରେ ୩୯୫ କି.ମି. ଦୂରରେ ମଣ୍ଟ୍ରିଆଲ୍। ଦୁଇଟି ମହାନଗରକୁ ସଂଯୁକ୍ତ କରୁଥିବା ଚାରି-ଚାରି ଲେନ୍ ବିଶିଷ୍ଟ ଜାତୀୟ

ରାଜପଥର ପ୍ରାୟ ମଧ୍ୟ ଭାଗରେ କିଙ୍ଗ୍‌ସଟନ୍। ଉତ୍ତର ଦିଗରେ ୧୦୫ କି.ମି. ଦୂରରେ ଦେଶର ରାଜଧାନୀ ଅଟୱା।

କିଙ୍ଗ୍‌ସଟନ୍ ବେଶୀ ଶିଳ୍ପ ବହୁଳ ସହର ନୁହେଁ। ଗୋଟିଏ ନାଇଲନ୍ କାରଖାନା ଏବଂ ଗୋଟିଏ ଆଲୁମିନିୟମ୍ କାରଖାନା। ଆମ ରାଜ୍ୟର ହୀରାକୁଦ୍‌ଠାରେ ହିଣ୍ଡାଲିୟମ୍ ସହିତ ଏହାର ସମ୍ପର୍କ ରହିଛି। କେହି କେହି କିଙ୍ଗ୍‌ସଟନ୍‌କୁ ପ୍ରିଜନ୍ ସହର ମଧ୍ୟ କୁହନ୍ତି। ଏଠାରେ ଚାରି ପାଞ୍ଚୋଟି ଜେଲ୍ ରହିଛି। ନାରୀମାନଙ୍କ ପାଇଁ ଗୋଟିଏ ନାରୀ ଅପରାଧୀ ଜେଲ୍ ମଧ୍ୟ ଅଛି।

କିଙ୍ଗ୍‌ସଟନ୍‌ର ସବୁଠାରୁ ଅଧିକ ଆକର୍ଷଣ ହେଉଛି "ସହସ୍ର ଦ୍ୱୀପର ସମାହାର" (Thousand Islands Area)। ଓଣ୍ଟାରିଆ ହ୍ରଦ ମଧ୍ୟରେ ଛୋଟ ବଡ଼ ହୋଇ ଅନେକଗୁଡ଼ିଏ ଦ୍ୱୀପ ରହିଛି। ଖରାଦିନେ ସୁଦୃଶ୍ୟ ବୋଟ୍‌ରେ ପର୍ଯ୍ୟଟକମାନଙ୍କୁ ହ୍ରଦ ମଧ୍ୟକୁ ବୁଲାଇ ନିଅନ୍ତି। ବାଦ୍ୟ, ନାଚ, ଗୀତ ଓ ଅନ୍ୟ ସବୁ ଆମୋଦ ପ୍ରମୋଦ ସହିତ ପର୍ଯ୍ୟଟକମାନେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ନୌବିହାର କରନ୍ତି। ଆମର କାନାଡ଼ା ଅବସ୍ଥାନ ସମୟରେ ମଇ/ଜୁନ୍‌ରେ ଆମେ ଏକାଧିକ ଥର ଏପରି ଆମୋଦ ପ୍ରମୋଦର ସୁଯୋଗ ନେଇଥିଲୁ।

### ବିଶ୍ୱବିଦ୍ୟାଳୟ

କୁଇନ୍ସ ବିଶ୍ୱବିଦ୍ୟାଳୟକୁ କେନ୍ଦ୍ର କରି କିଙ୍ଗ୍‌ସଟନ୍ ସହର ଗଢ଼ି ଉଠିଛି। ଏହା ଯେପରି ମାନ୍ୟତାପ୍ରାପ୍ତ ସେହିପରି ପୁରାତନ ମଧ୍ୟ। ଶୁଣିଛି ଯେ ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତିମାନେ ସେମାନଙ୍କର ସନ୍ତାନ ସନ୍ତତିମାନଙ୍କୁ ଏ ବିଶ୍ୱବିଦ୍ୟାଳୟରେ ଶିକ୍ଷିତ କରିବାର ଇଚ୍ଛା ରଖନ୍ତି। କିନ୍ତୁ ଗଣତାନ୍ତ୍ରିକ ପରମ୍ପରାର ସୁସ୍ଥ ପ୍ରଭାବ ଯୋଗୁଁ ପିତାମାତାଙ୍କ ପଦବୀ କିମ୍ବା ବଂଶମର୍ଯ୍ୟାଦା ଯୋଗୁଁ କୌଣସି ଛାତ୍ରୀ ବା ଛାତ୍ର ସହଜରେ ଅନ୍ୟମାନଙ୍କଠାରୁ ଅଲଗା ହୋଇ ଯିବାର ଘଟଣା ମୁଁ ଅନୁଭବ କରିନାହିଁ। ଛାତ୍ରଛାତ୍ରୀ ସଂଖ୍ୟା ପ୍ରାୟ କୋଡ଼ିଏ ହଜାର। ଆମ ଦେଶ ପରି ବିଶ୍ୱବିଦ୍ୟାଳୟର ଅନୁବନ୍ଧିତ କଲେଜ ବ୍ୟବସ୍ଥା ନାହିଁ। ଇଞ୍ଜିନିୟରିଂ, ଡାକ୍ତରୀ, ପରିଚାଳନା ବିଜ୍ଞାନ ଓ ଅନ୍ୟ ସବୁ ବିଭାଗ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଅବସ୍ଥିତ।

ଛାତ୍ରଛାତ୍ରୀମାନଙ୍କର ଶାରୀରିକ ଓ ସାଂସ୍କୃତିକ ବିକାଶ ଲାଗି ବିରାଟ ବ୍ୟାୟାମଶାଳା, ପ୍ରେକ୍ଷାଳୟ, ନାଟକ ବିଭାଗ, ସଙ୍ଗୀତ ବିଭାଗ, ଚଳଚ୍ଚିତ୍ର ବିଭାଗ ଆଦି ରହିଛି। ପ୍ରଦର୍ଶନ ବ୍ୟତୀତ ଉଚ୍ଚତର ଡିଗ୍ରୀ ମଧ୍ୟ ଏ ସବୁ ବିଷୟରେ ଦିଆ ଯାଇଥାଏ।

ଶିକ୍ଷାବର୍ଷ ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହରେ ଆରମ୍ଭ ହୋଇଥାଏ। ପ୍ରଥମ ଥର ପାଇଁ ବିଶ୍ୱବିଦ୍ୟାଳୟ ପଞ୍ଜୀକୃତ ହେଉଥିବା ଛାତ୍ରଛାତ୍ରୀଙ୍କ ପାଇଁ ଏକପ୍ରକାର ବିରାଟ

ସମାବେଶ/ସମାରୋହର ଆୟୋଜନ କରାଯାଏ। ମୁଁ ମଧ୍ୟ ୧୯୭୬ ସେପ୍ଟେମ୍ବର ମାସରେ ଏ ସମାବେଶରେ ଯୋଗ ଦେଇଥିଲି। ପଞ୍ଜୀକରଣର ପରେ ପରେ ପ୍ରାୟ ଚାରି ପାଞ୍ଚ ଦିନ ନବାଗତ ଛାତ୍ରଛାତ୍ରୀମାନେ ପ୍ରବେଶ ଉତ୍ସବ ପାଳନ କରନ୍ତି। ନାଚ, ଗୀତ, ବାଦ୍ୟ ଯନ୍ତ୍ରର ଉପଯୋଗ ମାଧ୍ୟମରେ ସମଗ୍ର ସହରଟି ବିହ୍ୱଳିତ ହୋଇଉଠେ।

ବିଶ୍ୱବିଦ୍ୟାଳୟର ଶିକ୍ଷାବର୍ଷ ସେପ୍ଟେମ୍ବରରେ ଆରମ୍ଭ ହୋଇ ଏପ୍ରିଲ ଶେଷ ପର୍ଯ୍ୟନ୍ତ ଚାଲୁ ରହେ। ଏପ୍ରିଲ ମାସରେ ଅନ୍ତିମ ପରୀକ୍ଷା ଓ ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହୁଏ। ମଇ ମାସରୁ ଅଗଷ୍ଟ ଶେଷ ପର୍ଯ୍ୟନ୍ତ ବିରତି। ଏ ସମୟରେ ବିଶ୍ୱବିଦ୍ୟାଳୟର ପ୍ରତି ବିଭାଗ କିଛିନା କିଛି ଗ୍ରୀଷ୍ମକାଳୀନ ଶିକ୍ଷାର ବ୍ୟବସ୍ଥା କରିଥାଆନ୍ତି। ଯେଉଁମାନେ କୌଣସି କାରଣରୁ ନିଜର କଲେଜ ଶିକ୍ଷା ସମାପ୍ତ କରି ନ ଥାନ୍ତି, ସେମାନେ ଏ ସବୁ ପାଠ୍ୟକ୍ରମର ଉପଯୋଗ କରି ନିଜର ଶିକ୍ଷା ସମାପ୍ତି ଦିଗରେ ଅଗ୍ରସର ହୋଇପାରନ୍ତି।

ଏତଦ୍ ବ୍ୟତୀତ ଏହି ଚାରିମାସର ଅବଧି ମଧ୍ୟରେ କର୍ମଯୋଗାଣ ବିଭାଗ ତରଫରୁ ଛାତ୍ରଛାତ୍ରୀମାନଙ୍କ ପାଇଁ ଛାତ୍ର/ଛାତ୍ରୀ ନିଯୁକ୍ତି (Hire Student) ପ୍ରକୋଷ୍ଠମାନ ଉନ୍ମୋଚିତ ହୁଏ। ଏଠାରେ ଛାତ୍ରଛାତ୍ରୀମାନେ ନିଜର ନାମ ପଞ୍ଜୀକରଣ କଲେ ସେମାନଙ୍କୁ ପାରିଶ୍ରମିକ ସହ ଅସ୍ଥାୟୀ କାମ ଯୋଗାଇ ଦିଆଯାଏ। ବାସଗୃହରେ ରଙ୍ଗ ଲଗାଇବା, ଝରକାର କାଚ ସବୁ ପରିଷ୍କାର କରିବା ଏବଂ ଘର ସମ୍ମୁଖସ୍ଥ ପ୍ରାଙ୍ଗଣରୁ ଘାସ ବାଛିବା ଇତ୍ୟାଦି ଏ ଧରଣର କାମ। ବହୁ ଛାତ୍ରଛାତ୍ରୀ ଏପରି କାମ କରି ନିଜର ଆର୍ଥିକ ଅବସ୍ଥା ଉନ୍ନତ କରିବାକୁ ଚାହାଁନ୍ତି। ଏହାର ଦୁଇଟି ଉଦ୍ଦେଶ୍ୟ ଥାଏ। ପ୍ରଥମତଃ କାୟିକ ପରିଶ୍ରମ କରିବା ଫଳରେ ଭବିଷ୍ୟତ ଜୀବନ ପାଇଁ ଅନୁଭୂତିର ସମ୍ବଳ ମିଳିଥାଏ। ଦ୍ୱିତୀୟତଃ ନିଜର ଉଚ୍ଚଶିକ୍ଷାର ଖର୍ଚ୍ଚ ସେମାନେ ଏହି ସମ୍ବଳରୁ ନେଇଥାଆନ୍ତି। କାନାଡ଼ାର ଅଧିକାଂଶ ଛାତ୍ରଛାତ୍ରୀ ନିଜ ସମ୍ବଳରୁ ଉଚ୍ଚଶିକ୍ଷା ସମାପ୍ତ କରିବାର ଅଭିଳାଷ ରଖନ୍ତି। ସ୍ଥଳ ବିଶେଷରେ କେତେକ ପିତାମାତାଙ୍କଠାରୁ ଆଂଶିକଭାବେ ସାହାଯ୍ୟ ନିଅନ୍ତି। ଖୁବ୍ କମ୍ ଛାତ୍ରଛାତ୍ରୀ ପୂରାପୂରି ପିତାମାତାଙ୍କ ଆର୍ଥିକ ସହାୟତା ଉପରେ ନିର୍ଭର କରନ୍ତି।

କାନାଡ଼ାର ଉନ୍ନତ ଶିକ୍ଷା ବ୍ୟବସ୍ଥାର ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଏଠାରେ ଉଲ୍ଲେଖଯୋଗ୍ୟ। ସ୍କୁଲରେ ଶିକ୍ଷା ବାବଦରେ କୌଣସି ଖର୍ଚ୍ଚ ପିଲା କିମ୍ୱା ପିତାମାତା ବହନ କରି ନଥାନ୍ତି। ଛାତ୍ରଛାତ୍ରୀମାନେ ସବୁ ସୁବିଧାସୁଯୋଗ ନିଃସର୍ତ୍ତ ଭାବେ ପାଆନ୍ତି।

ନାଗରିକମାନେ ଯେଉଁ ମ୍ୟୁନିସିପାଲିଟି ଦେୟ ଦିଅନ୍ତି, ସେଥିରେ ଗୋଟିଏ ଅଂଶ ହେଉଛି ଶିକ୍ଷା ଶୁଳ୍କ। ସୁତରାଂ ପିଲା କିମ୍ୱା ଅଭିଭାବକମାନଙ୍କୁ ଅଲଗା ଦେବାକୁ ପଡ଼ି ନ ଥାଏ। ମାତ୍ର କଲେଜର ଦେୟ ଖୁବ୍ ବେଶୀ। ପୁଣି ବିଦେଶରୁ ଆସିଥିବା

ଛାତ୍ରଛାତ୍ରୀମାନେ ପ୍ରାୟ ଦୁଇତିନିଗୁଣ ଖର୍ଚ୍ଚ ଦିଅନ୍ତି। ତେଣୁ ଅଧିକାଂଶ ଛାତ୍ରଛାତ୍ରୀ ନିଜର ପିତାମାତାଙ୍କ ଉପରେ ଚାପ ନ ଦେଇ ଅନ୍ତତଃ କିଛି ଅଂଶ ନିଜେ ସଂଗ୍ରହ କରନ୍ତି। ଏ ପରିପ୍ରେକ୍ଷୀରେ ଗ୍ରୀଷ୍ମକାଳୀନ ଅସ୍ଥାୟୀ କର୍ମଯୋଗାଣ ବିଶେଷ ସହାୟକ ହୁଏ।

ବିଶ୍ୱବିଦ୍ୟାଳୟ ସ୍ତରରେ ସ୍ନାତକ ଶିକ୍ଷା ସମାପନ ପରେ ଉଚ୍ଚତର ଶିକ୍ଷା ପାଇଁ ସ୍ନାତକୋତ୍ତର (M.A.)ସ୍ତରରେ ପ୍ରବେଶ କରନ୍ତି। ଅବଶ୍ୟ କାନାଡ଼ାରେ ଏହା ସ୍ନାତକୋତ୍ତର (Post-Graduate)କୁହା ନ ଯାଇ ସ୍ନାତକ (Graduation) କୁହାଯାଏ। ବ୍ୟବସ୍ଥାଟି ଏହିପରି। ଶିକ୍ଷାର୍ଥୀମାନେ ପି.ଏଚ୍.ଡ଼ି. ଅଭିମୁଖୀ ଏମ୍.ଏ. ଶ୍ରେଣୀରେ (M.A. Leading to Ph.D.) ଭର୍ତ୍ତି ହୁଅନ୍ତି। ଏମ୍.ଏ./ଏମ୍.ଏସ୍.ସି. ପାଇଁ କୋର୍ସ ହେଉଛି ଏକ ବର୍ଷର। ଜଣେ ଆଉ ଅଧିକ ଅଗ୍ରସର ହେବା ପାଇଁ ନ ଚାହିଁଲେ କିମ୍ବା ଯୋଗ୍ୟତା ମାନରେ ସନ୍ତୋଷଜନକ କୃତିତ୍ୱ ନ ଦର୍ଶାଇଲେ ସେମାନଙ୍କୁ M.A./M.Sc. ଉପାଧି ଦେଇ ବିଦାୟ ଦିଆଯାଏ। ମାତ୍ର ଆଗ୍ରହୀ ଓ ଉଚ୍ଚ ସଫଳତା ଦର୍ଶାଇଥିବା ଛାତ୍ରଛାତ୍ରୀ ପି.ଏଚ୍.ଡ଼ି. କରିବାର ଅନୁମୋଦନ ପାଆନ୍ତି।

ଡାକ୍ତରୀ ଓ ଇଞ୍ଜିନିୟରିଂ ପରି ପେସାଗତ ଶିକ୍ଷା ବି.ଏସ୍.ସି. (B.Sc.) ପରେ ଆରମ୍ଭ ହୁଏ। ସେମାନେ ପେସାଗତ ଡିଗ୍ରୀ ହାସଲ କଲାପରେ ପି.ଏଚ୍.ଡ଼ି. ପାଇଁ ଅଗ୍ରସର ହୋଇପାରନ୍ତି।

### ମନସ୍ତତ୍ତ୍ୱ ବିଭାଗ

ମନସ୍ତତ୍ତ୍ୱ ବିଭାଗଟି ବିଶ୍ୱବିଦ୍ୟାଳୟର ଏକ ବିକଶିତ ବିଭାଗ। ମନସ୍ତତ୍ତ୍ୱ ବିଭାଗରେ ଦୁଇଟି ଅଲଗା ଅଲଗା (Wings) ଶାଖା ରହିଥିଲା: ପରୀକ୍ଷାମୂଳକ ମନୋବିଜ୍ଞାନ ଓ ନିଦାନ ମନୋବିଜ୍ଞାନ। ପାଶ୍ଚାତ୍ୟ ଦେଶମାନଙ୍କରେ ମାନସିକ ରୋଗ ଜନଜୀବନରେ ଏକ ବିରାଟ ସମସ୍ୟା ହୋଇ ଥିବାରୁ ପ୍ରତି-ବିଶ୍ୱବିଦ୍ୟାଳୟରେ ନିଦାନ ମନୋବିଜ୍ଞାନର (Clinical Psychology) ସ୍ୱାତନ୍ତ୍ର୍ୟ ରହିଛି। ଏଥିରେ ଭର୍ତ୍ତି ହେଉଥିବା ଛାତ୍ରଛାତ୍ରୀମାନେ ଅଧିକା ଗୋଟିଏ ବର୍ଷ କାମ କରନ୍ତି। ଚିକିତ୍ସାଳୟରେ ଓ ମାନସିକ ଚିକିତ୍ସାଳୟରେ ଏମାନଙ୍କୁ Intership କରିବାକୁ ପଡ଼ିଥାଏ। ବିଶ୍ୱବିଦ୍ୟାଳୟର ପି.ଏଚ୍.ଡ଼ି. ପାଠ୍ୟକ୍ରମରେ ପରୀକ୍ଷାମୂଳକ ମନୋବିଜ୍ଞାନ ପାଇଁ ଦୁଇବର୍ଷ ଏବଂ ନିଦାନ ମନୋବିଜ୍ଞାନ ପାଇଁ ତିନିବର୍ଷ ପୂରାପୂରି ଶିକ୍ଷାର୍ଥୀ ରହିବାକୁ ହେବ। ଏହା ପୂରଣ କଲା ପରେ ଜଣେ ଛାତ୍ରୀ ବା ଛାତ୍ର ଡ଼ିଗ୍ରୀ ପାଇବା ପର୍ଯ୍ୟନ୍ତ ଆଶିଂକ ସମୟ ସ୍ତରରେ ରହିପାରିବେ।

ଆମର ମନସ୍ତତ୍ତ୍ୱ ବିଭାଗଟି ହମ୍ପିହଲ୍ ନାମରେ ପରିଚିତ। ହମ୍ପିହଲ୍‌କୁ ପ୍ରଥମେ ଯିବା ଦିନ ଅନୁଭବ କଲି ଯେ ଆମେ ବାଣୀବିହାରରେ ସ୍ନାତକୋତ୍ତର ପଢୁଥିବା ସମୟରେ ହମ୍ପି ଲେଖିଥବା "ଭାବନାର ମନସ୍ତତ୍ତ୍ୱ" ପାଠ୍ୟପୁସ୍ତକ ପଢୁଥିଲୁ। ପରେ

ଜାଣିଲି ଯେ ଏହି ପ୍ରଫେସର କୁଇନ୍ସ ମନୋବିଜ୍ଞାନ ବିଭାଗର ପ୍ରଥମ ବିଭାଗୀୟ ମୁଖ୍ୟ ଥିଲେ।

ସମଗ୍ର ପ୍ରାସାଦଟି ଚାରି ମହଲା ବିଶିଷ୍ଟ। ତଳ ମହଲାରେ ଦୁଇଶହ ତିନିଶହ ଛାତ୍ରଛାତ୍ରୀ ବସିବା ଭଳି ହଲ୍ ସବୁ ରହିଛି। ଅନ୍ୟାନ୍ୟ ସେବାକାରୀ ଯନ୍ତ୍ରପାତି (ଯଥା: ୱାର୍କସ୍‌ସପ୍, ଭେଣ୍ଡିଂ ମେସିନ୍ ଇତ୍ୟାଦି) ରହିଛି। ଦ୍ୱିତୀୟ ମହଲାରେ ମଧ୍ୟ କ୍ଲାସ ରୁମ୍ ରହିଛି ଏବଂ ଅଧ୍ୟାପକମାନଙ୍କର କୋଠରୀ। ମନୋବିଜ୍ଞାନ ବିଭାଗରେ ପ୍ରାୟ ୩୦ ଜଣ ପ୍ରଫେସର ଏବଂ ୫୦ ଜଣ ପି.ଏଚ୍.ଡ଼ି. ଗବେଷକ ରହିଥିଲେ। ଚତୁର୍ଥ ମହଲାଟିରେ ମୁଖ୍ୟତଃ ଗବେଷଣାଗାର ରହିଥିଲା। କୁଇନ୍ସ ବିଶ୍ୱବିଦ୍ୟାଳୟ ନିଦ୍ରା ଗବେଷଣାଗାରର (Sleep Laboratory) ଖ୍ୟାତି ମୁଁ ପୂର୍ବରୁ ଶୁଣିଥିଲି।

ମୋ ପରି ଗବେଷକମାନଙ୍କ ପାଇଁ ମୁକ୍ତ ସ୍ୱାଧୀନତା ରହିଥିଲା। ପ୍ରତ୍ୟେକ ଗବେଷକ ଛାତ୍ରଛାତ୍ରୀଙ୍କ ପାଖରେ ତିନୋଟି ଚାବି। ପ୍ରଥମ ଚାବିଟି ବ୍ୟବହାର କରି ସେମାନେ ଯେ କୌଣସି ମୁହୂର୍ତ୍ତରେ ବିଭାଗରେ ପ୍ରବେଶ କରି ପାରିବେ। ଦ୍ୱିତୀୟ ଚାବିର ଉପଯୋଗ କରି ସେମାନେ ଯେ କୌଣସି ସମୟରେ କମ୍ପ୍ୟୁଟର ଓ ଅନ୍ୟ ଯନ୍ତ୍ରପାତି ଥିବା କୋଠରୀକୁ ଯାଇ ପାରିବେ। ତୃତୀୟଟି ନିଜ କୋଠରୀର ଚାବି। ବିଭାଗଟି ସଦା ସର୍ବଦା କର୍ମଚଞ୍ଚଳ। କେବଳ ଖ୍ରୀଷ୍ଟମାସ ସମୟରେ ଦୁଇ ଚାରିଦିନକୁ ବାଦ୍ ଦେଲେ ଅନ୍ୟ ସମୟରେ କେହି ନା କେହି କାର୍ଯ୍ୟରତ ରହିଥାଆନ୍ତି।

## ପ୍ରଶିକ୍ଷକ ଜନ୍‌ବେରୀ

ପଞ୍ଜୀକରଣ ପରେ ପରେ ସାମୟିକ ଭାବରେ ବିଭାଗୀୟ ମୁଖ୍ୟ ମୋର ମାର୍ଗଦର୍ଶକ ଥିଲେ। ସେ ମୋର କାଗଜ ପତ୍ରରେ ସ୍ୱାକ୍ଷର କରୁଥିଲେ। ସେ ମୋତେ ସୂଚନା ଦେଲେ ଯେ ତରବର ହେବାର ଆବଶ୍ୟକତା ନାହିଁ। କିନ୍ତୁ ମୋର ଆଗ୍ରହ ଓ ସଂକଳ୍ପ ଦୃଷ୍ଟିରୁ ବିଭାଗୀୟ ପ୍ରଫେସର୍‌ମାନଙ୍କ ମଧ୍ୟରୁ ଜଣଙ୍କୁ ମାର୍ଗଦର୍ଶକ ରୂପେ ବାଛିବାକୁ ହେବ। ସେ ପୁଣି ସୂଚନା ଦେଲେ ଯେ ମନସ୍ତତ୍ତ୍ୱ ବିଭାଗର ଲାଇବ୍ରେରୀରେ ପ୍ରତି ପ୍ରଫେସର୍‌ଙ୍କର ଗୋଟିଏ ଗୋଟିଏ ବକ୍ସ ରହିଛି। ସେଥିରେ ସେମାନଙ୍କର ଗବେଷଣା ସମ୍ପର୍କିତ ଲେଖା ସବୁ ରହିଛି। ତାହାର ଅନୁଧ୍ୟାନ କରି ପ୍ରତ୍ୟେକ ପ୍ରଫେସର୍‌ଙ୍କ କାର୍ଯ୍ୟକ୍ଷେତ୍ର ସହଜରେ ଜାଣିହେବ।

ମୁଁ ତାହାହିଁ କଲି। ଅବଶ୍ୟ ଏ ଦିଗରେ ଶ୍ରୀକାନ୍ତ ବାବୁ ଏବଂ ଡକ୍ଟର ପୁରୋହିତ ମଧ୍ୟ ସାହାଯ୍ୟ କଲେ। ମୁଁ କାନାଡ଼ାରେ ପହଞ୍ଚିବା ପୂର୍ବରୁ ସ୍ଥିର କରିଥିଲି ଯେ ମୁଁ ଯେଉଁ ବିଷୟରେ ଗବେଷଣା କରିବି, ତାହା କିଛି ମାତ୍ରାରେ ପ୍ରୟୋଗଧର୍ମୀ ହୋଇଥିବ। ଦ୍ୱିତୀୟତଃ ସାମାଜିକ-ସାଂସ୍କୃତିକ ଦୃଷ୍ଟିରୁ ତାହାର ଉପଯୋଗିତା ଥିବ। ମୁଁ ଭାରତରେ ମଧ୍ୟ ସମଧର୍ମୀ କାମ କରିପାରିବି।

ଏହି କ୍ରମରେ ଅନ୍ୱେଷଣ କରିବା ପ୍ରକ୍ରିୟାର ମୁଁ ଜନ୍ ବେରୀଙ୍କୁ ମୋର ମାର୍ଗ ଦର୍ଶକ ରୂପେ ବାଛିଲି। ସେତେବେଳେ ସେ କୌଣସି ଛାତ୍ରଛାତ୍ରୀଙ୍କର ପି.ଏଚ୍.ଡ଼ି. ମାର୍ଗଦର୍ଶକ ହୋଇ ନ ଥିଲେ। ତଥାପି ତାଙ୍କର କାର୍ଯ୍ୟ ମୋତେ ଆକୃଷ୍ଟ କଲା। ମୁଁ ଦେଖିଲି ଯେ ସେ ଏସ୍କିମୋ ସମେତ ବହୁ ସମାଜ ସଂସ୍କୃତିରେ କାର୍ଯ୍ୟ କରିଛନ୍ତି। ଗବେଷଣା କ୍ରମରେ ବହୁ ଦେଶ ଯାଇଛନ୍ତି। ପ୍ରକାଶିତ ପୁସ୍ତକ ଓ ଗବେଷଣା ଲେଖା ପ୍ରଚୁର। ସବୁଠାରୁ ଅଧିକ ପ୍ରଶଂସନୀୟ ହେଉଛି ତାଙ୍କର ପରିଶ୍ରମଶୀଳତା।

ପ୍ରାୟ ଦୁଇ ତିନ ମାସର ପ୍ରାରମ୍ଭିକ ଅନ୍ୱେଷଣ ପରେ ମୁଁ ମୋର ମନୋଭାବ ବ୍ୟକ୍ତ କଲି। ସେ ସମ୍ମତ ହେଲେ। ସେ ବିଶ୍ୱବିଦ୍ୟାଳୟର ପାଖାପାଖି ରହୁଥିଲେ (୩୬ ୱେଲିଂଟନ)। ତାଙ୍କ ଘର ଏବଂ ଆମର ବିଭାଗର ମଧ୍ୟବର୍ତ୍ତୀ ସ୍ଥାନରେ ଗୋଟିଏ ବିରାଟ ପାର୍କ। ଅଧିକାଂଶ ସମୟରେ ସେ ଚାଲି ଚାଲି ଆସନ୍ତି ଓ ଯାଆନ୍ତି। ସେ ଅଷ୍ଟ୍ରେଲିଆର ସିଡ୍‌ନୀ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. ଲାଭ କରିଥିଲେ ଏବଂ ସେଠାରେ କିଛିଦିନ ଅଧ୍ୟାପନା କରିଥିଲେ। ତାଙ୍କର ଜନ୍ମସ୍ଥାନ ହେଉଛି କାନାଡ଼ାର କ୍ୟୁବେକ୍ ରାଜ୍ୟ। ଇଂରାଜୀ ଓ ଫରାସୀ ଭାଷାରେ ଦକ୍ଷତା ରହିଛି। ତାଙ୍କର ସ୍ତ୍ରୀ ହେଉଛନ୍ତି ଜୋନ୍। ଦୁଇ କନ୍ୟା ଓ ଗୋଟିଏ ପୁତ୍ରକୁ ନେଇ ପରିବାର। ଆମେ ଦୁହେଁ ବହୁବାର ତାଙ୍କ ଘରେ ସାମାଜିକ ପରିବେଶରେ ଏକାଠି ହୋଇଛୁ।

ତାଙ୍କର ପତ୍ନୀଙ୍କଠାରୁ ଜାଣିବାକୁ ପାଇଲୁ ଯେ ତାଙ୍କ ଘରର ସମସ୍ତ କାଠକାମ ସେ ନିଜେ କରିଛନ୍ତି। ଗ୍ରୀଷ୍ମକାଳୀନ ମାସମାନଙ୍କରେ ସେ ଓଣ୍ଟାରିଓ ହ୍ରଦରେ ତାଙ୍କର ନୌକା ନେଇ ସକାଳୁ ଯାଆନ୍ତି ଏବଂ ସନ୍ଧ୍ୟାରେ ଫେରନ୍ତି। ସେ ଦେଶର ଲୋକମାନେ ପାଞ୍ଚ ଦଶ ବର୍ଷରେ ହଜାର ହଜାର ଡଲାର୍ ଖର୍ଚ୍ଚ କରି ନୂଆ ଘର କିଣନ୍ତି। ମାତ୍ର ଜନ୍ ବେରୀ ପଚାଶ ଷାଠିଏ ହଜାର ଖର୍ଚ୍ଚ କରି ନୂଆ ବୋଟ୍ କିଣନ୍ତି। ମୁଁ ମୋର ଗବେଷଣାଜନିତ ବ୍ୟକ୍ତିଗତ ଆଲୋଚନା ପାଇଁ ବିଭାଗରେ ଦଶଟା କିମ୍ବା ସାଢ଼େ ନ'ଟାରେ ତାଙ୍କୁ ସାକ୍ଷାତ୍ କରିବା ସମୟରେ ଜାଣିବାକୁ ପାଏ ଯେ ସେ ଇତି ମଧ୍ୟରେ ସକାଳୁ ଚାରି ପାଞ୍ଚ ଘଣ୍ଟାର ପଢ଼ାପଢ଼ି କିମ୍ବା ଲେଖାଲେଖି ସାରିଛନ୍ତି। ନମସ୍ୟ ତାଙ୍କର କର୍ମ ନିଷ୍ଠା।

ମୋର ମାର୍ଗଦର୍ଶକ ରୂପେ ମୁଁ ଜନ୍ ବେରୀଙ୍କ ପ୍ରତି କୃତଜ୍ଞ। ଗବେଷଣାର ସାମଗ୍ରୀ ଅପେକ୍ଷା ସକାରାତ୍ମକ ମନୋବୃତ୍ତି ମୁଁ ତାଙ୍କଠାରୁ ଶିଖିଛି। ଜଣେ ପ୍ରଖ୍ୟାତ ମନୋବିଜ୍ଞାନୀ ହିସାବରେ ସେ ଦେଶ ବିଦେଶକୁ ବହୁ ସମୟରେ ଯାତ୍ରା କରୁଥିଲେ। ସାଧାରଣତଃ କାନାଡ଼ା ଓ ଆମେରିକାର ପ୍ରଫେସର୍‌ମାନେ ଛ'ବର୍ଷର ପୂର୍ଣ୍ଣ କାର୍ଯ୍ୟ ସମୟ ପରେ ଗୋଟିଏ ବର୍ଷ ପାଇଁ ସାବାଟିକାଲ୍ ଛୁଟି ପାଆନ୍ତି। ଏହି କ୍ରମରେ ଜନ୍

ବେରୀ ୧୯୭୯-୮୦ ମସିହାରେ ଗୋଟିଏ ବର୍ଷ ପାଇଁ ଫ୍ରାନ୍‌ସ ଚାଲିଗଲେ। ତଥାପି ଆମର ଯୋଗାଯୋଗ ମୋ ପାଇଁ ବେଶ୍ ସହାୟକ ଥିଲା।

ମୁଁ କାନାଡ଼ାରେ ଥିବା ଅବସ୍ଥାରେ ୧୯୮୦ ଡିସେମ୍ବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନ ବିଭାଗରେ ଅନ୍ତର୍ଜାତିକ ବନ୍ଧ-ସଂସ୍କୃତି-ମନୋବିଜ୍ଞାନ ସଂଘର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ଜନ୍ ବେରୀ ଏହି ପେସାଗତ ସଂଘର ଜଣେ ପ୍ରମୁଖ ପଦାଧିକାରୀ। ସେତେବେଳେ ସେ ପ୍ରଥମ ଥର ପାଇଁ ଭାରତ ଆସିଲେ। ପରେ ସେ ଅଳ୍ପ ସମୟ ପାଇଁ ଭାରତ ଓ ଓଡ଼ିଶା ଆସିଥିଲେ। ଓଡ଼ିଶାର ମହାବାତ୍ୟା ସମୟରେ ସେ ଭାରତର ବରୋଦାକୁ ଆସିଥିଲେ ମଧ୍ୟ ଓଡ଼ିଶା ଆସିବା ସମ୍ଭବପର ନ ଥିଲା। ବେଶ୍ କିଛିଦିନ ପାଇଁ ସେ ୨୦୦୪ ମସିହାରେ ଓଡ଼ିଶା ଆସିଥିଲେ। ଶାସ୍ତ୍ରୀ ଅନୁଷ୍ଠାନର ସହାୟତାରେ ମୁଁ ଗୋଟିଏ ସମ୍ମିଳନୀ ଆୟୋଜନ କରିଥିଲି। ଏହାର ମୁଖ୍ୟ ଅତିଥି ରୂପେ ମୁଁ ତାଙ୍କୁ ଆମନ୍ତ୍ରଣ କରିଥିଲି।

ମୋର ପରମ ସୌଭାଗ୍ୟ ଯେ ଜନ୍ ବେରୀଙ୍କ ପରି ଜଣେ ପ୍ରଖ୍ୟାତ ମନୋବିଜ୍ଞାନୀ ଓ କର୍ମଯୋଗୀଙ୍କର ସାନ୍ନିଧ୍ୟ ମୋତେ ମିଳିଥିଲା। ମୋର ପେସାଗତ ଜୀବନର ଅଭିବୃଦ୍ଧିରେ ଜନ୍ ବେରୀଙ୍କ ଅବଦାନ ଚିରସ୍ମରଣୀୟ।

❖

(୨୫)

# କାନାଡ଼ାରେ ବନ୍ଧୁବଳୟ

ପ୍ରାଚ୍ୟ ସଂସ୍କୃତିରେ ଲାଳିତପାଳିତ ହୋଇଥିବା ଲୋକମାନେ କାନାଡ଼ା ପରି ପୂରାପୂରି ପାଶ୍ଚାତ୍ୟ ପରିବେଶକୁ ଗଲେ ପ୍ରଥମେ ପ୍ରଥମେ କିଛିଟା ଅଡୁଆ ଲାଗିବା ସ୍ୱାଭାବିକ। ଆମକୁ ମଧ କିଛି କିଛି ଅସ୍ୱାଭାବିକ ମନେହେଲା। କିନ୍ତୁ ଧୀରେ ଧୀରେ ଖାପ ଖୁଆଇ ନେବାର କୌଶଳ ଓ ମନୋବୃତ୍ତି ବୃଦ୍ଧି ପାଇଲା। ସମନ୍ୱୟଶୀଳତାର କଥା କହିବା ସମୟରେ ଗୋଟିଏ କଥା ବେଶ୍ ମନେପଡୁଛି। ତାହା ହେଉଛି ଖାଇବାର ଧାରା ଓ ସମୟ। ଭାରତରେ ଆମେ ସାଧାରଣତଃ ସକାଳ ଓଳି ଯାହିତାହି ପ୍ରାତଃ ଭୋଜନ କରି ନେଉ। ଖରାବେଳେ ମଧ୍ୟାହ୍ନ ଭୋଜନଟି ଜୋର୍‌ଦାର୍ ହେବା ଦରକାର। ବିଶେଷତଃ ଓଡ଼ିଶାରେ ମଧ୍ୟାହ୍ନ ଭୋଜନରେ ବେଶ୍ କିଛି ସାମଗ୍ରୀ ଆବଶ୍ୟକ। ସନ୍ଧ୍ୟାବେଳେ କିଛି ହାଲୁକା ଦ୍ରବ୍ୟ କିମ୍ବା ଚା' ବିସ୍କୁଟରେ କାମ ଚଳେ। ମାତ୍ର ରାତି ନ'ଟା ଦଶଟାରେ ରାତ୍ରିଭୋଜନରେ ପେଟ ଭରିବା ପ୍ରୟୋଜନ।

ପାଶ୍ଚାତ୍ୟ ଦେଶମାନଙ୍କରେ ଭୋଜନର ସମୟ ଶୈଳୀ ପୃଥକ୍। ଅଧିକାଂଶ ସ୍ଥାନରେ କାର୍ଯ୍ୟ ସମୟ ହେଉଛି ସାଢ଼େ ଆଠଟାରୁ ପାଞ୍ଚଟା ପର୍ଯ୍ୟନ୍ତ। ସୁତରାଂ ଅଧିକାଂଶ ଲୋକ ସାତଟା ଆଠଟାରେ ପ୍ରାତଃଭୋଜନ ଗ୍ରହଣ କରନ୍ତି। ଦୀର୍ଘ ସମୟର ବ୍ୟବଧାନ ପରେ ଯାଉଥିବାରୁ ପ୍ରାତଃଭୋଜନ ଯତ୍ନର ସହିତ ଖାଇ ନିଅନ୍ତି। ମଧ୍ୟାହ୍ନଭୋଜନ ଖୁବ୍ ହାଲୁକା। ହୁଏତ ସଙ୍ଗରେ ସାଣ୍ଡଉଇଚ୍ ନେଇ ଯାଆନ୍ତି କିମ୍ବା ବାହାରେ ଭେଣ୍ଡିଂ ମେସିନ୍‌ରୁ ହାଲୁକା ଖାଦ୍ୟ ସଂଗ୍ରହ କରନ୍ତି। ବାହାରେ ଥିଲେ ଫାଷ୍ଟଫୁଡ୍ ନେଇନିଅନ୍ତି। ପ୍ରାୟ ସାଢ଼େ ପାଞ୍ଚଟା କିମ୍ବା ଛ'ଟାରେ ଘରକୁ ଫେରି ଅଳ୍ପ ସମୟ ବିଶ୍ରାମ ନେବା ପରେ ସାଢ଼େ ଛ'ଟା କିମ୍ବା ସାତଟାରେ ରାତ୍ରି ଭୋଜନ ଗ୍ରହଣ କରନ୍ତି। ରାତ୍ରି ଭୋଜନ ପରେ ହୁଏତ ବଜାରକୁ ଯାଆନ୍ତି, ଦୂରଦର୍ଶନ ଦେଖନ୍ତି କିମ୍ବା ସାଙ୍ଗସାଥିଙ୍କ ଘରକୁ ଯାଆନ୍ତି। ରାତି ଦଶଟା ଏଗାରଟା ବେଳେ ଅଳ୍ପ କ୍ଷୀର କିମ୍ବା ଫଳରସ କିମ୍ବା ଆଇସ୍‌କ୍ରିମ୍ ଖାଆନ୍ତି। ତା'ପରେ ବିଶ୍ରାମ ନିଅନ୍ତି। ସାଧାରଣତଃ କେହି କାହାର ଘରକୁ ଆସିଲେ ରାତ୍ରି ଭୋଜନ (ସନ୍ଧ୍ୟା ୭ଟା) ପରେ ହିଁ ଆସନ୍ତି ଏବଂ ଫୋନ୍ କରି ଆସନ୍ତି।

ସ୍ଥାନୀୟ ରୀତି ଅନୁଯାୟୀ ଆମେ କ୍ରମଶଃ ଏପରି ପନ୍ଥା ଗ୍ରହଣ କଲୁ। ମାତ୍ର ଅନୁଭବ କଲୁ ଯେ ରାତି ଦଶଟା ଏଗାରଟାରେ ଶୋଇବାକୁ ଗଲେ ପେଟ ହାଲୁକା

ଥିବାରୁ ଭଲ ନିଦ ହେଉନାହିଁ। ଏଣେ ଖାଇବା ସମୟର ପରିବର୍ତ୍ତନ ମଧ୍ୟ କଷ୍ଟ। ରାତି ନ'ଟାରେ ଖାଉଥିବା ସମୟରେ କେହି ଜଣେ ଆଗନ୍ତୁକ ଘରକୁ ଆସିଲେ ବଡ଼ ଅପ୍ରସ୍ତୁତ ଲାଗିବ। ଧୀରେ ଧୀରେ ସମାଧାନର ବାଟ ବାହାରିଗଲା। ମାର୍କେଟ୍‌ରେ ଟିଣ ଡ଼ବାରେ ଚିକ୍ ପିଜ୍ (Chick Pees) ଥିବାରୁ ନଜର ପଡ଼ିଲା। ରାତିରେ ଟିଣ ଖୋଲି ଅଧସିଝା ମଟରକୁ କଡ଼େଇରେ ପକାଇ ଘୁଘୁନି କରିଦେଲୁ। ରାତି ଦଶଟା ଏଗାରଟା ବେଳେ ଏହାକୁ ଖାଇ ନେଇ ଶୋଇବାରେ ଆଦୌ ଅସୁବିଧା ହେଲା ନାହିଁ। ଅନ୍ୟ ସବୁ ସମୟ ଖାଦ୍ୟରୀତି ସମାନ ରହିଲା। ଆଶ୍ଚର୍ଯ୍ୟର କଥା ଯେ ପ୍ରାୟ ଛ'ମାସ ପରେ ଶୋଇବା ପୂର୍ବରୁ ଏପରି ପେଟ ଭାରୀ କରିବାର ଆବଶ୍ୟକତା ରହିଲା ନାହିଁ। ସେ ଦେଶର ଶୈଳୀରେ ଶରୀର ନିଜକୁ ଆପଣାଇ ନେଲା।

ପେସାଗତ ଜୀବନର ଉତ୍କର୍ଷ ବ୍ୟତୀତ ସାମାଜିକ ଜୀବନ ମଧ୍ୟ ଧୀରେ ଧୀରେ ସହଜ ଓ ପ୍ରୀତିପଦ ହେବାକୁ ଲାଗିଲା। ପେସାଗତ ଜୀବନର ଚାହିଦା ଓ ବିଶ୍ୱବିଦ୍ୟାଳୟ ସମ୍ପର୍କିତ କାରବାର ପରିପ୍ରେକ୍ଷୀରେ ମୋର ମାର୍ଗଦର୍ଶକ ଜନ୍ ବେରୀଙ୍କ ବ୍ୟତୀତ ଅନ୍ୟ କେତେକ ପ୍ରଫେସର୍, କେତେକ ସହପାଠୀ ଏବଂ କେତେକ ବିଦେଶୀ ପ୍ରତିବେଶୀଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରୂପ ନେଇଥିଲା। ଆମର ଗବେଷଣା କାର୍ଯ୍ୟକ୍ରମରେ ଗବେଷଣା ପଦ୍ଧତି ଏକ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଏହାର ବିଶେଷ ଅଂଶ ହେଉଛି ପରିସଂଖ୍ୟାନ (Statistics)। ଏ ବିଷୟଟି ଆମକୁ ପ୍ରଫେସର୍ ଆଲିଷ୍ଟର୍ ମାକ୍‌ଲିନ୍ ପଢ଼ାନ୍ତି। ତାଙ୍କ ମୁହଁରେ ସଦା ସର୍ବଦା ସ୍ମିତହସ ଲାଗିଥାଏ। ତାଙ୍କର ମୂଳସ୍ଥାନ ସ୍କଟ୍‌ଲାଣ୍ଡ। ସେ ବ୍ରିଟିଶ୍‌ମାନଙ୍କ ପରି ଧୀରେ ଧୀରେ କହୁଥିବାରୁ ଶୁଣିବା ପାଇଁ ସତର୍କତା ରକ୍ଷା କରିବାକୁ ହୁଏ। କିନ୍ତୁ ସେ ଆଦୌ ରାଗନ୍ତି ନାହିଁ। ବୁଝାଇବା ଶୈଳୀରେ ଉତ୍ତର ଦିଅନ୍ତି। ସେ ଆମକୁ ପରିସଂଖ୍ୟାନ ପୂରାବର୍ଷଟି ପଢ଼ାଇଲେ। ଅଥଚ ଆମେ କେବେହେଲେ ମାନସିକଭାବେ କ୍ଳାନ୍ତ ଅନୁଭବ କରିନାହୁଁ। ତାଙ୍କର ବ୍ୟବହାର ବେଶ୍ ବନ୍ଧୁତ୍ୱପୂର୍ଣ୍ଣ।

ଗଭୀର ସମ୍ପର୍କ ଗଢ଼ି ଉଠିଥିବା ଅନ୍ୟ ଜଣେ ପ୍ରଫେସର୍ ହେଉଛନ୍ତି ରୁଡ଼ି କାଲିନ୍। ତାଙ୍କୁ ଜର୍ମାନ୍-କାନାଡ଼ିଆନ୍ ବୋଲି ଜାଣିଥିଲି। ସେ ମୋ ଗବେଷଣା କମିଟିର ସଦସ୍ୟ ଥିଲେ। ତାଙ୍କୁ ଦେଖି ଜର୍ମାନ୍‌ମାନଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ପ୍ରବନ୍ଧଟିଏ ଲେଖିହେବ। ସୂକ୍ଷ୍ମାତିସୂକ୍ଷ୍ମ ଦିଗ ବିଷୟରେ ସେ ଖୁବ୍ ସଚେତନ। କୌଣସି ଲେଖାର ସଂଶୋଧନ କରିବା ସମୟରେ ସେ ପ୍ରତିଟି ତ୍ରୁଟି ବିଚ୍ୟୁତି ଚିହ୍ନଟ କରିବେ ଏବଂ ସହାୟକ ଉପଦେଶ ଦେବେ।

ଆମର ସାମାଜିକ ସମ୍ପର୍କ ଥିବା ଆଉ ଜଣେ ପ୍ରଫେସର ହେଉଛନ୍ତି ବଳଦେବ ଲୁଥର୍। ସେ ଉତ୍ତର ଭାରତରୁ ଯାଇ କାନାଡ଼ାରେ ବସବାସ କରୁଥିଲେ। ସେ

ପ୍ରକୃତରେ କିଙ୍ଗ୍‌ସଟନ୍ ଚିକିତ୍ସାଳୟରେ ମନୋବିଜ୍ଞାନୀ ହିସାବରେ କାର୍ଯ୍ୟ କରୁଥିଲେ। ଚୁକ୍ତି ଅନୁଯାୟୀ ସେ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନ ବିଭାଗରେ ଗୋଟିଏ ବିଷୟର ଅଧ୍ୟାପନା କରନ୍ତି। ଏଇଟି Multivariate Analysis। ବହୁ କଷ୍ଟକର ବିଷୟ। ଅବଶ୍ୟ ଏଇଟି ଐଚ୍ଛିକ (Elective) ବିଷୟ। ଏହାକୁ ବୁଝିବା ପାଇଁ ଗଣିତର ଜ୍ଞାନ ଆବଶ୍ୟକ ହୁଏ। କୌତୂହଳର ବିଷୟ ଯେ ମୋତେ ମିଶାଇ ଦଶଜଣ ଏହି ବିଷୟଟି ଆରମ୍ଭ କରିଥିଲୁ; ମାତ୍ର ଶେଷ ବେଳକୁ କେବଳ ତିନି ଜଣ ହିଁ ଥିଲେ। ଅନ୍ୟମାନେ ଅଧାରୁ ଚାଲି ଯାଇଥିଲେ।

ସହପାଠୀମାନଙ୍କ ମଧ୍ୟରେ ଅନ୍ତତଃ ତିନିଜଣଙ୍କର ସହଯୋଗିତା ମୁଁ ଜୀବନସାରା ମନେ ରଖିବି। ଜଣେ ହେଉଛନ୍ତି ବ୍ରାଏନ୍। ସେ ପରିସଂଖ୍ୟାନ ଓ କମ୍ପ୍ୟୁଟରରେ ଧୂରନ୍ଧର। ଏ ଦିଗରେ କୌଣସି ସମସ୍ୟା ଉପୁଜିଲେ ସେ ଅବିଳମ୍ବେ ସମାଧାନ କରି ଦିଅନ୍ତି। ଏହି କ୍ରମରେ ସେ ମୋର ବନ୍ଧୁ ହୋଇଗଲେ। ଡନ୍ ରାୟକୋ ନାମକ ଜଣେ ପି.ଏଚ୍.ଡ଼ି. ଗବେଷକ ଓ ମୁଁ ଗୋଟିଏ କୋଠରୀରେ ବସୁ। ଭାରତର ଐତିହ୍ୟ ଓ ପରମ୍ପରା ଜାଣିବା ପାଇଁ ସେ ଖୁବ୍ ଆଗ୍ରହୀ। ତାଙ୍କ ସହିତ ଏ ଧରଣର କଥାବାର୍ତ୍ତା ମୋର ବେଶ୍ ଜମେ। ଆଉ ଜଣେ ବନ୍ଧୁ ହେଉଛନ୍ତି ଟମ୍। ସେ ଜନ୍ ବେରୀଙ୍କ ଗବେଷଣା ପ୍ରକଳ୍ପର ଗବେଷଣା ସହଯୋଗୀ ରୂପେ କାମ କରୁଥିଲେ। ବିଭିନ୍ନ ବାଦ୍ୟ ଯନ୍ତ୍ର ବଜାଇବାରେ ତାଙ୍କର ଦକ୍ଷତା ଥିଲା। ଆମେ କେବେ କେବେ ଜନ୍ ବେରୀଙ୍କ ଘରକୁ ଗଲେ ସେ ବାଦ୍ୟ ଯନ୍ତ୍ର ମାଧ୍ୟମରେ ଆମକୁ ଆମୋଦିତ କରନ୍ତି।

## ଓଡ଼ିଆଙ୍କ ସଖୀ

ଆମର ନିକଟସ୍ଥ ପରିବେଶରେ ଯେଉଁମାନେ ରହୁଥିଲେ ସେମାନଙ୍କ ମଧ୍ୟରେ ତିନୋଟି ପରିବାର ଓଡ଼ିଆ। ପୂର୍ବରୁ ସୂଚନା ଦେଇଛି ଯେ ଉତ୍କଳର ମନୋବିଜ୍ଞାନ ବିଭାଗର ଜଣେ ପୁରୁଣା ଶିକ୍ଷକ ହେଉଛନ୍ତି ଡକ୍ଟର ଅର୍ଜୁନ ପୁରୋହିତ। ରାଜ୍ୟଗୋଷ୍ଠୀ ବୃତ୍ତି ଆରମ୍ଭ ହେବା ବର୍ଷ ହିଁ ଉତ୍କଳ ମନୋବିଜ୍ଞାନ ବିଭାଗରେ ଅଧ୍ୟାପନା କରୁଥିବା ରବୀନ୍ଦ୍ର ନାଥ କାନୁନ୍‌ଗୋ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରି କାନାଡ଼ା ଗଲେ। ସେଠାରେ କାନାଡ଼ାର ମାକ୍‌ଗିଲ୍ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. କଲେ ଏବଂ ସେହିଠାରେ ହିଁ ଅଧ୍ୟାପକ ହେଲେ। ସେଠାରେ ସେ ମନୋବିଜ୍ଞାନ ଓ ପରିଚାଳନା ବିଜ୍ଞାନ ପରି ଦୁଇଟି ବିଭାଗର ପ୍ରଫେସର୍। ନେତୃତ୍ୱ ସମ୍ପର୍କରେ ଗବେଷଣା ପାଇଁ ତାଙ୍କର ଅନ୍ତର୍ଜାତୀୟ ପ୍ରଖ୍ୟାତି ରହିଛି। ସେ ଏବେ ସେବା ନିବୃତ୍ତ ହେଲେ ମଧ୍ୟ ଗବେଷଣା କ୍ଷେତ୍ରରେ ସକ୍ରିୟ ଅଛନ୍ତି। ବର୍ତ୍ତମାନ ସେ କାନାଡ଼ାର ରାଜଧାନୀ ଅଟଓ୍ୱାରେ ରହୁଥିଲେ ମଧ୍ୟ ତାଙ୍କ ସହିତ ସଂଯୋଗ ରହିଛି।

ରବିବାବୁଙ୍କ ପରେ ଅର୍ଜୁନବାବୁ ମଧ୍ୟ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କଲେ। ସେ ଅଷ୍ଟ୍ରେଲିଆରେ ପିଏଚ୍.ଡ଼ି କରି କାନାଡ଼ାରେ ବସବାସ କଲେ ଏବଂ ଏବେ ମଧ୍ୟ କରୁଛନ୍ତି। ସେ କିଙ୍ଗ୍‌ସଟନ୍‌ରେ ଥିବା ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ମାନସିକ ଚିକିତ୍ସାଳୟରେ ମନସ୍ତତ୍ତ୍ୱବିଦ୍ ହିସାବରେ କାର୍ଯ୍ୟ କରନ୍ତି। ସାମୟିକ ଭାବରେ କୁଇନ୍ସ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗରେ ପିଲାଙ୍କର ଆଚରଣଗତ ସମସ୍ୟା ବିଷୟରେ ପଢ଼ାନ୍ତି। ତାଙ୍କର ପତ୍ନୀଙ୍କୁ ଆମେ ପଦ୍ମିନୀ ନାନୀ ବୋଲି ଡାକୁଥିଲୁ। ତାଙ୍କ ପରିବାରର ବଡ଼ଝିଅ ତାନୀ, ମାନୀ ଓ ରବିନ୍ ଆମକୁ ସମ୍ମାନ କରନ୍ତି। ତାଙ୍କ ଘରଟି ପ୍ରଥମେ ଖୁବ୍ ପାଖରେ ଥିଲା। ଆମେ ଇଚ୍ଛା କଲେ ପାଞ୍ଚ ମିନିଟ୍ ମଧ୍ୟରେ ତାଙ୍କ ଘରେ ପହଞ୍ଚି ଯାଉଥିଲୁ। କିଛି ସମୟ କାଟି ଚାଲି ଆସୁଥିଲୁ। ଅନ୍ୟ ସମୟରେ ଅର୍ଜୁନ ବାବୁ ଓ ପଦ୍ମିନୀ ନାନୀ ଆମ ଘରକୁ ଆସନ୍ତି। ହସଖୁସିରେ ସମୟ କଟେ। ପ୍ରାୟ ଦୁଇବର୍ଷ ପରେ ସେ ସାମାନ୍ୟ ଦୂର ସ୍ଥାନରେ ବଡ଼ ଘରଟିଏ କିଣିଲେ। ତଥାପି ସେ ଆମକୁ ତାଙ୍କ ଗାଡ଼ିରେ ନେଇ ଯାଆନ୍ତି ଏବଂ ଛାଡ଼ି ଦେଇ ମଧ୍ୟ ଯାଆନ୍ତି।

କିଙ୍ଗ୍‌ସଟନ୍ ସହରଟି ଦୁଇ ବିରାଟ ନଗରର (ମଣ୍ଟ୍ରିଆଲ୍ ଓ ଟରଣ୍ଟୋର)ମଧ୍ୟବର୍ତ୍ତୀ ସ୍ଥାନରେ ରହି ଥିବାରୁ ଗୋଟିଏ ନଗରରୁ ଅନ୍ୟ ନଗରକୁ ଯାଉଥିବା ଓଡ଼ିଆମାନେ କିଙ୍ଗ୍‌ସଟନ୍‌ରେ କିଛି ସମୟ କାଟିବାକୁ ପସନ୍ଦ କରନ୍ତି। କିଙ୍ଗ୍‌ସଟନ୍‌ରେ ପୁରୋହିତ୍ ବାବୁ ଦୀର୍ଘଦିନ ରହି ଆସି ଥିବାରୁ ଅଧିକାଂଶ ସମୟରେ ତାଙ୍କ ଘରେ ସମାବେଶ ହୁଏ। ଆମେ ସେଠାକୁ ଯାଉ। ସମୟ ସମୟରେ ଆମ ଘରେ ମଧ୍ୟ ସମାବେଶ ହୁଏ। ଖୁବ୍ ମଜା ଲାଗେ। ନୂଆ ବର୍ଷ ପରି କେତେକ ଉତ୍ସବ ଆମେ ପୁରୋହିତ୍ ବାବୁଙ୍କ ଘରେ ପାଳନ କରିଥାଉ।

କିଙ୍ଗ୍‌ସଟନ୍‌ର ଗୋଟିଏ ପାର୍ଶ୍ୱରେ ଓଣ୍ଟାରିଓ ହ୍ରଦ ପ୍ରବାହିତ। ସହରଠାରୁ ପଚିଶ ତିରିଶ କିଲୋମିଟର ଦୂରରେ ପିକ୍‌ଟନ୍ ନାମକ ସ୍ଥାନରେ ସରକାର ହ୍ରଦ କୂଳରେ ଏକ ବିରାଟ କୃତ୍ରିମ ହ୍ରଦକୂଳ ନିର୍ମାଣ କରିଛନ୍ତି। ଶୀତଦିନରେ ଜଳ ଅତ୍ୟନ୍ତ ଥଣ୍ଡା ଥିବାରୁ ହ୍ରଦ କୂଳରେ ଆମୋଦ ପ୍ରମୋଦ ସମ୍ଭବ ହୁଏ ନାହିଁ। ମାତ୍ର ମଇମାସରୁ ଅଗଷ୍ଟ ଶେଷ ପର୍ଯ୍ୟନ୍ତ ପର୍ଯ୍ୟଟକମାନଙ୍କ ପାଇଁ ପିକ୍‌ଟନ୍ (Picton Beach) ସକ୍ରିୟ ହୋଇ ଉଠେ। ଏହି ସମୟ ମଧ୍ୟରେ ପୁରୋହିତ ବାବୁଙ୍କ ସହିତ ଆମେ ସେଠାକୁ ଯାଉ। ପୂରା ଦିନଟି କଟାଇ ସନ୍ଧ୍ୟା ସମୟରେ ଫେରି ଆସୁ। ବଣଭୋଜୀ ଆନନ୍ଦ ମିଳେ।

ପୁରୋହିତ୍ ବାବୁଙ୍କ ବ୍ୟତୀତ ଯେଉଁ ବନ୍ଧୁଜଣକ ଭୌଗୋଳିକ ଦୃଷ୍ଟିକୋଣରୁ ଖୁବ୍ ପାଖରେ ଥିଲେ ସେ ହେଉଛନ୍ତି ଉତ୍କଳ ମନସ୍ତତ୍ତ୍ୱ ବିଭାଗର ଶ୍ରୀକାନ୍ତ ଦାଶ। ଆମର ଆପାର୍ଟମେଣ୍ଟର ମାତ୍ର ଦୁଇତିନୋଟି ଆପାର୍ଟମେଣ୍ଟକୁ ବାଦ୍ ଦେଲେ ତାଙ୍କର ଆପାର୍ଟମେଣ୍ଟର ଅବସ୍ଥିତି। ପୁରୋହିତ୍ ବାବୁଙ୍କ ଘରେ କିମ୍ବା ତାଙ୍କ ସହିତ ଯେଉଁ

ଓଡ଼ିଆ ଭାଷାଭାଷୀ ସମାବେଶ ହୁଏ ସେଥିରେ ସେ ଯୋଗ ଦିଅନ୍ତି। କିନ୍ତୁ କୌଣସି କାରଣରୁ ପ୍ରାୟ ଦୁଇବର୍ଷ ପରେ ସେ କୁଇନ୍ସ ବିଶ୍ୱବିଦ୍ୟାଳୟର ଆବାସ ମଣ୍ଡଳ ଛାଡ଼ି ଅନ୍ୟତ୍ର ଭଡ଼ାଘରକୁ ଚାଲିଗଲେ। ସେଠି ଟିକେ ସଂଯୋଗ ଆମର କମିଗଲା।

ବିସ୍ତୃତ ଅଞ୍ଚଳରେ କୁଇନ୍ସ ବିଶ୍ୱବିଦ୍ୟାଳୟର ଆବାସ ସବୁ ଲମ୍ବି ରହିଥିଲା। ଟିକିଏ ଦୂରରେ ଅନ୍ୟ ଗୋଟିଏ ଆପାର୍ଟମେଣ୍ଟରେ ଡକ୍ଟର ମହେଶ୍ୱର ସାହୁ ପରିବାର ସହ ରହୁଥିଲେ। ମହେଶ୍ୱର ବାବୁଙ୍କ ଘର ଓଡ଼ିଶାର ଢେଙ୍କାନାଳ ଜିଲ୍ଲାରେ। ମହେଶ୍ୱର ବାବୁ ଜଣେ ବିଚକ୍ଷଣ ଛାତ୍ର ଥିଲେ ଏବଂ ବାଙ୍ଗାଲୋର୍‌ର ବିଖ୍ୟାତ Indian Institute of Scienceରୁ ଧାତୁ ବିଜ୍ଞାନରେ ଡିଗ୍ରୀ ଲାଭ କରିଥିଲେ। ସେ କାନାଡ଼ାରେ ପି.ଏଚ୍.ଡ଼ି କରି କୁଇନ୍ସ ବିଶ୍ୱବିଦ୍ୟାଳୟରେ ଧାତୁବିଜ୍ଞାନରେ ପୋଷ୍ଟ ଡକ୍ଟରାଲ୍ କାର୍ଯ୍ୟ କରୁଥିଲେ। ୧୯୭୬ରେ ଆମେ ପହଞ୍ଚିବା ସମୟରେ ସେ ଏହି ବିଭାଗରେ ଚାରି ପାଞ୍ଚ ବର୍ଷ କାର୍ଯ୍ୟ କରିଥିବାର ସୂଚନା ପାଇଲୁ। ତାଙ୍କର ପତ୍ନୀଙ୍କୁ ଆମେ ମିନି ନାନୀ ଡାକିଲୁ। ତାଙ୍କର ପାଞ୍ଚ ବର୍ଷର ଝିଅ ଡେଙ୍ଗୀ ଖୁବ୍ ମଜା ମଜା କଥା କୁହେ। ତା'ପାଟିରେ କେତେକ ଓଡ଼ିଆ ଶବ୍ଦ ହସ ସୃଷ୍ଟି କରେ। ସାହୁ ବାବୁ ଓ ଆମ ଘରର ଦୂରତ୍ୱ ମାତ୍ର ପାଞ୍ଚମିନିଟ୍‌ର ବାଟ। ଆମେ ଚାଲି ଯାଉ। କେବେକେବେ ସେମାନେ ଚାଲି ଆସନ୍ତି। ବିଶେଷତଃ କାନାଡ଼ାରେ ଶନି ଓ ରବିବାର ଦିନ ଛୁଟି ଦିବସ ହୋଇଥିବାରୁ ଶୁକ୍ରବାର ରାତି କିମ୍ୱା ଶନିବାର ରାତିରେ ସାହୁ ବାବୁଙ୍କ ଘରେ ଏକାଠି ହେଉ। ଚା' ପକୋଡ଼ି ଖାଇ ଏକାଠି ବସି ଦୂରଦର୍ଶନରେ ସିନେମା ଦେଖିବା କିମ୍ୱା ତାସ୍ ଖେଳିବାରେ ଆନନ୍ଦ ମିଳିଥାଏ।

ମହେଶ୍ୱର ବାବୁଙ୍କ ଘରେ ତାଙ୍କର ସାନଭାଇ ଦିଲ୍ଲୀଶ୍ୱର ସାହୁ ରୁହନ୍ତି। ସେ ଭାରତରେ ଡାକ୍ତରୀ ଡିଗ୍ରୀ ଲାଭ କରି ସେଠାରେ ରହି ଡାକ୍ତରୀ ଚାକିରି ଖୋଜୁଥିଲେ। ସେତେବେଳେ ସେ ସଫଳ ହୋଇ ନଥିଲେ। ତାଙ୍କର ମନ ହାଲୁକା କରିବା ପାଇଁ ଆମେ ବ୍ୟସ୍ତ ନ ଥିବା ସମୟରେ ଆମର ଘରକୁ ଆସନ୍ତି। ତାଙ୍କର ନାମ ଅନୁସାରେ ତାଙ୍କର ହୃଦୟଟି ସତରେ ପ୍ରଶସ୍ତ। ତାଙ୍କ ଗାଁର ଦୀନତମ ଚାକର ଭଣ୍ଡାରୀଠାରୁ ଆରମ୍ଭ କରି ଅନ୍ୟମାନଙ୍କ ଦୁଃଖ ଦୁର୍ଦ୍ଦଶାର କଥା କୁହନ୍ତି। ନିଜର ମାନସିକ ଦୁଃଶ୍ଚିନ୍ତା ସତ୍ତ୍ୱେ ଅନ୍ୟ ପାଇଁ ତାଙ୍କର ସମ୍ବେଦନଶୀଳତା ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିଥାଏ। ଆମେ କାନାଡ଼ା ଛାଡ଼ିବାର ପ୍ରାୟ ବର୍ଷେ ପୂର୍ବରୁ ସେ ଚାକିରିର ସନ୍ଧାନ ପାଇଁ ଆମେରିକାରୁ ନିଉୟର୍କ ଚାଲିଗଲେ। ସେ ଗୋଟିଏ ସ୍ୱାସ୍ଥ୍ୟକେନ୍ଦ୍ରର ମୁଖ୍ୟ ହିସାବରେ ଯୋଗଦେବାର ଖବର ଶୁଣି ଆମେ ବିହ୍ୱଳିତ ହୋଇ ଉଠିଲୁ।

ସଂପ୍ରୀତିର ଗୋଟିଏ ଦୃଢ଼ ଡେର କିଙ୍ଗ୍‌ସଟନ୍ ଠେଇଁ ମଣ୍ଟ୍ରିଅଲ୍ ପର୍ଯ୍ୟନ୍ତ ମାଡ଼ି ଯାଇଥିଲା। ଆମେ ସେପ୍ଟେମ୍ୱରରେ ପହଞ୍ଚିବା ପରେ ଡିସେମ୍ୱର ମାସରେ ଗୋଟିଏ

ରବିବାର ଖରାବେଳେ ମୋର ପତ୍ନୀ ଫୋନ୍‌ଟିଏ ପାଇଲେ। ଫୋନ୍‌ଟି ତାଙ୍କର ଅନ୍ତରଙ୍ଗ ବନ୍ଧୁ ଡଲିଠାରୁ (ଭଲ ନାମ ସ୍ମୃତିରେଖା)। ପୁଣି ଜାଣି ଖୁସୀ ହେଲୁ ଯେ ଡଲି ନିକଟ ଅତୀତରେ କାନାଡ଼ାରେ ବସବାସ କରୁଥିବା ଜଣେ ଇଞ୍ଜିନିୟର୍ ଯତୀନ୍ଦ୍ର କାନୁନ୍‌ଗୋଙ୍କୁ ବିବାହ କରି ମଣ୍ଟ୍ରିଅଲ୍ ଆସିଛି। ପୁଣି ଯତୀନ୍ଦ୍ର କାନୁନ୍‌ଗୋ (ବୁଟୁବାବୁ) ମୋର ଅତି ପରିଚିତ ଡକ୍ଟର ରବୀନ୍ଦ୍ରନାଥ କାନୁନ୍‌ଗୋଙ୍କ ସାନ ଭାଇ। ବୁଟୁ ବାବୁ ଖୁବ୍ ବିଚକ୍ଷଣ। ତାଙ୍କର ଶିକ୍ଷା ରାଜସ୍ଥାନର ବନସ୍ଥଳୀ ବିଦ୍ୟାପୀଠ ଏବଂ ରାଜକୁମାର କଲେଜ। ପରେ ସେ ଖଡ଼ଗପୁର ଆଇ.ଆଇ.ଟି.ରେ ଇଞ୍ଜିନିୟରିଂ ଡିଗ୍ରୀ ହାସଲ କରି ମଣ୍ଟ୍ରିଅଲ୍‌ରେ ଚାକିରି କରୁଛନ୍ତି। ଏପରି ଜଣେ ବ୍ୟକ୍ତିତ୍ୱଙ୍କ ସହିତ ଡଲିର ବିବାହର ସମ୍ବାଦ ଖୁବ୍ ପ୍ରୀତପଦ ଥିଲା।

ଫୋନ୍ ପାଇବା ପରଠାରୁ ଆମ ଦୁଇ ପରିବାର ମଧ୍ୟରେ ଯେଉଁ ସଂଯୋଗର ପର୍ବ ଆରମ୍ଭ ହେଲା ତାହା ଏ ପର୍ଯ୍ୟନ୍ତ ମଧ୍ୟ ଶକ୍ତିଶାଳୀ ରହିଛି। ସେହିଦିନ ହିଁ ସ୍ଥିର ହେଲା ଯେ ଗୋଟିଏ ରବିବାର ସେମାନେ ଆମକୁ ଫୋନ୍ କଲେ ପର ରବିବାର ଆମେ ଫୋନ୍ କରିବୁ। ଆମେ କାନାଡ଼ା ଛାଡ଼ିବା ପର୍ଯ୍ୟନ୍ତ ଆମର ଏ ଯୋଗସୂତ୍ର ଅବ୍ୟାହତ ରହିଥିଲା।

ମୋର ପ୍ରଥମ ଶିକ୍ଷା ବର୍ଷର ଶେଷ (ଏପ୍ରିଲ୍ ୧୯୭୬) ହେବା ମାତ୍ରେ ଆମେ କିପରି ମଣ୍ଟ୍ରିଅଲ୍ ଯାଇ କାନୁନ୍‌ଗୋ ପରିବାର ସହ ଅନ୍ତତଃ ଗୋଟିଏ ସପ୍ତାହ କାଟିବୁ, ସେଥିପାଇଁ ବ୍ୟାକୁଳ ହୋଇ ଚାହିଁ ରହିଥିଲୁ। ସୁଯୋଗ ଆସିବା ମାତ୍ରେ ମଣ୍ଟ୍ରିଅଲ୍ ଗଲୁ। ସେମାନେ ମଣ୍ଟ୍ରିଅଲ୍‌ର ଡିକାରୀ ନାମକ ଅଞ୍ଚଳରେ ରହୁଥିଲେ। ଶାନ୍ତ ଓ ସୌଷ୍ଠବପୂର୍ଣ୍ଣ ଅଞ୍ଚଳ। ଡିକାରୀର ସ୍ମୃତି ଏବେ ମଧ୍ୟ ଅମଳିନ ରହିଛି। ଆମେ ଦୁଇଜଣ ପୂର୍ବରୁ ବୁଟୁବାବୁଙ୍କୁ ଦେଖି ନ ଥିଲୁ। ସାକ୍ଷାତ ପରେ ଅନୁଭବ କଲୁ ମଧ୍ୟ ବୁଟୁ ବାବୁ ଜଣେ ଅନନ୍ୟ ବ୍ୟକ୍ତିତ୍ୱ। ତାଙ୍କର ବିନମ୍ରତା, ମିଷ୍ଟଭାବ ଏବଂ ଉଦାରତାର ତୁଳନା ନାହିଁ। ଏ ପର୍ଯ୍ୟନ୍ତ ସୁଦ୍ଧା ତାଙ୍କ ପରି ବିରଳ ବ୍ୟକ୍ତିତ୍ୱ ଦେଖିବାର ସୁଯୋଗ ଆସିନାହିଁ। ମୋର ପତ୍ନୀ ଡଲିକୁ ପୂର୍ବରୁ ଜାଣିଥିଲେ ମଧ୍ୟ ତା'ବ୍ୟକ୍ତିତ୍ୱର ଏକ ଆକର୍ଷଣୀୟ ଦିଗ ଆବିଷ୍କାର କଲୁ। ଆମେ ତା'କୁ 'ମିନି ଇଣ୍ଡିଆ' କହିବାକୁ ଆରମ୍ଭ କଲୁ। ଆମର ମଣ୍ଟ୍ରିଅଲ୍‌ର ପ୍ରଥମ ଭ୍ରମଣ ସମୟରେ ଡଲି ତା'ଘରେ ଯେଉଁ ଓଡ଼ିଆ ପରିବାର ସମୂହର ସମାବେଶ କରାଇଥିଲା ଅଧିକାଂଶ ଓଡ଼ିଆ ପରିବାର ପୂର୍ବରୁ ପରସ୍ପରକୁ ଜାଣି ନ ଥିଲେ। ଡଲି ଚରିତ୍ରର ଆଉ ଗୋଟିଏ ଦିଗ ହେଉଛି କଠିନ ପରିଶ୍ରମଶୀଳତା। କ୍ଳାନ୍ତି ତାକୁ କେବେ ଛୁଇଁଛି ବୋଲି ଆମର ମନେହୁଏ ନାହିଁ। ଡଲି ଘରେ ଆମେ ପ୍ରାୟ ରାତି ବାରଟା ଗୋଟାଏ ପର୍ଯ୍ୟନ୍ତ ଗପସପ କରୁ। ଥରେ ସକାଳ ପାଞ୍ଚଟାରେ ତରକାରୀର ମସଲା ଗନ୍ଧ ବାଜି ମୋର

ନିଦ ଭାଙ୍ଗିଗଲା। ଉଠି ଦେଖିଲି ଯେ ଡଲି ରୋଷାଇ ଘରେ କଙ୍କଡ଼ା ତରକାରୀ ରାନ୍ଧୁଛି। ବିସ୍ମିତ ହୋଇ ପଚାରିଲି: 'ଏତେ ସକାଳୁ?" ଡଲି ଉତ୍ତର ଦେଲା: "ମୋର ନିଦ ଭାଙ୍ଗିଗଲା। ଭାବିଲି ରୀତା ଓ ଫକୀରବାବୁ ସକାଳେ ପୁରୀ ଓ କଙ୍କଡ଼ା ତରକାରୀ ଖାଇବେ, ତେଣୁ ପ୍ରାତଃ ଭୋଜନ ପାଇଁ ବ୍ୟବସ୍ଥା କଲି।"

ଡଲି ଓ ବୁଟୁ ବାବୁଙ୍କ ସହିତ ଆମେ ବହୁ ସ୍ଥାନ ଭ୍ରମଣ କରିଛୁ। ପ୍ରଥମ ଥର ଅଲମ୍ପିକ୍ ପରବର୍ତ୍ତୀ ମଣ୍ଟ୍ରିଅଲ୍‌କୁ ବୁଲି ଦେଖିବାର ସୁଯୋଗ ପାଇଲୁ। ପରେ ଆମେ ମଣ୍ଟ୍ରିଅଲ୍ ବହୁବାର ଯାଇଛୁ। ଟରଣ୍ଟୋ, କ୍ୟୁବେକ୍ ସହର, ନିଉୟର୍କ ନଗର ଏବଂ ଅନ୍ୟ ସ୍ଥାନ ବୁଲି ଯାଇଛୁ। ସେମାନଙ୍କର ବନ୍ଧୁତା ଆମ୍ଭମାନଙ୍କୁ ପ୍ରଚୁର ପରିମାଣରେ ସୁଖ ଦେଇଛି। ଏବେ ମଧ୍ୟ ସେମାନେ ଓଡ଼ିଶା ଆସିଲେ ଆମ ଦୁଇ ପରିବାରର ମିଳନ ପୂର୍ବ ସ୍ମୃତିକୁ ସଚଳ ଓ ଆନନ୍ଦମୁଖର କରିଥାଏ।

## ଚାରି ରାଜ୍ୟର ମୈତ୍ରୀ

ଓଡ଼ିଶାରୁ ଆସିଥିବା ପରିବାରକୁ ବାଦ୍ ଦେଲେ ଭାଷାର ସୀମାରେଖାରୁ ଉର୍ଦ୍ଧ୍ୱକୁ ଯାଇ ଆମର ପାଖାପାଖି ରହୁଥିବା ତିନୋଟି ପରିବାର ସହ ଗଭୀର ମିତ୍ରତା ଗଢ଼ି ଉଠିଥିଲା। ଓଡ଼ିଶା, ଆନ୍ଧ୍ର, ପଶ୍ଚିମବଙ୍ଗ ଓ ଉତ୍ତର ପ୍ରଦେଶର ଏ ଚାରୋଟି ରାଜ୍ୟର ଚାରି ପରିବାର ଏକାଠି ହୋଇ ବହୁତ ମଜା କରୁଥିଲୁ। ଚାରୋଟିଯାକ ପରିବାର କୁଇନ୍ସ ବିଶ୍ୱବିଦ୍ୟାଳୟର ବିବାହିତ ଛାତ୍ରନିବାସ ମଣ୍ଡଳର ବିଭିନ୍ନ ଆପାର୍ଟମେଣ୍ଟରେ ରହୁଥିଲେ। ପାଖାପାଖି ରହୁଥିବାରୁ ଭୀଷଣ ତୁଷାରପାତ ସମୟରେ ମଧ୍ୟ କୌଣସି ଏକ ପରିବାରରେ ଏକଜୁଟ ହୋଇ ମଜା କରିବାରେ ବାଧା ନ ଥିଲା।

ଆମର ନିକଟସ୍ଥ ଆପାର୍ଟମେଣ୍ଟରେ ରହୁଥିଲେ ଡଃ ଶଙ୍କର ସାହା ଓ ମୀରା। ଡଃ ଶଙ୍କର ସାହାଙ୍କୁ ଆମେ ଶଙ୍କରଦା ବୋଲି ଡାକୁ ଏବଂ ମୀରାକୁ ମୀରା ବୋଲି ଡାକୁ। ମୀରା ମୋତେ ସାହୁ ଭାଇ ବୋଲି ସମ୍ବୋଧନ କରେ। ଶଙ୍କରଦା କଲିକତାର ଆଣବିକ ଗବେଷଣା କେନ୍ଦ୍ରରେ କାର୍ଯ୍ୟ କରୁଥିଲେ ଏବଂ ଆମେରିକା ଯୁକ୍ତରାଷ୍ଟ୍ରର ପର୍ଡ୍ୟୁ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. ଡ଼ିଗ୍ରୀ ଲାଭ କଲେ। ଆମେ କାନାଡ଼ା ଆସିବାର ଗୋଟିଏ ବର୍ଷ ପରେ ସେମାନେ କିଙ୍ଗସ୍ଟନ୍ ଆସିଲେ। ଡଃ ସାହା କୁଇନ୍ସ ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ବିଭାଗର ପୋଷ୍ଟ ଡକ୍ଟରାଲ୍ ରୂପେ କାର୍ଯ୍ୟ କରୁଥିଲେ। ମୀରାର ଘର କଲିକତାରେ। ସେ ସରଳ ଓ ନିଷ୍କପଟ। ସେ ମୁଖ୍ୟତଃ ବଙ୍ଗଳା ଭାଷାରେ କଥାବାର୍ତ୍ତା କରେ। ମୋର ପତ୍ନୀ ଖୁବ୍ ଭଲ ରୂପେ ବଙ୍ଗଳା କହି ପାରୁଥିଲେ। ସୁତରାଂ ଆମ ଦୁଇ ପରିବାର ମଧ୍ୟରେ ଗଭୀର ବନ୍ଧୁତା ହେଲା।

ଶଙ୍କରଦା କିଛିଦିନ ପରେ ଗୋଟିଏ କାର୍ କିଣିଲେ। ବେଳେବେଳେ ସେମାନଙ୍କ ସହିତ ଆମେ ବୁଲି ଯାଇଛୁ। ଅନ୍ୟ ଦୁଇଟି ପରିବାରର ଶଶୀ ଓ ସୁମିତ୍ରା ମୁଖ୍ୟତଃ

ହିନ୍ଦୀ ଭାଷୀ ହୋଇଥିବାରୁ ମୀରା ଓ ଏ ଦୁଇଜଣଙ୍କର କଥାବାର୍ତ୍ତା ବେଶ୍ ମଜାଦାର ହୁଏ। ଅଞ୍ଜୁ ସେମାନଙ୍କ କଥାବାର୍ତ୍ତାକୁ ମଜା କଥା ରୂପ ଦେଇ ହାସ୍ୟରସ ସୃଷ୍ଟି କରେ। ସନ୍ଧ୍ୟା ସମୟରେ ଆମେ କେବେ ମୀରା ଘରକୁ ବୁଲି ଯାଉଥିଲେ ସେ ଜବରଦସ୍ତ ରାତ୍ରି ଭୋଜନର ବ୍ୟବସ୍ଥା କରେ। ଆମ ଘରେ ମଧ୍ୟ ସମୟ ସମୟରେ ଅନୁରୂପ ବ୍ୟବସ୍ଥା ହୁଏ। ଆମ ସମ୍ପର୍କର ଗଭୀରତା ଖୁବ୍ ବେଶୀ। ମୀରାର ପ୍ରଥମ ସନ୍ତାନ "ଶୁଭ"ର ଜନ୍ମ ସମୟରେ ଶଙ୍କରଦା'ଙ୍କ ବ୍ୟତୀତ ଆମେ ଦୁଇଜଣ ପ୍ରଥମେ ଚିକିତ୍ସାଳୟରେ ଶୁଭକୁ ସ୍ନେହ ସ୍ପର୍ଶ ଦେଇଥିଲୁ। ମୋର ଗବେଷଣା ସରିବା ପୂର୍ବରୁ ଶଙ୍କରଦା ଗୋଟିଏ ଚାକିରି ପାଇ ଆମେରିକା ଯୁକ୍ତରାଷ୍ଟ୍ରକୁ ଚାଲି ଯାଇଥିଲେ। ତଥାପି ଆମେ କାନାଡ଼ା ଛାଡ଼ିବାର ଅବ୍ୟବହିତ ପୂର୍ବରୁ ସେମାନେ ଆମକୁ ବିଦାୟ ଜଣାଇବା ପାଇଁ କିଙ୍ଗ୍‌ସଟନ୍ ଆସିଥିଲେ। ସେମାନେ ଆମେରିକାରୁ ଫେରିବା ପରେ ମଧ୍ୟ ସଂଯୋଗ ବଳବତ୍ତର ଥିଲା। କଲିକତା ଗଲେ ଆମେ ତାଙ୍କର ସଲ୍‌ଟ ଲେକ୍‌ସ୍ଥିତ ବାସଭବନରେ ଦେଖା କରୁଥିଲୁ। ସେମାନେ ବୁଲିବା ପାଇଁ ପୁରୀ ଆସିଲେ ପୁରୀ ହୋଟେଲ୍‌ରେ ମଧ୍ୟ ସାକ୍ଷାତ ହେଉଥିଲା। ଦୁର୍ଭାଗ୍ୟବଶତଃ କିଛି ବର୍ଷ ତଳେ ମୀରାର ମୃତ୍ୟୁ ଆମକୁ ଏକ ଦାରୁଣ ଆଘାତ ଦେଲା। ଏବେ ଆମେ "ପୁଅ" ବୋଲି ଡାକୁଥିବା (ଶଙ୍କରଦା ଓ ମୀରାର ପୁତ୍ର) ଶୁଭ ଓ ତା'ର ପତ୍ନୀ ଭକ୍ତିକୁ ଦେଖିବା ଓ ଆଶୀର୍ବାଦ ଦେବା ସମୟରେ ମୀରାର ସ୍ମୃତି ସାକାର ରୂପ ନିଏ।

ଅନ୍ୟ ପରିବାରଟି ହେଉଛନ୍ତି ପ୍ରସାଦ୍ ଭାଇ ଓ ଶଶୀ। ପ୍ରସାଦ ଭାଇଙ୍କ ଜନ୍ମ ବିଶାଖାପାଟଣାରେ। ତାଙ୍କ ବାପା ରେଲୱେ କର୍ମଚାରୀ ରୂପେ କିଛିକାଳ ଓଡ଼ିଶାରେ ଚାକିରି କରିଥିଲେ। ଏହି ସୂତ୍ରରେ ପ୍ରସାଦ ଭାଇ ଓଡ଼ିଆ ଜାଣିଛନ୍ତି ବୋଲି କୁହନ୍ତି। ମାତ୍ର ତାଙ୍କ ପାଟିରୁ "ଶକଟ" ବ୍ୟତୀତ ଅନ୍ୟ କୌଣସି ଓଡ଼ିଆ ଶବ୍ଦ ଶୁଣି ନ ଥିଲୁ। ଶଙ୍କରଦାଙ୍କ ପରି ସେ ମଧ୍ୟ କୁଇନ୍‌ର ପଦାର୍ଥ ବିଜ୍ଞାନ ବିଭାଗର ଅନ୍ୟତମ ପୋଷ୍ଟଡ଼କ୍ଟରାଲ। ତାଙ୍କ ସ୍ତ୍ରୀ ଶଶୀ ଦକ୍ଷିଣ ଭାରତୀୟ ହେଲେ ମଧ୍ୟ ସେ ଫରିଦାବାଦ୍‌ରେ ବଡ଼ ହୋଇଛନ୍ତି। ଚମତ୍କାର ପରିବାରଟିଏ। ପ୍ରସାଦଭାଇଙ୍କ ନିଷ୍ଠା ଓ ନିଷ୍କପଟତା ଅସାଧାରଣ। ପରିବାରଟି କାନାଡ଼ାରେ ସ୍ଥାୟୀ ବାସିନ୍ଦା ହୋଇ ରହିଗଲେ। ଆମର ପରବର୍ତ୍ତୀ କାନାଡ଼ା ଭ୍ରମଣ ସମୟରେ ଆମେ ସେମାନଙ୍କୁ ସାକ୍ଷାତ୍ କରିଥିଲୁ। ସେତେବେଳେ ସେ ଗୋଟିଏ କମ୍ପାନୀ ପ୍ରତିଷ୍ଠା କରି କିଛି ଲୋକଙ୍କୁ ନିଯୁକ୍ତି ଦେଉଥିଲେ। ତାଙ୍କର କନ୍ୟା ସନ୍ତାନ ନିରୁ ମଧ୍ୟ ପରିବାରର ଶ୍ରୀବୃଦ୍ଧି କରିଥିଲା।

ତୃତୀୟ ପରିବାରର ସଦସ୍ୟ ହେଉଛନ୍ତି ଡକ୍ଟର ଯାଦବ ଏବଂ ପତ୍ନୀ ସୁମିତ୍ରା। ମୂଳ ବାସସ୍ଥାନ ଉତ୍ତର ପ୍ରଦେଶର ଆହ୍ଲାବାଦ। ମୁଖରେ ଚମତ୍କାର ହିନ୍ଦୀ। ଡକ୍ଟର ଯାଦବ ମଧ୍ୟ ପଦାର୍ଥ ବିଜ୍ଞାନରେ ପୋଷ୍ଟଡକ୍ଟରାଲ୍। ତିନୋଟି ପରିବାରର ମୈତ୍ରୀ ଓ .ମିଳନ ଆମ ସମସ୍ତଙ୍କର ମୁହୂର୍ତ୍ତକୁ ସୁଖକର କରିଥିଲା।

### ବଙ୍ଗୀୟ ପରିବାର

କିଙ୍ଗ୍‌ସଟନ୍‌ରେ ଅବସ୍ଥାନ ସମୟରେ ଆମର ମାନସିକତା ଯେଉଁ ସବୁ ପରିବାର ଦ୍ୱାରା ପ୍ରଭାବିତ ହୋଇଥିଲା, ସେମାନଙ୍କ ମଧ୍ୟରେ ତିନୋଟି ବଙ୍ଗୀୟ ପରିବାରର ସ୍ନେହଶ୍ରଦ୍ଧା ସ୍ମୃତିର ସଂପଦ।

ଗୋଟିଏ ପରିବାରର ମୁଖ୍ୟ ହେଉଛନ୍ତି ଡକ୍ଟର ବିନୟ କୁମାର ମୁଖାର୍ଜୀ। ସେ କାନାଡ଼ାର ରୟାଲ୍ ମିଲିଟାରୀ କଲେଜରେ ଫରାସୀ ଭାଷାରେ ପଦାର୍ଥ ବିଜ୍ଞାନ ପଢ଼ାନ୍ତି। ସେ ବଙ୍ଗଭାଷୀ ହେଲେ ହେଁ ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମରେ ବଢ଼ିଛନ୍ତି। ତାଙ୍କର ପିତାମାତା ଏହି ଆଶ୍ରମର ସକ୍ରିୟ କର୍ମୀ ଥିଲେ। ସେ ନିଜେ ଶ୍ରୀମା'ଙ୍କ ଅଭିଭାଷଣର ରେକର୍ଡ଼ିଂ କରୁଥିଲେ। ତାଙ୍କର ବ୍ୟକ୍ତିତ୍ୱରେ ଆଶ୍ରମର ସୁନ୍ଦର ପ୍ରଭାବ ପ୍ରତିବିମ୍ବିତ। ସେ ସ୍ପଷ୍ଟବାଦୀ, ନିର୍ଭୀକ ଏବଂ ସର୍ବଗୁଣସମ୍ପନ୍ନ। ତାଙ୍କର ବହୁ ଉଚ୍ଚାରିତ ଉକ୍ତି (ଯଥା: ଭକ୍ତି ଓ ଭୟ ଏକତ୍ର ସହାବସ୍ଥାନ କରିପାରନ୍ତି ନାହିଁ) ମୁଁ ଜୀବନସାରା ମନେରଖିବି। ତାଙ୍କର ପତ୍ନୀ ରୁମା ମୁଖାର୍ଜୀ (ଆମେ ରୁମାଦି ବୋଲି ଡାକିଥାଉ) ମଧ୍ୟ ସଦ୍‌ଗୁଣସମ୍ପନ୍ନା। ତାଙ୍କ ଜନ୍ମସ୍ଥାନ କଲିକତା। ବିଶ୍ୱଗୁରୁ ରବୀନ୍ଦ୍ର ନାଥ ଠାକୁରଙ୍କ ପରିବାର ସହିତ ସେ ସମ୍ପର୍କିତ। ସୁନ୍ଦର ବଙ୍ଗଳା ଗୀତ ଗାଇ ପାରନ୍ତି। ତାଙ୍କର ପ୍ରଥମ ସନ୍ତାନ ଦୀନୁ ପ୍ରାଥମିକ ବିଦ୍ୟାଳୟରେ ପଢୁଥିଲା। ଝିଅ ମିଠୁନ୍ ଖୁବ୍ ଛୋଟ। ଦିଦି ମୋତେ ସାହୁ ଭାଇ ଡାକୁଥିବାରୁ ସେ ମଧ୍ୟ ସାହୁ ଭାଇ ଡାକୁଥିଲା।

ବିନୁଦା ଓ ରୁମାଦି କିଙ୍ଗ୍‌ସଟନ୍ ସହର ସୀମାର ସାମାନ୍ୟ ବାହାରେ ଘର କିଣିଥିଲେ। ବିନୁଦା ବେଳେ ବେଳେ ତାଙ୍କ ଗାଡ଼ିରେ ଘରକୁ ନିଅନ୍ତି। ସମୟ ସମୟରେ ଆମ ଘରକୁ ଆସନ୍ତି। ତାଙ୍କ ଘରକୁ ଗଲେ ମୁଖ୍ୟ ଆକର୍ଷଣ ହେଉଛି ସୁନ୍ଦର ବଙ୍ଗଳା ଗୀତ ଶୁଣିବା। ମୁଁ କାନାଡ଼ା ଛାଡ଼ିବା ସମୟରେ ଶତାଧିକ ବଙ୍ଗଳା ଗୀତର ରେକଡ଼ିଂ ଆଣିଥିଲି। କେବଳ ରବୀନ୍ଦ୍ର ସଙ୍ଗୀତ ଷାଠିଏ ସତୁରୀରୁ ଅଧିକ ହେବ। ତାଙ୍କର ପିଲାମାନେ କାନାଡ଼ାରେ ରହିଲେ ମଧ୍ୟ ଭାରତ ଓ ଭାରତୀୟ ସଂସ୍କୃତି ବିଷୟରେ ଜାଣନ୍ତୁ, ଏହା ତାଙ୍କର ଐକାନ୍ତିକ ଇଚ୍ଛା। ତେଣୁ ସବୁବର୍ଷ ଗ୍ରୀଷ୍ମଛୁଟି ସମୟରେ ସେ ତାଙ୍କର ପରିବାର ନେଇ କଲିକତା ଓ ପଣ୍ଡିଚେରୀ ଆସନ୍ତି। ଏବେ ମଧ୍ୟ ପଣ୍ଡିଚେରୀର ତାଙ୍କ ସହିତ ଅକସ୍ମାତ୍ ଦେଖା ହେଲେ ଖୁବ୍ ଆନନ୍ଦ ମିଳେ। ଆମ୍ଭେମାନେ ତାଙ୍କର ପଣ୍ଡିଚେରୀ ବାସଭବନକୁ ଯାଇ ଦୀର୍ଘ ସମୟ ଧରି ଗପସପ କରୁ।

ଏବେ ବି ମନେପଡ଼ିଲେ ଖୁସୀ ଲାଗେ ଏବଂ ହସ ମଧ୍ୟ ଲାଗେ। ପ୍ରଫେସର ପରେଶ୍ ସେନ୍ ଓ ମାୟାଦିଙ୍କ ପରିବାର। ସେ କାନାଡ଼ାର ଟରଣ୍ଟୋ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି କରି କୁଇନ୍ସ ବିଶ୍ୱବିଦ୍ୟାଳୟର ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂ ବିଭାଗରେ

ପ୍ରଫେସର୍ ଥିଲେ। ତାଙ୍କ ବ୍ୟକ୍ତିତ୍ୱର କେତେକ ବୈଶିଷ୍ଟ୍ୟ ଆମକୁ ଆକର୍ଷିତ କରୁଥିଲା। ଆମ ଯିବାର ପ୍ରଥମ ଦୁଇବର୍ଷ ସେ ଆମ ଆପାର୍ଟମେଣ୍ଟଠାରୁ ଅଳ୍ପ ଦୂରରେ ରହୁଥିଲେ। ସୁତରାଂ ଆମେ ଚାଲିଯାଉ ଅଥବା ସେମାନେ ଚାଲି ଚାଲି ଆମ ଘରକୁ ଆସନ୍ତି। ପରେ ପ୍ରାୟ ସାତଆଠ କିଲୋମିଟର ଦୂରବର୍ତ୍ତୀ ସ୍ଥାନକୁ ଉଠିଗଲେ। ତଥାପି ଆସନ୍ତି କିମ୍ବା ତାଙ୍କ ଗାଡ଼ିରେ ଆମକୁ ନେଇ ଯାଆନ୍ତି। ଆମେ ଯିବାବେଳକୁ ତାଙ୍କର ପ୍ରଥମ ସନ୍ତାନ ରିଣ୍ଟୁ ଛୋଟ ହୋଇଥିଲା। ପରେ ତାଙ୍କର କନ୍ୟାଟିଏ ହେଲା। ତା'ର ଭଲ ନାମ "ପ୍ରିୟା" ମାତ୍ର ଅଞ୍ଜୁ ତାକୁ ମଜାରେ ଡାକେ ଫୁଟକୀ। ତା'ର ଅନ୍ନପ୍ରାସନ (ପ୍ରଥମ ଅନ୍ନ ଗ୍ରହଣ) ଉତ୍ସବରେ ମୁଁ ମାମୁ ହୋଇ ପ୍ରଥମେ ତା'ମୁଖରେ ଖାଦ୍ୟ ଦେଇଥିଲି। ମାୟାଦି ମୋତେ ସାନଭାଇ ପରି ସ୍ନେହ କରନ୍ତି। ପ୍ରତିବର୍ଷ ଭାତୃଦ୍ୱିତୀୟା ଦିନ ଆମେ ନିମନ୍ତ୍ରିତ ହେଉ। ତାଙ୍କ ଘରେ ବିରାଟ ଭୋଜୀରେ ଆପ୍ୟାୟିତ ହେଉ।

ସେନ୍‌ଦା ଯେପରି ସରଳ, ସେପରି ହାସ୍ୟ ରସିକତାରେ ମଧ୍ୟ ପରିପୂର୍ଣ୍ଣ। ତାଙ୍କର ବାଲ୍ୟ ଓ କିଶୋର କାଳ କଲିକତାରେ ଶ୍ରୀରାମକୃଷ୍ଣ ମିଶନ୍‌ରେ କଟିଥିଲା। ତାଙ୍କ ହୃଦୟରେ ସମ୍ବେଦନଶୀଳତାର ନିର୍ଝର ଏବେ ମଧ୍ୟ ଗତିଶୀଳ। ସେ ଭାରତ ଆସିଲେ ବାଙ୍ଗ୍‌ଲାଦେଶ ଯାଇ ତାଙ୍କର ଅଭାବୀ ଦିଦି ଓ ଅନ୍ୟମାନଙ୍କ କଥା ବୁଝନ୍ତି। ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ମଜା ଦିଗ ହେଉଛି କେତେକ ଫଟୋ ଉଠାଇ ସେ ସବୁକୁ ନେଇ ହାସ୍ୟରସିକତା ସୃଷ୍ଟି କରିବାର ମାନସିକତା। ପୂର୍ବରୁ ସୂଚନା ଦେଇଛି ଯେ ଗ୍ରୀଷ୍ମାବକାଶ ସମୟରେ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନେ କିଛି ସାମୟିକ ରୋଜଗାର ଲାଗି ଛୋଟକାଟିଆ କାମ କରନ୍ତି। ଜୋତା ସଫା କରିବା ଏ ଧରଣର ଗୋଟିଏ କାମ। ସେନ୍‌ଦାଙ୍କ ଦରକାର ନ ଥିଲେ ମଧ୍ୟ ସେ ଜୋତା ସଫା କରାଇବେ। ସେହିପରି ଶୀତଦିନେ ବେଳେବେଳେ କୁଢ଼ କୁଢ଼ ତୁଷାରପାତ ହୋଇଯାଏ। ମ୍ୟୁନିସିପାଲିଟିର ଦାୟିତ୍ୱ ହେଉଛି ରାସ୍ତା ସଫା କରିବା। ମାତ୍ର ରାସ୍ତାରୁ ନିଜ ଘରର ପ୍ରବେଶ ଦ୍ୱାର ପର୍ଯ୍ୟନ୍ତ ସଫା କରିବାର ଦାୟିତ୍ୱ ହେଉଛି ଗୃହ ମାଲିକଙ୍କର। ଗୃହ ମାଲିକ ଏହା କରି ନ ପାରିଲେ ପଡ଼ୋଶୀଙ୍କ ପିଲାମାନେ ଏହା କରି ଦିଅନ୍ତି ଏବଂ ପରିଶ୍ରମ ପାଇଁ ପାରିଶ୍ରମିକ ନିଅନ୍ତି। ଏପରି ସବୁ ମୁହୂର୍ତ୍ତରେ ତାଙ୍କ ଘର ପାଖରେ ସେତେଇ ସମୟର ଫଟୋ ସେନ୍‌ଦା ନିଅନ୍ତି। କୁହନ୍ତି: "ମୁଁ ଏ ସବୁ ଫଟୋ ଦେଶରେ (ମାନେ ଭାରତରେ) ଦେଖାଇବି। କହିବି ଯେ ଏଇ ଇଂରେଜମାନେ ଦିନେ ଆମକୁ ଶାସନ କରୁଥିଲେ। ଦେଖ, ବର୍ତ୍ତମାନ ସାହେବ ଆମର ଜୋତା ସଫା କରୁଛନ୍ତି, ଆମ ଘରର ଦ୍ୱାରକୁ ପରିଷ୍କାର କରୁଛନ୍ତି।" ତାଙ୍କର ଏହି ସରଳତାପୂର୍ଣ୍ଣ କଥାରେ ଆମେ ସମସ୍ତେ ହସିଉଠୁ।

ଆଉ ଗୋଟିଏ ପରିବାର ସହିତ ଆମର ବେଶ୍ ଆତ୍ମୀୟତା ରହିଥିଲା। ସେ ହେଉଛନ୍ତି ଗୁନେନ୍ ଗୁପ୍ତ ଓ ତାଙ୍କର ପତ୍ନୀ। ତାଙ୍କୁ ଆମେ ଗୁପ୍ତଦା ଓ ଗୁପ୍ତବୌଦୀ ବୋଲି ଡାକିଥାଉ। ଗୁପ୍ତଦା ଆଲ୍‌କାନ୍‌ରେ (ଆଲୁମିନିୟମ୍ କମ୍ପାନୀ) କାର୍ଯ୍ୟ କରନ୍ତି। ତାଙ୍କର ପୁଅ "ସନି" ସ୍କୁଲରେ ପଢ଼େ ଏବଂ ଝିଅଟି ସ୍କୁଲରେ ପଢ଼ିଲେ ମଧ୍ୟ ଭିନ୍ନକ୍ଷମ। ଗୁପ୍ତଦାଙ୍କ ବଂଶାନୁକ୍ରମ ବଙ୍ଗୀୟ ପରିବାରରୁ, ମାତ୍ର ଗୁପ୍ତବୌଦୀଙ୍କ ଜନ୍ମସ୍ଥାନ ପଞ୍ଜାବ। ଗୁପ୍ତବୌଦୀ ବଙ୍ଗଳା କହିବା ସମୟରେ ଛୋଟକାଟିଆ ତ୍ରୁଟିବିଚ୍ୟୁତ ହୁଏ। ସେ ଅଞ୍ଜୁ ଓ ମୀରାକୁ ଖୁବ୍ ଭଲ ପାଆନ୍ତି। ଅଞ୍ଜୁ ଓ ମୀରା ତାଙ୍କର ବଙ୍ଗଳା କଥାକୁ ସଜାଡ଼ି ଦେଇ ହାସ୍ୟରୋଳ ସୃଷ୍ଟି କରନ୍ତି। ଆମ ଆପାର୍ଟମେଣ୍ଟ ଯେଉଁ ରାସ୍ତାର ଆରମ୍ଭରେ ରହିଛି ଗୁପ୍ତଦାଙ୍କ ଘରଟି ସେହି ରାସ୍ତାର ଶେଷରେ ରହିଛି। ସୁତରାଂ ଆମେ ଚାଲି ଚାଲି ତାଙ୍କ ଘରକୁ ଯାଉ। ସେମାନେ ମଧ୍ୟ ଚାଲି ଚାଲି ଆମ ଘର କିମ୍ବା ମୀରା ଘରକୁ ଆସନ୍ତି। କାନାଡ଼ାରେ ଅଧିକାଂଶ ଲୋକ ଫୋନ୍ କରି ଘରକୁ ଆସନ୍ତି। ମାତ୍ର ଗୁପ୍ତଦା କୁହନ୍ତି- "ମୁଁ ଅଞ୍ଜୁ କି ମୀରା ଘରକୁ ଯିବି। ଫୋନ୍ କରିବି ? କଦାପି ନୁହେଁ।" ଫୋନ୍ ନ ଥାଇ ଘରର କଲିଂ ବେଲ୍ ବାଜିଲେ ଆମେ ଜାଣୁ ଯେ ଗୁପ୍ତଦା ଓ ବୌଦୀ। ଅଧିକାଂଶ ସମୟରେ ଆମର ଅନୁମାନ ସତ ହୁଏ।

ଗୁପ୍ତଦାଙ୍କ ଏକ ବିଶେଷ ଦୁର୍ବଳତା ଥିଲା ଖାଦ୍ୟପ୍ରୀତି। ବୌଦୀ ପଞ୍ଜାବୀ ଥିବାରୁ କୁକୁଡ଼ା ମାଂସର ତରକାରୀ ଭଲ କରନ୍ତି। ମାତ୍ର ମାଛ କି ମାଂସ ତରକାରୀ ଏତେ ଭଲ ହୁଏ ନାହିଁ। ଗୁପ୍ତଦା ମନ ଖୋଲି ଅଞ୍ଜୁ କିମ୍ବା ମୀରାକୁ କୁହନ୍ତି: "ମୋତେ ତୁମ୍ଭେମାନେ କେବେ ଡାକୁଛ ?" ତାଙ୍କର ଏ କଥା ଭଲ ଲାଗେ। ବେଳେବେଳେ ସ୍ୱତନ୍ତ୍ର ଧରଣର ମାଛ କିଣିବାକୁ ଅଞ୍ଜୁ କିମ୍ବା ମୀରାକୁ ନେଇ କାର୍‌ରେ ଖୁବ୍ ଦୂରସ୍ଥାନ ଯାଆନ୍ତି। ଫେରିବା ପରେ ତରକାରୀ ହୁଏ ଏବଂ ଆଡ୍ଡା ଜମେ।

## ବାଙ୍ଗ୍‌ଲାଦେଶୀଙ୍କ ମମତ୍ୱବୋଧ

ଦେଶର ବିଭିନ୍ନତା ସତ୍ତ୍ୱେ ଭାରତୀୟ ଉପଦେଶର ଲୋକମାନଙ୍କ ମଧ୍ୟରେ ଏକ ଭାବଗତ ଐକ୍ୟ ରହିଛି। ପ୍ରକୃତ ମୁହୂର୍ତ୍ତ ନ ଆସିଲେ ହୁଏତ ସେପରି ଅନୁଭବ ଆସି ନ ଥାଏ। ଆମର କିଙ୍ଗ୍‌ସଟନ୍‌ର ଅବସ୍ଥାନ ସମୟରେ କେତେକ ବାଙ୍ଗ୍‌ଲାଦେଶୀଙ୍କର ସ୍ନେହ ଶ୍ରଦ୍ଧାର ବଳୟ ମଧ୍ୟରେ ଆମେ ହଜିଗଲୁ।

ଆମର ସମ୍ପର୍କ ଥିବା ଅଧିକାଂଶ ବାଙ୍ଗ୍‌ଲାଦେଶୀ ପରିବାରର ଲୋକମାନେ କୁଇନ୍ସ ବିଶ୍ୱବିଦ୍ୟାଳୟର ଛାତ୍ର। ତାହାର ବ୍ୟତିକ୍ରମ ଥିଲେ ଡକ୍ଟର୍ ହାଫିଜୁର୍ ରହେମାନ୍। ଆମେ ତାଙ୍କୁ ହାଫିଜ୍ ଭାଇ ବୋଲି ଡାକୁଥିଲୁ। ତାଙ୍କର ପତ୍ନୀଙ୍କୁ ନାଜ୍‌ମାଦି ଡାକିଲୁ। ସେମାନଙ୍କର ଦୁଇଟି ଝିଅ: ମୋନା ଓ ସାଫା। ବେଶ୍ ବ୍ୟବଧାନ ପରେ ପରିବାରକୁ ଗୋଟିଏ ପୁତ୍ର ସନ୍ତାନ ଆସିଲା। ତା' ନାମ ଆତିଫ୍। ହାଫିଜ୍

ଭାଇ ବିନୁଦାଙ୍କ ପରି ରୟାଲ୍ ମିଲିଟାରୀ କଲେଜର ଅଧ୍ୟାପକ ଥିଲେ। କିନ୍ତୁ ତାଙ୍କର ବିଭାଗ ଥିଲା ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂ।

ହାଫିଜ୍ ଭାଇଙ୍କ ସହିତ ପ୍ରଥମ ସାକ୍ଷାତ୍ ହୁଏ ବିନୁଦାଙ୍କ ଘରେ ଏକ ସମାବେଶରେ। ବିନୁଦା କଥା ପ୍ରସଙ୍ଗରେ କହିଲେ ଯେ କିଛିମାସ ପରେ ହାଫିଜ୍ ଭାଇ ଓ ନାଜ୍‌ମାଦି ତୁମ୍ଭମାନଙ୍କ ଘରର ପାଖାପାଖି ଅଞ୍ଚଳକୁ ଚାଲିଯିବେ। ପ୍ରକୃତରେ ତାହା ହିଁ ହେଲା। ଯେଉଁ ସ୍ଥାନରେ ବିଶ୍ୱବିଦ୍ୟାଳୟର ବିବାହିତ ଛାତ୍ରଛାତ୍ରୀଙ୍କ ପାଇଁ ଅନେକଗୁଡ଼ିଏ ଆପାର୍ଟମେଣ୍ଟ ରହିଥିଲା, ତାହାର ସମ୍ମୁଖରେ ଗୋଟିଏ ରାସ୍ତା ଯାଇଛି। ଆମେ କିଙ୍ଗ୍‌ସଟନ୍‌ରେ ପ୍ରଥମେ ପହଞ୍ଚିବା ବେଳେ ସେହି ରାସ୍ତାର ଅପରପାର୍ଶ୍ୱରେ କମ୍ ଖର୍ଚ୍ଚର ବାସଗୃହସବୁର ନିର୍ମାଣ ଆରମ୍ଭ ହେଉଥିଲା। ହଠାତ୍ ଅଳ୍ପ କେଇ ମାସର କାମ ପରେ ଲକ୍ଷ୍ୟ କଲୁ ଯେ ନିର୍ମାଣ କାର୍ଯ୍ୟ ଶେଷ ହୋଇ ସେ ଘର ସବୁର ସାମନାରେ ଥିବା ଖାଲି ଜାଗାରେ ବର୍ଗାକୃତି ଘାସର କାର୍ପେଟ ସବୁ ବିଛା ହେଉଛି। ପୁଣି କେଇ ସପ୍ତାହ ମଧ୍ୟରେ ଘର କିଣିଥିବା ଲୋକମାନେ ବସବାସ ପାଇଁ ପ୍ରବେଶ କରିବାକୁ ଆରମ୍ଭ କଲେ। ବର୍ଷ ବର୍ଷ ଧରି ନିର୍ମାଣ କାର୍ଯ୍ୟ ଚାଲି ଥିବାର ଦେଖିଥିବା ଆମମାନଙ୍କ ପାଇଁ ଆଲ୍ଲାଉଦ୍ଦିନ୍‌ର କୁହୁକ ଦୀପ ପରି ଅନୁଭୂତି ହେଲା। ପୁଣି ସୁଖର କଥା ଯେ ହାଫିଜ୍ ଭାଇ ଯେଉଁ ଘରଟିରେ ପ୍ରବେଶ କଲେ ତାହା ଆମ ଆପାର୍ଟମେଣ୍ଟର ସମ୍ମୁଖ ଘର। ଆମର ଆପାର୍ଟମେଣ୍ଟ ପ୍ରଥମ ମହଲାରେ। ସୁତରାଂ ଆମ ଘର ସମ୍ମୁଖ ରାସ୍ତାର ଅପର ପାର୍ଶ୍ୱରେ ହାଫିଜ୍ ଭାଇଙ୍କ ଘର। ସମ୍ପର୍କର ସେତୁଟି ଦୃଢ଼ କରିବାରେ ବେଶ୍ ସହାୟକ ଥିଲା।

ବାଙ୍ଗ୍‌ଲାଦେଶରୁ ଆସିଥିବା ଅନ୍ୟମାନଙ୍କ ତୁଳନାରେ ହାଫିଜ୍ ଭାଇ ବୟୋଜ୍ୟେଷ୍ଠ ଥିବାରୁ ବାଙ୍ଗ୍‌ଲାଦେଶୀ ଛାତ୍ରମାନେ ତାଙ୍କୁ ସମ୍ମାନ କରୁଥିଲେ ଏବଂ ଏକରକମ ସ୍ଥାନୀୟ ଅଭିଭାବକ ରୂପେ ମାନ୍ୟତା ଦେଉଥିଲେ। ହାଫିଜ୍ ଭାଇ ଖୁବ୍ ପରିଶ୍ରମୀ ଓ ବିଚକ୍ଷଣ। ନାଜ୍‌ମାଦିଙ୍କ ସରଳତାର ତୁଳନା ନାହିଁ। ଆମ୍ଭେମାନେ ତାଙ୍କ ଘରକୁ ଯିବା ପରିପ୍ରେକ୍ଷୀରେ ତାଙ୍କ ଘରକୁ ଆସୁଥିବା ବହୁ ବାଙ୍ଗ୍‌ଲାଦେଶୀ ପରିବାର ସହ ମିତ୍ରତା ବଢ଼ିଲା। ହାଫିଜ୍ ଭାଇଙ୍କ ସହିତ ଆମେ କିଙ୍ଗ୍‌ସଟନ୍‌ର ଆଖପାଖ ବହୁ ସହର ଯାଇଛୁ। ବିଶେଷତଃ ଓଣ୍ଟାରିଓ ହ୍ରଦର ଅପରପାର୍ଶ୍ୱରେ ଥିବା ନିଉୟର୍କ ରାଜ୍ୟର କେତେକ ଛୋଟ ଛୋଟ ସହର (ୱାଟର୍ ଟାଉନ୍, ଅଗଡ୍ରେନ୍‌ସବର୍ଗ୍ନୀ ଓ ପଟ୍‌ସ୍‌ଡ୍ୟାମ୍) ବହୁବାର ଯାଇଛୁ। ମୋନା ଓ ସାଫା ପିଲା ଦୁଇଟି ମଧ୍ୟ ଆମ ଘରକୁ ଆସନ୍ତି। ମଝିରେ ଏକ ମିନିଟ୍‌ର ବାଟ। ଆମ ଘରେ ଓଡ଼ିଆ ଗୀତ ସବୁ ଟେପ୍‌ରେ ଲାଗିଥାଏ। ଥରେ ଆମେ ହାଫିଜ୍ ଭାଇ ଓ ନାଜମାଦିଙ୍କ ସହିତ ତାଙ୍କ କାର୍‌ରେ ବୁଲି ଯାଉଥିବା ସମୟରେ ହଠାତ୍ ସାଫା ଗାଇ ଉଠିଲା: "ଗୋଲାପୀ ଗୋଲାପୀ

ରଙ୍ଗ ତା'ର।" ପ୍ରସିଦ୍ଧ ଓଡ଼ିଆ ଶିଳ୍ପୀ ଅକ୍ଷୟ ମହାନ୍ତିଙ୍କ ଗୀତର ମୂଳ ଅଂଶ ତା'ର ଦରୋଟି ଭାଷାରେ ଶୁଣି ଆଶ୍ଚର୍ଯ୍ୟ ହେଲୁ।

ବାଙ୍ଗ୍ଲାଦେଶର ଏକ ପ୍ରିୟ ପରିବାର ହେଉଛି ଭୂୟାଁ ପରିବାର। ଭୂୟାଁ ଭାଇ ରାଜନୀତି ବିଜ୍ଞାନ ବିଭାଗର ପି.ଏଚ୍.ଡ଼ି. ଛାତ୍ର ଥିଲେ। ତାଙ୍କ ପତ୍ନୀଙ୍କୁ ଆମ୍ଭେମାନେ ଭୂୟାଁଭାବୀ ଡାକିଥାଉ। ତାଙ୍କର ଅତିଥି ସତ୍କାର ଭୁଲିବାର ନୁହେଁ। ସେ ପରିବାର ବିଶ୍ୱବିଦ୍ୟାଳୟର ଆଖପାଖ ଅଞ୍ଚଳରେ ରହୁଥିଲେ। ବେଳେବେଳେ ଅଞ୍ଜୁ ମୋର ବିଶ୍ୱବିଦ୍ୟାଳୟ ଯିବା ବାଟରେ ଭୂୟାଁଭାବୀଙ୍କ ପାଖରେ କିଛି ଗୋଟିଏ ପହଞ୍ଚାଇ ଦେବାର ଅନୁରୋଧ କରିଥାଏ। ମୁଁ ସେଠାରେ ପହଞ୍ଚିବା ପରେ ଭୂୟାଁ ବାବୁ ଅନୁରୋଧ କରନ୍ତି: "ଟିକିଏ ବସନ୍ତୁ।" ବସିବା କେଇ ସେକେଣ୍ଡକ ମଧ୍ୟରେ ଥଣ୍ଡା ପାନୀୟ ପହଞ୍ଚିଯାଏ। ପାନୀୟଟି ଶେଷ କରି ଚାହିଁଲା ବେଳକୁ ଉପମା'ର ପାତ୍ର। ମୁଁ ପ୍ରତିବାଦ କରେ। କିନ୍ତୁ ସେ ଶୁଣିବାକୁ ଅପ୍ରସ୍ତୁତ। ତା'ପରେ ପୁଣି ଚା' କି କଫି। ଶେଷରେ କୁହନ୍ତି: "ଭାଇ। ମୁଁ ଫୋନ୍ କରି ଅଞ୍ଜୁକୁ ଡାକି ଦେଉଛି। ଏଇଠି ମଧ୍ୟାହ୍ନ ଭୋଜନ କରି ଫେରିଯିବେ।" ଗୋଟିଏର ଦୃଷ୍ଟାନ୍ତ ଦେଲି। ଏହିପରି ଜବରଦସ୍ତ ଚର୍ଚ୍ଚାର ଘଟଣା ବହୁବାର ଆସିଛି।

ସେହିପରି ଅନ୍ୟ ଏକ ପରିବାର ହେଉଛି ହେଲେନ୍ ଭାବୀ ଓ ହାସାନ୍ ଭାଇ। ଆତ୍ମୀୟତାରେ ପରିପୂର୍ଣ୍ଣ। ବହୁବାର ଏକାଠି ହୋଇଛୁ ତାଙ୍କ ଘରେ ଏବଂ ଆମ ଘରେ। ସେ କିଙ୍ଗ୍‌ସଟନ୍ ଛାଡ଼ି ଆମେରିକାର ନିଉୟର୍କ ରାଜ୍ୟର ସିରାକ୍ୟୁଜ୍ ବିଶ୍ୱବିଦ୍ୟାଳୟକୁ ଗଲେ ତାଙ୍କର ପି.ଏଚ୍.ଡ଼ି. କାମ କରିବାକୁ। ସେଠାକୁ ମଧ୍ୟ ଏକାଧିକବାର ଯାଇଛୁ।

ସ୍ନେହଶ୍ରଦ୍ଧା ଓ ଆତ୍ମୀୟତାର କୌଣସି ଭାଷାଗତ ସମ୍ପ୍ରଦାୟଗତ ବିଭେଦ ନାହିଁ। କାନାଡ଼ାରେ ପି.ଏଚ୍.ଡ଼ି. କରିବା ସମୟରେ ବିଶ୍ୱବିଦ୍ୟାଳୟର ଯାହା ଚାପ ଥାଉ ନା କାହିଁକି, ସାମାଜିକ ସଂସର୍ଗର ମଧୁରତା ସମସ୍ତ କ୍ଳାନ୍ତିକୁ ଧୋଇ ନେଉଥିଲା। ଶନିବାର ରବିବାର ଦିନ ବୁଲି ଯାଉଥିଲୁ କିମ୍ବା କାହା ଘରେ ଏକାଠି ହୋଇ ସ୍ୱତନ୍ତ୍ର ଧରଣର ଖାଦ୍ୟ ଖାଉଥିଲୁ। ଖାଦ୍ୟ ପ୍ରସ୍ତୁତ ସମୟରେ ଅନ୍ୟର ରୁଚି ପ୍ରତି ଯଥାଯଥ ସମ୍ମାନ ଥିଲା। ଆତ୍ମୀୟତାର ଆନନ୍ଦରେ ଆମର ଦୀର୍ଘ ଚାରି ବର୍ଷ ନ'ମାସ କେମିତି କଟିଲା, ତାହା ଜଣା ପଡ଼ିଲା ନାହିଁ। ସୁଖସ୍ୱପ୍ନ ବିଜଡ଼ିତ ନିଦରୁ ଉଠିଲା ପରି ମନେ ହେଲା।

❖

(୨୬)

# ପରିଭ୍ରମଣର ସୁଖ

କାନାଡ଼ା ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଉଚ୍ଚ ଶିକ୍ଷା ଓ ତାଲିମ। ସେ ଦିଗରେ ଅବହେଳା କରିବାର ପ୍ରଶ୍ନ ନାହିଁ। ସୌଭାଗ୍ୟବଶତଃ ମୋର ମାର୍ଗଦର୍ଶକ ଜନ୍ ବେରୀ ମଧ୍ୟ ଜଣେ ଅଭିଜ୍ଞ ଓ ସମ୍ବେଦନଶୀଳ ବ୍ୟକ୍ତିତ୍ୱ। କୁଇନ୍ସ ବିଶ୍ୱବିଦ୍ୟାଳୟର ଚମତ୍କାର ଶିକ୍ଷାଗତ ପରିବେଶ ଏବଂ ସମ୍ବଳ ସହାୟତା କମ୍ ନ ଥିଲା। ଏତଦ୍‌ବ୍ୟତୀତ ରାଜ୍ୟଗୋଷ୍ଠୀ ବୃତ୍ତି ଏକ ଉଚ୍ଚ ମାନ୍ୟତା ପ୍ରାପ୍ତ ବୃତ୍ତି। ମାସିକ ବୃତ୍ତି ଯୋଗାଇବା ବ୍ୟତୀତ ଗବେଷଣା କାର୍ଯ୍ୟ ଲାଗି ଆର୍ଥିକ ସହାୟତାର ବ୍ୟବସ୍ଥା ଥିଲା। ପୁଣି କାନାଡ଼ା କିମ୍ବା ଯୁକ୍ତରାଷ୍ଟ୍ର ଆମେରିକାରେ ଅନୁଷ୍ଠିତ ହେଉଥିବା କୌଣସି ସମ୍ମିଳନୀରେ ଉପସ୍ଥାପନ କରିବାକୁ ଥିବା ଗବେଷଣା ନିବନ୍ଧ ଗୃହୀତ ହେଲେ ଯାତାୟାତର ଖର୍ଚ୍ଚ ମିଳିବାର ମଧ୍ୟ ସୁଯୋଗ ଥିଲା। ଏହାର ସୁଯୋଗ ନେଇ ମୁଁ ମୋର ବୌଦ୍ଧିକ ବିକାଶ ସହିତ ପରିଭ୍ରମଣର ସୁଖାନୁଭୂତିର ସୁଯୋଗ ନେବାକୁ ଚାହିଁଲି। ବନ୍ଧୁବଳୟର ସହଯୋଗ, ବିଶ୍ୱବିଦ୍ୟାଳୟର ସମ୍ବଳ ଏବଂ ରାଜ୍ୟଗୋଷ୍ଠୀ ବୃତ୍ତି ଯୋଜନାର ସହାୟତା ମୋର ସୁଖର ପରିସରକୁ ପରିବ୍ୟାପ୍ତ କଲା।

### ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ସବୁଜିମା

ଜନସଂଖ୍ୟା ଦୃଷ୍ଟିରୁ କିଙ୍ଗସ୍‌ଟନ୍ ଏକ ବିରାଟ ସହର ନୁହେଁ। ସେ ସମୟରେ ଲୋକସଂଖ୍ୟା ମାତ୍ର ଷାଠିଏ ହଜାର। ଶିଳ୍ପ ବହୁଳ ବି ନୁହେଁ। ମାତ୍ର ଦୁଇଟି କାରଖାନା। ଗୋଟିଏ ଆଲୁମିନିୟମ ଏବଂ ଅନ୍ୟଟି ନାଇଲନ୍। ଗୋଟିଏ ଦିଗରେ ବିରାଟ ଓଣ୍ଟାରିଓ ହ୍ରଦ (ଚିଲିକାର କାହିଁ କେତେଗୁଣ ବଡ଼) ବହି ଯାଇଛି। ଏହି ହ୍ରଦଟି ହିଁ କିଙ୍ଗସ୍‌ଟନ୍ ପରେ ପରେ "ସେଣ୍ଟ୍ ଲରା" ନାମ ଧାରଣ କରି ଏକ ଦୀର୍ଘତମ ନଦୀ ରୂପେ ପ୍ରବାହିତ ହୋଇ ଆଟଲାଣ୍ଟିକ୍ ମହାସାଗରରେ ମିଶିଛି। ଶୀତଦିନେ (ନଭେମ୍ବରରୁ ଫେବୃଆରୀ ପର୍ଯ୍ୟନ୍ତ) ପୂରା ହ୍ରଦଟି ବରଫ ପାଲଟି ଯାଏ। ପିଲାମାନେ ସ୍କେଟିଂ କରନ୍ତି। ହ୍ରଦର ଅପର ପାର୍ଶ୍ୱରେ ଥିବା ସ୍ଥାନମାନଙ୍କୁ ସ୍ନୋ ମୋବାଇଲ୍ ଯାନରେ ଯାତାୟାତ କରନ୍ତି। ଏ ଏକ ଅନିର୍ବଚନୀୟ ଶୋଭା।

କିଙ୍ଗସ୍‌ଟନ୍‌ର ଗତାନୁଗତିକ ଜୀବନଧାରା ମଧ୍ୟରେ ଦୁଇ ତିନୋଟି ସ୍ୱତନ୍ତ୍ର ଆୟୋଜନ ସହରକୁ ଶୋଭାମୟ କରେ। ଗୋଟିଏ ହେଉଛି ଲୋକଗୀତ ସମାରୋହ। ପ୍ରାୟ ସାତଦିନ ଧରି ଏ ଉତ୍ସବ ଚାଲେ। କାନାଡ଼ା ଏକ ବହୁ-ସଂସ୍କୃତିପୂର୍ଣ୍ଣ ଦେଶ।

ପ୍ରତିଟି ସଂସ୍କୃତି (ଜର୍ମାନୀ, ଫ୍ରାନ୍‌ସ, ଇଟାଲୀ ଭାରତୀୟ ଇତ୍ୟାଦି) ପାଇଁ ସହରର ଗୋଟିଏ ଗୋଟିଏ ସ୍କୁଲ ପରିସର ଯୋଗାଇ ଦିଆଯାଏ। ସେଠାରେ ସେମାନେ ପ୍ରଦର୍ଶନୀ ମଣ୍ଡପ, ନୃତ୍ୟଗୀତ ମଣ୍ଡପ ଓ ଖାଦ୍ୟର ମେଳା ଆୟୋଜନ କରନ୍ତି। ଗୋଟିଏ ମଣ୍ଡପରୁ ଅନ୍ୟ ମଣ୍ଡପକୁ ଯିବା ପାଇଁ ବିନା ମୂଲ୍ୟରେ ଗାଡ଼ି ଯୋଗାଇ ଦିଆଯାଏ। ଦର୍ଶକମାନଙ୍କ ପାଇଁ ଭିନ୍ନ ସଂସ୍କୃତିର ନୃତ୍ୟଗୀତ ଓ ସ୍ୱତନ୍ତ୍ର ଖାଦ୍ୟ ପଦାର୍ଥର ଆୟୋଜନ କରାଯାଇଥାଏ। ଆନନ୍ଦ ଅନୁଭବ କରିବା ବ୍ୟତୀତ ଅନ୍ୟ ସଂସ୍କୃତି ବିଷୟରେ ଶିକ୍ଷା ମଧ୍ୟ ଆହରଣ କରାଯାଏ।

ଡିସେମ୍ବର ୨୫ ଓ ନୂଆ ବର୍ଷ ପାଳନର ପ୍ରାୟ ଏକମାସ ପୂର୍ବରୁ ପ୍ରସ୍ତୁତି ଆରମ୍ଭ ହୋଇଯାଏ। ଘର ଓ ଦୋକାନ ବଜାର ସୁନ୍ଦର ଆଲୋକମାଳାର ଆକର୍ଷଣୀୟ ରୂପ ନିଏ।

କିଙ୍ଗସ୍‌ଟନ୍‌ରେ ଥିବା ଭାରତୀୟମାନେ ମିଳିତ ହୋଇ ବର୍ଷରେ ଚାରିପାଞ୍ଚୋଟି ଉତ୍ସବ ପାଳନ କରନ୍ତି। ସ୍ୱତନ୍ତ୍ର ଭାବରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରାଯାଏ। ବିଶେଷତଃ ଦୀପାବଳି ଓ ହୋଲିର ଉତ୍ସବ ମହା ସମାରୋହରେ ପାଳିତ ହୁଏ। ଶ୍ୱେତାଙ୍ଗମାନେ ମଧ୍ୟ ଏସବୁ ଉତ୍ସବ ଦେଖିବାକୁ ବହୁ ସଂଖ୍ୟାରେ ଆସନ୍ତି।

କିଙ୍ଗସ୍‌ଟନ୍ ଆଖପାଖରେ ଥିବା ଛୋଟ ଛୋଟ ସହରର ଭାରତୀୟମାନଙ୍କର ସଂଘ ସେହିପରି କିଛି ଉତ୍ସବର ଆୟୋଜନ କଲେ ଆମକୁ ଜଣାନ୍ତି। ଆମେ କେତେଜଣ ଏକାଠି ହୋଇ ନିକଟବର୍ତ୍ତୀ ସହରମାନଙ୍କୁ ଯାଇଥାଉ। ସ୍ୱାଧୀନତା ଦିବସ, ଜନରାଜ୍ୟ ଦିବସ ଏବଂ ଗାନ୍ଧୀ ଜୟନ୍ତୀ ଭଳି ଜାତୀୟ ଦିବସମାନଙ୍କରେ ଉତ୍ସବର ଆୟୋଜନ ଓ ଯାତାୟାତ ସକ୍ରିୟ ରୂପ ନିଏ।

## ନଗର ଆକର୍ଷଣ

କାନାଡ଼ାର ପୂର୍ବ ପଟରେ ରହିଛି ଆଟଲାଣ୍ଟିକ୍ ମହାସାଗର ଓ ପଶ୍ଚିମ ପଟରେ ପ୍ରଶାନ୍ତ ମହାସାଗର। ଆମେ ପୂର୍ବାଞ୍ଚଳରେ ଥିଲୁ। ଏ ପାର୍ଶ୍ୱର ତିନୋଟି ମୁଖ୍ୟ ନଗର ହେଉଛି ଟରଣ୍ଟୋ, ମଣ୍ଟ୍ରିଅଲ୍ ଏବଂ ଅଟୱା। ଟରଣ୍ଟୋ ଓ ଅଟୱା ଓଣ୍ଟାରିଓ ରାଜ୍ୟର ଅନ୍ତର୍ଭୁକ୍ତ ଏବଂ ମଣ୍ଟ୍ରିଅଲ୍ କ୍ୟୁବେକ୍ ରାଜ୍ୟର ଅନ୍ତର୍ଭୁକ୍ତ। ପଶ୍ଚିମ ପଟରେ ରହିଥିବା ଉନ୍ନତ ରାଜ୍ୟ ହେଉଛି ବ୍ରିଟିଶ୍ କଲମ୍ବିଆ ଏବଂ ଏହାର ମୁଖ୍ୟ ନଗର ହେଉଛି ଭାଙ୍କୁଭର୍। ଦୁଇ ମହାସାଗର ମଧ୍ୟରେ ଦୂରତ୍ୱ ହେଉଛି ହଜାର ହଜାର କିଲୋମିଟର। କିଙ୍ଗସ୍‌ଟନ୍‌ର ଅବସ୍ଥାନ କାଳରେ ପଶ୍ଚିମା ରାଜ୍ୟକୁ ଯିବା ସମ୍ଭବ ହୋଇ ନଥିଲା।

ଟରଣ୍ଟୋ ନଗରକୁ ଆମେ ଏକାଧିକ ବାର ଯାଇଛୁ। ପ୍ରଥମତଃ ଭାରତରୁ ଗଲାବେଳେ ଏହାର ବିମାନ ବନ୍ଦରରେ ଅବତରଣ କରିଥିଲୁ। ପୁଣି କିଙ୍ଗସ୍‌ଟନ୍

ପହଞ୍ଚିବାର ମାତ୍ର ଦୁଇ ତିନିଦିନ ପରେ ଟରଣ୍ଟୋର YMCA କାନାଡ଼ା ସରକାରଙ୍କ ସହାୟତାରେ ବିଦେଶଗତ ଛାତ୍ରଛାତ୍ରୀମାନଙ୍କ ପାଇଁ ଏକ ବିରାଟ ସମାବେଶର ଆୟୋଜନ କରିଥିଲେ।

ଟରଣ୍ଟୋରେ ରହୁଥିବା ପୁରୁଣା ଛାତ୍ରଙ୍କୁ ସଙ୍ଗରେ ନେଇ ଆମକୁ ବୁଲାଇବାର ଯୋଜନା କରିଥିଲେ। ବିଶେଷତଃ ଓଣ୍ଟାରିଓ ପ୍ଲେସ୍ ପରି ଆମୋଦ ଉଦ୍ୟାନ ଏକ ଚମତ୍କାର ଅନୁଭବ ଦେଇଥିଲା। ପୂରାଦିନଟି କିପରି କଟିଗଲା ତାହା ଜଣା ପଡ଼ିଲା ନାହିଁ। ଅନ୍ୟ ସବୁ ଦର୍ଶନୀୟ ସ୍ଥାନ ଦେଖିବାର ସୁଯୋଗ ପାଇଲୁ।

ଅନ୍ୟ ନଗର ଅପେକ୍ଷା ଟରଣ୍ଟୋରେ ଅଧିକ ଓଡ଼ିଆ ପରିବାର ରହୁଥିଲେ। ସୁତରାଂ ସମ୍ପର୍କ ଓ ନିବିଡ଼ତା ଅଳ୍ପ ସମୟ ମଧ୍ୟରେ ବଢ଼ିଗଲା। ଆମେ କେତେବେଳେ ବୁଟୁ ବାବୁ ଓ ଡଲି ସହିତ ଟରଣ୍ଟୋ ଆସୁଥିଲୁ ତ ଅନ୍ୟ ସମୟରେ ବିନୁଦା କିମ୍ବା ସେନ୍‌ଦା କିମ୍ବା ହାଫିଜ୍ ଭାଇଙ୍କ ସହିତ ଆସୁଥିଲୁ। ପ୍ରଥମ ଥରର ଓଡ଼ିଆ ମେଳାଟି ଖୁବ୍ ମନେଅଛି। ପ୍ରଥମ ବର୍ଷ ମୋର କେତେକ ବିଭାଗୀୟ ଦାୟିତ୍ୱ ସରିବା ପରେ ଆମେ ଏପ୍ରିଲ୍ ଶେଷ ଭାଗରେ ମଣ୍ଟ୍ରିଏଲ୍ ଗଲୁ। ପରେ ପରେ ବୁଟୁ ବାବୁ ଓ ଡଲି ମଇ ମାସର ଶେଷ ଭାଗରେ କିଙ୍ଗସ୍‌ଟନ୍ ଆସିଲେ। କିଙ୍ଗସ୍‌ଟନ୍‌ରେ ବୁଲାବୁଲି ସରିବା ପରେ ଏବଂ ଓଣ୍ଟାରିଓ ହ୍ରଦରେ ନୌକା ଯାତ୍ରାରେ ଯାଇ "ହଜାର ଦ୍ୱୀପର ଶୋଭା" ଦେଖିବା ପରେ ଟରଣ୍ଟୋ ଯିବାର ସ୍ଥିର ହେଲା। ପିଲାଦିନେ ସ୍କୁଲ ଭୂଗୋଳ ବହିରେ କେତେ ପଢ଼ିଛୁ ନାଏଗ୍ରା ଜଳପ୍ରପାତ ବିଷୟରେ। ମନସ୍ଥ କଲୁ ଯେ ଟରଣ୍ଟୋର ଅଶୀ କିଲୋମିଟର ଦୂରବର୍ତ୍ତୀ ନାଏଗ୍ରା ଦେଖିବାକୁ ଯିବୁ।

ଟରଣ୍ଟୋର ଜଣେ ଦୁଇଜଣଙ୍କୁ ଆଗରୁ ଖବର ଦିଆଗଲା। ପାଲଟା ଖବର ଆସିଲା ଯେ ଆମେ ଯେଉଁଦିନ ଟରଣ୍ଟୋରେ ପହଞ୍ଚିବୁ, ସେଦିନ ଗୋଟିଏ ଓଡ଼ିଆ ପରିବାରରେ "ପଖାଳ ପାର୍ଟି"ର ଆୟୋଜନ କରାଯାଇଛି। ଆମ୍ଭେମାନେ ମଧ୍ୟ ନିମନ୍ତ୍ରିତ। କିନ୍ତୁ ପଖାଳ ଓ ଭଜାଭଜି ଖାଇବାକୁ ସଙ୍ଗରେ କିଛି ପାତ୍ର ନେଇଥିବା ପ୍ରୟୋଜନ। ଖରାଦିନରେ ପଖାଳ ପାର୍ଟି ଏକ ଚମତ୍କାର ପରିକଳ୍ପନା। ଏଠାରେ ଖରାଦିନ ସମ୍ପର୍କରେ ସୂଚନା ଦେବା ଉଚିତ୍ ମନେକରୁଛି।

ମୋଟାମୋଟି ଭାବରେ କାନାଡ଼ାରେ ତିନୋଟି ଋତୁ ଅନୁଭୂତ ହୁଏ। ଅଗଷ୍ଟ, ସେପ୍ଟେମ୍ବର ଓ ଅକ୍ଟୋବର ପ୍ରାୟ ଫଲ୍ (Fall) ଋତୁ। ଏ ସମୟରେ ଗଛର ପତ୍ରସବୁ ଝରି ପଡୁଥିବାରୁ ଏହାକୁ ଫଲ୍ ଋତୁ କୁହନ୍ତି। ସେପ୍ଟେମ୍ବରରେ ଗଛସବୁ ପତ୍ରଶୂନ୍ୟ ହେବା ପରେ ନୂଆ ପତ୍ରର ପଲ୍ଲବନ ଦେଖାଯାଏ। ପତ୍ରସବୁ ବିଭିନ୍ନ ବର୍ଣ୍ଣରେ ରଙ୍ଗୀନ୍ ହୋଇ ଶୋଭନୀୟ ଦେଖାଯାଏ। କେବଳ ପଶ୍ଚିମ ଦିଗରେ ଥିବା ପ୍ରଶାନ୍ତ ମହାସାଗରର ନିକଟବର୍ତ୍ତୀ ବ୍ରିଟିଶ କଲମ୍ବିଆ ରାଜ୍ୟକୁ ବାଦ୍ ଦେଲେ ଅନ୍ୟତ୍ର

ଶୀତଋତୁ ନଭେମ୍ବରରୁ ଆରମ୍ଭ ହୁଏ। ବହୁସ୍ଥାନରେ ନଭେମ୍ବର, ଡ଼ିସେମ୍ବର ଓ ଜାନୁଆରୀ ମାସରେ ତୁଷାରପାତ ହୁଏ। ଭୌଗଳିକ ଦୃଷ୍ଟିକୋଣରୁ କାନାଡ଼ା ଏକ ବିରାଟ ଦେଶ ହୋଇଥିବାରୁ ଶୀତଦିନେ ଉତ୍ତାପର ପାର୍ଥକ୍ୟ ମଧ୍ୟ ଖୁବ୍ ବେଶୀ। କେତେକ ସ୍ଥାନରେ ଶୂନ୍ୟ ସେଣ୍ଟିଗ୍ରେଡ଼ରୁ ମାତ୍ର ୨/୩ ତଳକୁ ଖସିବା ସ୍ଥଳେ ଅନ୍ୟ ସ୍ଥାନରେ ଶୂନ୍ୟରୁ ୪୦° କମ୍ ରହେ। ଆମେ ରହୁଥିବା ଅଞ୍ଚଳରେ ପ୍ରଚଣ୍ଡ ଶୀତ (ଡିସେମ୍ବର/ଜାନୁଆରୀ)ସମୟରେ ଶୂନ୍ୟରୁ ଦଶ ଡ଼ିଗ୍ରୀ କମ୍ ଥାଏ। ତେବେ ଶୀତର କଷ୍ଟ ଜନଜୀବନକୁ ବିପର୍ଯ୍ୟସ୍ତ କରି ନଥାଏ। ପାଗ ବିଷୟରେ ପ୍ରସାରିତ ହେଉଥିବା ପୂର୍ବାନୁମାନ ମୋଟାମୋଟି ଭାବରେ ନିର୍ଭୁଲ୍ ରହେ। ଗାଡ଼ି ଚଳାଉଥିବା ପ୍ରତ୍ୟେକ ବ୍ୟକ୍ତି ଏଫ୍.ଏମ୍. ରେଡ଼ିଓ ଯୋଗେ ପାଗ ସମ୍ପର୍କରେ ପୂର୍ବାନୁମାନ ଶୁଣନ୍ତି। ପ୍ରତି ସହରର ମ୍ୟୁନିସିପାଲିଟି ମଧ୍ୟ ଦାୟିତ୍ୱପୂର୍ଣ୍ଣ ଭାବରେ ମଧ୍ୟରାତ୍ରରେ (ରାତି ବାରଟାରୁ ପାଞ୍ଚଟା ଛ'ଟା ମଧ୍ୟରେ) ରାସ୍ତାରେ ଜମା ହୋଇଥିବା ତୁଷାର ପରିଷ୍କାର କରନ୍ତି। ଯେତେ ବେଶୀ ତୁଷାରପାତ ହେଲେ ମଧ୍ୟ ଗମନାଗମନରେ ଅସୁବିଧା ହୁଏ ନାହିଁ। ତୁଷାରଗଦା ପରିଷ୍କାର କରିବା ପାଇଁ ପ୍ରତି ମ୍ୟୁନିସିପାଲିଟିର ସ୍ୱତନ୍ତ୍ର ବଜେଟ୍, କର୍ମଚାରୀ ଏବଂ ଗାଡ଼ି ରହିଥାଏ।

ଶୀତର କଷ୍ଟ କେବଳ ବାହ୍ୟ ପରିବେଶରେ। ଘରଦ୍ୱାର, ଦୋକାନବଜାର ଓ ଗାଡ଼ିସବୁ ଶୀତ ନିୟନ୍ତ୍ରିତ। ସୁତରାଂ ବିଶେଷ ଅସୁବିଧା ନ ଥାଏ। ଫେବୃଆରୀ ମାର୍ଚ୍ଚ ବେଳକୁ ତୁଷାରପାତ ପ୍ରାୟ କମିଯାଏ। ଅବଶ୍ୟ ଖୁବ୍ ଉତ୍ତରକୁ ଥିବା ଅଞ୍ଚଳରେ ଶୀତ ଜୁନ୍ ପର୍ଯ୍ୟନ୍ତ ରହେ। ଏପ୍ରିଲ୍‌ରୁ ଜୁନ୍ ପର୍ଯ୍ୟନ୍ତ ଚାରିମାସକୁ ଯୁଗ୍ମ ଭାବରେ ବସନ୍ତ ଓ ଗ୍ରୀଷ୍ମ କୁହାଯାଇପାରେ। ଅବଶ୍ୟ ଆମ୍ଭ ଦେଶରେ ଗ୍ରୀଷ୍ମ କହିଲେ ଯାହା ବୁଝାଯାଏ, ଏଠାର ଗ୍ରୀଷ୍ମ ସେପରି ଦାରୁଣ ନୁହେଁ। ଅଧିକାଂଶ ଘରେ ଛାତ ପଙ୍ଖାର ବ୍ୟବସ୍ଥା ନାହିଁ। ମଇ, ଜୁନ୍ ମାସରେ ଦିନେ ଦୁଇଦିନ ହୁଏତ ଗୁଳୁଗୁଳି ପଡ଼ିପାରେ। ତଥାପି ଶୀତର ସ୍ପର୍ଶ ନ ଥିବାରୁ ଲୋକମାନେ ଗ୍ରୀଷ୍ମଋତୁ କୁହନ୍ତି। ପୂର୍ବପରି ବାହାରେ ଜ୍ୟାକେଟ୍ ପିନ୍ଧିବାକୁ ହୋଇ ନ ଥାଏ। ବହୁଲୋକ ହାଫ୍ ପ୍ୟାଣ୍ଟ ପିନ୍ଧନ୍ତି। ପାର୍କରେ, ନଦୀ କୂଳରେ, ଉଦ୍ୟାନରେ ବୁଲିବାର ଆମୋଦ ବଢ଼ିଯାଏ।

ଏହିପରି ଏକ ପରିବେଶ ଓ ଜଳବାୟୁମଧ୍ୟରେ ବୁଟୁବାବୁ, ଡଲି, ଅଞ୍ଜୁ ଓ ମୁଁ ମଧ୍ୟାହ୍ନରେ ଟରଣ୍ଟୋରେ ପହଞ୍ଚିଲୁ। ପଖାଳ ପାର୍ଟି ଆୟୋଜିତ ହୋଇଥିବା ଓଡ଼ିଆ ପରିବାରରେ ପହଞ୍ଚିଲୁ। ଦଶ ବାରଟି ଓଡ଼ିଆ ପରିବାର ଏବଂ ସେ ପରିବାରର ପିଲାମାନେ ଏକଜୁଟ ହୋଇଥିଲେ। ପଖାଳ ସହିତ ଶାଗଭଜା, ବଡ଼ିଚୂରା, ରାଇତା, ବାଇଗଣ ଭଜା, ପୋଟଳ ଭଜା ଏବଂ ସବୁ ପ୍ରକାର ଓଡ଼ିଆ ପରିବାରର ରୁଚିକର ଓ ଲୋଭନୀୟ ଖାଦ୍ୟ ଦ୍ରବ୍ୟ ଭୋକକୁ ଅଧିକ ବଢ଼ାଇ ଦେଲା। ଖାଇବା ସହିତ

ଏତେଗୁଡ଼ିଏ ଲୋକଙ୍କ ସହିତ ସାକ୍ଷାତ୍ ଓ କଥାବାର୍ତ୍ତାର ସୁଯୋଗ ଆନନ୍ଦକୁ ଦ୍ୱିଗୁଣିତ କଲା। ଅନେକ ଲୋକ ଅନୁରୋଧ କଲେ ସେମାନଙ୍କ ପରିବାରରେ ଦିନେ ଦୁଇଦିନ କଟାଇବା ପାଇଁ। ମାତ୍ର ସେଦିନ ସନ୍ଧ୍ୟାରେ ଆମେ ନାଏଗ୍ରା ଜଳପ୍ରପାତ ଦେଖିବାର ଯୋଜନା କରିଥିଲୁ। ସୁତରାଂ ଚାରିଟା ବେଳକୁ ବାହାରିଗଲୁ।

ନାଏଗ୍ରା ଜଳପ୍ରପାତ ବିଶ୍ୱର ଏକ ଦର୍ଶନୀୟ ସ୍ଥାନ। ଏହା ଟରଣ୍ଟୋଠାରୁ ପ୍ରାୟ ୯୦ କି.ମି. ଦୂରରେ ଅବସ୍ଥିତ। ନାଏଗ୍ରା ନାମକ ଏକ ନଦୀର ପ୍ରବାହ ବହୁ ଉଚ୍ଚତାବିଶିଷ୍ଟ ଏକ ପାହାଡ଼ିଆ ସ୍ଥାନରୁ ଖସିବା ସମୟରେ ଜଳପ୍ରପାତର ରୂପ ନେଇଛି। ଟରଣ୍ଟୋକୁ ନାଏଗ୍ରା ଦିଗରେ ଅଗ୍ରସର ହେବା ସମୟରେ ଆଉ ଗୋଟିଏ ସହରକୁ ଅତିକ୍ରମ କରିବାକୁ ହୁଏ। ଏହାର ନାମ ହାମିଲ୍‌ଟନ୍। ଏଠାରେ କାନାଡ଼ାର ବହୁ ଲୁହା ଓ ଇସ୍ପାତ କାରଖାନା ଅବସ୍ଥିତ। ମ୍ୟାକ୍‌ମାଷ୍ଟର ନାମରେ ଗୋଟିଏ ଭଲ ବିଶ୍ୱବିଦ୍ୟାଳୟ ମଧ୍ୟ ରହିଛି। ନାଏଗ୍ରା ଯିବା ସମୟରେ ଆମର ବନ୍ଧୁ ହରପ୍ରସାଦ ପାଢ଼ୀ ଏବଂ ସୁମିତ୍ରାଙ୍କୁ କହିଥିଲୁ ଯେ ନାଏଗ୍ରାରୁ ଫେରି ତାଙ୍କ ଘରେ ରାତ୍ରି ବିଶ୍ରାମ ନେବୁ।

ନାଏଗ୍ରାର ଶୋଭା ପ୍ରକୃତରେ ଅନିର୍ବଚନୀୟ। ସନ୍ଧ୍ୟା ସମୟରେ ଯେଉଁ ସବୁ ରଙ୍ଗୀନ୍ ଆଲୋକମାଳାର ବ୍ୟବସ୍ଥା କରା ଯାଉଛି, ଜଳପ୍ରପାତ ଉପରେ ତାହାର ବିଚ୍ଛୁରଣ ତାଙ୍କୁ ନୈସର୍ଗିକ ଶୋଭା ପ୍ରଦାନ କରୁଛି। ନାଏଗ୍ରା ଜଳପ୍ରପାତର ଯେଉଁ ଅଂଶଟି କାନାଡ଼ାପଟରୁ ପରିଦୃଷ୍ଟ ହୁଏ ତାହାକୁ Horse Shoe Fall କହନ୍ତି। ଅନ୍ୟ ପଟରେ ଯୁକ୍ତରାଷ୍ଟ୍ର ଆମେରିକାର ବଫାଲୋ ସହର ପଟରୁ ଦୃଶ୍ୟ ହୁଏ। ନାଏଗ୍ରା ନଦୀର ବନ୍ଧ ଅତିକ୍ରମ କରି କାନାଡ଼ାରୁ ବଫାଲୋ ସହର (ନିଉୟର୍କ ରାଜ୍ୟର ଏକ ବୃହତ୍ତମ ସହର) ଯାଇହେବ। ସେଠାରେ ତିନି ଚାରି ଘଣ୍ଟା କଟାଇ ହାମିଲ୍‌ଟନ୍ ଫେରିଲୁ। ପରେ ଆଉ ଦୁଇ ତିନିଥର ମଧ୍ୟ ନାଏଗ୍ରା ଦେଖିବାର ସୌଭାଗ୍ୟ ହୋଇଛି।

ଟରଣ୍ଟୋରେ ସଂଖ୍ୟାଧିକ ଓଡ଼ିଆ ପରିବାର ଥିବାରୁ ବହୁବାର କିଙ୍ଗ୍‌ସଟନ୍‌ରୁ ଟରଣ୍ଟୋ ଆସିବାର ସୁଯୋଗ ପାଇଛୁ। ବିଭିନ୍ନ ସମୟରେ ବିଭିନ୍ନ ପରିବାରରେ ଅତିଥି ହୋଇଛୁ। କେତେବେଳେ ରାଜେନ୍ଦ୍ର ଷଡ଼ଙ୍ଗୀ ଓ ମୀନାଙ୍କ ଘରେ ଆତିଥ୍ୟ ଗ୍ରହଣ କରିଛୁ ତ କେତେବେଳେ ପ୍ରତାପ ବାବୁ ଓ ବାଣୀ ଅପାଙ୍କ ଘରେ ରହିଛୁ। ସମୟ ସମୟରେ ଟରଣ୍ଟୋରେ ଥିବା ଓଡ଼ିଆମାନେ ସମ୍ମିଳିତ ଭାବରେ କୁମାର ଉତ୍ସବ କିମ୍ବା ସେହିପରି କିଛି ଉତ୍ସବ ପାଳନ କରନ୍ତି। ଆମେ ଆମନ୍ତ୍ରିତ ହୋଇ ଆସିଥାଉ। ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଞ୍ଜୁ କଣ୍ଠସଙ୍ଗୀତ ପରିବେଷଣର ସୁଯୋଗ ପାଉଥିବାରୁ ଆମ୍ଭମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ବ୍ୟକ୍ତ କରନ୍ତି।

ପ୍ରତିବର୍ଷ ଦୁର୍ଗାପୂଜା ସମୟରେ ଆମେ ନିଶ୍ଚିତ ଭାବରେ ଟରଣ୍ଟୋ ଆସିଥାଉ। ବଙ୍ଗୀୟ ପରିବାର ସମ୍ଭଳର ଦୁଇଟି ଅନୁଷ୍ଠାନ ରହିଛି: ପ୍ରବାସୀ ଓ ବଙ୍ଗୀୟ ସମାଜ।

ପ୍ରବାସୀ ଅନୁଷ୍ଠାନଟି ଖୁବ୍ ବଡ଼ ଆକାରରେ ଟରଣ୍ଟୋର ଓଣ୍ଟାରିଓ ହ୍ରଦ କୂଳରେ ଦୁର୍ଗାପୂଜା ଓ ମେଳାର ଆୟୋଜନ କରନ୍ତି। ବ୍ରିଟିଶ୍ ଏୟାରୱେଜ୍‌ର ସୌଜନ୍ୟରୁ ସୋଲ ନିର୍ମିତ ଦୁର୍ଗା ମୂର୍ତ୍ତି ଭାରତରୁ ଆସିଥାଏ। ବିରାଟ ସୁସଜ୍ଜିତ ମଣ୍ଡପ ଓ ମେଳା ପରିସରର ଚାକଚକ୍ୟ ମଧ୍ୟରେ ଚାରି ପାଞ୍ଚଦିନ ଉତ୍ସବ ଚାଲେ। କାନାଡ଼ାବାସୀମାନେ ମଧ୍ୟ କୌତୂହଳ ନେଇ ଏ ମେଳା ପରିସରକୁ ଆସନ୍ତି ଏବଂ ଲୋଭନୀୟ ଖାଦ୍ୟସବୁ ଖାଆନ୍ତି।

ଟରଣ୍ଟୋର ଅନ୍ୟ ଏକ ସ୍ଥାନରେ ବଙ୍ଗୀୟ ସମାଜ ଦୁର୍ଗାପୂଜାର ଆୟୋଜନ କରନ୍ତି। ଆମେ ପ୍ରତିବର୍ଷ ଦୁର୍ଗାପୂଜା ସମୟରେ ଅନ୍ତତଃ ଗୋଟିଏ ଦିନ ଟରଣ୍ଟୋ ଆସି ଏହି ମଣ୍ଡପ ଦୁଇଟିରେ କିଛି ସମୟ କାଟିଥାଉ। ପ୍ରତିବର୍ଷ ଅନ୍ତତଃ ଚାରିପାଞ୍ଚ ଥର ଟରଣ୍ଟୋ ଯିବାର ଆମୋଦ ଆମେ ଅନୁଭବ କରିଛୁ।

କିଙ୍ଗସ୍‌ଟନ୍‌ର ପଶ୍ଚିମ ଦିଗରେ ୩୯୮ କି.ମି. ଦୂରରେ ମଣ୍ଟ୍ରିଏଲ୍ ନଗର ଅବସ୍ଥିତ। ଏଠାରେ ଆମର ପ୍ରିୟବନ୍ଧୁ ବୁଟୁବାବୁ ଏବଂ ଡଲି ରହୁଥିଲେ। ସୁତରାଂ ଏଠାକୁ ମଧ୍ୟ ଏକାଧିକ ଥର ଯାଇଛୁ। ଆମେ କାନାଡ଼ାରେ ପହଞ୍ଚିବାର ମାତ୍ର ମାସେ ପୂର୍ବରୁ ଏଠାରେ ଅଲମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହୋଇଥିଲା। ଏହା ଦେଖିବାର ସୁଯୋଗ ମିଳି ନ ଥିଲେ ମଧ୍ୟ ଅଲମ୍ପିକ୍ ପାଇଁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ ହୋଇଥିବା କେତେକ ବିଶିଷ୍ଟ ସ୍ଥାନ ପରିଦର୍ଶନ କଲୁ। ଅଲମ୍ପିକ୍ ଗ୍ରାମ ତନ୍ମଧ୍ୟରୁ ଅନ୍ୟତମ। ମଣ୍ଟ୍ରିଆଲ୍‌ରେ ଅନେକ ସାଂସ୍କୃତିକ କେନ୍ଦ୍ର ରହିଛି। ଥରେ ଗୋଟିଏ ସାଂସ୍କୃତିକ କେନ୍ଦ୍ରରେ ଭାରତର ବିଶିଷ୍ଟ କଣ୍ଠଶିଳ୍ପୀ ଆଶା ଭୋନ୍‌ସଲେ ଏବଂ ରାହୁଲ୍ ଦେବ ବର୍ମନ୍‌ଙ୍କ ସଙ୍ଗୀତ ପରିବେଷଣର ସମାରୋହ ଦେଖିଥିଲୁ। ଅନ୍ୟଥର ଲତା ମଙ୍ଗେସକରଙ୍କ ସଙ୍ଗୀତ ପରିବେଷଣ ଓ ଅମିତାଭ୍ ବଚନଙ୍କ ଉପସ୍ଥିତିର ଆନନ୍ଦ ଟରଣ୍ଟୋରେ ଉପଭୋଗ କରିଥିଲୁ।

ମଣ୍ଟ୍ରିଆଲ୍‌କୁ ଆସିବାର ବହୁ ସ୍ମୃତି ଅମଳିନ ରହିଛି। ଥରେ ବୁଟୁ ବାବୁ ଓ ଡଲି ତାଙ୍କର ଜ୍ୟେଷ୍ଠ କନ୍ୟା ଲିଜାର ଜନ୍ମଦିନ ପାଳନ ପାଇଁ ଏକ ବଡ଼ ଉତ୍ସବର ଆୟୋଜନ କରିଥିଲେ। ବହୁ ଅତିଥି ନିମନ୍ତ୍ରିତ ହୋଇଥିଲେ। ରାତିର ଉତ୍ସବ ଶେଷ ହେବା ପରେ ଆମେ ବିଶ୍ରାମ ନେବା ପରେ ସକାଳେ ଶୀଘ୍ର ନିଦ ଭାଙ୍ଗିଗଲା। ଚା'ପାନ ସମୟରେ ହଠାତ୍ ପରିକଳ୍ପନା କରାଗଲା ଯେ କ୍ୟୁବେକ୍ ସହର ବୁଲିଯିବା। କ୍ୟୁବେକ୍ ସହରଟି ମଣ୍ଟ୍ରିଅଲ୍‌ଠାରୁ ପ୍ରାୟ ୨୫୪ କି.ମି. ଦୂର। ଗତ ସନ୍ଧ୍ୟାର ବଳକା ଖାଦ୍ୟ ଧରି ବୁଟୁ ବାବୁଙ୍କ ଗାଡ଼ିରେ କ୍ୟୁବେକ୍ ସହର ବୁଲିଗଲୁ।

କ୍ୟୁବେକ୍ ସହରଟି କାନାଡ଼ାର ଅନ୍ୟ ସହରଠାରୁ କେତେକାଂଶରେ ଭିନ୍ନ। ଏହା ଫରାସୀ-ବହୁଳ ଅଞ୍ଚଳ। ସାଧାରଣତଃ କାନାଡ଼ା ଓ ଆମେରିକାର ସହରମାନଙ୍କରେ ଖୋଲାସ୍ଥାନରେ ବିଶେଷ କିଛି କାର୍ଯ୍ୟକ୍ରମ ଦେଖାଯାଏ ନାହିଁ। ସମ୍ଭବତଃ ଶୀତଦେଶ ହୋଇଥିବାରୁ ଯାହା କିଛି କାର୍ଯ୍ୟକ୍ରମ ତାହା ଚାରିକାନ୍ଥର ମଧ୍ୟ ଭାଗରେ ଘଟିଥାଏ। ମାତ୍ର ଦେଖିଲୁ ଯେ କ୍ୟୁବେକ୍‌ର କେଉଁଠି ଚିତ୍ରଶିଳ୍ପୀ ବାହାରେ ବସି ଚିତ୍ର ଅଙ୍କନ କରୁଛନ୍ତି। ଅନ୍ୟ ସ୍ଥାନରେ ଅଶ୍ୱାରୋହଣ ପାଇଁ ପର୍ଯ୍ୟଟକମାନେ ବ୍ୟସ୍ତ ହୋଇଛନ୍ତି। କ୍ୟୁବେକ୍‌ର ଦୃଶ୍ୟାବଳୀ ଆମକୁ କଲିକତାର ରାସ୍ତାଘାଟର ଦୃଶ୍ୟାବଳୀ (କେବଳ ଲୋକଭିଡ଼କୁ ବାଦ୍ ଦେଇ) ମନେପକାଇ ଦେଲା।

କିଛି ବର୍ଷ ପରେ ବୁଟୁବାବୁ ମଣ୍ଟ୍ରିଆଲ୍ ଛାଡ଼ି ଅନ୍ୟ ଗୋଟିଏ ସ୍ଥାନକୁ ଚାଲିଗଲେ। ସ୍ଥାନଟିର ନାମ ସେତିଲ୍। ସେତିଲ୍‌ଟି ଫରାସୀ ଶବ୍ଦ। ଏହାର ଅର୍ଥ ହେଉଛି ସପ୍ତ-ଦ୍ୱୀପ। ଏହା ମଣ୍ଟ୍ରିଆଲ୍‌ଠାରୁ ପ୍ରାୟ ୮୦୦ କି.ମି. ଦୂରରେ ଅବସ୍ଥିତ। କିଙ୍ଗସ୍‌ଟନ୍‌ରୁ ବାହାରି ଥିବା ସେଣ୍ଟଲରା ନଦୀଟି ଏଠାରେ ଆଟ୍‌ଲାଣ୍ଟିକା ମହାସାଗରରେ ମିଳିତ ହୋଇଛି। ଖୁବ୍ ଛୋଟ ସହର। ଲୋକ ସଂଖ୍ୟା ଖୁବ୍ କମ୍। ଶୀତର ପ୍ରକୋପ ପ୍ରାୟ ଜୁନ୍ ମାସ ଶେଷ ସୁଦ୍ଧା ରହିଥାଏ। କିନ୍ତୁ ପ୍ରାକୃତିକ ସୌନ୍ଦର୍ଯ୍ୟର ବିପୁଳତା ରହିଛି। ବୁଟୁବାବୁଙ୍କ କମ୍ପାନୀ ପ୍ଲେନ୍‌ରେ ଆମେ ମଣ୍ଟ୍ରିଆଲ୍ ଗଲୁ ଏବଂ ସେଠାରେ ସମୟ କାଟିଲୁ। ଗୋଟିଏ ମୁହାଣ ସହର ହୋଇଥିବାରୁ ପ୍ରଚୁର ପରିମାଣରେ ଚିଙ୍ଗୁଡ଼ି ଓ କଙ୍କଡ଼ା ମିଳିଥାଏ। ଭଲି ପ୍ରସ୍ତୁତ କରିଥିବା ସ୍ୱାଦିଷ୍ଟ ଖାଦ୍ୟ ଖାଇବାର ଅନୁଭବ ନେଇ ଏବଂ କିଙ୍ଗସ୍‌ଟନ୍‌ର ପ୍ରିୟ ପରିବାର ପାଇଁ ପ୍ରଚୁର ଚିଙ୍ଗୁଡ଼ି ବ୍ୟାଗ୍‌ରେ ଭର୍ତ୍ତି କରି କିଙ୍ଗସ୍‌ଟନ୍ ଫେରିଲୁ।

କାନାଡ଼ାର ଏକ ଦର୍ଶନୀୟ ସ୍ଥାନ ହେଉଛି ଏହାର ରାଜଧାନୀ ଅଟୱା। କିଙ୍ଗସ୍‌ଟନ୍ ସହରର ଉତ୍ତରରେ ୧୦୫ କି.ମି. ଦୂରରେ ଏହା ଅବସ୍ଥିତ। ଏଠାକୁ ମଧ୍ୟ ଆମେ ବହୁଥର ଯାଇଛୁ। ବିଶେଷତଃ ମଇ ମାସରେ ଏଠାରେ ଟୁଲିପ୍ ଫୁଲର ଉତ୍ସବ ଅନୁଷ୍ଠିତ ହୁଏ। ଟୁଲିପ୍ ଗୋଲାପ ପରି ବିଭିନ୍ନ ରଙ୍ଗର ଫୁଲ। ଏହା ସାଧାରଣତଃ ମଇମାସର ଆରମ୍ଭରେ ପ୍ରସ୍ଫୁଟିତ ହୋଇ ତୃତୀୟ ସପ୍ତାହ ବେଳକୁ ମଉଳିଯାଏ। ଯେତେବେଳେ ହୁଏ ରାସ୍ତାଘାଟରେ ଚାରିଆଡ଼େ ବିଛେଇ ହୋଇଯାଏ। ଏହିପରି ଏକ ସମୟରେ ଟୁଲିପ୍ ଉତ୍ସବ ହୁଏ। ପ୍ରସ୍ଫୁଟିତ ଅବସ୍ଥାରେ ଥିବା ସମୟରେ କୌଣସି ଏକ ରବିବାର ଦିନ ଅଟୱାର ଡାଉଜ୍ ହ୍ରଦରେ (Dow's Lake) ଫୁଲରେ ସୁସଜ୍ଜିତ ବହୁ ନୌକାର ଶୋଭାଯାତ୍ରା ବାହାରେ। କେଉଁଦିନ ଏହି ଉତ୍ସବ ଅନୁଷ୍ଠିତ ହେବ ତାହା ସମ୍ବାଦପତ୍ରରେ ବିଜ୍ଞପିତ ହୋଇ ଥିବାରୁ ବହୁ ପର୍ଯ୍ୟଟକେ ଉପସ୍ଥିତ ରୁହନ୍ତି। ହ୍ରଦର କୂଳେ କୂଳେ ଲୋକାରଣ୍ୟ ଲାଗିଥାଏ। କୁହାଯାଏ ଯେ

ଟୁଲିପ୍ ଫୁଲ କାନାଡ଼ାର ନିଜସ୍ୱ ଫୁଲ ନୁହେଁ। ବିଶ୍ୱଯୁଦ୍ଧ ସମୟରେ ହଲାଣ୍ଡର ରାଣୀ କାନାଡ଼ାରେ ଆଶ୍ରୟ ନେଇଥିଲେ। ଯୁଦ୍ଧ ପରେ ସେ ହଲାଣ୍ଡକୁ ଫେରିଯିବା ପରେ କୃତଜ୍ଞତା ଜଣାଇବାକୁ ଟୁଲିପ୍‌ର ପୁଷ୍ପଗୁଚ୍ଛ ପଠାଇଥିଲେ। ସେହିଦିନଠାରୁ ଏହା କାନାଡ଼ାର ଏକ ଉତ୍ସବର ଅଂଶ ବିଶେଷ ରୂପେ ମର୍ଯ୍ୟାଦା ଲାଭ କରିଛି। ଅଟୱାର ପାର୍ଲିଆମେଣ୍ଟର ସ୍ଥାପତ୍ୟଶିଳ୍ପ ଏବଂ ଅନ୍ୟ କେତେକ ପ୍ରାକୃତିକ ସୌନ୍ଦର୍ଯ୍ୟ ବେଶ୍ ଆକର୍ଷଣୀୟ।

## ଯୁକ୍ତରାଷ୍ଟ୍ର ଆମେରିକା

ଉତ୍ତର ଆମେରିକା ମହାଦେଶରେ ତିନୋଟି ଦେଶ ଅନ୍ତର୍ଭୁକ୍ତ: କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା ଓ ମେକ୍‌ସିକୋ। ଉତ୍ତର ପଟେ ରହିଛି କାନାଡ଼ା, ମଧ୍ୟ ଭାଗରେ ଯୁକ୍ତରାଷ୍ଟ୍ର ଏବଂ ଦକ୍ଷିଣରେ ମେକ୍‌ସିକୋ। ଯୁକ୍ତରାଷ୍ଟ୍ର ଆମେରିକା ଏବଂ କାନାଡ଼ାର ସମ୍ପର୍କ ସକାରାତ୍ମକ। ବଡ଼ଭାଇ ସାନଭାଇ କହିଲେ ଚଳେ। ଦୁଇଦେଶ ମଧ୍ୟରେ ଯାତାୟାତର ବିଶେଷ କଟକଣା ନାହିଁ, କେବଳ ସୀମା ଅତିକ୍ରମ କରିବା ସମୟରେ ପାସ୍‌ପୋର୍ଟ ଦେଖାଇବାକୁ ହୁଏ। ଆମ ପରି ଶିକ୍ଷା ଲାଭ କରିବାକୁ ଆସିଥିବା ଏବଂ ଅସ୍ଥାୟୀ ଭାବେ କାନାଡ଼ାରେ ରହୁଥିବା ବ୍ୟକ୍ତିମାନଙ୍କ ପାଇଁ ଆମେରିକା ଯିବାକୁ ହେଲେ ଭିସା ନେବାକୁ ହୁଏ। ତେବେ ଗୋଟିଏ ଥର ଆବେଦନ କଲେ ଏକାଥରକେ ଛ'ମାସ ପାଇଁ ପ୍ରବେଶ ପ୍ରସ୍ଥାନର ଅନୁମୋଦନ ମିଳେ। ଏକାଧିକ ବାର ପ୍ରବେଶ କରି ଏକାଧିକ ବାର ପ୍ରସ୍ଥାନ କରିବାର ବାଧା ନ ଥାଏ। ଏ ଦୃଷ୍ଟିରୁ ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରବେଶ କରି ଦର୍ଶନୀୟ ସ୍ଥାନ ବୁଲିବାରେ ବାଧା ନ ଥିଲା।

ପୂର୍ବରୁ ସୂଚନା ଦେଇଛି ଯେ କିଙ୍ଗସ୍‌ଟନ୍ ସହରର ପାର୍ଶ୍ୱରେ ପ୍ରବାହିତ ହେଉଥିବା ଓଣ୍ଟରିଓ ହ୍ରଦର ଅପର ପାର୍ଶ୍ୱରେ ଆମେରିକାର ନିଉୟର୍କ ରାଜ୍ୟ। କିଙ୍ଗସ୍‌ଟନ୍‌ର ଅଳ୍ପ ଦୂରରେ ଥିବା ଏକ ବନ୍ଧ ଉପର ଦେଇ ଅପର ପାର୍ଶ୍ୱକୁ ଗଲେ ନିଉୟର୍କ ରାଜ୍ୟର ମାଟି ଛୁଇଁ ହେବ। ଦୂରତ୍ୱ ମାତ୍ର ୩୦/୪୦ କିଲୋମିଟର। କିଙ୍ଗସ୍‌ଟନ୍‌ର ନିକଟବର୍ତ୍ତୀ ନିଉୟର୍କର ଛୋଟ ଛୋଟ ସହରରେ ହାଫିଜ୍ ଭାଇଙ୍କ କେତେକ ବନ୍ଧୁ ବସବାସ କରୁଥିବାରୁ ଆମର କୌଣସି ପୂର୍ବ ଯୋଜନା ନ ଥାଇ ସେପରି ସବୁ ସହରକୁ (ଅଗଡ଼େନ୍‌ସବର୍ଗ, ପଟସ୍‌ଡ୍ୟାମ୍ ଓ ୱାଟର୍ ଟାଉନ୍) ବହୁବାର ଯାଇଛୁ ଏବଂ ସେହି ବନ୍ଧୁମାନଙ୍କ ପରିବାରରେ ମଧ୍ୟାହ୍ନ ଭୋଜନ କିମ୍ବା ରାତ୍ରି ଭୋଜନ ଗ୍ରହଣ କରିଛୁ।

୧୯୭୭ ମସିହାରେ ଶୀତ କଟିବା ପରେ ପ୍ରଥମ ଥର ପାଇଁ ଯୋଜନା କରାଗଲା ନିଉୟର୍କ ଯାତ୍ରା ପାଇଁ। ନିଉୟର୍କ ନଗର କିଙ୍ଗସ୍‌ଟନ୍‌ଠାରୁ ୪୫୦ କି.ମି. ଦୂରରେ (ଯଦିଓ ନିଉୟର୍କ ରାଜ୍ୟର ସୀମା ୪୦ କି.ମି. ପରେ ଆରମ୍ଭ ହେଉଛି)। ଗଭୀର ଉତ୍ସାହ ଓ ଉନ୍ମାଦନା ସହ ଆମେ ଅପେକ୍ଷା କଲୁ ଏବଂ ବୁଟୁ ବାବୁ ଓ ଡଲି

ସେମାନଙ୍କ ଗାଡ଼ିରେ ଆସିବା ମାତ୍ରେ ଆମେ ବାହାରିଗଲୁ। ବୁଟୁ ବାବୁଙ୍କ ବ୍ୟତୀତ ତାଙ୍କର ଆଉ ଜଣେ ବନ୍ଧୁ ରହିଥିଲେ ଗାଡ଼ି ଚଳାଇବାରେ ସହାୟତା ଦେବା ପାଇଁ। ଉଳିର ମାମୁଁ ଡାକ୍ତର ରମେଶ ରାୟ ଚୌଧୁରୀ (ଭୁବନେଶ୍ୱର କଳିଙ୍ଗ ହାସ୍ପାତାଳର ପ୍ରତିଷ୍ଠାତା) ନିଉୟର୍କରେ ରହୁଥିଲେ। ତାଙ୍କ ଘରେ ରହିବାର ସ୍ଥିର ହୋଇଥିଲା।

ନିଉୟର୍କରେ ବୁଲାବୁଲି ଭିତରେ ତିନିଚାରିଦିନ କିପରି ବିତିଗଲା, ତାହା ଜଣାପଡ଼ିଲା ନାହିଁ। ଅଧିକାଂଶ ପର୍ଯ୍ୟଟକେ ଯାଉଥିବା ସ୍ଥାନ ସବୁ ବୁଲି ଦେଖିଲୁ। ବିଶ୍ୱ ବାଣିଜ୍ୟ ସଂଗଠନର ସର୍ବୋଚ୍ଚ ଟାୱାର (ଦକ୍ଷିଣ ଟାୱାର, ଉତ୍ତର ଟାୱାର) ଏବଂ ତାହାର ପାଖାପାଖି ଷ୍ଟାଚ୍ୟୁ ଅଫ୍ ଲିବର୍ଟି ଦେଖିବାର ଆନନ୍ଦ ମିଳିଲା। ଏହାକୁ ଘେରି ରହିଥିବା ଜଳାଶୟରେ ନୌବିହାର ଖୁବ୍ ଆମୋଦଦାୟକ। ନିଉୟର୍କର ଦ୍ବିତୀୟ ଉଚ୍ଚତମ ପ୍ରାସାଦ ଏମ୍ପାୟାର୍ ଷ୍ଟେଟ୍ ବିଲିଡ଼ିଂର ୧୦୨ଟି ମହଲା ରହିଛି, ତେବେ ପର୍ଯ୍ୟଟକମାନେ ୮୫ତମ ମହଲା ପର୍ଯ୍ୟନ୍ତ ଯାଇପାରିବେ। ସେଠାରେ ଗୋଟିଏ ରେଷ୍ଟୋରାଁ ରହିଛି। ଲିଫ୍ଟ ରହିଥିଲେ ମଧ୍ୟ ସିଡ଼ି ରହିଛି। କୌଣସି ଏକ ଦିନ ତଳୁ ଉପର ପର୍ଯ୍ୟନ୍ତ ଚଢ଼ିବା ଏବଂ ଓହ୍ଲାଇବାର ଏକ ପ୍ରତିଯୋଗିତା ହୁଏ। ଆମ୍ଭେମାନେ ୮୫ତମ ମହଲାରୁ ସମଗ୍ର ନଗରଟିକୁ ଦେଖିବାର ଅନୁଭବ କଲୁ। ତଳେ ଯାଉଥିବା କାର୍ ସବୁ ଦିଆସିଲି ଖୋଳ ପରି ଦିଶୁଥାଏ।

ନିଉୟର୍କ ନଗରଟି କେତେଗୁଡ଼ିଏ ନଦୀ ଓ କେତେକ ଦ୍ୱୀପର ସମାରୋହ। ହଡ୍‌ସନ୍ ନଦୀକୁ ବାଦ୍ ଦେଲେ ହାର୍‌ଲେମ୍ ପରି ଅନ୍ୟ କେତେକ ନଦୀ ରହିଛି। ସେହିପରି ମୁଖ୍ୟ ବାଣିଜ୍ୟ କେନ୍ଦ୍ର ମାନ୍‌ହାଟାନ୍‌କୁ ବାଦ୍ ଦେଲେ କୁଇନ୍ସ, ବ୍ରଙ୍କ୍ସ, ବ୍ରୁକ୍‌ଲିନ୍ ଏବଂ ହାର୍‌ଲେମ୍ ପରି ଦ୍ୱୀପ ରହିଛି। ନଗରରେ ଅନେକଗୁଡ଼ିଏ ସାଂସ୍କୃତିକ କେନ୍ଦ୍ର ରହିଛି। (ଲିଙ୍କନ୍ କେନ୍ଦ୍ର, ରକ୍‌ଫେଲାର କେନ୍ଦ୍ର, କେନେଡ଼ୀ କେନ୍ଦ୍ର ଇତ୍ୟାଦି) ସୁଖର କଥା ଯେ ବୁଲୁଥିବା ସମୟରେ ହଠାତ୍ ରକ୍‌ଫେଲାର କେନ୍ଦ୍ରରେ ପ୍ରବେଶ କରିବା ସମୟରେ ଗୋଟିଏ ଘୋଷଣା ଶୁଣିବାକୁ ପାଇଲୁ। ଭାରତୀୟମାନଙ୍କର କିଛି କାର୍ଯ୍ୟକ୍ରମ ଆରମ୍ଭ ହେବାକୁ ଯାଉଛି ବୋଲି ଶୁଣିବାକୁ ମିଳିଲା।

ପ୍ରବେଶ କରିବା ମାତ୍ରେ ଦେଖିଲି ଯେ କାର୍ଯ୍ୟକ୍ରମର ସଂଯୋଜକ ହେଉଛନ୍ତି ମୋର ଏମ୍.ଏ. ସମୟର ସହପାଠୀ ପ୍ରତାପ ଦାସ। ଏକଦା ପ୍ରତାପ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଶିଳ୍ପୀ ଅକ୍ଷୟ ମହାନ୍ତିଙ୍କ ତାବ୍‌ଲା ସହଯୋଗୀ ଥିଲା। ମୁଁ ଜାଣେ ଯେ ୱାସିଂଟନ୍ ପାଖାପାଖି ଅଞ୍ଚଳରେ ବସବାସ କରେ ଏବଂ ଆମେରିକାରେ ଅପ୍‌ସରା ନାମକ ଏକ ସଙ୍ଗୀତ ଦଳ ପ୍ରତିଷ୍ଠା କରିଛି। ଅଚାନକଭାବେ ଆମେ ଦୁଇବନ୍ଧୁ ପରସ୍ପରକୁ ସାକ୍ଷାତ କରି ବିହ୍ୱଳିତ ହୋଇ ଉଠିଲୁ। ପରେ କେବେ ତା' ଘରକୁ ଯିବା ପାଇଁ ସେ ଆମନ୍ତ୍ରଣ ଜଣାଇଲା ଏବଂ ମୁଁ ସମ୍ମତି ପ୍ରଦାନ କଲି।

ନିଉୟର୍କ ଏକ ବିଶାଳ ଓ ଜଣାଶୁଣା ନଗର ହେଲେ ମଧ୍ୟ ବିତ୍ତଶାଳୀ ଲୋକମାନେ ଏହି ନଗରରେ ବସବାସ ନ କରି ଏହାଠାରୁ ୪୦ କି.ମି. ଦୂରରେ ଥିବା ଲଙ୍ଗ୍ ଆଇଲାଣ୍ଡ୍‌ରେ ବସବାସ କରନ୍ତି। କାମର ଚାପରେ ଏଠାକୁ ଆସନ୍ତି ଏବଂ ସନ୍ଧ୍ୟାରେ ଫେରିଯାଆନ୍ତି। ଆମେ ଲଙ୍ଗ୍ ଆଇଲାଣ୍ଡ୍ ବୁଲି ଦେଖିଲୁ। ଘର ସବୁ ଖୁବ୍ ରମଣୀୟ। ଚାରିଆଡ଼େ ପରିଷ୍କାର ପରିଚ୍ଛନ୍ନ। ଆଧୁନିକ ଆମେରିକାର ନଗରମାନଙ୍କରେ ଅପରାଧ ପ୍ରବଣତାର ଯେଉଁ ସମସ୍ୟା ରହିଛି ନିଉୟର୍କ ସେଥିରୁ ମୁକ୍ତ ନୁହେଁ। ନିଉୟର୍କର ଟ୍ରାମ୍‌ରେ ଯାତ୍ରା କରିବା ପାଇଁ ଯେଉଁ ଦେୟ ଦେବାକୁ ହୁଏ, ପାଞ୍ଚଟା ପରେ ତାହା ଅଧାଅଧି ହୋଇଯାଏ। ରାତି ଦଶଟା ପରେ ଟିକେଟ୍‌ର ଦର ଏକ ଚତୁର୍ଥାଂଶ। କାରଣ ସହଜରେ ଅନୁମେୟ। ତଥାପି ନିଉୟର୍କର ବୈଭବ ଓ ବିଶାଳତା ବିସ୍ମୟକର। ଅନୁଭବର ପ୍ରାଚୁର୍ଯ୍ୟ ନେଇ କିଙ୍ଗସ୍‌ଟନ୍ ଫେରିଲୁ। ପରେ ପରେ ଏକାଧିକ ବାର ନିଉୟର୍କ ଆସିଛୁ ଏବଂ ଏହାର ବିଶାଳତାକୁ ଅନୁଭବ କରିଛୁ।

୧୯୭୮ ମସିହାରେ ଆଉ ଏକ ସୁନ୍ଦର ସୁଯୋଗ ଭ୍ରମଣାନୁଭୂତିର ସୁଖ ପ୍ରଦାନ କଲା। ମୁଁ ଯେଉଁ ବିଷୟରେ ଗବେଷଣା ଆରମ୍ଭ କରିବାକୁ ଯାଉଥିଲି, ସେହି ତତ୍ତ୍ୱର ମୁଖ୍ୟ ଗବେଷକ ଥିଲେ ବିଶିଷ୍ଟ ମନୋବିଜ୍ଞାନୀ ହରମାନ୍ ଉଇଟ୍‌କିନ୍। ସେ ସମୟର ବିଶ୍ୱର ଶ୍ରେଷ୍ଠ ୧୦୦ ଜଣ ମନୋବିଜ୍ଞାନୀଙ୍କ ମଧ୍ୟରେ ତାଙ୍କୁ ସ୍ଥାନିତ କରା ଯାଇଥିଲା। ସେ ଆମେରିକା ଯୁକ୍ତରାଷ୍ଟ୍ରର ନିଉଜର୍ସି ରାଜ୍ୟର ପ୍ରିନ୍‌ସଟନ୍ ସହରରେ ଅବସ୍ଥିତ Educational Testing Service (ETS)ର ବୈଜ୍ଞାନିକ। ତାଙ୍କ ସହିତ ଆଲୋଚନା କରିବା ଏବଂ ତାଙ୍କର ଗବେଷଣାଗାର ଦେଖିବାର ଅନୁଭବ ପାଇଁ ମୋର ମାର୍ଗ ଦର୍ଶକ ବେରୀ ପ୍ରସ୍ତାବ ଦେଲେ। ସୁତରାଂ ରାଜ୍ୟଗୋଷ୍ଠୀ ବୃତ୍ତି ସଂସ୍ଥାର ଅନୁମୋଦନ ଓ ସହାୟତାରେ ମୁଁ ପ୍ରିନ୍‌ଟନ ଆସିଲି।

ସ୍ଥିର ହେଲା ଯେ ମୁଁ ପ୍ରଥମେ ପ୍ରିନ୍‌ଟନ ଚାଲିଆସି ଗୋଟିଏ ସପ୍ତାହ ମୋର ଗବେଷଣା କାର୍ଯ୍ୟ ଲାଗି ପ୍ରଫେସର୍ ଉଇଟ୍‌କିନ୍‌ଙ୍କ ସହିତ କଟାଇବି। ଗୋଟିଏ ସପ୍ତାହ ପରେ ଅଞ୍ଜୁ ପ୍ରିନ୍‌ଟନ୍ ଆସି ମୋ ସହିତ ଯୋଗଦେବ ଏବଂ ଆମେ ଅନ୍ୟ ସବୁ ସ୍ଥାନକୁ ବୁଲି ଯିବୁ।

କାନାଡ଼ାର ପ୍ରିନ୍‌ଟନ୍‌କୁ ଆସିବା ପାଇଁ ପ୍ରଥମେ ନିଉୟର୍କ ଆସିବାକୁ ହେବ। ସୁତରାଂ ଅଞ୍ଜୁ କାନାଡ଼ାରୁ ପ୍ରଥମେ ନିଉୟର୍କ ଆସିଲା ଏବଂ ଆମେ ଦୁହେଁ ନିଉୟର୍କରେ କିଛି ସମୟ କାଟିଲୁ। ଦିନେ ଦୁଇଦିନ ନିଉୟର୍କରେ କାଟିବା ପରେ ପ୍ରିନ୍‌ଟନ୍ ଗଲୁ।

ପ୍ରିନ୍‌ଟନ୍ ସହରଟି ଅତି ବଡ଼ ସହର ନୁହେଁ, କିନ୍ତୁ ସବୁଜ ବନାନୀରେ ଭରପୂର। ଏଠାରେ ଥିବା ପ୍ରିନ୍‌ଟନ୍ ବିଶ୍ୱବିଦ୍ୟାଳୟ ଗୋଟିଏ ପୁରାତନ ବିଶ୍ୱବିଦ୍ୟାଳୟ।

ସବୁଠାରୁ ବଡ଼ କଥା ହେଉଛି ଯେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଯେଉଁ ଗବେଷଣା ଅନୁଷ୍ଠାନରେ କାର୍ଯ୍ୟ କରିଥିଲେ ତାହା ଏ ଯାବତ୍ ରହିଛି। ସେଠାର ବିଖ୍ୟାତ ଗାଣିତିକ, ପଦାର୍ଥ ବିଜ୍ଞାନୀ, ମହାକାଶ ବିଜ୍ଞାନୀ ଓ ରସାୟନବିତ୍‌ମାନେ କାର୍ଯ୍ୟ କରନ୍ତି। ସେ ଅନୁଷ୍ଠାନଟି ଦେଖିବା ବ୍ୟତୀତ ଆଇନ୍‌ଷ୍ଟାଇନ୍‌ଙ୍କ ବାସଗୃହ ମଧ୍ୟ ଦେଖିବାର ସୁଯୋଗ ମିଳିଲା। ଆଇନ୍‌ଷ୍ଟାଇନ୍‌ଙ୍କ ସେକ୍ରେଟାରୀ ଜୀବିତ ରହିଥିଲେ ଏବଂ ଏକ ସ୍ମରଣୀୟ ସ୍ଥାନ ରୂପେ ଘରଟିର ଯତ୍ନ ନେଉଥିଲେ। ତାଙ୍କ ସହ କଥାବାର୍ତ୍ତାର ସୁଯୋଗ ମିଳିଲା।

ପ୍ରିନ୍‌ସ୍‌ଟନର ମୁଖ୍ୟ ଶିକ୍ଷାଗତ କେନ୍ଦ୍ର ହେଉଛି ETS। ଆମେରିକା ଓ ଅନ୍ୟ ସବୁ ଦେଶରେ ବ୍ୟବହୃତ ମନସ୍ତାତ୍ତ୍ୱିକ ଓ ଶିକ୍ଷାଗତ ପରିମାପକସବୁ (Tests)ଏଠାରେ ବିକଶିତ ଓ ସଂଶୋଧିତ ହୁଏ। ସୁତରାଂ ଗବେଷକମାନଙ୍କ ପାଇଁ ଏ ସ୍ଥାନର ବେଶ୍ ତାତ୍ପର୍ଯ୍ୟ ରହିଛି।

କିଛିଦିନର ଅବସ୍ଥାନ ପରେ ପୂର୍ବ ଯୋଜନା ଅନୁଯାୟୀ ୱାସିଂଟନ ଡ଼ି.ସି. ଯାତ୍ରା କଲୁ। ପୂର୍ବରୁ କହିଥିଲୁ। ମୋର ବନ୍ଧୁ ପ୍ରତାପ ଓ ତାର ସ୍ତ୍ରୀ ପୁଷ୍ପା ୱାସିଂଟନ୍ ନିକଟବର୍ତ୍ତୀ ମ୍ୟାରୀଲାଣ୍ଡ ରାଜ୍ୟରେ ରୁହନ୍ତି। ଏ ସ୍ଥାନଟି ଗଛଲତାରେ ପରିପୂର୍ଣ୍ଣ। ତାଙ୍କ ଘରେ ଅତିଥି ହେଲୁ। ସେଠାରେ ଆଖପାଖ ଅଞ୍ଚଳରେ ରହୁଥିବା ଓଡ଼ିଆମାନଙ୍କର ଘରେ ପ୍ରତି ସନ୍ଧ୍ୟାରେ ଆସର ଜମେ। ଆତିଥେୟତାର ପ୍ରାଚୁର୍ଯ୍ୟରେ ଆମେ ବୁଡ଼ି ଯାଉଥିଲୁ। ବିଶେଷତଃ ବଲ୍‌ଟିମୋର୍‌ରେ ଥିବା ରୁନୁ ଭାଇ ଏବଂ ତାଙ୍କ ପତ୍ନୀ ଶୋଭାଙ୍କ ଆତ୍ମୀୟତା ଭୁଲିବାର ନୁହେଁ।

ଦିନବେଳା ପ୍ରତାପ ଆମକୁ ବହୁସ୍ଥାନ ବୁଲାଇ ନେଉଥିଲା। ୱାସିଂଟନରେ ଗୋଟିଏ ସୁବିଧା ଥିଲା ଯେ ଦର୍ଶନୀୟ ସ୍ଥାନସବୁ ପାଖାପାଖି ରହିଥିଲା। Aero-Space ସଂଗ୍ରାହଳୟରେ ମହାକାଶଯାନ ରୂପେ ବ୍ୟବହୃତ ହୋଇଥିବା ସବୁ ପ୍ରକାର ଯାନ ଦେଖିଲୁ। ଯେଉଁ ଯାନ ମାଧ୍ୟମରେ ମନୁଷ୍ୟ ଚନ୍ଦ୍ରପୃଷ୍ଠରେ ଅବତରଣ କରିଥିଲା ତାହା ମଧ୍ୟ ଦେଖିଲୁ। ଅନ୍ୟ ଏକ ମନଭୁଲା ସଂଗ୍ରହାଳୟ ହେଉଛି ଜୀବଜଗତର ଉତ୍ପତ୍ତି ଓ କ୍ରମବିକାଶର ସଂଗ୍ରହାଳୟ। ଏତଦ୍‌ବ୍ୟତୀତ ୱାସିଂଟନ, ମନୁମେଣ୍ଟ, କେନେଡ଼ୀ ସେଣ୍ଟର, ଜାଫ୍‌ରସନ୍ ସେଣ୍ଟର ଏବଂ କଂଗ୍ରେସ (ଆମେରିକାର ପାର୍ଲିଆମେଣ୍ଟ) ଭବନ ମଧ୍ୟ ବୁଲି ଦେଖିଲୁ। ଦୀର୍ଘ ଦୁଇ ସପ୍ତାହର ପରିଭ୍ରମଣ ପରେ କିଙ୍ଗସ୍‌ଟନ୍ ଫେରିଲୁ।

ଅଞ୍ଜୁ ସହିତ ଅନେକଗୁଡ଼ିଏ ସ୍ଥାନ ବୁଲିବାର ଅନୁଭୂତି ବ୍ୟତୀତ ଅଧିକା କିଛି ସ୍ଥାନ ଦେଖିବାର ସୌଭାଗ୍ୟ ମୋର ଜୁଟିଥିଲା। କୌଣସି ସ୍ଥାନରେ ସମ୍ମିଳନୀ, ସମ୍ମାନ କିମ୍ବା କର୍ମଶାଳାର ଆୟୋଜନ ହେଉଥିଲେ ଏବଂ ମୋର ଗବେଷଣା ନିବନ୍ଧଟି ଉପସ୍ଥାପନ ପାଇଁ ମନୋନୀତ ହେଲେ ରାଜ୍ୟଗୋଷ୍ଠୀ ବୃତ୍ତିସଂସ୍ଥା ଆର୍ଥିକ ସହାୟତା

ପ୍ରଦାନ କରୁଥିଲେ। ଏହି ପରିପ୍ରେକ୍ଷୀରେ ମୁଁ ଫିଲାଡେଲ୍‌ଫିଆ, ମଧ୍ୟ-ପଶ୍ଚିମାଞ୍ଚଳର କେତେକ ସ୍ଥାନ ଏବଂ ଅନ୍ୟ କେତୋଟି ସ୍ଥାନ ପରିଭ୍ରମଣ କରିଥିଲି।

ଆମେରିକା ଯୁକ୍ତରାଷ୍ଟ୍ରର ମଧ୍ୟ ପଶ୍ଚିମାଞ୍ଚଳ (ଇଣ୍ଡିଆନା, ଓହାଇଓ, କେଣ୍ଟକୀ ପ୍ରଭୃତି ରାଜ୍ୟ) ବିଶେଷ ଶିଳ୍ପୋନ୍ନତ ନୁହେଁ। ଏଗୁଡ଼ିକ ମୁଖ୍ୟତଃ କୃଷି ପ୍ରଧାନ ରାଜ୍ୟ। ପୁଣି ଦୂର ଅତୀତରେ ଏ ସବୁ ସ୍ଥାନ ଦାସ ବ୍ୟବସାୟର କେନ୍ଦ୍ର ଥିବାରୁ କିଛିଟା ପୂର୍ବର ନକାରାତ୍ମକ ଛାପ ରହି ଯାଇଛି। ମନସ୍ତତ୍ତ୍ୱର ସମ୍ମିଳନୀରେ ଯୋଗ ଦେବା ପାଇଁ ଏ ଅଞ୍ଚଳର Miami ବିଶ୍ୱବିଦ୍ୟାଳୟ ଓ ଓହାଇଓ ରାଜ୍ୟ ବିଶ୍ୱବିଦ୍ୟାଳୟ ଯାଇଛି। ଏ ପରିପ୍ରେକ୍ଷୀରେ ଅକ୍ସଫୋର୍ଡ଼ କ୍ଲିଭଲାଣ୍ଡ କଲମ୍ବସ୍ ଓ ଅନ୍ୟ କିଛି ସହର ଦେଖିବାର ସୁଯୋଗ ପାଇଛି। କଲମ୍ବସ୍ ଭାରତ ଆବିଷ୍କାରର ଅଭିପ୍ରାୟ ନେଇ ଯେଉଁ ସ୍ଥାନରେ ପହଞ୍ଚିଥିଲେ, କଲମ୍ବସ୍ ନାମକ ସେ ସହରଟି ବୁଲି ଦେଖିଲି।

ଅନ୍ୟ ଏକ ଶିକ୍ଷାଗତ ପରିଭ୍ରମଣରେ ଫିଲାଡ଼େଲ୍‌ଫିଆ ଗଲି। ଏହା ପେନ୍‌ସିଲଭାନିଆ ରାଜ୍ୟର ମୁଖ୍ୟ ନଗର। ଏହିଠାରେ ଆମେରିକା ସ୍ୱାଧୀନତା ସଂଗ୍ରାମର ଭିତ୍ତିଭୂମି ରହିଛି। ଐତିହାସିକ ଦୃଷ୍ଟିକୋଣରୁ ଏ ସ୍ଥାନଟି ଆମେରିକାବାସୀଙ୍କ ପାଇଁ ପୁଣ୍ୟପୀଠ। ଯେଉଁଠାରେ ସ୍ୱାଧୀନତା ଘୋଷଣା କରା ଯାଇଥିଲା ସେ ସ୍ଥାନଟି ସୁରକ୍ଷିତ ରହିଛି। ଅନ୍ୟତମ ଆକର୍ଷଣ ଥିଲା ଫିଲାଡ଼େଲ୍‌ଫିଆର ସଂଗ୍ରହାଳୟ। ତେବେ ବହୁ ପ୍ରତିଭାର ଅଧିକାରୀ ବେଞ୍ଜାମିନ୍ ଫ୍ରାଙ୍କଲିନ୍‌ଙ୍କ ବାସଗୃହଟି ମୋ ଅନ୍ତରର ଗଭୀରତମ ପ୍ରଦେଶରେ ଚିରଦିନ ଲାଗି ଅମଳିନ ରହିବ। ଗୃହ ନିର୍ମାଣର କୌଶଳ, ସଙ୍ଗୀତ, ବିଜ୍ଞାନ, ରାଜନୀତି ଓ ଦର୍ଶନରେ ବେଞ୍ଜାମିନ୍ ଫ୍ରାଙ୍କଲିନ୍ ଏକ ଅନନ୍ୟ ସମାରୋହ। ବିଶ୍ୱରେ ଏପରି ପ୍ରତିଭା ବିରଳ।

### ପ୍ୟାରିସ୍ ଓ ଲଣ୍ଡନ

ପରିଭ୍ରମଣର ସୁଖର ଏକ ବିଶିଷ୍ଟ ପର୍ଯ୍ୟାୟ ହେଉଛି ପ୍ୟାରିସ୍ ଓ ଲଣ୍ଡନରେ ବୁଲିବାର ଆନନ୍ଦ। ମୋର ପି.ଏଚ.ଡ଼ି. କାର୍ଯ୍ୟ ମଇ ମାସର ପ୍ରଥମ ସପ୍ତାହରେ (୧୯୮୧) ଶେଷ ହେବାର ପ୍ରତ୍ୟାନୁମାନ କରି ଫେରନ୍ତା ଯାତ୍ରାର ପ୍ରସ୍ତୁତି ଆରମ୍ଭ କଲି। ତଦନୁସାରେ ରାଜ୍ୟଗୋଷ୍ଠୀ ବୃତ୍ତି ସଂସ୍ଥା ମଧ୍ୟ ବ୍ୟବସ୍ଥା ଆରମ୍ଭ କଲେ। ଭାରତକୁ ଫେରିବା ସମୟରେ ପ୍ୟାରିସ୍ ଓ ଲଣ୍ଡନରେ କିଛିଦିନ କାଟିବାର ଯୋଜନା କରାଗଲା।

ଆମେ କିଙ୍ଗସ୍‌ଟନ୍ ଛାଡ଼ିବାର ଗୋଟିଏ ବର୍ଷ ପୂର୍ବରୁ ଜଣେ ବାଙ୍ଗଲାଦେଶୀ ଛାତ୍ରଙ୍କ ସହିତ ବନ୍ଧୁତ୍ୱ ହୋଇଥିଲା। ତାଙ୍କ ନାମ ସୟଦ୍। ଆମେ ତାଙ୍କୁ ସୟଦ୍ ଭାଇ ଡାକୁଥିଲୁ। ତାଙ୍କର ପତ୍ନୀ ହେଉଛନ୍ତି ଫରାସୀ। ପ୍ୟାରିସ୍‌ର ଅଧିବାସୀ। ତାଙ୍କ ନାମ ଫସୁଁଆଫସ୍। ତାଙ୍କର କୁନି ପୁଅର ନାମ ଥିଲା ଜାଁ ଫିଲିପ୍। ଭାରତକୁ ଫେରିବା ସମୟରେ ଆମେ ପ୍ୟାରିସ୍‌ରେ ତାଙ୍କ ଘରେ ସମୟ କଟାଇବା ପାଇଁ ସଶ୍ରଦ୍ଧ ନିମନ୍ତ୍ରଣ

ଥିଲା। ସେହି ଅନୁସାରେ ମଇ ଦ୍ୱିତୀୟ ସପ୍ତାହରେ ଆମେ ଟରଣ୍ଟୋର ଆନ୍ତର୍ଜାତୀୟ ବିମାନ ବନ୍ଦରରୁ ପ୍ୟାରିସ୍‌ର ଚାର୍ଲସ ଡିଗଲ୍ ବିମାନ ବନ୍ଦର ଆସିଲୁ। ସୟଦ ଭାଇ ଓ ଫସୁଁଆଫସ୍ ଆମକୁ ବିମାନ ବନ୍ଦରରୁ ଘରକୁ ନେଇଗଲେ।

ଆମେ ପ୍ରାୟ ଚାରିପାଞ୍ଚଦିନ ରହିଲୁ। କୁହାଯାଏ ଯେ ସାହିତ୍ୟ ଓ କଳା ସଂସ୍କୃତି କ୍ଷେତ୍ରରେ ଫ୍ରାନ୍‌ସ ଅନ୍ୟ ଇଉରୋପୀୟାନ ଦେଶଠାରୁ ଖୁବ୍ ଆଗରେ। ଆମର ଅନୁଭବ ମଧ୍ୟ ସେ ଧରଣର ଥିଲା। ଏଫିଫିଲ୍ ଟାୱାର ଓ ରାଷ୍ଟ୍ରପତିଙ୍କ ବାସଭବନ ଦେଖି ଯେତିକି ମୁଗ୍ଧ ହେଲୁ ରାସ୍ତା ପାର୍କର ସୌନ୍ଦର୍ଯ୍ୟ ସେତିକି ମନମୁଗ୍ଧକର ଥିଲା। ଦିନେ ପ୍ୟାରିସ୍‌ର ସୁବିଖ୍ୟାତ ସଂଗ୍ରହାଳୟ ଲୁଭେ ଦେଖିବାକୁ ଗଲୁ। ପୂରା ଦିନଟି ବୁଲିବାର ଉପାଦାନ ରହିଛି। ବିଶ୍ୱବିଖ୍ୟାତ "ମୋନାଲିସା" ଛବି ପାଖରେ ପ୍ରବଳ ଭିଡ଼। ଆନନ୍ଦରେ ଦେଖିଲୁ।

ସ୍କୁଲ ବହିର ଇତିହାସରେ ପଢ଼ିଥିବା ଲୁଇ ବଂଶୀୟ ସମ୍ରାଟମାନଙ୍କର ବିଳାସ ସଦନ ସବୁ ଭର୍ସାଲେସ୍ ନାମକ ସହରରେ। ଏଠାରେ ତାକୁ ଭର୍ସାଇ ବୋଲି କୁହନ୍ତି। ସେଠାକୁ ଯାଇ ସେ ବିଳାସ ସଦନ ସବୁ ଦେଖିଲୁ। ଫରାସୀମାନେ ଲୁଇବଂଶୀୟ ସମ୍ରାଟ ବିରୁଦ୍ଧରେ କାହିଁକି ବିପ୍ଳବ ରଚନା କରିଥିଲେ, ତାହା ବୁଝିବାରେ ଏହା କିଛିଟା ସାହାଯ୍ୟ କଲା।

ସୟଦ୍ ଭାଇ ଓ ଫସୁଁଆଫସ୍‌ଙ୍କ ଆତିଥ୍ୟ ଭୁଲିବାର ନୁହେଁ। ସେ ଦୁଇଜଣ ଫରାସୀ ତଥା ଆମ ଦେଶୀୟ ଖାଦ୍ୟ ପ୍ରସ୍ତୁତ କରିପାରନ୍ତି। ସୁତରାଂ କୌଣସି ଅସୁବିଧା ନ ଥିଲା। ତେବେ ଗୋଟିଏ ଦିନ ସେମାନେ ଅତି ଆଗ୍ରହରେ ଠେକୁଆ ମାଂସର ତରକାରୀ ପ୍ରସ୍ତୁତ କଲେ। ମୁଁ କୌଣସି ମତେ ଖାଇ ଦେଲେ ମଧ୍ୟ ଅଞ୍ଜୁ କୁଣ୍ଠାବୋଧ କଲା। ତା' ପାଇଁ ଅଲଗା ବ୍ୟବସ୍ଥା କରାଗଲା।

ପ୍ୟାରିସ୍‌ରେ ମୋତେ ଆନନ୍ଦ ଦେଇଥିବା ଗୋଟିଏ ଦିଗ ହେଉଛି ଫରାସୀବାସୀଙ୍କର ଅନ୍ୟ ସଂସ୍କୃତି ସମ୍ପର୍କରେ ଧାରଣା। ଆମେ ଦୋକାନ ବଜାର ବୁଲୁଥିବା ସମୟରେ ସେଠାରେ ଜିଲାପୀ ବିକ୍ରି ହେଉଥିବାର ଦେଖିଲୁ। ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ବଙ୍ଗଳା ବହିର ଫରାସୀ ଅନୁବାଦ ଦେଖିବାକୁ ପାଇଲୁ। ପ୍ୟାରିସ୍‌ର ଗୋଟିଏ ଅଞ୍ଚଳରେ ବିଶ୍ୱର ପ୍ରାୟ ସବୁଦେଶର ରେଷ୍ଟୋରାଁ ରହିଛି। ଆମେ ଦୁଇଟି ସନ୍ଧ୍ୟାରେ ଦୁଇ ଭିନ୍ନ ରେଷ୍ଟୋରାଁକୁ ଯାଇ ରାତ୍ରି ଭୋଜନ ଗ୍ରହଣ କଲୁ। ଗୋଟିଏ ଆଲଜେରିଆନ୍ ରେଷ୍ଟୋରାଁରେ ଅଞ୍ଜୁ ପରିଚାରିକାଙ୍କୁ ନିର୍ଦ୍ଦେଶ ଦେଇ ଗୋଟିଏ ପାତ୍ରରେ ଏତେ ପରିମାଣରେ ଲଙ୍କାବଟା ଖାଇଲା ଯେ ସେମାନେ ପରସ୍ପରକୁ ଡାକିଆଣି ଲୁଚିକରି ଅଞ୍ଜୁର ଲଙ୍କାବଟା ଖାଇବାର ଦୃଶ୍ୟ ଉପଭୋଗ କଲେ।

ପ୍ୟାରିସ୍‌ର ସୁଖତମ ରହଣୀ ପରେ ଆମେ ଲଣ୍ଡନ ଯାତ୍ରା କଲୁ। ସମଗ୍ର ଇଉରୋପରେ ଯାତ୍ରା କରିବା ପାଇଁ ଏକକ ରେଳ ବ୍ୟବସ୍ଥା ହେଉଛି ଇଉରେଲ୍।

ଯେ କୌଣସି ସ୍ଥାନରୁ ଟିକେଟ୍ କ୍ରୟ କରି ଇଉରୋପର ଅନ୍ୟ ଯେ କୌଣସି ସ୍ଥାନକୁ ଯାଇହେବ। ପୂରାପୂରି ନିୟମାନୁବର୍ତ୍ତିତା। ପରିଷ୍କାର ପରିଚ୍ଛନ୍ନ। ଆମେ ପ୍ୟାରିସ୍ ପ୍ରାୟ ଘଣ୍ଟାଏ ରେଳଯୋଗେ ଯାତ୍ରା କରିବା ପରେ ଲଣ୍ଡନ ଯିବା ପାଇଁ ଇଂଲିଶ୍ ଚାନେଲ୍‌ରେ ଜାହାଜଯାତ୍ରା କରିବାକୁ ହେବ।

ଇଂଲିଶ୍ ଚାନେଲ୍‌ରେ ଜଳ ଜାହାଜର ଚାରିପାଞ୍ଚଘଣ୍ଟାର ଜଳ ଯାତ୍ରା। ଖୁବ୍ ଭଲ ଲାଗୁଥାଏ। ଏକ ହଜାରରୁ ଅଧିକ ଲୋକ ଯାତ୍ରା କରୁଥିଲେ। ଜାହାଜର ବିଭିନ୍ନ ମହଲା ରହିଛି। ସମସ୍ତ ଖାଦ୍ୟ ଓ ପାନୀୟର ବ୍ୟବସ୍ଥା ମଧ୍ୟ ଅଛି। କେଉଁଠି ନାଚଗୀତ ଚାଲିଛି ତ କେଉଁଠି ବାଦ୍ୟଯନ୍ତ୍ର ଚାଲିଛି। ସବୁସମୟତକ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସି ରହିବାର ବାଧ୍ୟ ବାଧ୍ୟକତା ନାହିଁ। ସୁତରାଂ ଆମୋଦ ପ୍ରମୋଦ ମଧ୍ୟରେ ଲଣ୍ଡନ ପହଞ୍ଚିଲୁ। ଇଂଲିଶ ଚାନେଲ୍ ପାର୍ ହେଲା ପରେ ପୁଣି ଅଳ୍ପ ସମୟ ପାଇଁ ରେଳଯାତ୍ରା କରିବାକୁ ହେଲା। ରେଳଟି ଲଣ୍ଡନର ମୁଖ୍ୟ ଷ୍ଟେସନ ଭିକ୍ଟୋରିଆ ଟର୍ମିନାଲ୍‌ରେ ପହଞ୍ଚାଇ ଦେଲା।

ପ୍ୟାରିସ୍ ପରି ଲଣ୍ଡନ୍‌ରେ ରହୁଥିବା ଜଣେ ବାଙ୍ଗଲାଦେଶୀ ବନ୍ଧୁ ଆମକୁ ସାକ୍ଷାତ କରି ଲଣ୍ଡନ୍‌ର କେନ୍ଦ୍ର ସ୍ଥଳରେ ଥିବା ତାଙ୍କର ଗୋଟିଏ ଘରର ଚାବି ଦେଇଗଲେ। ଆମ୍ଭେମାନେ ଲଣ୍ଡନ୍ ଛାଡ଼ିବା ଦିନ ସେ ଆମଠାରୁ ସଂଗ୍ରହ କରି ଚାବିଟି ନେଇଯିବେ ବୋଲି କଥା ଦେଲେ। ଆମେ ଟ୍ୟୁବ୍ ବ୍ୟବହାର କରି ଭିକ୍ଟୋରିଆରୁ ଏହି ଘରକୁ ଚାଲି ଆସିଲୁ। ଲଣ୍ଡନ୍‌ରେ ମେଟ୍ରୋକୁ ଟ୍ୟୁବ୍ କୁହନ୍ତି।

ଲଣ୍ଡନ୍‌ରେ ଆମେ ପରିଭ୍ରମଣ କମ୍ପାନୀ ଦ୍ୱାରା ପରିଚାଳିତ ଗାଡ଼ିରେ ଦର୍ଶନୀୟ ସ୍ଥାନ ସବୁ ବୁଲି ଦେଖିଲୁ। ବ୍ରିଟିଶ ରାଣୀଙ୍କ ପ୍ରାସାଦରେ କିପରି ସୁରକ୍ଷା କର୍ମୀମାନଙ୍କର ଦାୟିତ୍ୱ ସରିବା ପରେ ଅନ୍ୟ ଗୋଟିଏ ଦଳ ଦାୟିତ୍ୱ ନିଅନ୍ତି ତାହାର ପାରମ୍ପାରିକ ପରିବର୍ତ୍ତନ ଉତ୍ସବ ଖୁବ୍ ଚିତ୍ତାକର୍ଷକ। ଥେମସ୍ ନଦୀ ବନ୍ଦର ଶୋଭା ଏବଂ ଏକାଧିକ ସଂଗ୍ରହାଳୟର ସାମଗ୍ରୀ ମନୋମୁଗ୍ଧକର। କେତେକ ସଂଗ୍ରହାଳୟରେ ଭାରତରୁ ସଂଗୃହୀତ ଉପାଦାନସବୁର ଆକର୍ଷଣ ରହିଛି। ଏ ପରିପ୍ରେକ୍ଷୀରେ କୋହିନୂର ହୀରା ଦେଖିବାର ମଧ୍ୟ ସୌଭାଗ୍ୟ ମିଳିଲା।

ବନ୍ଧୁ ପୂର୍ବରୁ ଲଣ୍ଡନ୍‌ର ଟ୍ରାଫାଲ୍‌ଗାର ଛକ ଓ ପିକାଡ଼େଲୀ ଛକର କଥା ପଢ଼ିଥିଲୁ। କିନ୍ତୁ ଦେଖିବାର ସୁଯୋଗ ନ ଥିଲା। ପ୍ୟାରିସ୍ ଓ ଲଣ୍ଡନ୍‌ରେ ବୁଲିବାର ସୁଖ କେବଳ ଏକ ଇନ୍ଦ୍ରିୟାନୁଭୂତ ସୁଖ ନୁହେଁ, ଏହା ଏକ ଭାବଗତ ଆହ୍ଲାଦ।

❖

( ୨୭ )

# କ'ଣ ନେଇ ଫେରିଲି: ଶିକ୍ଷା ଓ ଦୀକ୍ଷା

ଭଲ ସମୟ ଆଖି ପିଛୁଳାକେ ଚାଲିଯାଏ। ମନେହୁଏ ମୁଁ ସ୍ୱପ୍ନ ଦେଖୁଥିଲି। ୧୯୭୬ ମସିହାରେ ଅଗଷ୍ଟ ୩୧ ଦିନ ମୁଁ କାନାଡ଼ାର ମାଟିରେ ପାଦ ଦେଇଥିଲି। ସୁରୁଖୁରୁରେ ମୋ ଗବେଷଣା କାର୍ଯ୍ୟ ଶେଷ କଲି। ଇଚ୍ଛା କରିଥିଲେ ମୁଁ ଅନ୍ତତଃ ଗୋଟିଏ ବର୍ଷ ପୂର୍ବରୁ ମୋ ପି.ଏଚ୍.ଡ଼ି. କାମ ଶେଷ କରିପାରି ଥାଆନ୍ତି। କିନ୍ତୁ ଦୁଇଟି ଘଟଣା ମୋ ନିଷ୍ପତ୍ତିକୁ ବଦଳାଇଲା। ମୁଁ ଜାଣିଲି ଯେ ନିଜର କାର୍ଯ୍ୟକାଳ ମଧ୍ୟରେ କୌଣସି ସମ୍ମିଳନୀ କିମ୍ବା କର୍ମଶାଳାର ମୋର ଗବେଷଣା ନିବନ୍ଧ ଉପସ୍ଥାପନ ପାଇଁ ମନୋନୀତ ହେଲେ ମୋତେ ଆର୍ଥିକ ସହାୟତ ମିଳିବ। ଯିବା ଆସିବା ଏବଂ ରହିବାର ସମସ୍ତ ଖର୍ଚ୍ଚ ରାଜ୍ୟଗୋଷ୍ଠୀ ସଂସ୍ଥା ବହନ କରିବ। ଏପରି ଏକ ସୁନ୍ଦର ବ୍ୟବସ୍ଥାର ଉପଯୋଗ କରିବାକୁ ମୁଁ ମନସ୍ଥ କଲି। ଏହା ଫଳରେ କାନାଡ଼ା ଓ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରାୟ ଦଶଟିରୁ ଉର୍ଦ୍ଧ୍ୱ ସ୍ଥାନକୁ ଯାଇ ପାରିଲି। ପରିଭ୍ରମଣର ସୁଖ ପାଇଲି ଏବଂ ଏହା ସହିତ ବିଭିନ୍ନ ସ୍ଥାନରେ ବିଭିନ୍ନ ଗବେଷକମାନଙ୍କ ସହ ଆଲୋଚନା କରିବାର ସୌଭାଗ୍ୟ ହେଲା। ଅବଶ୍ୟ ଏହାର ମୋର କାର୍ଯ୍ୟ ସମାପ୍ତିକୁ ବିଳମ୍ବିତ କଲା।

ଦ୍ୱିତୀୟତଃ ମୋର କାର୍ଯ୍ୟ ଶେଷ ପର୍ଯ୍ୟାୟରେ ଥିବା ସମୟରେ (୧୯୭୯-୮୦ ଶିକ୍ଷାବର୍ଷ)ମୋର ମାର୍ଗ ଦର୍ଶକ ଜନ୍ ବେରୀ ଗୋଟିଏ ବର୍ଷ ପାଇଁ ଫ୍ରାନ୍ସ ଚାଲିଗଲେ। ମୁଁ ନିଜକୁ କାର୍ଯ୍ୟବ୍ୟସ୍ତ ରଖି ପାରୁଥିଲେ ମଧ ତାଙ୍କର ଅନୁପସ୍ଥିତି ଶେଷ ସ୍ତରର କାମକୁ ଟିକେଇ ପଛେଇ ଦେଲା।

ଯାହାହେଉ ୧୯୮୧ର ଆରମ୍ଭ ବେଳକୁ ମୁଁ ଦେଖି ପାରୁଥିଲି ଯେ ଏପ୍ରିଲ ସୁଦ୍ଧା ମୋର କାର୍ଯ୍ୟ ସରିଯିବ। କାନାଡ଼ାର ବିଶ୍ୱବିଦ୍ୟାଳୟର ନିୟମ ଅନୁଯାୟୀ ମନସ୍ତତ୍ତ୍ୱ ହେଉଛି ଜୀବନ ବିଜ୍ଞାନ (Life Science) ସ୍କୁଲର ଅନ୍ତର୍ଭୁକ୍ତ। ଏହି ସ୍କୁଲର ଡିନ୍ ହେଉଛନ୍ତି ପିଏଚ୍.ଡ଼ି. ସନ୍ଦର୍ଭ ପରୀକ୍ଷାର ଅଧ୍ୟକ୍ଷ। ଫେବୃଆରୀ/ମାର୍ଚ୍ଚ ବେଳକୁ ପରୀକ୍ଷକ କମିଟି ଗଠନର ପଦକ୍ଷେପ ନିଆଗଲା। ନିୟମ ଅନୁଯାୟୀ ଡିନ୍ କମିଟିର ଅଧ୍ୟକ୍ଷ ରହିବା ସ୍ଥଳେ ବିଭାଗୀୟ ମୁଖ୍ୟ ଏବଂ ମାର୍ଗ ଦର୍ଶକ (ମୋ କ୍ଷେତ୍ରରେ ଜନ୍ ବେରୀ) ନିଶ୍ଚିତ ଅନ୍ତର୍ଭୁକ୍ତ ହେବେ। ଏତଦ୍‌ବ୍ୟତୀତ ଜଣେ ବାହ୍ୟ ପରୀକ୍ଷକ (କୁଇନ୍ସ ବିଦ୍ୟାଳୟ ବାହାରେ) ଦୁଇଜଣ ବିଭାଗୀୟ ପ୍ରଫେସର ଏବଂ

ଜଣେ କୁଇନ୍ସର ଅନ୍ୟ ଅଥଚ ସମ୍ପର୍କିତ ବିଭାଗର ପ୍ରଫେସର ଏ କମିଟିର ଅନ୍ତର୍ଭୁକ୍ତ ହେବେ। ଏପରି ବିଧି ଅନୁଯାୟୀ ଆମେରିକାର ପ୍ରିନ୍ସଟନର Educational Testing Serviceର ପ୍ରଖ୍ୟାତ ବୈଜ୍ଞାନିକ ପ୍ରଫେସର୍ ଡ଼ି.ଆର୍.ଗୁଡ୍ଏନଫ୍ ମୋର ପରୀକ୍ଷକ ଥିଲେ। ଆମ ବିଭାଗର ମୁଖ୍ୟ ପ୍ରଫେସର ପିଟର ଡଡ୍ୱେଲ୍, ପ୍ରଫେସର ରୁଡ଼ି କାଲିନ୍ ଓ ପ୍ରଫେସର୍ ଜେରୀ ୱାଇଲଡ୍ ମଧ୍ୟ ପରୀକ୍ଷକ ଥିଲେ। କୁଇନ୍ସର ସମାଜ ବିଜ୍ଞାନ ବିଭାଗର ଜଣେ ପ୍ରଫେସର ଆସିଥିଲେ।

ମୋ ଜୀବନର କେତେଗୁଡ଼ିଏ ଆନନ୍ଦପୂର୍ଣ୍ଣ ସଂଯୋଗ ହେଉଛି ମଇ ୮ ତାରିଖ। ୧୯୭୬ ମସିହାର ଏହି ଦିନରେ ମୁଁ ରାଜ୍ୟଗୋଷ୍ଠୀ ବୃତ୍ତିର ସଫଳତା ବାର୍ତ୍ତା ପାଇଥିଲି। ୧୯୮୧ ମସିହାର ଏହି ଦିନରେ ମୋ ପି.ଏଚ୍.ଡ଼ି. ଡିଗ୍ରୀର ମୌଖିକ ପରୀକ୍ଷାର ଦିନ। ପୂର୍ବରୁ ପରୀକ୍ଷକମାନେ ଗବେଷଣା ସନ୍ଦର୍ଭଟି ପରୀକ୍ଷା କରି ସବୁଜ ସଙ୍କେତ ଦେଇଥାଆନ୍ତି। ତଥାପି ଏକ ନିର୍ଦ୍ଦିଷ୍ଟ ଦିନରେ ମୌଖିକ ପରୀକ୍ଷା ହୁଏ। ମୋ କାର୍ଯ୍ୟର ସାରବତ୍ତା ଓ ମୌଳିକତା ଉପସ୍ଥାପନ କଲା ପରେ ପରୀକ୍ଷକମାନଙ୍କର ପ୍ରଶ୍ନର ଉତ୍ତର ଦେଇ ସନ୍ତୋଷଜନକ ସ୍ଥିତି ତିଆରି କରିବାକୁ ହୁଏ। ସେଦିନ ମଧ୍ୟ ତାହାହିଁ ହେଲା। ମୋର ଉପସ୍ଥାପନ ପରେ କକ୍ଷର ବାହାରେ ପାଞ୍ଚମିନିଟ୍ ଅପେକ୍ଷା କରିବାକୁ କୁହାଗଲା। ପାଞ୍ଚମିନିଟ୍ ପରେ ବିଭାଗୀୟ ମୁଖ୍ୟ ହସ ହସ ମୁଖରେ କକ୍ଷରୁ ବାହାରିଆସି ସଫଳତା ପାଇଁ ଅଭିନନ୍ଦନ ଜଣାଇଲେ ଏବଂ କରମର୍ଦ୍ଦନ କଲେ। ତା'ପରେ ମୁଁ କକ୍ଷ ମଧ୍ୟକୁ ପ୍ରବେଶ କରି ସମସ୍ତଙ୍କ ସହିତ କରମର୍ଦ୍ଦନ କଲି। କୁଇନ୍ସ ବିଶ୍ୱବିଦ୍ୟାଳୟର ଡକ୍ଟରେଟ୍ ଉପାଧି ପାଇବାର ଯୋଗ୍ୟତା ଘୋଷିତ ହେଲା।

ମୁଁ ସଙ୍ଗେ ସଙ୍ଗେ ଫୋନ୍ ଯୋଗେ ଖୁସିର ଖବରଟି ଅଞ୍ଜୁକୁ ଜଣାଇଦେଲି। ପ୍ରଫେସର୍ ବେରୀ ମଧ୍ୟ ଅଞ୍ଜୁକୁ ଜଣାଇଲେ ଏବଂ ସନ୍ଧ୍ୟାରେ ତାଙ୍କ ଘରେ ରାତ୍ରିଭୋଜନରେ ଏକାଠି ହେବା ପାଇଁ ଆମନ୍ତ୍ରଣ ଜଣାଇଲେ। ଜନ୍ ବେରୀ, ପ୍ରଫେସର୍ ଗୁଡ଼ଏନଫ୍ ଏବଂ ମୁଁ ନିକଟସ୍ଥ ବୋଟ୍ କ୍ଲବକୁ ମଧ୍ୟାହ୍ନ ଭୋଜନ ପାଇଁ ବାହାରିଗଲୁ। ଜନ୍ ବେରୀ ବୋଟ୍ କ୍ଲବର ସଦସ୍ୟ ହୋଇ ଥିବାରୁ ସେ ଏଠାରେ ସୁବନ୍ଦୋବସ୍ତ କରିଥିଲେ। ସନ୍ଧ୍ୟା ସମୟରେ ପୁନଶ୍ଚ ଜନ୍ ବେରୀଙ୍କ ବାସଭବନରେ ବେରୀଙ୍କ ପରିବାରର ଲୋକେ, ପ୍ରଫେସର୍ ଗୁଡ୍ଏନଫ୍ ଏବଂ ଆମେ ରାତ୍ରି ଭୋଜନ ପାଇଁ ଏକତ୍ରିତ ହେଲୁ। ମୋର କେତେଜଣ ଅନ୍ତରଙ୍ଗ ବନ୍ଧୁ ଏବଂ ବେରୀ ପରିବାରର ଅନ୍ତରଙ୍ଗ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରା ଯାଇଥିଲା। ପ୍ରଫେସର୍ ବେରୀଙ୍କ ପ୍ରଥମ ପି.ଏଚ୍.ଡ଼ି. ସ୍କଲାର୍ ସ୍ୱୀକୃତିର ଉତ୍ସବ ପାଳନ ରୂପେ ରାତ୍ରିଭୋଜନର ଏକ ଗୁରୁତ୍ୱ ରହିଥିଲା।

ରାଜ୍ୟଗୋଷ୍ଠୀ ସଂସ୍ଥା ମୋର ମୌଖିକ ପରୀକ୍ଷା ପରେ ମୁଁ ଆଉ କେତେଦିନ ରହିବାକୁ ଚାହୁଁଛି ଏବଂ ଫେରିବା ସମୟରେ ଆଉ କେଉଁ ସ୍ଥାନକୁ ଯିବାକୁ ଚାହୁଁଛି, ତାହାର ସୂଚନା ମାଗିଥିଲେ। ମୁଁ ଗୋଟିଏ ସପ୍ତାହ ପରେ ଯିବାକୁ ଚାହୁଁଛି ଏବଂ ଯିବା ବାଟରେ ପ୍ୟାରିସ୍‌ରେ ଗୋଟିଏ ସପ୍ତାହ ଓ ଲଣ୍ଡନରେ ଗୋଟିଏ ସପ୍ତାହ କାଟିବାର ଇଚ୍ଛା ପ୍ରକାଶ କରିଥିଲି। ସେହି ଅନୁସାରେ ରାଜ୍ୟଗୋଷ୍ଠୀ ସଂସ୍ଥା ମଇ ୧୫ ତାରିଖରେ ଆମର ପ୍ୟାରିସ୍ ଯାତ୍ରାର ବ୍ୟବସ୍ଥା କରିଥିଲେ।

ବିଦାୟର ମୁହୂର୍ତ୍ତ ସବୁବେଳେ କରୁଣ। ପ୍ରାୟ ଚାରିବର୍ଷ ନ'ମାସ କମ୍ ସମୟ ନୁହେଁ, ଅତି ବେଶୀ ସମୟ ମଧ୍ୟ ନୁହେଁ। ତଥାପି କିଙ୍ଗସ୍ଟନ ଛାଡ଼ିବା ମୁହୂର୍ତ୍ତ ପାଖେଇ ଆସିବା ମାତ୍ରେ ଆମେ ଭାବପ୍ରବଣ ହୋଇଉଠିଲୁ। ଶେଷ ଦିନେ ଦୁଇଦିନ ହାଫିଜ୍ ଭାଇ ଓ ନାଜ୍‌ମାଦି ଦିଦି ତାଙ୍କ ଘରେ ରହିବା ପାଇଁ କହିଲେ। ତାହାହିଁ କଲୁ। ପୁରୋହିତ୍ ବାବୁ, ବିନୁଦା ଓ ରୁମାଦି, ସେନ୍‌ଦା ଓ ମାୟାଦି ଆମକୁ ଦେଖା କରିବାକୁ ଆସିବା ସମୟରେ ଆମ ଆଖିର ପତା ଓଦା ହେଉଥିଲା। ସେତେବେଳେ ଶଙ୍କରଦା ଓ ମୀରା କିଙ୍ଗସ୍ଟନ ଛାଡ଼ି ଯୁକ୍ତରାଷ୍ଟ୍ର ଆମେରିକା ଚାଲି ଯାଇଥିଲେ। ଶଙ୍କରଦା ଗୋଟିଏ ନୂଆ ଚାକିରି ପାଇଥିଲେ। ତଥାପି ତାଙ୍କର ନବଜାତ ପୁତ୍ରକୁ (ଶୁଭ)ନେଇ କିଙ୍ଗସ୍ଟନ ଆସିଲେ ଆମକୁ ବିଦାୟ ଜଣାଇବୁ। ତାଙ୍କର କଲିକତା ବାସଭବନ ଯିବା ପାଇଁ ମୀରା ବାରମ୍ବାର ଅନୁରୋଧ କଲା। ପ୍ରସାଦ ଭାଇ ଓ ଶଶୀ ମଧ୍ୟ କିଙ୍ଗସ୍ଟନ ଛାଡ଼ି ନୂଆ ଚାକିରି ପରିପ୍ରେକ୍ଷୀରେ ଟରଣ୍ଟୋ ଚାଲି ଯାଇଥିଲେ। ସେମାନେ ଦେଖା କରିବା ପାଇଁ ଟରଣ୍ଟୋ ବିମାନ ବନ୍ଦର ଆସିଲେ ଏବଂ ଆମେ ବିମାନରେ ବସିବା ପର୍ଯ୍ୟନ୍ତ ଆମକୁ ସଙ୍ଗ ଦେଲେ। ଆମର ଜଣେ ପ୍ରତିବେଶୀ ଥିଲେ ଜୋସେଫ୍ ଓ ତାଙ୍କର ପତ୍ନୀ ମାଗୀ। ଜୋସେଫ୍ ମଝିରେ ମଝିରେ ତାଙ୍କ କାର୍‌ରେ ଟରଣ୍ଟୋ ଯାଆନ୍ତି। ମଇ ୧୫ ତାରିଖ ଦିନ ସେ ଖୁସିରେ କହିଲେ ଯେ ସେ ଆମର ସମସ୍ତ ବ୍ୟାଗ୍ ସହ ଆମକୁ ଟରଣ୍ଟୋ ବିମାନ ବନ୍ଦରରେ ଛାଡ଼ିଦେବେ। କିଙ୍ଗସ୍ଟନରୁ ପ୍ରତିଦିନ ଗୋଟିଏ ବସ୍ ବିମାନ ବନ୍ଦର ଉଦ୍ଦେଶ୍ୟରେ ଯାଇଥାଏ। ମାତ୍ର ଜୋସେଫ୍‌ଙ୍କ ହାର୍ଦ୍ଦିକତା ଫଳରେ ଆମେ ସୁବିଧାରେ ବିମାନ ବନ୍ଦରରେ ପହଞ୍ଚିଲୁ। ଆମେ ବିମାନକୁ ଯିବା ପର୍ଯ୍ୟନ୍ତ ପ୍ରସାଦ ଭାଇ ଓ ଜୋସେଫ୍‌ଙ୍କ ପରିବାର ଆମ ପାଖରେ ରହି ଗପସପ କରୁଥିଲେ। ବିଦାୟ ମୁହୂର୍ତ୍ତର ଦୁଃଖ କିଛିଟା ହାଲୁକା ହେବାରେ ଏହା କାମକଲା।

ଆମର ବନ୍ଧୁ ଶୁଭେଚ୍ଛୁଙ୍କଠାରୁ ବିଦାୟ ନେଇ ଆମେ ଏୟାର୍ କାନାଡ଼ାର ବିମାନରେ ଟରଣ୍ଟୋରୁ ପ୍ୟାରିସ୍ ଆସିଲୁ। ପ୍ୟାରିସ୍ ଓ ଲଣ୍ଡନରେ ଆନନ୍ଦମୟ ମୁହୂର୍ତ୍ତ ସବୁ କିପରି କଟିଲା, ତାହା ଅନ୍ୟ ପରିଚ୍ଛେଦରେ ବର୍ଣ୍ଣନା କରିଛି। ୧୯୮୧ ମସିହା

ମଇମାସର ଶେଷ ସପ୍ତାହରେ ଆମେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲୁ। ଲଣ୍ଡନ ବିମାନ ବନ୍ଦର ଛାଡ଼ିବା ପରେ କଲିକତା ବିମାନ ବନ୍ଦରରେ ପହଞ୍ଚିବା ପର୍ଯ୍ୟନ୍ତ ଦୀର୍ଘ ସାତଆଠ ଘଣ୍ଟା ସ୍ମୃତିଚାରଣ ମଧ୍ୟରେ ହିଁ କଟିଥିଲା। (ନିଦ୍ରା ପରି ବିଶ୍ରାମ ସମୟକୁ ବାଦ୍ ଦେଇ) ଯେଉଁ ପ୍ରଶ୍ନଟି ସ୍ମୃତି ଭଣ୍ଡାରକୁ ଆନ୍ଦୋଳିତ କରିଥିଲା, ତାହା ହେଉଛି ମୁଁ କ'ଣ ନେଇ ସ୍ୱଦେଶକୁ ଫେରୁଛି ?

**ଶିକ୍ଷା ଓ ଦୀକ୍ଷା**

ଫେରିବା ସମୟରେ ଶିକ୍ଷାଗତ ଉତ୍କର୍ଷ ସମ୍ପର୍କରେ ଯେଉଁ ରଶ୍ମିଟି ଉଙ୍କି ମାରୁଥିଲା, ଆଜି ତାହା ସୌରଶକ୍ତିର ମାନ୍ୟତା ନେଇଛି। ପ୍ରଥମତଃ ମୁଁ ଅନୁଭବ କଲି ଯେ କାନାଡ଼ାରେ (ବୃହତ୍ତର ଦୃଷ୍ଟିକୋଣରୁ ଉତ୍ତର ଆମେରିକାର ବିଶ୍ୱବିଦ୍ୟାଳୟର ପରମ୍ପରା ଅନୁଯାୟୀ) ମୁଁ ଯେଉଁ ତାଲିମ ପାଇଲି, ତାହା ଆମ ଦେଶରେ ସମ୍ଭବ ହୋଇ ନ ଥାନ୍ତା। ପ୍ରଥମ ଦୁଇବର୍ଷ ପୁଙ୍ଖାନୁପୁଙ୍ଖ ଭାବରେ ଗବେଷଣାର ପଦ୍ଧତି ଶିକ୍ଷା ଦିଆଯାଏ। ଗବେଷଣା ପାଇଁ ନିଜକୁ କିପରି ପ୍ରସ୍ତୁତ କରାଯିବ, କେଉଁ ପ୍ରକାର ପ୍ରଶ୍ନସବୁ ଗବେଷଣାର ଅନ୍ତର୍ଭୁକ୍ତ ହୋଇପାରିବ ଏବଂ କମ୍ପ୍ୟୁଟର ପରି ସହାୟକ ଉପାଦାନ କିପରି ବିନିଯୋଗ କରାଯିବ, ସେ ବିଷୟରେ ପର୍ଯ୍ୟାପ୍ତ ତାଲିମ ଦିଆଯାଏ।

ଏ ପ୍ରକାର ତାଲିମର ସୁଫଳ ମୁଁ ପରେ ଉପଲବ୍ଧି କଲି। ପ୍ରଶିକ୍ଷଣର ଉତ୍କର୍ଷ ହିଁ ମୋତେ ବିଭିନ୍ନ ଶୃଙ୍ଖଳାରୁ ଆସିଥିବା ଛାତ୍ରଛାତ୍ରୀମାନଙ୍କର ପି.ଏଚ୍.ଡ଼ି. ଗବେଷଣା କାର୍ଯ୍ୟରେ ମାର୍ଗଦର୍ଶକର ଭୂମିକା ନେବାର ସାମର୍ଥ୍ୟ ଯୋଗାଇଲା। ପରବର୍ତ୍ତୀ ପର୍ଯ୍ୟାୟରେ କେବଳ ମନସ୍ତତ୍ତ୍ୱ ନୁହେଁ, ଗୃହବିଜ୍ଞାନ, ସମାଜ ବିଜ୍ଞାନ, ଶିକ୍ଷା, ଆଇନ ଓ ପରିଚାଳନା ବିଜ୍ଞାନରେ ଗବେଷଣା କରୁଥିବା ଛାତ୍ରଛାତ୍ରୀମାନଙ୍କୁ ସହାୟତା ପ୍ରଦାନ କରିପାରିଥିଲି। କୁଇନ୍ସ୍ ବିଶ୍ୱବିଦ୍ୟାଳୟରେ ଗବେଷଣାର ପଦ୍ଧତି ସମ୍ପର୍କରେ ଆମକୁ ଯେଉଁ ତାଲିମ ଦିଆ ଯାଇଥିଲା, ତାହାର ପ୍ରଭାବର ପରିସୀମା ଖୁବ୍ ବିସ୍ତୃତ ଥିଲା।

ମୋର ଦ୍ୱିତୀୟ ବିଶିଷ୍ଟ ଉପଲବ୍ଧି ହେଉଛି ପ୍ରଫେସରମାନେ ଶ୍ରେଣୀଗୃହରେ ଯେଉଁ ଶିକ୍ଷା ଦେଉଥିଲେ ତାହାଠାରୁ ଅଧିକ ଶକ୍ତିଶାଳୀ ହେଉଛି ସେମାନଙ୍କ ଆଚରଣରେ ପ୍ରତିଫଳିତ ହେଉଥିବା ନିଷ୍ଠା। ସେମାନେ ଯେପରି ପ୍ରସ୍ତୁତ ହୋଇ ଆସନ୍ତି ପ୍ରଶ୍ନ ପଚାରିଲେ ଯେପରି ଆନ୍ତରିକତାର ସହ ଉତ୍ତର ଦିଅନ୍ତି ଏବଂ କର୍ମତତ୍ପରତାର ସହିତ ବାହ୍ୟିକ କାମ (ଯଥା: ଗବେଷଣାଗାରର କାର୍ଯ୍ୟ)କରନ୍ତି, ତାହା ଦେଖିବାର କଥା। ସେମାନଙ୍କ ନିଷ୍ଠା ଦେଖିଲେ ମନସ୍ତତ୍ତ୍ୱକୁ ଅଧିକା ଭଲ ପାଇବାକୁ ଇଚ୍ଛା ହୁଏ, ଛାତ୍ରଛାତ୍ରୀମାନଙ୍କ ସହ ଅଧିକ ସମୟ କାଟିବାକୁ ମନ ଡାକେ ଏବଂ ଲାଇବ୍ରେରୀରେ ବେଶୀ ସମୟ ପଢ଼ିବାକୁ ଅଭୀପ୍ସା ଜନ୍ମେ। ମାନସିକତାର

ଏପରି ବ୍ୟାପ୍ତି ଆଉ ଗଭୀରତାର ବୀଜ ଆମ ଭିତରେ ବୁଣା ହେଲା ପରି ମନେହେଲା।

ପାଠ ଯାହା ଶିଖିଲୁ ତାହାର ତ ତୁଳନା ନାହିଁ। କିନ୍ତୁ ଶିକ୍ଷାଠାରୁ ଦୀକ୍ଷା କମ୍ ମହାର୍ଘ ନୁହେଁ। "ମୁଁ ଏ କଥା ଜାଣିନାହିଁ"- ଏହା କହିବାକୁ ଆମ ଦେଶର ଲୋକେ କୁଣ୍ଠାବୋଧ କରନ୍ତି। କିନ୍ତୁ ସେ ସବୁ ଦେଶରେ ଶିକ୍ଷକ ଶିକ୍ଷୟତ୍ରୀଙ୍କ ମନ ଖୁବ୍ ଉନ୍ମୁକ୍ତ: ନିଜେ ଜାଣି ନ ଥିଲେ ବିନମ୍ରତାର ସହିତ ସ୍ୱୀକାର କରିବେ। ଛାତ୍ର ବା ଛାତ୍ରୀଟି ନୂଆ ସୂଚନା ଦେଲେ ଆଗ୍ରହର ସହିତ ଗ୍ରହଣ କରିବେ। କେଉଁ ସୂତ୍ରରୁ ତଥ୍ୟଟି ଜାଣିହେବ, ତାହାର ସୂଚନା ଦେବେ।

କାନାଡ଼ା ହେଉ ବା ଆମେରିକା ହେଉ ବିଶ୍ୱବିଦ୍ୟାଳୟ ଶିକ୍ଷାର ମୌଳିକ ଲକ୍ଷ୍ୟ ହେଉଛି ମୁକ୍ତ ଚେତନାର ବିକାଶ। ଆମେ ସବୁ ଲକ୍ଷ୍ୟ କରୁ ଯେ ଶ୍ରେଣୀରେ କିମ୍ବା ବାହାରେ କୌଣସି ବିଷୟ ଆଲୋଚିତ ହେବା ସମୟରେ କୌଣସି ମତ ବା କୌଣସି ବ୍ୟକ୍ତି ପ୍ରତି ତାଚ୍ଛଲ୍ୟ ପ୍ରକାଶ କରାଯାଏ ନାହିଁ। ପ୍ରତିଟି ମନ୍ତବ୍ୟରେ ଅନ୍ତତଃ ସକାରାତ୍ମକ ଦିଗ କ'ଣ ରହିଛି, ତାହାର ଚିହ୍ନଟ ପାଇଁ ସମସ୍ତେ ପ୍ରୟାସ କରନ୍ତି। ଫଳରେ ସୃଜନଶୀଳତାର ଉନ୍ମେଷ ଓ ବିକାଶ ସମ୍ଭବପର ହୁଏ।

ଦୀର୍ଘଦିନର ବ୍ୟବଧାନ ପରେ କାନାଡ଼ା ଯାତ୍ରାର ଉପଯୋଗିତାର ଆକଳନ କଲାବେଳେ ମୁଁ ସ୍ୱତଃ କୃତଜ୍ଞତାର ଅନୁଭବରେ ନଇଁପଡ଼େ। କୁଇନ୍ସ କେବଳ ମୋ ବୌଦ୍ଧିକ ବିକାଶର ଏକ ବିଶିଷ୍ଟ ନିର୍ଦ୍ଧାରକ ନୁହେଁ, ଏହା ମୋ ବିଶ୍ୱ ଦୃଷ୍ଟିଭଙ୍ଗୀର ଏକ ଅନନ୍ୟ ସ୍ଥପତି।

❖

(୨୮)

# ପୁନଶ୍ଚ ଉତ୍କଳ

ଉତ୍କଳ ବିଶ୍ୱବିଦ୍ୟାଳୟକୁ ଫେରି ଆସିବାରେ କୌଣସି ଦୁଃଖ ବା ଗ୍ଲାନି ନ ଥିଲା। ମୋର ପ୍ରିୟ ଛାତ୍ରଛାତ୍ରୀ ଓ ସହକର୍ମୀମାନଙ୍କଠାରୁ କିଛି ବର୍ଷ ଦୂରେଇ ଯାଇଥିଲି। କିନ୍ତୁ ଏହି ସମୟତକ ଆତ୍ମବିକାଶରେ ବ୍ୟୟିତ ହୋଇଛି ଏପରି ଏକ ବିଶ୍ୱାସ ମନରେ ଶାନ୍ତି ଓ ଶକ୍ତି ଦେଉଥିଲା। ୧୯୮୧ ମଇ ମାସର ଶେଷ ସପ୍ତାହରେ ଅଞ୍ଜୁ ଓ ମୁଁ ଲଣ୍ଡନର ହିଥ୍ରୋ ବିମାନ ବନ୍ଦର ଛାଡ଼ି ଖରାବେଳେ କଲିକତା ବିମାନ ବନ୍ଦରରେ ପହଞ୍ଚିଲୁ।

ଦୀର୍ଘ ଚାରିପାଞ୍ଚ ବର୍ଷ ପରେ ଫେରୁଥିବାରୁ ଆମ ସହିତ ଚାରିପାଞ୍ଚୋଟି ବଡ଼ ବଡ଼ ସୁଟ୍‌କେଶ ଥିଲା। ଅସୁବିଧା ଏଡ଼ାଇବା ପାଇଁ ମୁଁ ପୂର୍ବରୁ ବଳରାମ ଭାଇଙ୍କୁ ମୋର ଫେରିବାର ସମସ୍ତ ନିର୍ଘଣ୍ଟ ଯୋଗାଇଥିଲି। କଲିକତାରେ ପହଞ୍ଚି ଦେଖିଥିଲି ଗୋଟିଏ ସ୍ୱାଗତ ଦଳ ଆମକୁ ଅପେକ୍ଷା କରିଛି। ବଳରାମ ଭାଇଙ୍କ ସହିତ ତାଙ୍କର ବନ୍ଧୁ କୁନୁଦା ଓ ଅଂଶୁଦା ଅଛନ୍ତି। ଅଂଶୁଦା ମୋର ମଧ ବନ୍ଧୁ। ବଳରାମ ଭାଇଙ୍କ ସାନପୁଅ ଜୀତୁ ଆସିଛି। ଭାଇଙ୍କର କଲିକତାରେ ରହୁଥିବା ବନ୍ଧୁ ନାୟାର ବାବୁ ମଧ ଆସିଛନ୍ତି। ନାୟାରବାବୁଙ୍କ ଘରେ ଅଞ୍ଜୁ ଓ ମୁଁ ରହିବା ପାଇଁ ବ୍ୟବସ୍ଥା ହୋଇଛି। ଅନ୍ୟମାନେ ହୋଟେଲ୍‌ରେ ରହିବାର ବନ୍ଦୋବସ୍ତ ରହିଛି। କଷ୍ଟମସ୍ କ୍ଲିଅରିଂ ପାଇଁ ସମୟ ଲାଗିବ। ଦିନେ ଦୁଇଦିନ ରହିବାକୁ ହେବ। ତାହାହିଁ ହେଲା। ଆମେ ସମସ୍ତେ କଲିକତାରେ ଦୁଇଟି ରାତି କଟାଇବା ପରେ ତୃତୀୟ ଦିନ ପୁରୀ ଏକ୍ସପ୍ରେସ୍‌ରେ କଟକ ଫେରିଲୁ।

ପରିଚିତ ସ୍ଥାନ, ପରିଚିତ ବ୍ୟକ୍ତି ବିଶେଷ। କିନ୍ତୁ ବେଶ୍ ଗହଳି ଚହଳି। ଆନନ୍ଦ ଉତ୍ସବ। ଆମକୁ ଦେଖି ସମସ୍ତେ ଖୁସୀ। ଆମକୁ ବି ଖୁସୀ ଲାଗୁଥାଏ। ବିଶ୍ୱବିଦ୍ୟାଳୟର ଗ୍ରୀଷ୍ମାବକାଶ ଚାଲିଥିବାରୁ କାମର ଚାପ ନ ଥାଏ। ପ୍ରଥମେ ମୋର ପିଇସୀଙ୍କ ପ୍ରତି କୃତଜ୍ଞତାରେ ମୁଁ ନତଃମସ୍ତକ ହେଲି। ମୋର ବୁଢ଼ୀମା' ବଞ୍ଚିଛନ୍ତି ଏବଂ ଦୀର୍ଘ ଏତେ ବର୍ଷ ପିଇସୀ ତା'ର ଦାୟିତ୍ୱ ନେଇଛନ୍ତି। ଏପରି ମନୋଭାବ ପାଖରେ ଆଉ ସବୁ କ୍ଷୁଦ୍ର। ଜୀବନର ଏ ଋଣ କିପରି ପରିଶୋଧ କରାଯିବ, ତା'ର ବାଟ ମୋତେ ଅଜଣା।

ଉତ୍କଳ ବିଶ୍ୱବିଦ୍ୟାଳୟରେ ଗ୍ରୀଷ୍ମାବକାଶ ରହିଥିଲେ ମଧ କୌଣସି ଏକ ଦିନ ବାଣୀବିହାର ଆସି ଔପଚାରିକ ଭାବରେ କାର୍ଯ୍ୟରେ ଯୋଗ ଦେବାର କାଗଜପତ୍ର

ଦାଖଲ କଲି। ସେହି ସମୟରେ ଆମର ମନସ୍ତତ୍ତ୍ୱ ବିଭାଗରେ ଦୁଇ ତିନୋଟି ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା। ପ୍ରଥମଟି ଦୁଃଖଦ ଘଟଣା। କାନାଡ଼ା ଛାଡ଼ିବାର ପ୍ରାୟ ଗୋଟିଏ ମାସ ପୂର୍ବରୁ ମୁଁ ଗୋଟିଏ ଦାରୁଣ ଦୁଃସମ୍ବାଦ ପାଇଥିଲି। ତାହା ହେଉଛି ଆମ ବିଭାଗର ପ୍ରିୟ ଶିକ୍ଷକ ପୂର୍ଣ୍ଣେନ୍ଦୁ ଲାଲ୍ ବୋଷ୍‌ଙ୍କ ମୃତ୍ୟୁ ସମ୍ବାଦ। ୧୯୮୧ ମସିହାର ମାର୍ଚ୍ଚ ମାସରେ ସେ ଅନ୍ୟ ଜଣେ ସହକର୍ମୀ ନିରଞ୍ଜନ ବେଉରାଙ୍କ ସହିତ ବାଣୀବିହାରରୁ ମୋଟରସାଇକେଲ୍‌ରେ କଟକ ଫେରୁଥିବା ସମୟରେ ଦୁର୍ଘଟଣା ଘଟି ତାଙ୍କର ମୃତ୍ୟୁ ଘଟିଛି। କେବଳ ମନସ୍ତତ୍ତ୍ୱ ବିଭାଗ ପାଇଁ ନୁହେଁ, ମୋ ପାଇଁ ମଧ୍ୟ ଏହା ଏକ ବ୍ୟକ୍ତିଗତ କ୍ଷତି। ପୂର୍ଣ୍ଣେନ୍ଦୁ ବାବୁ କଟକରେ ଆମର ପଡ଼ୋଶୀ। ପୁଣି ତାଙ୍କର ମିଷ୍ଟବାଦିତା ଆଉ ସହନଶୀଳତା ଅବିସ୍ମରଣୀୟ।

ଅଧ୍ୟାପକମଣ୍ଡଳୀର ସଂଗଠନ ଦୃଷ୍ଟିରୁ କିଛିଟା ପରିବର୍ତ୍ତନ ଘଟିଥିଲା। ପ୍ରଫେସର୍ ରାଧାନାଥ ରଥ ତାଙ୍କର ବିଭାଗୀୟ ଦାୟିତ୍ୱରୁ ଅବସର ଗ୍ରହଣ କରିଥିଲେ। ବିଧି ଅନୁଯାୟୀ ଡକ୍ଟର ରଥ ୧୯୮୦ ମସିହା ମାର୍ଚ୍ଚ ମାସରେ ଅବସର ଗ୍ରହଣ କରିବାର କଥା। ମାତ୍ର ୧୯୮୦ ମସିହାରେ ଏକ ଆନ୍ତର୍ଜାତୀୟ ସମ୍ମିଳନୀ ହେଉଥିବାରୁ ବିଶ୍ୱବିଦ୍ୟାଳୟ ଅଧିକା ଏକ ବର୍ଷ ଦାୟିତ୍ୱରେ ରହିବା ପାଇଁ ଅନୁମୋଦନ ଦେଇଥିଲେ। ଯାହାହେଉ ସେ ୧୯୮୧ ମସିହା ମାର୍ଚ୍ଚ ମାସରେ ଅବସର ଗ୍ରହଣ କଲେ। ବିଭାଗରେ ପୂର୍ବ ପରି କସ୍ତୁରୀ ଅପା ଓ ଶାନ୍ତି ଅପା ଅଧ୍ୟାପକ ପଦବୀରେ ରହିଥିଲେ। ମୋର ଫେରିବା ପୂର୍ବରୁ ଡକ୍ଟର ଅଜିତ୍ କୁମାର ମହାନ୍ତି କାନାଡାର ଆଲବର୍ଟା ବିଶ୍ୱବିଦ୍ୟାଳୟରୁ ଏବଂ ଡକ୍ଟର ଶ୍ରୀକାନ୍ତ ଦାଶ କୁଇନ୍ସ ବିଶ୍ୱବିଦ୍ୟାଳୟରୁ ଉଚ୍ଚ ଶିକ୍ଷା ହାସଲ କରି ଫେରିଥିଲେ। ଏହା ମଧ୍ୟରେ ସୁଧାକର ରଥ ଭାରତ ସରକାରଙ୍କ ବୃତ୍ତି ଲାଭ କରି କୁଇନ୍ସ ଯାଇଥିଲେ। ମୋର ସହପାଠୀ ଓ ସହକର୍ମୀ ଉଦୟ ନାଥ ଦାଶ ମଧ୍ୟ କାନାଡ଼ା ଆଲ୍‌ବର୍ଟା ବିଶ୍ୱବିଦ୍ୟାଳୟ ଯାଇଥିଲେ ଏବଂ ମୋ ଫେରିବାର ଗୋଟିଏ ବର୍ଷ ପରେ ସେ ଫେରିଲେ। ମୋର ନମସ୍ୟ ପ୍ରଫେସର୍ ବିଶ୍ୱ ବନ୍ଧୁ ଚାଟାର୍ଜୀ ଶିକ୍ଷା ମନୋବିଜ୍ଞାନର ପ୍ରଫେସର ପଦରେ ପୂର୍ବପରି ରହିଥିଲେ।

୧୯୮୦ ମସିହାରେ ମନୋବିଜ୍ଞାନ ପାଇଁ ଏକ ଚମକପ୍ରଦ ସଫଳତା ମିଳିଥିଲା। ତାହା ହେଉଛି ଅଗ୍ର ଶିକ୍ଷା କେନ୍ଦ୍ରର (Centre of Advanced Study in Psycholgy)ମାନ୍ୟତା। ସେ ସମୟର ପରିପ୍ରେକ୍ଷୀରେ ଭାରତୀୟ ଶିକ୍ଷା ଜଗତରେ ପ୍ରଫେସର ରାଧାନାଥ ରଥ ଥିଲେ ଏକ ବିରାଟ ନେତୃତ୍ୱ। ମନସ୍ତତ୍ତ୍ୱ ବିଭାଗକୁ ଏକ ନୂଆ ସମ୍ମାନ ନୂଆ ପରିଚିତି ଦେବା ପାଇଁ ସେ ବହୁଦିନରୁ ପ୍ରୟାସ ଆରମ୍ଭ କରିଥିଲେ। ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଗୋଟିଏ ଯୋଜନା ସେତେବେଳେ କାର୍ଯ୍ୟକାରୀ ହେଉଥିଲା। ବ୍ୟବସ୍ଥା ଥିଲା ଯେ କୌଣସି ଏକ ବିଭାଗର ମୂଲ୍ୟାୟନ

କରାଯାଇ ତାକୁ ସ୍ୱତନ୍ତ୍ର ଅନୁଦାନର ପ୍ରାପ୍ୟ (DSA ବା Department of Special Assistances)ଦିଆଯାଇ ପାରିବ। ଏ ସ୍ଥିତିରେ କିଛି ବର୍ଷ କାର୍ଯ୍ୟ କଲାପରେ ପୁନଶ୍ଚ ମୂଲ୍ୟାୟନ କରାଯିବ। ଶିକ୍ଷା ଓ ଗବେଷଣା ସ୍ତରରେ ଉତ୍କର୍ଷ ପ୍ରଦର୍ଶନ କଲେ ସେ ବିଭାଗକୁ ଅଗ୍ରଶିକ୍ଷା କେନ୍ଦ୍ରର ମାନ୍ୟତା ଦିଆଯିବ। ସମଗ୍ର ଦେଶରେ ପ୍ରତିଟି ବିଷୟରେ ମାତ୍ର ଗୋଟିଏ କି ଦୁଇଟି ଅଗ୍ର ଶିକ୍ଷା କେନ୍ଦ୍ରକୁ ସ୍ୱୀକୃତି ଦିଆଯିବ।

ସୌଭାଗ୍ୟବଶତଃ ମୁଁ କାନାଡ଼ା ଯିବାର ଅବ୍ୟବହିତ ପୂର୍ବରୁ ଗୋଟିଏ ମୂଲ୍ୟାୟନ ସମିତି ଆମ ବିଭାଗକୁ ଆସିଥିଲେ। ସେମାନଙ୍କ ଆଲୋଚନା ସମୟରେ ମୁଁ ମଧ୍ୟ ଉପସ୍ଥିତ ଥିଲି। କାନାଡ଼ା ପହଞ୍ଚିବାର ଅଳ୍ପ ସପ୍ତାହ ପରେ ଶୁଣିବାକୁ ପାଇଲି ଯେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବିଭାଗକୁ ସ୍ୱତନ୍ତ୍ର ସହାୟତାର ମାନ୍ୟତା ପ୍ରଦାନ କରିଛି। ପୁଣି ଅତି ଆନନ୍ଦର ବିଷୟ ଯେ ୧୯୮୦ ମସିହାରେ ମୁଁ କାନାଡ଼ାରେ ଥିବା ସମୟରେ ଖୁସି ଖବର ମିଳିଲା ଆମର ବିଭାଗଟିକୁ ଅଗ୍ରଶିକ୍ଷାର ସ୍ୱୀକୃତି ମିଳିଛି। ଏହା କମ୍ କଥା ନୁହେଁ। ମନୋବିଜ୍ଞାନ କ୍ଷେତ୍ରରେ ଏହା ଦେଶର ପ୍ରଥମ ଅଗ୍ରଶିକ୍ଷା କେନ୍ଦ୍ର। ଅବଶ୍ୟ ପରବର୍ଷ ଆଲାହାବାଦ୍ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗକୁ ଅଗ୍ରଶିକ୍ଷା କେନ୍ଦ୍ରର ମାନ୍ୟତା ମିଳିଲା। ଉତ୍କଳ ବିଶ୍ୱବିଦ୍ୟାଳୟର ଏକମାତ୍ର ଅଗ୍ର ଶିକ୍ଷା କେନ୍ଦ୍ର ରୂପେ ଏହା ବହୁଦିନ ପର୍ଯ୍ୟନ୍ତ ଗୌରବର ଅଧିକାରୀ ଥିଲା। ନବମ ଦଶକରେ ହିଁ ଦର୍ଶନ ବିଭାଗ ଦ୍ୱିତୀୟ ଅଗ୍ରଶିକ୍ଷା କେନ୍ଦ୍ର ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟର ମାନଚିତ୍ରରେ ସ୍ଥାନ ପାଇଲା।

ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ଗୌରବମୟ ଇତିହାସ ସୃଷ୍ଟିରେ ପ୍ରଫେସର ରାଧାନାଥ ରଥଙ୍କ ବଳିଷ୍ଠ ନେତୃତ୍ୱର ଭୂମିକା ମୁଁ ନିଶ୍ଚୟ ସ୍ମରଣ କରିବି। ମନସ୍ତତ୍ତ୍ୱ ବିଭାଗରେ ପ୍ରବେଶ କରିବା ପୂର୍ବରୁ ମୁଁ ତାଙ୍କୁ "ସାମ୍ମୁଖ୍ୟ" ସାହିତ୍ୟ ପତ୍ରିକାର ସମ୍ପାଦକ ରୂପେ ଜାଣିଥିଲି। ତାଙ୍କର ସାହିତ୍ୟ ପ୍ରୀତି ଓ ସଂଗଠନଧର୍ମୀ କାର୍ଯ୍ୟକୁ ସମ୍ମାନ କରିଥିଲି। ବିଶ୍ୱବିଦ୍ୟାଳୟ ପରିପ୍ରେକ୍ଷୀରେ ତାଙ୍କ ବ୍ୟକ୍ତିତ୍ୱର ଆଉ ଏକ ମହାନ ଦିଗକୁ ସମ୍ମାନ କରିବାକୁ ଶିଖିଲି। ସେ ଅଧ୍ୟାପନା କରିବା ସମୟରେ ମନସ୍ତତ୍ତ୍ୱର ଶିକ୍ଷା ସାମଗ୍ରୀକୁ ଜୀବନଧର୍ମୀ କରି ପାରୁଥିଲେ। ଏଥିପାଇଁ ବିଶ୍ୱବିଦ୍ୟାଳୟ ବାହାରେ ତାଙ୍କର ରଚିତ କେତେକ ପୁସ୍ତକ ବେଶ୍ ଲୋକପ୍ରିୟତା ହାସଲ କରିଥିଲା। ସେ ଛୋଟ ଛୋଟ କଥାରୁ ନିଜକୁ ମୁକ୍ତ ରଖୁଥିଲେ ଏବଂ ମନୋବିଜ୍ଞାନ ବିଭାଗର ବୃହତ୍ତର ଉନ୍ନତି ପାଇଁ ସଦାସର୍ବଦା ଯୋଜନା ଦେଉଥିଲେ। ସହକର୍ମୀମାନଙ୍କଠାରୁ ତାଙ୍କର ଗଭୀର ଶ୍ରଦ୍ଧା ଓ ବିଶ୍ୱାସ ଥିଲା। ତେଣୁ ବିଭାଗୀୟ ମୁଖ୍ୟ ହିସାବରେ ସେ ଯାହାକୁ ଯାହା ଦାୟିତ୍ୱ ଦେଉଥିଲେ ସେମାନେ ନିଷ୍ଠାପର ଭାବରେ କରୁଥିଲେ।

ତାଙ୍କର ଅନନ୍ୟ ନେତୃତ୍ୱ ଶୈଳୀ ଫଳରେ ହିଁ ମନୋବିଜ୍ଞାନ ବିଭାଗ ଏହି ଉଚ୍ଚ ପର୍ଯ୍ୟାୟକୁ ଯାଇ ପାରିଥିଲା।

୧୯୮୧ ମସିହାରେ ବିଶ୍ୱବିଦ୍ୟାଳୟ ଜୀବନରୁ ଅବସର ନେଇ ସେ ଆରାମର ଜୀବନ କାଟିନାହାଁନ୍ତି। ସଂଖ୍ୟାଧିକ ଓଡ଼ିଆ ଉପନ୍ୟାସ ଲେଖିଛନ୍ତି। ପିଲାମାନଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ସ୍ଥାପନ କରି ଛାତ୍ରଛାତ୍ରୀ ଏବଂ ଶିକ୍ଷକଶିକ୍ଷୟିତ୍ରୀଙ୍କୁ ତାଲିମ ଦେଇଛନ୍ତି। ଦୈନନ୍ଦିନ ଜୀବନରେ ଯୋଗାଭ୍ୟାସ ତାଙ୍କୁ ଦୀର୍ଘଜୀବୀ କରିଥିଲା। ସାମାଜିକ ସ୍ତରରେ ସଭାସମିତି ଯୋଗଦାନ ଓ ଅନ୍ୟ ସବୁ ରଚନାତ୍ମକ କାର୍ଯ୍ୟ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ସକ୍ରିୟ ରଖିଥିଲା। ୨୦୧୫ ମସିହା ସେପ୍ଟେମ୍ବର ମାସରେ ଏହି ବିଶାଳ ନେତୃତ୍ୱର ଅବସାନ ଘଟିଛି।

ଔପଚାରିକ ଭାବରେ ବିଭାଗରେ ଯୋଗଦେବାର କାଗଜପତ୍ର ତତ୍‌କାଳୀନ ବିଭାଗୀୟ ମୁଖ୍ୟ ପ୍ରଫେସର୍ ସରୋଜ ମିଶ୍ରଙ୍କ ପାଖରେ ଦାଖଲ କଲାପରେ ନିଜେ ସମୟ କାଟିବାର ବାଟ ଖୋଜିଲି। ଜୁଲାଇ ପ୍ରାରମ୍ଭରେ ବିଶ୍ୱବିଦ୍ୟାଳୟ ଖୋଲିବାର ଘୋଷଣା ରହିଥିଲା। ସ୍ଥିର କଲି ଯେ ବାଣୀବିହାର ନିକଟବର୍ତ୍ତୀ ଅଞ୍ଚଳରେ ପରିବାର ପାଇଁ ଭଡ଼ାଘର ଖୋଜିବି। ସେ ପର୍ଯ୍ୟନ୍ତ କଟକରୁ ଯିବା ଆସିବା କରିବି। ମୁଁ କାନାଡ଼ାରୁ ଫେରିବା ବେଳକୁ ବାଦାମବାଡ଼ିରେ ନୂଆ ବସ୍‌ଷ୍ଟାଣ୍ଡ ବେଶ୍ ସକ୍ରିୟ ହୋଇ ଉଠିଥାଏ। ଅସଂଖ୍ୟ ଘରୋଇ ବସ୍‌ରେ ଚଳାଚଳ ବଢ଼ି ଯାଇଥିବାରୁ ପୂର୍ବ ପରି ଏକମାତ୍ର ରୋଡ୍ ଟ୍ରାନ୍ସପୋର୍ଟ କର୍ପୋରେସନ୍‌ର ବସ୍ ଉପରେ ନିର୍ଭର କରିବାକୁ ପଡୁ ନ ଥାଏ।

ପୂଜା ଜୁନ୍ ମାସଟିରେ ଗ୍ରୀଷ୍ମାବକାଶ ଚାଲି ଥିବାରୁ କ୍ଲାସ ପ୍ରସ୍ତୁତି ଛଡ଼ା ଅନ୍ୟ କିଛି କାମରେ ମନୋନିବେଶ କରିବା ପାଇଁ ସ୍ଥିର କଲି। ବହୁଦିନ ଧରି ଓଡ଼ିଆ ସାହିତ୍ୟ ସହିତ ଭାବ ଆଦାନ ପ୍ରଦାନର ବାଟ ସେପରି ସୁଗମ ନ ଥିଲା। ତେଣୁ ବର୍ତ୍ତମାନ ମନସ୍ଥ କଲି ଯେ ମନୋବୈଜ୍ଞାନିକ ପ୍ରବନ୍ଧ ଲେଖିବି। ପ୍ରଥମ ପ୍ରବନ୍ଧ "ଯୋଗର ମନସ୍ତାତ୍ତ୍ୱିକ ବିଚାର" ପୌରୁଷର ପୂଜା ସଂଖ୍ୟାରେ ପ୍ରକାଶ ପାଇଲା।

ସମଗ୍ର ଜୁନ୍ ମାସଟି ମୁଁ ଲେଖାଲେଖିରେ କଟାଇଲି। ଯେଉଁ ଅଭ୍ୟାସଟି ଟିକେ ଧିମେଇ ଯାଇଥିଲା ତାହା ଏକ ଗତିଶୀଳ ରୂପ ନେଲା। ପରେ ପରେ ଜୁଲାଇରେ ଶିକ୍ଷା ବର୍ଷ ଆରମ୍ଭ ହେଲା ପରେ ମଧ୍ୟ ମୁଁ ମୋର ଲେଖା ଅଭ୍ୟାସଟି ଜାରୀ ରଖିଲି। ବିଶେଷତଃ ରବିବାର ଓ ଶିକ୍ଷାନୁଷ୍ଠାନର ଅନ୍ୟ ସବୁ ଛୁଟି ଦିନମାନଙ୍କରେ ମୁଁ କିଛି ସାହିତ୍ୟ ପତ୍ରପତ୍ରିକା ପାଠ କଲି କିମ୍ବା ପ୍ରବନ୍ଧ ଲେଖିଲି। ଅଳ୍ପ କିଛି ବର୍ଷ ପରେ ଏହାର ସୁଫଳ ଓ ସ୍ୱୀକୃତି ମିଳିଲା। ୧୯୮୩ ମସିହାର ଅଗଷ୍ଟମାସରେ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା "ଜୀବନ ରଙ୍ଗ" ତା'ର ବାର୍ଷିକ ଉତ୍ସବରେ ମୋତେ ସମ୍ବର୍ଦ୍ଧିତ କଲା। ସେହିପରି ୧୯୮୫ ମସିହା ମକର ମିଳନ ଉତ୍ସବରେ "ସହକାର" ମୋତେ

ସମ୍ମାନିତ କରିଥିଲା। ଜୀବନ ରଙ୍ଗ ପତ୍ରିକା ପାଇଁ ସୃଜନଶୀଳତାର ବିଭିନ୍ନ ଦିଗ ସମ୍ପର୍କରେ ମୁଁ ଚାରିପାଞ୍ଚୋଟି ପ୍ରବନ୍ଧ ଲେଖିଥିଲି।

ପୂର୍ବରୁ ସୂଚନା ଦେଇଛି ଯେ ମନୋବିଜ୍ଞାନ ବିଭାଗର ଏକ ନୂତନ ପରିଚିତି ପ୍ରତିଷ୍ଠିତ ହୋଇଥିଲା। ମୋର ଫେରିବା ପୂର୍ବର ପ୍ରଫେସର୍ ରଥ ଆଉ କେତେଜଣ ଯୁବ ଅଧ୍ୟାପକ ଅଧ୍ୟାପିକାଙ୍କୁ ନିଯୁକ୍ତି ଦେଇଥିଲେ। ସେମାନେ ହେଉଛନ୍ତି ନିର୍ଲିପ୍ତା ପଟ୍ଟନାୟକ, ସୁଧାକର ରଥ, ପ୍ରଭାସ ଚନ୍ଦ୍ର ମିଶ୍ର, ଶରତ କୁମାର ପାତ୍ର ଓ ନାରାୟଣ ପତି।

ଗ୍ରୀଷ୍ମାବକାଶ ପରେ ଜୁଲାଇ ଆରମ୍ଭରୁ ମୋର ଅଧ୍ୟାପନା କାର୍ଯ୍ୟ ଆରମ୍ଭ ହେଲା। ଜୁଲାଇ ମାସଟି ମୁଁ କଟକରୁ ଯିବା ଆସିବା କରିବା ପରେ ଅଗଷ୍ଟ ବେଳକୁ ମୁଁ ସହିଦନଗରରେ ଭଡ଼ାଘରଟି ପାଇଗଲି। ଦଶଟା ସାଢ଼େ ଦଶଟା ବେଳକୁ ରିକ୍ସାରେ ବାଣୀବିହାର ଯାଏ ଏବଂ ଚାରିଟା ପାଞ୍ଚଟା ବେଳକୁ ଫେରିଆସେ। ଘରଟିର ଅବସ୍ଥିତି ସୁବିଧାଜନକ ସ୍ଥାନରେ ରହିଥିବାରୁ ନିତିଦିନିଆ ଜୀବନରେ କୌଣସି ଅସୁବିଧା ହେଉ ନ ଥିଲା। ନଭେମ୍ବର ମାସର କାର୍ତ୍ତିକ ପୂର୍ଣ୍ଣିମାର ପୂର୍ବଦିନ ଗୋଟିଏ ଫୋନ୍ ପାଇଲି। ସେତେବେଳେ ଘରେ ଫୋନ୍ ନ ଥିଲା। କିଛି ଦୂରରେ ବଳରାମ ଭାଇଙ୍କ ସାଙ୍ଗ କୁନୁଦା ରହୁଥିଲେ। ତାଙ୍କ ପଡ଼ୋଶୀଙ୍କ ଘରକୁ ଫୋନ୍ କରି ଭାଇ ମୋତେ ଡକାଇଲେ। ମୁଁ ଜାଣିବାକୁ ପାଇଲି ଯେ କାଠଗଡ଼ା ସାହିରେ ମୋର ପିଉସୀଙ୍କ ଘରେ ରହୁଥିବା ମୋର ବୁଢ଼ୀମା'ର ଦେହ ଖୁବ୍ ଅସୁସ୍ଥ। ମୁଁ ତୁରନ୍ତ ବାହାରିଗଲି। ଶେଷ ଅବସ୍ଥା ବୋଲି ସମସ୍ତେ କହିଲେ। ମୋତେ ଶ୍ରୀମଦ୍ ଭଗବତ୍ ଗୀତାର ମୋକ୍ଷ ଯୋଗ ପଢ଼ିବାକୁ କୁହାଗଲା। ମୁଁ ତାହା କଲି। କାର୍ତ୍ତିକ ପୂର୍ଣ୍ଣିମାର ପ୍ରତ୍ୟୁଷରେ ତା'ର ଦେହାନ୍ତ ଘଟିଲା। ଭାଇଙ୍କର ସାଙ୍ଗମାନେ ଓ ଆମେ ଦୁଇ ଭାଇ ଖାନ୍‌ନଗର ଯାଇ ଶେଷକୃତ୍ୟ ସମ୍ପନ୍ନ କଲୁ। ଯେଉଁ ଏକ ଜୀବନ ସହିତ ମୋ ଜୀବନର ଖୁଅଟି ଦୀର୍ଘ ଦିନ ଧରି ଗୁଡ଼େଇ ତୁଡ଼େଇ ଲାଗି ରହିଥିଲା, ସେ ଖୁଅଟି ଛିଣ୍ଡିଗଲା।

ଗତାନୁଗତିକ ଜୀବନରେ ଆନନ୍ଦର ଝଙ୍କାର ଓ ଝଲସ ସୃଷ୍ଟି କରି ୧୯୮୨ ମସିହା ଅକ୍ଟୋବର ୧୨ (ମଙ୍ଗଳବାର) ଦିନ ଆମ ପରିବାରକୁ ଅତିଥିଟି ଆସିଲା। ସେ ହେଉଛି ମୋର କନ୍ୟା ଭୂମିକା ମାନସଙ୍ଗା। ତାକୁ ଆମେ ପଲୀ ବୋଲି ଡାକିଲୁ। ଅବଶ୍ୟ ଆମ ଦୁଇଭାଇଙ୍କ (ଅଚ୍ୟୁତ ଓ ମୁଁ) ପରିବାରରେ ପଲୀ ଜ୍ୟେଷ୍ଠ ସନ୍ତାନ ନୁହେଁ। ମୁଁ କାନାଡ଼ା ଯିବା ପରେ ପରେ ଚାଉଳିଆଗଞ୍ଜରେ (କଟକ) ଅଚ୍ୟୁତର ବିବାହ ହୋଇଥିଲା। ପଲୀର ଜନ୍ମ ସମୟରେ ଅଚ୍ୟୁତ ଓ ସୌରୀ ତିନୋଟି କନ୍ୟା ସନ୍ତାନଙ୍କ (କଳ୍ପନା, ବନ୍ଦନା ଓ ଚନ୍ଦନା) ପିତାମାତା ହୋଇ ସାରିଥିଲେ। ଆମେ ଇଚ୍ଛାଗତ ଭାବରେ ପଲୀକୁ ଡେରିରେ ଆମନ୍ତ୍ରଣ କରିଥିଲୁ। କଟକର ସନ୍ କ୍ଲିନିକ୍‌ରେ ପ୍ରଖ୍ୟାତ ସ୍ତ୍ରୀ ରୋଗ ବିଶେଷଜ୍ଞ ଡା ସୁକୁମାର ମିତ୍ର ଓ

ସୂର୍ଯ୍ୟମଣି ଦେବୀଙ୍କ ତତ୍ତ୍ୱାବଧାନରେ ପଲୀ ଭୂମିଷ୍ଠ ହେଲା। ତା'ର ଜନ୍ମ ଆମକୁ ଗଭୀର ଆନନ୍ଦ ଦେଇଥିଲା।

୧୯୮୩ ମସିହାରେ ମୁଁ ପଦୋନ୍ନତି ପାଇଲି। ବିଶ୍ୱବିଦ୍ୟାଳୟର ନିୟମ ଅନୁଯାୟୀ ଯେ କୌଣସି ପଦବୀ ପାଇଁ ଚୟନ ପଦ୍ଧତି ଓ ସାକ୍ଷାତ୍‌କାର ଅନୁଷ୍ଠିତ ହୋଇଥାଏ। ଏହି ପର୍ଯ୍ୟାୟରେ ମୁଁ ଓ ଉଦୟ କାନାଡ଼ାରୁ ଫେରିବା ପରେ ସେପରି ସୁଯୋଗ ଆସି ନ ଥିଲା। ସୁତରାଂ ୧୯୮୩ ମସିହାରେ ଏପରି ଆନୁଷ୍ଠାନିକ ବ୍ୟବସ୍ଥା ଓ ପଦୋନ୍ନତି ଆନନ୍ଦ ଦେଲା। ଉଦୟ ନାଥ ଦାଶ, ବନମାଳୀ ମହାନ୍ତି ଓ ମୁଁ ଏକ ସଙ୍ଗରେ ରିର୍ଡ଼ର ହୋଇଥିଲୁ।

୧୯୮୭ ମସିହାରେ ବିଶ୍ୱବିଦ୍ୟାଳୟର ଏକ ବିଶିଷ୍ଟ ବିଜ୍ଞାପନ ମୋର ଦୃଷ୍ଟି ଆକର୍ଷଣ କଲା। ତାହା ହେଉଛି କଳା ଓ ସମାଜ ବିଜ୍ଞାନ କ୍ଷେତ୍ରରେ ପେସାଗତ ପୁରସ୍କାର (Career Award In Humanities And Social Sciences) ଉଲ୍ଲେଖ ଥିଲା ଯେ ଗବେଷଣା କ୍ଷେତ୍ରରେ ଶୀର୍ଷ ସାଫଲ୍ୟ ଦର୍ଶାଉଥିବା ଅଧ୍ୟାପକମାନଙ୍କୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (UGC) ଏହି ବୃତ୍ତି ଯୋଗାଇବ। ଏହି ଅନୁଦାନ ଫଳରେ ସେହି ଅଧ୍ୟାପକ ତାଙ୍କର ଅଧ୍ୟାପନା କାର୍ଯ୍ୟରୁ ତିନିବର୍ଷ ଛୁଟି ପାଇବେ ଏବଂ ସେ ତାଙ୍କର ପୂରା ସମୟଟି କେବଳ ଗବେଷଣା କାର୍ଯ୍ୟରେ ବିନିଯୋଗ କରିବେ। ଏଥିପାଇଁ ଅନୁଦାନ ଆୟୋଗ ତାଙ୍କ ମାସିକ ଦରମା, ଗବେଷଣା କାର୍ଯ୍ୟ ପାଇଁ କେତେକ ଗବେଷଣା ସହାୟକ ଏବଂ ଗବେଷଣାର ଖର୍ଚ୍ଚ ବହନ କରିବେ। ମୁଁ ଏପରି ଏକ ପରିକଳ୍ପନାରେ ଉତ୍ସାହିତ ହୋଇ ଉଠିଲି ଏବଂ ଆବେଦନ କଲି। ମୁଁ ସଫଳ ହେଲି ଏବଂ ୧୯୮୭ ମସିହା ଜୁଲାଇ ମାସରୁ ୧୯୯୦ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଏହି ମର୍ଯ୍ୟାଦାଜନକ ବୃତ୍ତିର ଅଧିକାରୀ ହେଲି। ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସରେ ଏହି ସମ୍ମାନ ଲାଭ କରିବାରେ ମୁଁ ଏକମାତ୍ର ବ୍ୟକ୍ତି। ମୋର ବିଶ୍ୱବିଦ୍ୟାଳୟ ଛାଡ଼ିବା ପର୍ଯ୍ୟନ୍ତ ଓଡ଼ିଶାର ଅନ୍ୟ କୌଣସି ବ୍ୟକ୍ତି ଏପରି ବୃତ୍ତି ଲାଭ କରିବାର ସମ୍ବାଦ ପାଇ ନାହିଁ।

୧୯୮୧ ମସିହାରୁ ୧୯୯୦ ପର୍ଯ୍ୟନ୍ତ ଅତିକ୍ରାନ୍ତ ଦଶକଟି ମୋ ପାଇଁ ଖୁସିର ଦଶକ ଥିଲା। ମନୋବିଜ୍ଞାନକୁ ଜନଜୀବନର ଏକ ଅବିଚ୍ଛେଦ୍ୟ ଅଂଶ ବିଶେଷ କରିବାର ସଂକଳ୍ପ ନେଇ ମୁଁ ନିରବଚ୍ଛିନ୍ନ ଭାବରେ ଓଡ଼ିଆରେ ଲେଖାଲେଖି ବଢ଼ାଇ ଦେଲି। କ୍ରମାଗତ ଭାବରେ ଓଡ଼ିଆ ବହି ପ୍ରକାଶିତ ହେବାକୁ ଲାଗିଲା। ୧୯୮୩ ମସିହାରେ ଦୈନିକ ସମ୍ବାଦପତ୍ର "ସମ୍ବାଦ" ଆରମ୍ଭ ହେଲା। ଆରମ୍ଭରୁ ମୁଁ ଧାରାବାହିକ ଭାବେ ଲଳିତ ପ୍ରବନ୍ଧ ଲେଖିଲି। ପ୍ରଥମେ "କହିବାକୁ ଲାଜ" ଶୀର୍ଷକ ଏକ ସ୍ତମ୍ଭ ପାଇଁ ଲଳିତ ପ୍ରବନ୍ଧ ଲେଖିଲି। ପରେ "ମନ ପରିଭାଷା" ସ୍ତମ୍ଭ ପାଇଁ ମନସ୍ତାତ୍ତ୍ୱିକ

ପ୍ରବନ୍ଧ ଲେଖିବାକୁ ଆରମ୍ଭ କଲି। ଦୀର୍ଘ ତିରିଶ ବର୍ଷରୁ ଊର୍ଦ୍ଧ୍ୱ ଧରି ଏ ଯାବତ୍ ଏ ସ୍ତମ୍ଭଟି ସକ୍ରିୟ ରହିଛି।

ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଯଥୋଚିତ ସମୟ ଦେଲି। ଦେଶ ବିଦେଶର ଜର୍ଣ୍ଣାଲ୍‌ରେ ଗବେଷଣା ଲେଖା ପ୍ରକାଶ ପାଇଲା। ପି.ଏଚ୍.ଡ଼ି. ଗବେଷଣା ଛାତ୍ରଛାତ୍ରୀଙ୍କୁ ମାର୍ଗ ଦର୍ଶନ ଦେବାର କାର୍ଯ୍ୟ ଆରମ୍ଭ କଲି। ମୋ ଅପେକ୍ଷା ବୟସରେ ବଡ଼ ହେଲେ ମଧ୍ୟ ଏସ୍.ଏମ୍. ଆଜଫର୍ ନାମକ ବାଙ୍କୀ କଲେଜର ଜଣେ ଅଧ୍ୟାପକ ମୋ ତତ୍ତ୍ୱାବଧାନରେ ଆମ ମନୋବିଜ୍ଞାନ ବିଭାଗରେ ଗବେଷଣା କଲେ। ୧୯୮୮ ମସିହାରେ ସେ ପି.ଏଚ୍.ଡ଼ି ପାଇଲେ। ତା' ପରେ ପରେ ଏପରି ମାର୍ଗଦର୍ଶନ କାର୍ଯ୍ୟକୁ ଅଧିକ ପ୍ରସାରିତ କଲି।

୧୯୯୦ ମସିହାରେ ଶାସ୍ତ୍ରୀ ଭାରତ-କାନାଡ଼ା ସଂସ୍ଥାର ଏକ ଫେଲୋସିପ୍ ମୋତେ କାନାଡ଼ା ଭ୍ରମଣ ଓ ଗବେଷଣାର ଆଉ ଏକ ସୁଯୋଗ ଦେଲା। ମୋ ସଂକଳ୍ପର ନବୀକରଣ ପାଇଁ ମୁଁ ନିଜକୁ ପ୍ରସ୍ତୁତ କଲି।

❖

(୨୯)

# ଦ୍ୱିତୀୟଥର ବିଦେଶ

ମୁଁ ଚିରଦିନ ଲାଗି ବିଦେଶରେ ବସବାସ କରିବାକୁ ଚାହିଁନାହିଁ କି ଚାହିଁବି ନାହିଁ। କିନ୍ତୁ ମଝିରେ ମଝିରେ ବିଦେଶ ଯାତ୍ରା ମୋତେ ଗଭୀର ଆନନ୍ଦ ଦିଏ। ନୂଆ ପରିବେଶ ଓ ନୂଆ ଜୀବନଶୈଳୀ ସହିତ ପରିଚିତ ଯଥେଷ୍ଟ ଉତ୍ସାହ ଓ ଉନ୍ମାଦନା ଆଣିଥାଏ। ୧୯୯୦ ମସିହାର ଦ୍ୱିତୀୟାର୍ଦ୍ଧରେ ପ୍ରାୟ ଏକା ସମୟରେ ଏମିତି ଦୁଇ ଦୁଇଟି ସୁଯୋଗ ମୋତେ ଆତ୍ମହରା କଲା। ପ୍ରଥମଟି ଯୁକ୍ତରାଷ୍ଟ୍ର ଆମେରିକାର ହନଲୁଲୁସ୍ଥିତ East-West Centerକୁ ଯିବାର ସୁଯୋଗ ଏବଂ ଦ୍ୱିତୀୟଟି କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟରେ ପୁନର୍ବାର ସମୟ କାଟିବାର ସୁଯୋଗ।

## ହନଲୁଲୁ ଯାତ୍ରା

କାନାଡ଼ାରେ ଥିବା ସମୟରେ ଯୁକ୍ତରାଷ୍ଟ୍ର ଆମେରିକାର ବିଭିନ୍ନ ସହରକୁ ବୁଲିଯିବାର ଅନେକ ସୁଯୋଗ ପାଇଥିଲି। ପୁରି ରାଜ୍ୟଗୋଷ୍ଠୀ ବୃତ୍ତି ସଂସ୍ଥା ଗବେଷଣା ସଂଶ୍ଲିଷ୍ଟ ସମ୍ମିଳନୀ କିମ୍ୱା କର୍ମଶାଳାରେ ଯୋଗଦେବା ପାଇଁ ଆର୍ଥିକ ସହାୟତା ମଧ୍ୟ ପ୍ରଦାନ କରୁଥିଲେ। ଏହାର ସୁଯୋଗ ନେଇ କେତେଗୁଡ଼ିଏ ସ୍ଥାନକୁ ଯାଇ ପାରିଥିଲି। କିନ୍ତୁ ମନେ ରଖିବାକୁ ହେବ ଯେ ଆମେରିକା ଯୁକ୍ତରାଷ୍ଟ୍ର ଏକ ବିରାଟ ଭୂଖଣ୍ଡ। ପୂର୍ବପଟେ ଆଟଲାଣ୍ଟିକ ମହାସାଗର ଓ ପଶ୍ଚିମ ପଟରେ ପ୍ରଶାନ୍ତ ମହାସାଗର ମଧ୍ୟରେ ବ୍ୟବଧାନ ହେଉଛି ଚାରିପାଞ୍ଚ ହଜାର କିଲୋମିଟର। ମୁଁ ମୁଖ୍ୟତଃ ଆଟ୍ଲାଣ୍ଟିକ ପାଖାପାଖି ପୂର୍ବ ଦିଗର ସହର ଓ ମଧ୍ୟଭାଗ ଅଞ୍ଚଳ (କେଣ୍ଟକୀ ଇତ୍ୟାଦି) ଦେଖିଥିଲି। ପଶ୍ଚିମରେ କାଲିଫର୍ଣିଆ ଓ ହାୱାଇ ଦୀପପୁଞ୍ଜର ସ୍ଥାନସବୁ ଦେଖିବାର ଇଚ୍ଛା ପରିପୂରିତ ହୋଇ ନ ଥିଲା।

କାନାଡ଼ାରେ ଥିବା ସମୟରେ ଯୁକ୍ତରାଷ୍ଟ୍ରର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ସମ୍ମିଳନୀ ଓ କର୍ମଶାଳାକୁ ଯିବା ପାଇଁ ମୁଁ ଆବେଦନ କରୁଥିଲି। ଥରେ ହନଲୁଲୁର ଏକ ସମ୍ମିଳନୀ ପାଇଁ ମୋର ଗବେଷଣା ନିବନ୍ଧ ମଧ୍ୟ ଉପସ୍ଥାପନ ଲାଗି ମନୋନୀତ ହୋଇଥିଲା। ମାତ୍ର ରାଜ୍ୟଗୋଷ୍ଠୀ ବୃତ୍ତି ସଂସ୍ଥା ମୋତେ ଖବରଦେଲେ ଯେ ସେମାନେ ଆର୍ଥିକ ସହାୟତା ଦେବା ପାଇଁ ପ୍ରସ୍ତୁତ, ମାତ୍ର ଦୂରସ୍ଥାନ ହୋଇଥିବାରୁ ଯାତାୟାତ ଖର୍ଚ୍ଚ ଖୁବ୍ ବେଶୀ ହେବ। ସେତିକି ସମ୍ୱଳ ବ୍ୟବହାର କରି ଭବିଷ୍ୟତରେ ମୁଁ ଚାରି ପାଞ୍ଚୋଟି ସମ୍ମିଳନୀ ଯାଇପାରିବି। ସୁତରାଂ ସେମାନଙ୍କ ପରାମର୍ଶ ଅନୁଯାୟୀ ମୁଁ ହନଲୁଲୁ ଯାତ୍ରା ସ୍ଥଗିତ ରଖିଲି। କିନ୍ତୁ ଭବିଷ୍ୟତରେ ଯିବା ପାଇଁ ଅଭିଳାଷ ରହିଥିଲା।

୧୯୯୦ ମସିହା ଏପ୍ରିଲ ମାସରେ ଇଉସେଫୀ (United States Educational Foundation India of USEFI ) ଆମ ବିଶ୍ୱବିଦ୍ୟାଳୟକୁ ଗୋଟିଏ ବିଜ୍ଞାପନ ପଠାଇଥିଲେ। ସେଥିରେ ଉଲ୍ଲେଖ ଥିଲା ଯେ ହାୱାଇର ହନଲୁଲୁରେ ଥିବା ପ୍ରାଚ୍ୟ--ପଶ୍ଚିମ କେନ୍ଦ୍ର (East-West Centre) କଲେଜର ପାଠ୍ୟ ସାମଗ୍ରୀର ବହୁମୁଖୀ-ସାଂସ୍କୃତିକ ସଚେତନତା ଆଣିବା ପାଇଁ ଦୁଇ ସପ୍ତାହର ଏକ କର୍ମଶାଳାର ଆୟୋଜନ କରୁଛନ୍ତି। ଏହା ଜୁଲାଇ ମାସରେ ଅନୁଷ୍ଠିତ ହେବ ଏବଂ ଇଉସେଫୀ ଭାରତୀୟ ଅଧ୍ୟାପକମାନଙ୍କୁ ମନୋନୀତ କରିବ। ମୁଁ ତୁରନ୍ତ ଆବେଦନ କଲି ଏବଂ ସଫଳତା ପାଇଲି। ଏହି କର୍ମଶାଳାର ପରେ ପରେ ଜାପାନର କିୟୋତ ନଗରରେ ଅନ୍ତର୍ଜାତୀୟ ପ୍ରୟୋଗିକ ମନୋବିଜ୍ଞାନର ବିଶ୍ୱ ସମ୍ମିଳନୀ ଅନୁଷ୍ଠିତ ହେବାର ଥିଲା। ସେଥିରେ ଯୋଗଦାନ କରିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ଅନୁଦାନ ପାଇଁ ଦରଖାସ୍ତ କଲି। ତାହା ମଧ୍ୟ ମିଳିଗଲା।

ଜୁଲାଇ ମାସରେ ହନଲୁଲୁ ଯାତ୍ରା କଲି। ନୂଆଦିଲ୍ଲୀରୁ ସିଙ୍ଗାପୁର, ସିଙ୍ଗାପୁରରୁ ଜାପାନର ରାଜଧାନୀ ଟୋକିଓ ଏବଂ ଟୋକିଓରୁ ହନଲୁଲୁ ଯାତ୍ରା କଲି। ଦୀର୍ଘ ସମୟର ଯାତ୍ରା। କିଛିଟା କ୍ଳାନ୍ତି ଲାଗୁଥାଏ। କିନ୍ତୁ ପ୍ରାଚ୍ୟ-ପାଶ୍ଚାତ୍ୟ କେନ୍ଦ୍ର ପକ୍ଷରୁ ସୁ-ବନ୍ଦୋବସ୍ତ କରାଯାଇଥାଏ। ପୂର୍ବରୁ ସେମାନେ ସୁବିସ୍ତୃତ ସୂଚନା ଓ ମାର୍ଗଦର୍ଶକ କାଗଜ ପଠାଇଥିଲେ। ସୁତରାଂ ବିମାନ ବନ୍ଦରରୁ ବାହାରିବା ମାତ୍ରେ ନିର୍ଦ୍ଦିଷ୍ଟ କମ୍ପାନୀର ଟ୍ୟାକ୍ସିରେ ଅତିଥି ଭବନ ଚାଲିଗଲି। ଅତିଥି ଭବନର ଅଭ୍ୟର୍ଥନା ଡେସ୍କଟି ଦିନରାତି ଚବିଶ ଘଣ୍ଟା ଖୋଲାଥିବ ବୋଲି ମୋତେ ଜଣାଇ ଦିଆ ଯାଇଥିଲା। ସୁତରାଂ ମୋ ପାଇଁ ଉଦ୍ଦିଷ୍ଟ କୋଠରୀର ଚାବିଟି ନେଇଗଲି। ବିମାନରେ ରାତ୍ରିଭୋଜନ ସରିଥିଲା। ରାତି ଏଗାରଟାରେ ବିଶ୍ରାମ ନେଲି।

ମୁଁ ଯେଉଁ ରାତିରେ ପହଞ୍ଚିଲି ତା'ପର ଦିନଟି ମଧ୍ୟ ବିଶ୍ରାମର ଦିନ। କର୍ମଶାଳା ବିଶ୍ରାମ ଦିନର ପରଦିନ ଆରମ୍ଭ ହେବାର ଥାଏ। ତେବେ ଏକପ୍ରକାର ଅନଉପଚାରିକ ଅଭ୍ୟର୍ଥନା ବିଶ୍ରାମ ଦିନର ଅପରାହ୍ଣରେ ଆୟୋଜିତ ହୋଇଥିଲା। ମୁଁ ଆଖପାଖରେ ମଧ୍ୟାହ୍ନ ଭୋଜନ ଶେଷ କରି କିଛି ସମୟ ବିଶ୍ରାମ ନେଇ ଅପରାହ୍ଣରେ ଅଭ୍ୟର୍ଥନାସ୍ଥଳକୁ ଚାଲିଲି। ପ୍ରାଚ୍ୟ-ପାଶ୍ଚାତ୍ୟ କେନ୍ଦ୍ରଟି ଅତିଥି ଭବନଠାରୁ ଅଳ୍ପ ଦୂରରେ ଅବସ୍ଥିତ। ଚାଲିଯିବାକୁ ପାଞ୍ଚମିନିଟ୍ ଲାଗେ। ପ୍ରାଚ୍ୟ-ପାଶ୍ଚାତ୍ୟ ମାର୍ଗଟି (East-West Road) ଖୁବ୍ ଲମ୍ବା। ଏହାର ଗୋଟିଏ ପାର୍ଶ୍ୱରେ ରହିଛି ବିରାଟ ଚାରି ମହଲା ବିଶିଷ୍ଟ ପ୍ରାଚ୍ୟ-ପାଶ୍ଚାତ୍ୟ କେନ୍ଦ୍ର। ଅନ୍ୟ ପାର୍ଶ୍ୱରେ ବିସ୍ତୃତ ଅଞ୍ଚଳରେ ପରିବ୍ୟାପ୍ତ ରହିଛି ହାୱାଇ ବିଶ୍ୱବିଦ୍ୟାଳୟ ଓ ଏହାର ଅନ୍ୟ ସବୁ ଆନୁସଙ୍ଗିକ କେନ୍ଦ୍ର।

ପ୍ରାଚ୍ୟ-ପାଶ୍ଚାତ୍ୟ କେନ୍ଦ୍ର ପ୍ରକୃତରେ ତିନୋଟି କେନ୍ଦ୍ରର ସମାହାର। ତଳମହଲାଠାରେ ମୁଖ୍ୟତଃ ପାଠାଗାର ଓ ପ୍ରଶାସନିକ ବିଭାଗମାନ ରହିଛି। ପ୍ରଥମ ମହଲାଟି ସଂସ୍କୃତ ଅଧ୍ୟୟନ କେନ୍ଦ୍ର। ଏହି କେନ୍ଦ୍ର ହିଁ ଆମ କର୍ମଶାଳାର ଆୟୋଜନ କରିଥିଲା। ଦ୍ୱିତୀୟ ମହଲାଟିରେ ଯୋଗାଯୋଗ ଅଧ୍ୟୟନର କେନ୍ଦ୍ର(Institute of Communication)। ତୃତୀୟ ମହଲାରେ ଜନବସତିର ଅନୁଶୀଳନ (Population Studies)।

କର୍ମଶାଳାର ପୂର୍ବଦିନ ଅପରାହ୍ଣରେ ପରିବେଶଟିକୁ ପରଖି ନେବାର ସୁଯୋଗ ମିଳିଲା। କର୍ମଶାଳାର ଅଧ୍ୟକ୍ଷ ପ୍ରଫେସର ରିଚାର୍ଡ ବ୍ରିସଲିନ୍ ଉପସ୍ଥିତ ଥିଲେ। ତାଙ୍କର ନାମ ସହିତ ମୁଁ ପୂର୍ବରୁ ପରିଚିତ ଥିଲି। ଗବେଷଣା କାର୍ଯ୍ୟରେ ଅନୁବାଦ କିପରି ଉପଯୋଗ ହୋଇପାରିବ ସେ କ୍ଷେତ୍ରରେ ସେ ବହୁକାର୍ଯ୍ୟ କରିଛନ୍ତି। ଗବେଷଣା ପରିପ୍ରେକ୍ଷୀରେ ଅନେକ ସମୟରେ ମନସ୍ତାତ୍ତ୍ୱିକ ମାପକସବୁରେ (Tests) ଭାଷାନ୍ତର ଆବଶ୍ୟକ ହୋଇପାରେ। ଇଂରାଜୀରେ ପ୍ରସ୍ତୁତ କରାଯାଇଥିବା ଗୋଟିଏ ମାପକକୁ ଓଡ଼ିଆରେ ଅନୁବାଦ କରିବା ପ୍ରୟୋଜନ ହୋଇପାରେ। ଏ କ୍ଷେତ୍ରରେ ଯେଉଁ ସବୁ ସତର୍କତା ଓ ବିଧିବିଧାନର ଆବଶ୍ୟକତା ରହିଛି, ସେ ଦିଗରେ ପ୍ରଫେସର୍ ବ୍ରିସଲିନ୍ ବହୁ ଗବେଷଣା କରିଛନ୍ତି। ମୁଁ ତାଙ୍କର ପ୍ରଖ୍ୟାତି ସହିତ ପରିଚିତ ଥିଲି। ଏବେ ତାଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇ ବଧେଇ ଜଣାଇଲି ଏବଂ ଆନନ୍ଦିତ ହେଲି।

କର୍ମଶାଳା ପାଇଁ ଆସିଥିବା ଅତିଥିବୃନ୍ଦଙ୍କ ସହିତ ପରିଚିତ ମଧ୍ୟ ହେଲି। କର୍ମଶାଳାକୁ ଆସିଥିବା ସବୁ ବ୍ୟକ୍ତି ମନୋବିଜ୍ଞାନୀ ନ ଥିଲେ। କେତେକ ବ୍ୟକ୍ତି ଇଂରାଜୀ ସାହିତ୍ୟର ଅଧ୍ୟାପକ କେତେକ ପରିଚାଳନା ବିଜ୍ଞାନର ଶିକ୍ଷକ ଏବଂ ଅନ୍ୟ କେତେକ ଶୃଙ୍ଖଳାର ବିଶେଷଜ୍ଞମାନେ ରହିଥିଲେ। ପ୍ରାୟ କୋଡ଼ିଏ ବାଇଶ ଜଣ ପ୍ରତିନିଧି ରହିଥିଲେ। ଆମେ ଚାରିଜଣ ଭାରତୀୟ ଥିଲୁ। ଅଧିକାଂଶ ଯୁକ୍ତରାଷ୍ଟ୍ର ଆମେରିକାର ଅଧିବାସୀ। ଆଉ କେତେକ ବ୍ୟକ୍ତି ଜାପାନ, ଭିଏତ୍‌ନାମ ଓ ଇଣ୍ଡୋନେସିଆରୁ ଆସିଥିଲେ। ବେଶ୍ କେତେଗୁଡ଼ିଏ ସାଂସ୍କୃତିକ ପରିବେଶରୁ ଆସିଥିବା ବ୍ୟକ୍ତିମାନଙ୍କର ସମାବେଶ ବେଶ୍ ଉପଭୋଗ୍ୟ ଥିଲା। ସେଦିନ ଅନୌପଚାରିକ ଅଭ୍ୟର୍ଥନା ସମୟରେ ଆମେ ପରସ୍ପର ସହିତ ପରିଚିତ ହେଲୁ ଏବଂ କର୍ମଶାଳାର କାର୍ଯ୍ୟନିର୍ଘଣ୍ଟ ସମ୍ପର୍କରେ ସୂଚନା ପାଇଲୁ।

ପରଦିନ କର୍ମଶାଳା ଆରମ୍ଭ ହେଲା। ଆମ୍ଭେମାନେ ବିଭିନ୍ନ ଶୃଙ୍ଖଳାରୁ ଆସିଥିବାରୁ ଆମ୍ଭମାନଙ୍କର ଆଭିମୁଖ୍ୟରେ କିଛିଟା ଭିନ୍ନତା ରହିଥିଲା। ଏ ଦୃଷ୍ଟିରୁ ଆଲୋଚନାର ଫଳାଫଳ ପ୍ରଭାବଶାଳୀ ହେଉଥିଲା। ଶୁଣିଲୁ ଯେ ସପ୍ତାହର ପାଞ୍ଚଦିନ କର୍ମଶାଳା ଚାଲୁ ରହିବ। ସକାଳ ସାଢ଼େନ'ଟାରୁ ସାଢ଼େ ଚାରିଟା ପର୍ଯ୍ୟନ୍ତ ଆଲୋଚନା ହେବ। ମଝିରେ ଘଣ୍ଟାଏ ମଧ୍ୟାହ୍ନ ଭୋଜନର ବିରତି ରହିବ। ଶନିବାର ଓ ରବିବାର

ଦିନଗୁଡ଼ିକରେ ଆୟୋଜକମାନେ ବୁଲାଇନେବେ। ସୁତରାଂ ଦୁଇ ସପ୍ତାହରେ ଆମେ ଚାରିଥର ବୁଲିବାର ସୁଯୋଗ ପାଇବୁ। ଏତଦ୍‌ବ୍ୟତୀତ ମୁଁ ଗୋଟିଏ ଅଧିକା ସୁଯୋଗ ପାଉଥିଲି। ମୋ କୋଠରୀ ପାଖରେ ଅନ୍ୟ ଦୁଇ କୋଠରୀରେ ରହୁଥିବା ଦୁଇଜଣ ଯୁକ୍ତରାଷ୍ଟ୍ର ଆମେରିକାର ଇଂରାଜୀ ପ୍ରଫେସର୍ ସେମାନଙ୍କ ସଙ୍ଗରେ ନିଜ ନିଜ ପତ୍ନୀଙ୍କୁ ଆଣିଥିଲେ। ସେମାନେ ଦୁଇ ବନ୍ଧୁ। ସେମାନଙ୍କ ସହିତ ଗୋଟିଏ କାର୍ ମଧ୍ୟ ରହିଥାଏ। ଅପରାହ୍ଣରେ କର୍ମଶାଳା ସରିବା ପରେ ଦୁଇ ପରିବାର ବୁଲି ବାହାରନ୍ତି। ମୋତେ ମଧ୍ୟ ଅନୁରୋଧ କରନ୍ତି କାର୍‌ରେ ଯିବା ପାଇଁ। ସୁତରାଂ ସେମାନଙ୍କ ସହିତ ବୁଲାବୁଲି କରି ବିଳମ୍ବିତ ସନ୍ଧ୍ୟାରେ ରାତ୍ରି ଭୋଜନ ଶେଷ କରି ଅତିଥି ଭବନକୁ ଫେରିଥାଏ।

ହାୱାଇ ଦୀପପୁଞ୍ଜର ଦେଶ। ପ୍ରଶାନ୍ତ ମହାସାଗରର ଦ୍ୱୀପସବୁ। ପୁରୀର ନୀଳ ସମୁଦ୍ରକୁ ମୁଁ ବହୁବାର ଦେଖିଛି। କିନ୍ତୁ ପ୍ରଶାନ୍ତ ମହାସାଗରର ଜଳରାଶି କଳା। ସମ୍ଭବତଃ ଗଭୀରତା ଫଳରେ ଏପରି ଦିଶିଥାଏ।

ଶନିବାର ରବିବାର ପ୍ରଫେସର୍ ବିସଲିନ୍ ଓ ତାଙ୍କର ଦଳ ଆମକୁ ଯେଉଁ ସବୁ ସ୍ଥାନମାନଙ୍କୁ ବୁଲାଇ ନେଲେ ସେଗୁଡ଼ିକ ମୁଖ୍ୟତଃ ବିଭିନ୍ନ ଆକାରର, ବିଭିନ୍ନ ଶୈଳୀର ଦ୍ୱୀପ। କେଉଁଟିକୁ ବିଗ୍ ଆଇଲାଣ୍ଡ୍ କୁହାଯିବା ସ୍ଥଳେ କେଉଁଟିକୁ ସ୍ମଲ୍ ଆଇଲାଣ୍ଡ୍ କୁହାଯାଏ। ଦ୍ୱୀପ ହେଲେ ମଧ୍ୟ ପ୍ରାକୃତିକ ଶୋଭାରେ ଭିନ୍ନତା ଅଛି, ବୈଚିତ୍ର୍ୟ ଅଛି।

ଦୁଇ ତିନୋଟି ଅନୁଭବ ସହଜରେ ସ୍ପଷ୍ଟ ହୁଏ। କେତେକ ଦୃଷ୍ଟିରୁ ହାୱାଇ ଦୀପପୁଞ୍ଜ ଆମେରିକାର ଅନ୍ୟ ସବୁ ରାଜ୍ୟଠାରୁ ଭିନ୍ନ। ଅଧିକାଂଶଙ୍କର ଶରୀର ଗଠନ ମଙ୍ଗୋଲୀୟ। ଏ ଅଞ୍ଚଳଟି ପ୍ରକୃତରେ ଜାପାନରେ ଥିଲା। ବିନିମୟ ସୂତ୍ରରେ ଏହା ଆମେରିକାକୁ ଆସିଲା ଏବଂ ଜାପାନ ଅନ୍ୟ ଏକ ଅଞ୍ଚଳ ପାଇଲା। ଯୁକ୍ତରାଷ୍ଟ୍ର ଆମେରିକାର ଅନ୍ୟ କୌଣସି ଅଞ୍ଚଳରେ "ଫୁଲହାର" ଗଳାରେ ପକାଇବାର ପରମ୍ପରା ନ ଥିଲେ ମଧ୍ୟ ଏହା କେବଳ ହାୱାଇରେ ରହିଛି। ବହୁଲୋକ ଫୁଲହାର ବ୍ୟବହାର କରନ୍ତି।

ଭାଷାର ସ୍ୱାତନ୍ତ୍ର୍ୟ ରହିଛି। ହାୱାଇ ଭାଷାରେ ବ୍ୟଞ୍ଜନ ବର୍ଣ୍ଣ ପ୍ରାୟ ନାହିଁ। ସ୍ୱରବର୍ଣ୍ଣର ବହୁଳ ପ୍ରୟୋଗ। ଆଲୋହା (Aloha) ଏକ ବହୁ ବ୍ୟବହୃତ ଶବ୍ଦ। ଏହାର ଏକାଧିକ ଅର୍ଥ ରହିଛି। ଏହା ଅଭିନନ୍ଦନ ସୂଚିତ କରେ। ପୁଣି ଏହା ପ୍ରେମାତ୍ମକ ଓ ବିଦାୟ ସୂଚକ ମଧ୍ୟ। ହନଲୁଲୁର ଏକ ବିଖ୍ୟାତ ଷ୍ଟାଡ଼ିୟମ ହେଉଛି ଆଲୋହା ଷ୍ଟାଡ଼ିୟମ୍।

ହନଲୁଲୁର ଏକ ବିଶିଷ୍ଟ ପରିଦର୍ଶନର ସ୍ଥଳ ହେଉଛି ପର୍ଲ ହାର୍‌ଭର୍ (Pearl Harbor)। ଦୁଇଟି ବିରାଟ ପାହାଡ଼ର ମଧ୍ୟ ଭାଗରେ ପ୍ରଶାନ୍ତ ମହାସାଗରର ଜଳଖଣ୍ଡ ଭିତରକୁ ପଶି ଯାଇଛି। ଏହି ମଧ୍ୟବର୍ତ୍ତୀ ସ୍ଥାନରେ ଜଳ ଜାହାଜ ସବୁ ରହିଛି। ଗୋଟିଏ ପାହାଡରେ ଥିବା ମୃତ ଆଗ୍ନେୟଗିରିରୁ ଏବେ ମଧ୍ୟ ଧୂମ (କ୍ଷତିକାରକ ନୁହେଁ) ନିର୍ଗତ ହେଉଛି। ମୋଟ ଉପରେ ଭୀମକାନ୍ତ ଦୃଶ୍ୟ। ମନୋମୁଗ୍ଧକର।

ସ୍ମରଣ କରା ଯାଇପାରେ ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନ ଏହି ବନ୍ଦର ଆକ୍ରମଣ କରିବା ପରେ ହିଁ ଆମେରିକା ପ୍ରତ୍ୟକ୍ଷ ଭାବରେ ଯୁଦ୍ଧ ଘୋଷଣା କରିଥିଲେ। ଏହି ଆକ୍ରମଣ କିପରି ଭାବରେ ଜନଚେତନାକୁ କ୍ଷୁବ୍ଧ କରିଥିବ, ତାହା ମୁଁ କଳ୍ପନା କରିପାରିଲି।

କର୍ମଶାଳାର ଦୁଇ ସପ୍ତାହ ଆନନ୍ଦରେ କଟିଲା। ଅବସର ସମୟରେ ନିକଟରେ ଥିବା ଏକ ବିପଣୀ (Shopping Center) ଭାରତୀୟ ବନ୍ଧୁମାନଙ୍କ ସହିତ ବୁଲାବୁଲି କରିପାରିଥିଲି। ବିସ୍ତୃତ ଅଞ୍ଚଳରେ ରେଷ୍ଟୋରାଁଠାରୁ ଆରମ୍ଭ କରି ଯାବତୀୟ ବିକ୍ରୟସ୍ଥଳ ରହିଥିଲା। ଏପରି ଏକ ସୁସମ୍ପର୍କର ଅନୁଭବ ପରେ ପରେ ଆଉ ଗୋଟିଏ ବିଶେଷ ଆକର୍ଷଣ ଅପେକ୍ଷା କରିଥିଲା। କର୍ମଶାଳା ସରିବା ପରେ ମୁଁ ହନଲୁଲୁରୁ ଜାପାନର କିୟୋତୋ ଯାତ୍ରା କଲି।

## କିୟୋତୋ (ଜାପାନ) ଅନୁଭବ

କର୍ମଶାଳାରୁ ଫେରିବା ପରେ ଅନ୍ତର୍ଜାତିକ ପ୍ରୟୋଗାତ୍ମକ ମନୋବିଜ୍ଞାନ କଂଗ୍ରେସରେ ଯୋଗଦେବା ପାଇଁ ମୋର ଜାପାନର କିୟୋତୋ ସହର ଯିବାର କାର୍ଯ୍ୟକ୍ରମ ରହିଥିଲା। ଏଥିପାଇଁ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ଆର୍ଥିକ ସହାୟତା ପାଇଁ ଆବେଦନ କରିଥିଲି ଏବଂ ପାଇଥିଲି ମଧ୍ୟ। ତଦନୁସାରେ ମୁଁ ହନଲୁଲୁରୁ ଟୋକିଓ ଏବଂ ଟୋକିଓରୁ ଓସାକା ଆସିଲି। ଓସାକାରୁ କିୟୋତୋ ଯିବାକୁ ହେଲେ ବସ୍‌ରେ ଯିବାକୁ ହେବ। ତେବେ ଜଣେ ଭାରତୀୟ ଭଦ୍ରଲୋକ ସେହି ବିମାନରେ ଓସାକା ଆସୁଥିଲେ। ମୁଁ କେଉଁଠାରେ ରହିବି ବୋଲି ପଚାରିଲେ। ମୁଁ ଜଣାଇଲି ଯେ ମୁଁ ପୂର୍ବରୁ ବ୍ୟବସ୍ଥା କରିନାହିଁ। ତଥାପି ସମ୍ମିଳନୀର ଆୟୋଜକମାନେ ଯେଉଁ ହୋଟେଲସବୁର ତାଲିକା ଦେଇଥିଲେ ସେଥି ମଧ୍ୟରୁ ହଲିଡ଼େ ଇନ୍ ଉପଯୋଗୀ ହେବ। କାନାଡ଼ାର ଅବସ୍ଥାନ କାଳରେ ମୋର ଅଭିଜ୍ଞତା ଥିଲା ଯେ ହଲିଡ଼େ ଇନ୍‌ରେ ଖର୍ଚ୍ଚ ମଧ୍ୟମ ମାତ୍ରାର। ସୁତରାଂ ମୁଁ ମୋର ରୁଚି ତାଙ୍କ ପାଖରେ ସ୍ପଷ୍ଟ କଲି। ସେ ସଙ୍ଗେ ସଙ୍ଗେ ଓସାକା ବିମାନ ବନ୍ଦରରୁ ମୋ ପାଇଁ କିୟୋତୋ ହଲିଡ଼େ ଇନ୍‌ରେ ରହିବା ବ୍ୟବସ୍ଥା କରିଦେଲେ। ଭଦ୍ରବ୍ୟକ୍ତିଜଣକ ଆଉ କେତୋଟି ଉପଯୋଗୀ ସୂଚନା ମଧ୍ୟ ଦେଲେ।

ତାଙ୍କର ସୂଚନା ଅନୁଯାୟୀ ମୁଁ ବାହାରକୁ ଆସି ଦେଖିଲି ଯେ ବ୍ୟବସ୍ଥା ସବୁ ଯାନ୍ତ୍ରିକ ଓ ସ୍ୱୟଂକ୍ରିୟ। ଟିକେଟ ମେସିନ୍‌ରେ ଗନ୍ତବ୍ୟସ୍ଥଳର ନାମସବୁ ଉଲ୍ଲେଖ ରହିଛି ଏବଂ ପଇସା ପୂରାଇଲେ ଟିକେଟ୍ ବାହାରି ଆସୁଛି। ଟିକେଟ୍ ନେଇ ଅଳ୍ପବାଟ ଅଗ୍ରସର ହେଲା ପରେ ଦେଖିଲି ଯେ ରାସ୍ତା ପାର୍ଶ୍ୱରେ ଛୋଟ ଛୋଟ ସ୍ତମ୍ଭରେ ଗନ୍ତବ୍ୟସ୍ଥଳର ନାମ ଉଲ୍ଲେଖ ଅଛି। ମୁଁ ଜାଣିପାରିଲି ଯେ କିୟୋଟୋ ଲେଖାଥିବା ସ୍ଥାନରେ ଅପେକ୍ଷା କଲେ ବସ୍ ଆସିବ। ବସ୍‌ରେ ଉଠି ବସ୍ ଚାଳକଙ୍କୁ ଇଂରାଜୀରେ ଅନୁରୋଧ କଲି ଯେ ହଲିଡ଼େ ଇନ୍ ପାଖରେ ମୋତେ ସେ ସୂଚନା ଦେବେ। ସେ ଇଂରାଜୀ ବୁଝନ୍ତି ନାହିଁ। କିନ୍ତୁ ସେ ମୋ ଅଭିପ୍ରାୟ ବୁଝି ପାରିଲେ। ବସ୍‌ରେ ଉଠିଥିବା ଜଣେ ତରୁଣଙ୍କୁ ଜାପାନୀ ଭାଷାରେ କହିଲେ ମୋତେ ସାହାଯ୍ୟ କରିବା ପାଇଁ। ତରୁଣ ଜଣକ ହୋଣ୍ଡା କମ୍ପାନୀର କର୍ମଚାରୀ। ସେ ମୋ ପାଖରେ ବସିଲେ। ହଲିଡ଼େ ଇନ୍ ପର୍ଯ୍ୟନ୍ତ ଆମେ ଦୁହେଁ ଇଂରାଜୀରେ କଥାବାର୍ତ୍ତା କରି ସମୟ କାଟିଲୁ।

ରାତି ପ୍ରାୟ ନ'ଟା ବେଳକୁ ହଲିଡ଼େ ଇନ୍‌ରେ ପହଞ୍ଚିଲି। ପ୍ରାରମ୍ଭିକ କାର୍ଯ୍ୟ ପରେ ପିଲାଟି ମୋ ବ୍ୟାଗ୍ ଧରି ଲିଫ୍‌ଟରେ ପାଞ୍ଚ ମହଲାକୁ ଯିବା ସମୟରେ କହିଲା: "ଭୂମିକମ୍ପ ସମୟରେ ଲିଫ୍‌ଟ ବ୍ୟବହାର କରିବେ ନାହିଁ। ପାହାଚ ଦେଇ ଓହ୍ଲାଇ ଯିବେ।" ସେ ପର୍ଯ୍ୟନ୍ତ ଭୂମିକମ୍ପର ଭାବନା ମନରେ ପଶି ନ ଥିଲା। ଚତୁର୍ଥ, ପଞ୍ଚମ ଶ୍ରେଣୀର ଭୂଗୋଳ ବହିରେ ପଢ଼ିଥିଲୁ ଯେ ଜାପାନରେ ପ୍ରତିଦିନ ଭୂମିକମ୍ପ ହୁଏ। ଏ କଥା ମନେ ପଡ଼ିବା ମାତ୍ରେ ମନରେ ଭୟ ପଶିଗଲା। ତଥାପି ମନକୁ ସାହସ ଦେଲି। ପ୍ରତିଦିନ କେବେହେଲେ ଭୂମିକମ୍ପ ହେଉ ନ ଥିବ।

ତିନି ଚାରିଦିନ ମନୋବିଜ୍ଞାନର ଆନ୍ତର୍ଜାତିକ କଂଗ୍ରେସ। ବିରାଟ ସମାବେଶ। ବାରବାଟୀ ଷ୍ଟାଡ଼ିୟମ ଭଳି ଏକ ବିରାଟ ସ୍ଥାନରେ ଏକା ସମୟରେ ପଚାଶ ଷାଠିଏ ଅଧିବେଶନ ଚାଲିଥାଏ। ଯିବା ଆସିବାରେ ବିଶେଷ ଅସୁବିଧା ହେଉ ନ ଥାଏ। ସିଟି ବସ୍‌ରେ ପ୍ରତି ଷ୍ଟପେଜ୍‌ରେ ରେକର୍ଡ଼ କରା ଯାଇଥିବା ଘୋଷଣାଟି ଜାପାନୀ ଓ ଇଂରାଜୀ ଭାଷାରେ କରାଯାଏ। ଏତଦ୍‌ବ୍ୟତୀତ ହଲିଡ଼େ ଇନ୍‌ର ମ୍ୟାନେଜର୍ ସେଠାରେ ରହୁଥିବା ସମସ୍ତଙ୍କୁ ଗୋଟିଏ କାଗଜ ଦେଇଥାନ୍ତି। କାଗଜର ଗୋଟିଏ ପାର୍ଶ୍ୱରେ ଇଂରାଜୀ ଏବଂ ଠିକ୍ ତା'ସ୍ଥାନରେ ଅପର ପାର୍ଶ୍ୱରେ ଜାପାନୀ ଭାଷାରେ ଲେଖାଥାଏ। ଆମେ ଇଂରାଜୀପଟକୁ ଦେଖି ହୁଏତ ପଚାରିପାରୁ। "ମୁଁ ଅମୁକ ହଲିଡ଼େ ଇନ୍‌କୁ ଯିବି। ଦୟାକରି ରାସ୍ତା ବତାଇ ଦିଅନ୍ତୁ।" ଜାପାନୀ ବ୍ୟକ୍ତି ଜଣକ କାଗଜର ଅପରପାର୍ଶ୍ୱରେ ଜାପାନୀ ଭାଷାରେ ଆମର ପ୍ରଶ୍ନ ବୁଝନ୍ତି।

କଂଗ୍ରେସ ଚାଲିଥିବା ଦିନଗୁଡ଼ିକରେ ସମୟ ଭଲରେ କଟୁଥିଲେ ମଧ୍ୟ ଖାଇବାରେ ସାମାନ୍ୟ ଅସୁବିଧା ହେଉଥିଲା। ୧୯୮୭ର ପରଠାରୁ ମୁଁ ଓ ଅଞ୍ଜୁ ପୂରାପୂରି

ଶାକାହାରୀ ହୋଇଥିଲୁ। ଜାପାନୀମାନେ ଖୁବ୍ ମାଛପ୍ରିୟ। ପୁଣି ବହୁ ଖାଦ୍ୟଦ୍ରବ୍ୟରେ ଆମେ ଲୁଣ ପକାଇଲା ପରି ସେମାନେ ମାଛ ପାଉଡ଼ର ପକାନ୍ତି। ତେଣୁ ଭିନ୍ନ ଭିନ୍ନ ଜିନିଷ ଖାଇବା ମୋ ପକ୍ଷରେ ସମ୍ଭବ ନ ଥିଲା। ବାହାରେ ଖାଉଥିବା ସମୟରେ କେବଳ ନୁଡୁଲ୍‌ସ ଖାଉଥିଲି। ସମ୍ମିଳନୀର ପରିସର ମଧ୍ୟରେ ଖାଇବା ସମୟରେ ଛେନା ସାଣ୍ଡଉଇଚ୍ ପ୍ରତିଦିନ ଖାଇଲି। ଫେରିବାର ପୂର୍ବଦିନ ସ୍ଥିର କଲି ଯେ ସେଦିନ ଭାତ ତରକାରୀ ଖାଇବି। ସୁତରାଂ ଗୋଟିଏ ଫୁଟ୍‌ପାଥ୍‌ରେ ଦୀର୍ଘ ସମୟ ଚାଲିଲି ଏବଂ ବାଟରେ ପଡୁଥିବା ସବୁ ହୋଟେଲ ମଧ୍ୟକୁ ପ୍ରବେଶ କଲି। ବିଦେଶାଗତ ଲୋକଙ୍କୁ ହୋଟେଲ୍‌ର ଲୋକେ ଅନେକ ସମୟରେ ଖାଦ୍ୟ ସବୁର ଛବି ଦେଖାଇ ଅର୍ଡ଼ର ଦେବା ପାଇଁ ଅନୁରୋଧ କରନ୍ତି। ଗୋଟିଏ ହୋଟେଲ୍‌ରେ ମୁଁ ଭାତ ଓ ଆମ ଦେଶର ତରକାରୀ ପରି ଚିତ୍ର ଦେଖିଲି। ସୁତରାଂ ଭାତ, ତରକାରୀ ଓ ସାଲାଡ୍ ଅର୍ଡ଼ର ଦେଲି। ଆମର କଥୋପକଥନ ମଝିରେ ସେ ବୁଝିପାରିଲା ଯେ ମୁଁ ଶାକାହାରୀ। ସେ କହିଲା: "ଟୁନା, ଟୁନା।" ମୁଁ ଅବିଳମ୍ବେ ବୁଝିଗଲି ଯେ ସାଲାଡ଼ରେ ଛୋଟ ଛୋଟ ଟୁନା ମାଛ ମିଶିଛି। ସୁତରାଂ ସାଲାଡ୍ ବାଦ୍ ଦେବା ପାଇଁ ହାତରେ ଇଙ୍ଗିତ ଦେଲି। ସେ ଦିନ ପେଟଭରା ଭାତ ଓ ତରକାରୀ ଖାଇ ରାତିରେ ଭଲରେ ଶୋଇଲି। ପରଦିନ କିୟୋତୋରୁ ପୁନର୍ବାର ଓସାକା ଫେରିଲି।

ଅଳ୍ପଦିନର ରହଣୀ ମଧ୍ୟରେ ଜାପାନୀମାନଙ୍କର କେତେକ ବୈଶିଷ୍ଟ୍ୟ ଦେଖି ପାରିଲି। ପ୍ରଥମତଃ ସେମାନଙ୍କ ସୌନ୍ଦର୍ଯ୍ୟବୋଧ ଖୁବ୍ ଉଚ୍ଚସ୍ତରର। ରେସ୍ତୋରାଁରେ ନୁଡୁଲ୍‌ସ ଦେବା ସମୟରେ ମଧ୍ୟ ସୁନ୍ଦର ଭାବରେ ସଜାଇ ଦିଅନ୍ତି। ପରିବେଶର ସର୍ବତ୍ର ସୌନ୍ଦର୍ଯ୍ୟର ସ୍ପର୍ଶ ଓ ବିସ୍ତୃତ। ଦ୍ୱିତୀୟତଃ ମୁଖରେ ସଦା ସର୍ବଦା ସ୍ମିତହସ। ରାସ୍ତାରେ ଦଳ ଦଳ ଜାପାନୀ ଚାଲି ଯାଉଥିବା ସମୟରେ ଏକ ଶୋଭାମୟ ବାତାବରଣ ନିର୍ମାଣ କରନ୍ତି। ହସି ହସି ପରସ୍ପର ମଧ୍ୟରେ କଥାବାର୍ତ୍ତା କରୁଥିବେ। ଧରିଥିବା ହାତପଙ୍ଖାଟି ଚାଳନ କରି ଶୀତଳତାର ଆବାହାଓ୍ୱା ସୃଷ୍ଟି କରୁଥିବେ। ହୋଟେଲ୍‌ରେ ଜାପାନୀ ଦଳଟିଏ ବସି ଖାଉଥିବା ସମୟରେ ସେମାନେ ଯେପରି ମୁକ୍ତ ଭାବରେ କଥାବାର୍ତ୍ତା କରନ୍ତି ଏବଂ ହସଖୁସି କରନ୍ତି ସେପରି ଦୃଶ୍ୟ ସାଧାରଣତଃ ପାଶ୍ଚାତ୍ୟ ଜଗତରେ ଦେଖାଯାଏ ନାହିଁ।

କିୟୋତୋରୁ ଓସାକା ଆସିବା ପରେ ଓସାକା ବିମାନ ବନ୍ଦରରେ ଭାରତରୁ ଯାଇଥିବା ଏବଂ ମନୋବିଜ୍ଞାନ କଂଗ୍ରେସରେ ଯୋଗ ଦେଇଥିବା କିଛି ବନ୍ଧୁଙ୍କ ସହ ସାକ୍ଷାତ୍ ହେଲା। ସମ୍ଭବତଃ କଂଗ୍ରେସର ବିଶାଳତା ଦୃଷ୍ଟିରୁ କିୟୋତୋରେ ସେମାନଙ୍କ ସହ ସାକ୍ଷାତ ହୋଇ ନଥିଲା। ଟୋକିଓ ଉଦ୍ଦେଶ୍ୟରେ ଓସାକାରୁ ଛାଡୁଥିବା ବିମାନରେ ସମୟ ନିର୍ଘଣ୍ଟ ଦୂର ଥିଲା। ବିମାନ ବନ୍ଦର ପାଶ୍ୱରେ "ମୋତି" ନାମକ ଏକ

ରେଷ୍ଟୋରାଁ ଦୃଷ୍ଟିଗୋଚର ହେଲା। ଭାରତୀୟ ଖାଦ୍ୟ ଖାଇବାକୁ ଆମେ ସେ ଦିଗରେ ଅଗ୍ରସର ହେଲୁ। ଦେଖିଲୁ ଯେ ମାଲିକ ଜଣକ ପାକିସ୍ତାନର ଲୋକ। ମନ ଭରି ଖାଇଲୁ। ଖାଇ ସାରିଲା ପରେ ମାଲିକ ଜଣକ ଅନୁରୋଧ କଲେ ଯେ ତାଙ୍କର ସେଠାରେ ଘୋର ଅଭାବ ରହିଛି। କିନ୍ତୁ ଏପରି ଖାଦ୍ୟ ପାଇଁ ଚାହିଦା ବଢୁଛି। ରନ୍ଧନକଳାରେ ନିପୁଣ ଥିବା ଏବଂ ଆସିବାକୁ ଚାହୁଁଥିବା କୌଣସି କୌଣସି ବ୍ୟକ୍ତିର ସନ୍ଧାନ ଦେଲେ ସେ ଖୁସୀ ହେବେ। ଆମେ ଚେଷ୍ଟା କରିବାର କଥା ଦେଇ ବିଦାୟ ନେଲୁ।

ଆସିବା ସମୟରେ ମାଡ୍ରାଜରେ (ବର୍ତ୍ତମାନର ଚେନାଇ) ଏକ ବିଶେଷ କାର୍ଯ୍ୟ ଥିବାରୁ ମୁଁ ଫେରିବା ବାଟରେ ଟୋକିଓରୁ ସିଙ୍ଗାପୁର ଏବଂ ସିଙ୍ଗାପୁରରୁ କୁଆଲାଲୁମ୍ପୁରୁ ଗଲି। ସେଠାରୁ ଚେନାଇ ଆସିଲି। ଚେନାଇରେ ମୋର ପତ୍ନୀ ଓ କନ୍ୟା ଭୁବନେଶ୍ୱରରୁ ଆସି ପହଞ୍ଚିଲେ। ଦୀର୍ଘଦିନ ପରେ ପାରିବାରିକ ମିଳନ ଏକ ଆନନ୍ଦର ମୁହୂର୍ତ୍ତ ଥିଲା।

## କାନାଡ଼ା ଯାତ୍ରା

ଏକାଧିକ ଭ୍ରମଣର ସୁଯୋଗ ଓ ସୌଭାଗ୍ୟ ଏକସଙ୍ଗରେ ଆସିବ ବୋଲି କଳ୍ପନା କରି ନଥିଲି। ୧୯୯୦ ମସିହାର ଏପ୍ରିଲ/ମଇ ମାସରେ ଆଗାମୀ ଭ୍ରମଣର ଚିତ୍ର ସ୍ପଷ୍ଟ ହୋଇଥିଲା। ମୋର ବହୁ ଅଭିଳଷିତ ହନଲୁଲୁ ଯିବାର ବନ୍ଦୋବସ୍ତ ଭାରତସ୍ଥିତ ଆମେରିକା ଶିକ୍ଷା ସଂସ୍ଥା (USEFI) କରିଥିଲା। ସେମାନଙ୍କ ସହାୟତାରେ ଜୁଲାଇରେ ହନଲୁଲୁ ଗଲି। ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟର ସହାୟତାରେ ଜାପାନର କିଯୋଟୋ ଗଲି। ଅବଶ୍ୟ ହନଲୁଲୁରୁ ଫେରନ୍ତାର ବାଟରେ ଜାପାନ ଗଲି। ଏପ୍ରିଲ/ମଇ ମାସରେ ମୁଁ ଆଉ ଗୋଟିଏ ସଫଳତାର ଅଧିକାରୀ ହୋଇଥିଲି। ଭାରତ-କାନାଡ଼ା ଶାସ୍ତ୍ରୀ ପରିଷଦ ପ୍ରତିବର୍ଷ ସମାଜ-ବିଜ୍ଞାନ-ସଂଶ୍ଳିଷ୍ଟ ଗବେଷଣା ପାଇଁ ଦୁଇଜଣଙ୍କୁ ଫେଲୋସିପ୍ ପ୍ରଦାନ କରନ୍ତି। ଏହି ଫେଲୋସିପ୍ ପାଇଲେ କୌଣସି କାନାଡ଼ାର ବିଶ୍ୱବିଦ୍ୟାଳୟରେ ଚାରିମାସ ପର୍ଯ୍ୟନ୍ତ ଗବେଷଣା କରିହେବ। ଏହି ଫେଲୋସିପ୍ ପାଇଁ ଆବେଦନ କରି ମୁଁ ସଫଳ ହୋଇଥିଲି। କାନାଡ଼ାରେ ଶିକ୍ଷାବର୍ଷ ସେପ୍ଟେମ୍ବର ମାସରୁ ଆରମ୍ଭ ହେଉଥିବାରୁ ସେପ୍ଟେମ୍ବର ଆରମ୍ଭରୁ ଡିସେମ୍ବର ଶେଷ ପର୍ଯ୍ୟନ୍ତ କୁଇନ୍ସ ବିଶ୍ୱବିଦ୍ୟାଳୟରେ ଜନ୍ ବେରୀଙ୍କ ସହିତ କାମ କରିବାର ପ୍ରସ୍ତାବ ଦେଇଥିଲି। ତାହା ସ୍ୱୀକୃତି ଲାଭ କରିଥିଲା।

ଜୁଲାଇ ଶେଷ ଭାଗରେ ହନଲୁଲୁ ଫେରିବା ପରେ ସେପ୍ଟେମ୍ବର ଆରମ୍ଭରେ କାନାଡ଼ା ଯିବାର ପ୍ରସ୍ତୁତି ଆରମ୍ଭ କଲି। ବିଦେଶ ଯାତ୍ରାର ଔପଚାରିକ ପ୍ରସ୍ତୁତି କଷ୍ଟକର ନ ଥିଲା। ଶାସ୍ତ୍ରୀ ପରିଷଦ ଆମ ଦୁଇଜଣଙ୍କର ପାସ୍‌ପୋର୍ଟ ନେଇ ଖୁବ୍

ଅଳ୍ପଦିନ ମଧ୍ୟରେ ଭିସା ଷ୍ଟାମ୍ପ ସହ ମୋତେ ପାସ୍‌ପୋର୍ଟ ଫେରାଇଦେଲେ। ମୋର କନ୍ୟା ଭୂମିକାର ବୟସ କମ୍ ହୋଇଥିବାରୁ ତା' ପାଇଁ ସ୍ୱତନ୍ତ୍ର ପାସ୍‌ପୋର୍ଟର ଆବଶ୍ୟକତା ନ ଥିଲା। ତା'ର ନାମଟି ଅଞ୍ଜୁର ପାସ୍‌ପୋର୍ଟରେ ଉଲ୍ଲେଖ ଥିଲା।

ପ୍ରଥମ ଥର ପାଇଁ ଭୂମିକାକୁ ନେଇ ଯାଉଥିବାରୁ ମୋ ମନରେ ଗଭୀର ଉନ୍ମାଦନା ଥିଲା। ସେତେବେଳେ ତା'ର ବୟସ ସାତ ଆଠ ବର୍ଷ। ସେ ଭୁବନେଶ୍ୱର ଡ଼ି.ଏମ୍. ସ୍କୁଲର ଛାତ୍ରୀ ଥିଲା। ଏକ ନୂତନ ଦେଶ ଓ ନୂତନ ପରିବେଶ ସହିତ ତା'ର ପରିଚିତ ଶିକ୍ଷାପ୍ରଦ ହେବ, ଏପରି ଭାବନା ନେଇ ଆମେ ତା'କୁ ନେଇଯିବା ପାଇଁ ମନସ୍ଥ କରିଥିଲୁ।

ଯିବା ସମୟର ବ୍ୟବସ୍ଥା ଥିଲା ଯେ ଆମେ ଏୟାର୍ ଇଣ୍ଡିଆ ବିମାନରେ ଲଣ୍ଡନ ପର୍ଯ୍ୟନ୍ତ ଯିବୁ ଏବଂ ସେଠାରୁ ଏୟାର୍ କାନାଡ଼ା ବିମାନରେ ଟରୋଣ୍ଟୋ ଯିବୁ। କୌଣସି କାରଣରୁ ଏୟାର ଇଣ୍ଡିଆ ବିମାନରେ ବସି ସାରିବା ପରେ ମଧ୍ୟ ଉଡ଼ାଣ ଆରମ୍ଭ ହେଲା ନାହିଁ। ଆରମ୍ଭରୁ ପ୍ରାୟ ଚାରିଘଣ୍ଟା ବିଳମ୍ବ ଘଟିଲା। ଗୋଟିଏ ଦୃଷ୍ଟିରୁ ଏହା ଆମପ୍ରତି ହିତକର ଥିଲା। ଲଣ୍ଡନରେ ପହଞ୍ଚିବା ବେଳକୁ ଏୟାର୍ କାନାଡ଼ା ବିମାନ ଲଣ୍ଡନ ଛାଡ଼ି ସାରିଥିଲା। ସୁତରାଂ ନିୟମାନୁଯାୟୀ ଏୟାର୍ ଇଣ୍ଡିଆ ଆମ ପାଇଁ ଲଣ୍ଡନରେ ଗୋଟିଏ ଦିନ ରହିବା ପାଇଁ ଭିସା ଓ ହୋଟେଲ୍‌ର ବ୍ୟବସ୍ଥା କଲେ। ପରଦିନ କାନାଡ଼ା ଯିବା ପାଇଁ ଟିକେଟ୍ ମିଳିଲା। ସେମାନେ ପେଣ୍ଟା ନାମକ ଏକ ଷ୍ଟାର୍ ହୋଟେଲ୍‌ରେ ଆମର ରହିବାର ବ୍ୟବସ୍ଥା କରିଥିଲେ।

ପରଦିନ ଏୟାର କାନାଡ଼ାର ବିମାନର ଛାଡ଼ିବା ସମୟ ବିଳମ୍ବରେ ଥିଲା। ସୁତରାଂ ପ୍ରାତଃ ଭୋଜନ ପରେ ଆମେ ଲଣ୍ଡନ ବୁଲିବାର ସୁଯୋଗ ପାଇଲୁ। ପୂର୍ବଥର କାନାଡାରୁ ଭାରତ ଫେରିବା ସମୟରେ ଅଞ୍ଜୁ ଓ ମୁଁ ଲଣ୍ଡନରେ ଗୋଟିଏ ସପ୍ତାହ କଟାଇଥିଲୁ। ମାତ୍ର ଭୂମିକା(ପଲ୍ଲୀ) ପ୍ରଥମ ଥର ଲାଗି ଲଣ୍ଡନ ଦେଖିବାର ସୁଯୋଗ ପାଇଲା। ସେ ଖୁସୀରେ କୁରୁଳି ଉଠୁଥାଏ। ଆମ ସହିତ ଆମ ଝିଅ ଲଣ୍ଡନ ଦେଖିନାହିଁ, ପୂର୍ବରୁ ରହି ଯାଇଥିବା ଏହି ଅଭାବବୋଧ ଅନ୍ତତଃ କେତେକାଂଶରେ ପୂରଣ ହେଲା।

ଆମେ ଠିକ୍ ସମୟରେ ଟରଣ୍ଟୋ ବିମାନ ବନ୍ଦରରେ ପହଞ୍ଚିଲୁ। ପୂର୍ବରୁ ଟରଣ୍ଟୋରେ ରହୁଥିବା ଆମର ଏକ ବନ୍ଧୁ ପରିବାରକୁ ଆମର ଆସିବା ଖବର ଜଣାଇଥିଲୁ। ତେଣୁ ପ୍ରତାପ ବାବୁ ବିମାନ ବନ୍ଦରକୁ ଆସିଥିଲେ ଏବଂ ଆମ୍ଭମାନଙ୍କୁ ତାଙ୍କ ଘରକୁ ନେଇଗଲେ। ତାଙ୍କ ପରିବାରରେ ଦୁଇ ତିନିଦିନ ଖୁସିରେ କଟିଲା। ଆମେ ପ୍ରଥମ ଥର କାନାଡ଼ା ଆସିଥିବା ସମୟରେ ଆମର ପାଖାପାଖି ଆପାର୍ଟମେଣ୍ଟରେ ରହୁଥିବା ପ୍ରସାଦ ଭାଇ (ସେ ସମୟରେ କୁଇନ୍ସ ପଦାର୍ଥ ବିଜ୍ଞାନ ବିଭାଗର ପୋଷ୍ଟ

ଠକୁରାଲ୍) ଓ ଶଶୀ ବର୍ତ୍ତମାନ ଟରଣ୍ଟୋ ନିକଟବର୍ତ୍ତୀ କଲିନ୍‌ସଉଡ୍ ନାମକ ସ୍ଥାନରେ ରହୁଥିଲେ। ପ୍ରସାଦ ଭାଇ ଗୋଟିଏ ଛୋଟକାଟିଆ କମ୍ପାନୀର ମାଲିକ ଥିଲେ। ଆମେ କିଙ୍ଗ୍‌ସଟନ୍ ଯିବା ପୂର୍ବରୁ ତାଙ୍କ ସହିତ ଦୁଇତିନିଦିନ କଟାଇବାକୁ ଅନୁରୋଧ କରିଥିଲେ।

ପ୍ରତାପବାବୁଙ୍କ ଘରେ ଦୁଇତିନିଦିନ ରହିବା ପରେ ଆମେ କଲିଙ୍ଗ୍‌ସଉଡ୍ ଗଲୁ। ବିରାଟ ହ୍ରଦ କୂଳରେ ତାଙ୍କର ଘର। ଦୀର୍ଘ ଦଶବର୍ଷର ବ୍ୟବଧାନ ପରେ ଗୋଟିଏ ପୁରାତନ ବନ୍ଧୁ ପରିବାର ସହିତ ମିଳିତ ହେବାର ଆନନ୍ଦ ପାଇଲୁ। ସେମାନଙ୍କ ଝିଅ ନିରୁ ସ୍କୁଲ ଯିବା ଆରମ୍ଭ କରିଥାଏ। ପତ୍ନୀ ମଧ୍ୟ ବନ୍ଧୁ ପାଇ ଖୁସୀ ହେଲା। ସେଠାରେ ଦୁଇତିନିଦିନ ରହିବା ପରେ ଟରଣ୍ଟୋରୁ ବସ୍‌ରେ କିଙ୍ଗ୍‌ସଟନ୍ ଗଲୁ।

କିଙ୍ଗ୍‌ସଟନ୍‌ରେ ଦୁଇଟି ପ୍ରାରମ୍ଭିକ ଆବଶ୍ୟକତା ରହିଥିଲା। ଗୋଟିଏ ହେଉଛି ପତ୍ନୀ ପାଇଁ ସ୍କୁଲ ବ୍ୟବସ୍ଥା ଏବଂ ଦ୍ୱିତୀୟଟି ଭଡ଼ାଘର। ମୋର ପ୍ରଫେସର୍ ଜନ୍ ବେରୀଙ୍କୁ ଏ ଦୁଇଟିର ବ୍ୟବସ୍ଥା କରିବା ପାଇଁ ମୁଁ ଅନୁରୋଧ କରିଥିଲି ଏବଂ ସେ କରିଛନ୍ତି ବୋଲି ମୋତେ ଜଣାଇଥିଲେ। ଆମେ କିଙ୍ଗ୍‌ସଟନ୍‌ରେ ପହଞ୍ଚିବା ମାତ୍ରେ ଆମର ସମ୍ମାନସ୍ପଦ ବିନୁଦା (ପ୍ରଫେସର ବିନୟ ମୁଖାର୍ଜୀ) ତାଙ୍କ ଘରକୁ ନେଇଗଲେ ଏବଂ ଆମେ ରୁମାଦି ଏବଂ ସେମାନଙ୍କ ପୁଅଝିଅ (ଦୀନୁ ଓ ମିତୁନ୍) ସହିତ ସେ ଦିନଟି କଟାଇଲୁ।

ସେପ୍ଟେମ୍ବର ୬ରୁ ଆମର କିଙ୍ଗ୍‌ସଟନ୍‌ର ପ୍ରକୃତ ଜୀବନ ଯାତ୍ରା ଆରମ୍ଭ ହେଲା। ସକାଳ ଓଳି ମୋର ପ୍ରଫେସର୍ ଜନ୍ ବେରୀ ତାଙ୍କ ଗାଡ଼ିରେ ଆମ ତିନିଜଣଙ୍କୁ ନୂଆ ଭଡ଼ାଘରକୁ ନେଇଗଲେ। ଘରଟି କିଙ୍ଗ୍‌ସଟନ୍‌ର ମୁଖ୍ୟ ସପିଙ୍ଗ୍ ସେଣ୍ଟର୍ ପାଖରେ। ସେ ଘରେ ଅଳ୍ପ ସମୟ ମଧ୍ୟରେ ଜିନିଷପତ୍ର ରଖିଦେଇ ବେରୀଙ୍କ ସୂଚନା ଅନୁସାରେ ଇମିଗ୍ରେସନ ଅଫିସ୍ ବାହାରିଲୁ। ସ୍କୁଲରେ ଭର୍ତ୍ତି ହେବା ପାଇଁ ଇମିଗ୍ରେସନ ଅନୁମୋଦନ ଆବଶ୍ୟକ। ସ୍କୁଲରେ ପିଲାଙ୍କ ପାଇଁ କିଛି ପଇସାପତ୍ର ଦେବାକୁ ପଡ଼ି ନଥାଏ। ମାତ୍ର ନାଗରିକମାନେ ସେମାନଙ୍କ ମ୍ୟୁନିସିପାଲିଟି ଟ୍ୟାକ୍‌ସର ଏକ ଅଂଶବିଶେଷ ରୂପେ ଶିକ୍ଷା ଟ୍ୟାକ୍ସ ଦିଅନ୍ତି। ଏହାର ପରିମାଣ ଖୁବ୍ ବେଶୀ। ଆମେ ଏହି ଶିକ୍ଷା ଶୁଳ୍କ ଦେଉ ନଥିବାରୁ ଇମିଗ୍ରେସନ ଅନୁମୋଦନ ଆବଶ୍ୟକ ହୁଏ। ଇମିଗ୍ରେସନ ଅଫିସ୍‌ରେ ମାତ୍ର ପନ୍ଦର ମିନିଟ୍ ମଧ୍ୟରେ ଅଫିସର ଅନୁମୋଦନ ପତ୍ରଟି ଅଞ୍ଜୁର ପାସ୍‌ପୋର୍ଟରେ ଲଗାଇଦେଲି।

ଦ୍ୱିତୀୟ ପଦକ୍ଷେପରେ ଆମେ ସ୍କୁଲବୋର୍ଡ଼କୁ ଗଲୁ। ଅଭ୍ୟର୍ଥନାକାରୀ ଆମର ଅଭିପ୍ରାୟ ଜାଣିବା ପରେ ଆମକୁ ପ୍ରତୀକ୍ଷାଳୟରେ ବସାଇଦେଇ ଏବଂ ପାସ୍‌ପୋର୍ଟ ନେଇ ଭିତରକୁ ଗଲେ। ପାଞ୍ଚମିନିଟ୍ ମଧ୍ୟରେ ଅନୁମୋଦନର ଷ୍ଟାମ୍ପ୍ ଦେଇ ଆମକୁ ଫେରାଇଦେଲେ।

ତା'ପରେ ଆମେ ସ୍କୁଲକୁ ଗଲୁ। ସ୍କୁଲଟି ଆମର ଭଡ଼ାଘର ପାଖାପାଖି। ମାତ୍ର ପାଞ୍ଚ ମିନିଟ୍‌ର ବାଟ। ରିଡ୍ଡୋ ସ୍କୁଲ। ପ୍ରଥମେ ପ୍ରଧାନ ଶିକ୍ଷକଙ୍କୁ ସାକ୍ଷାତ୍ କଲୁ। ସେ ସହାସ୍ୟ ବଦନରେ ଆମ ସହିତ କଥାବାର୍ତ୍ତା କଲେ। ପଲ୍ଲୀ କେଉଁ ଶ୍ରେଣୀରେ ପଢୁଥିଲା ବୋଲି ପଚାରିଲେ। ପଲ୍ଲୀ କହିଲା: ତୃତୀୟ ଶ୍ରେଣୀ। ପ୍ରଧାନ ଶିକ୍ଷକ କହିଲେ ଯେ ଭାରତୀୟ ପିଲାମାନେ ଗଣିତରେ ଖୁବ୍ ଦକ୍ଷ। ସୁତରାଂ ଗଣିତ ପାଇଁ ତୃତୀୟ ଶ୍ରେଣୀରେ ରହିବ; ମାତ୍ର ଅନ୍ୟ ପାଇଁ ଦ୍ୱିତୀୟ ଶ୍ରେଣୀରେ ରହିବ। ଏପରି ବ୍ୟବସ୍ଥା ଦେଖି ମୁଁ ଖୁସୀ ହେଲି ଯେ ଆୟୋଜନ ସବୁ ସରଳ ଓ ଉପଯୋଗୀ। ଯେଉଁଠି ଯେପରି ଆବଶ୍ୟକ, ସେପରି ପରିବର୍ତ୍ତନ କରାଯାଇପାରେ। ତା'ପରେ ପ୍ରଧାନ ଶିକ୍ଷକ ଶ୍ରେଣୀ ଶିକ୍ଷକଙ୍କୁ ଡାକିଲେ। ତାଙ୍କ ନାମ ଜ୍ୟାକେଲ୍‌ଷ୍ଟୋନ୍। ସେ ପଲ୍ଲୀ ସହିତ କଥାବାର୍ତ୍ତା କଲେ। ପଲ୍ଲୀ କେମିତି ସମୟ କାଟେ ବୋଲି ପଚାରିଲେ। କଥାବାର୍ତ୍ତା ପ୍ରସଙ୍ଗରେ ପଲ୍ଲୀ ପାଟିରୁ "ହୋମ୍ ଟାସ୍କ" ଶବ୍ଦଟି ବାହାରିଗଲା। ମିସେସ୍ ଜ୍ୟାକେଲ୍‌ଷ୍ଟୋନ୍ କହିଲେ: "କାନାଡ଼ାରେ ହୋମଟାସ୍କ କିଛି ନାହିଁ। ଘରେ ବାପମା'ଙ୍କ ସହିତ ମଜା କରିବ। ଯାହା କରିବାର କଥା, ତାହା ସ୍କୁଲରେ କରାଯିବ।" ଆମେ ସମସ୍ତେ ହସି ଉଠିଲୁ।

ଗଭୀର ଆତ୍ମତୃପ୍ତି ନେଇ ଘରକୁ ଫେରିଲୁ। ଆମେ ମାତ୍ର ଚାରିମାସ ପାଇଁ କାନାଡ଼ା ଆସିଛୁ। ହୁଏତ ପଲ୍ଲୀକୁ ସ୍କୁଲରେ ଭର୍ତ୍ତି କରିବାର ପ୍ରକ୍ରିୟା ମଧ୍ୟରେ ଭାରତରେ ଚାରିମାସ ବିତି ଯାଇଥାଆନ୍ତା। କିନ୍ତୁ ଏଠାରେ କିଙ୍ଗ୍‌ସଟନ୍‌ରେ ମାତ୍ର କେଇ ଘଣ୍ଟା ମଧ୍ୟରେ ସବୁ କାମ ସୁରୁଖୁରୁରେ ହୋଇଗଲା। ବିଶେଷତଃ ପଲ୍ଲୀକୁ ଦୁଇଟି ଶ୍ରେଣୀରେ ସ୍ଥାନିତ କରିବାର ବ୍ୟବସ୍ଥା କେତେ ସୃଜନାତ୍ମକ। ଅନେକ ସମୟରେ ନିୟମ ପଛରେ ଥିବା ଆଭିମୁଖ୍ୟଠାରୁ ନିୟମକାନୁନର ଅକ୍ଷର ସବୁ ବଡ଼ ହୋଇଯାଏ। ଅମଲାତାନ୍ତ୍ରିକ ବ୍ୟବସ୍ଥାରେ ଭଲ ଜିନିଷ ଚାପି ହୋଇଯାଏ। ମାତ୍ର କାନାଡ଼ା ପରି ପ୍ରଗତିଶୀଳ ଦେଶରେ ବ୍ୟବସ୍ଥାସବୁର କ୍ଷିପ୍ରତା ଓ ସଚଳତା ପ୍ରକୃତରେ ଶିକ୍ଷାପ୍ରଦ।

ଆମର ଖୁସି ଯେ ପୂରା ଚାରିମାସ ପଲ୍ଲୀ ତା'ର ସ୍କୁଲରେ ପ୍ରତି ମୁହୂର୍ତ୍ତକୁ ଉପଭୋଗ କଲା। ପଞ୍ଜୀକରଣର ପରଦିନ ସ୍କୁଲକୁ ଯିବା ସମୟରେ ଦେଖିଲା ଯେ ଏକ ନିରୂପିତ ସ୍ଥାନରେ ତା'ର ନାମ ଅଙ୍କିତ ହୋଇଥିବା ବ୍ୟାଗଟି ଶୋଭା ପାଉଛି। ସେହି ବ୍ୟାଗ୍‌ରେ ଯାବତୀୟ ଜିନିଷ ରହିଛି। ଅଥଚ ସେଇଟି ବୋହି ଘରକୁ ଅଣାଯିବ ନାହିଁ। ତାହା ସ୍କୁଲରେ ହିଁ ରହିବ। ସେହିଠାରେ ଉପଯୋଗ ହେବ। ବ୍ୟାୟାମ କରିବା ପାଇଁ ସୁନ୍ଦର ବ୍ୟବସ୍ଥା। ଚାରିମାସର ତାଲିମ ପଲ୍ଲୀ ପାଇଁ ବିଶେଷ ଫଳପ୍ରଦ ହେଲା। ବିଶେଷତଃ ଇଂରାଜୀ ଉଚ୍ଚାରଣ ଭଲ ବିକଶିତ ହେଲା। ପଲ୍ଲୀ ଓଡ଼ିଶା ଫେରିବା ପରେ ଡି.ଏମ୍. ସ୍କୁଲର ବିଭିନ୍ନ ପ୍ରତିଯୋଗିତା ମଧ୍ୟରୁ ପାଞ୍ଚ ଛ'ଟି

ପ୍ରତିଯୋଗିତାରେ (ବକ୍ତୃତା, ଆବୃତ୍ତି ଇତ୍ୟାଦି) ପ୍ରଥମ ସ୍ଥାନ ଅଧିକାର ଲାଭ କରିବାର କୃତିତ୍ୱ ମୂଳରେ ରିଡ଼ୋ ସ୍କୁଲର ଏକ ମୁଖ୍ୟ ଭୂମିକା ଥିଲା ବୋଲି ଆମେ ଉପଲବ୍ଧି କଲୁ।

କୁଇନ୍ସର ପରିବେଶ ସହିତ ମୁଁ ପୂର୍ବରୁ ପରିଚିତ ଥିଲି। ସୁତରାଂ ମୋର ସମନ୍ୱୟଶୀଳତା ଅପେକ୍ଷାକୃତ ଅଧିକ ସହଜ ଥିଲା। ମୋର ପ୍ରଫେସରଙ୍କ ଅନ୍ତରଙ୍ଗ ବନ୍ଧୁ ରୁଡ଼ି କାଲିନ୍ ବିଭାଗୀୟ ମୁଖ୍ୟର ଦାୟିତ୍ୱ ଗ୍ରହଣ କରିଥିଲେ। ବିଭାଗର ବହୁ କାର୍ଯ୍ୟର କମ୍ପ୍ୟୁଟରକରଣ ଘଟିଥିଲା। ମୋ ଉପରେ ବିଶେଷ ଚାପ ନ ଥିଲା। ଗବେଷଣା ସ୍ତରରେ ମୋର ଆଭିମୁଖ୍ୟ ଥିଲା ଯେ ଏକ ବହୁ ସଂସ୍କୃତିର ଦେଶ ହିସାବରେ କାନାଡ଼ାରେ ଯେଉଁ ସବୁ ଗୋଷ୍ଠୀ ସମ୍ପର୍କରେ ଗବେଷଣା କରାଯାଇଛି, ସେ ସମ୍ପର୍କରେ ଅନୁଧ୍ୟାନ କରିବି। ଭାରତରେ ମଧ୍ୟ ବହୁ ଧର୍ମ ବହୁ ସମ୍ପ୍ରଦାୟ ଓ ଏକାଧିକ ଜାତିର ଲୋକମାନେ ବସବାସ କରୁଥିବାରୁ ସେମାନଙ୍କର ପାରସ୍ପରିକ ସମ୍ପର୍କ ଓ ମନୋବୃତ୍ତି ବିଷୟରେ ଗୋଟିଏ ଗବେଷଣା ପ୍ରକଳ୍ପ ପ୍ରସ୍ତୁତ କରିବି। କାନାଡ଼ା ପରିପ୍ରେକ୍ଷୀରେ ଜନ୍ ବେରୀ ଓ ରୁଡ଼ି କାଲିନ୍ ଏପରି ମନୋବୃତ୍ତି ଅନୁଶୀଳନ ଗବେଷଣା କାର୍ଯ୍ୟରେ ନେତୃତ୍ୱ ନେଇଥିବାରୁ ସେମାନଙ୍କ ସହାୟତା ଉପଯୋଗୀ ହେବ।

ମୋର ପ୍ରତ୍ୟାଶା ଠିକ୍ ରୂପେ ପରିପୂରିତ ହୋଇପାରିଥିଲା। ଚାରିମାସ ମଧ୍ୟରେ ପ୍ରକଳ୍ପଟି ଶେଷ କରି ମୁଁ ଭାରତ କାନାଡ଼ା ଶାସ୍ତ୍ରୀ ପରିଷଦକୁ ଦେଇ ପାରିଥିଲି।

ସାମାଜିକ, ସାଂସ୍କୃତିକ ଜୀବନ ପୂର୍ବଥର ପରି ଆନନ୍ଦବହୁଳ ଥିଲା। ପ୍ରଫେସର୍ ବିନୟ କୁମାର ମୁଖାର୍ଜୀ, ପ୍ରଫେସର୍ ପରେଶ ସେନ୍ ଓ ପ୍ରଫେସର୍ ହାଫିଜୁର୍ ରହେମନ୍ ଏବଂ ସେମାନଙ୍କ ପରିବାରର ଆତ୍ମୀୟତା ଦ୍ୱିତୀୟ ଥର ପାଇଁ ଅନୁଭବ କଲୁ। ଗୁପ୍ତାଦା କିଙ୍ଗ୍‌ସଟନ୍ ଛାଡ଼ି ଟରଣ୍ଟୋରେ ବସବାସ ଆରମ୍ଭ କରିଥିଲେ। ଆମେ ତାଙ୍କୁ ଟରଣ୍ଟୋ ବାସଭବନରେ ସାକ୍ଷାତ୍ କଲୁ। ଦ୍ୱିତୀୟଥର ପାଇଁ ନାଏଗ୍ରା ଜଳପ୍ରପାତ ଓ ଅନ୍ୟ କେତେକ ସ୍ଥାନ ବୁଲିଗଲୁ। ଚାରିମାସ ମଧ୍ୟରେ ଦୁଇତିନିଥର ଟରଣ୍ଟୋ ଆସି ଓଡ଼ିଆ ପରିବାର ସମୂହର ସମାବେଶରେ ଯୋଗଦେଲୁ।

ଚାରିମାସର ଅବସ୍ଥାନ ସମୟରେ ଗୋଟିଏ ଘଟଣା ବେଶ୍ ସ୍ମରଣୀୟ। ଆମର ପ୍ରଥମ କାନାଡ଼ା ଭ୍ରମଣ ସମୟରେ ଶ୍ରୀଲଙ୍କାରୁ ଆସିଥିବା ଜଣେ ତାମିଲ୍ ଭଦ୍ରବ୍ୟକ୍ତି ମହାଲିଙ୍ଗମ୍ ତାଙ୍କ ଘରକୁ ଆମନ୍ତ୍ରଣ କରିଥିଲେ। ତାଙ୍କ ଘରେ କୌଣସି ଏକ ପୂଜା ହୁଏ ବୋଲି ସେ ଧାରଣା ଦେଇଥିଲେ। ମହାଲିଙ୍ଗମ୍ କୁଇନ୍ସ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀରେ କାର୍ଯ୍ୟ କରନ୍ତି। ମୁଁ ତାଙ୍କୁ ଚିହ୍ନିଥିଲି। ସୁତରାଂ ତାଙ୍କ ଘରକୁ ଗଲି ଏବଂ କିଛି ସମୟ କାଟିଲୁ। ଜାଣିବାକୁ ପାଇଲୁ ଯେ ତାଙ୍କ ଘରେ ଶ୍ରୀ ସତ୍ୟସାଇ ବାବାଙ୍କର ପୂଜା କରାଯାଏ।

ବର୍ତ୍ତମାନ ଦ୍ୱିତୀୟ ଥର କାନାଡ଼ା ଯାତ୍ରା ସମୟରେ ଆମେ କିଙ୍ଗ୍‌ସଟନ୍‌ରେ ପହଞ୍ଚି ଶ୍ରୀ ମହାଲିଙ୍ଗମ୍‌ଙ୍କ କଥା ପଚାରିଲୁ। ଜାଣିବାକୁ ପାଇଲୁ ଯେ ଶ୍ରୀ ମହାଲିଙ୍ଗମ୍ ଆଉ କିଙ୍ଗ୍‌ସଟନ୍‌ରେ ନ ରହି ଭାରତରେ ଶ୍ରୀ ସତ୍ୟସାଇ ବାବାଙ୍କ ଆଶ୍ରମରେ ରହୁଛନ୍ତି। ତେବେ ପୂର୍ବରୁ ତାଙ୍କ ଘରେ ଅନୁଷ୍ଠିତ ହେଉଥିବା ସାପ୍ତାହିକ ସାଇ ଭଜନ ବର୍ତ୍ତମାନ ଅନ୍ୟ ଜଣେ ଶ୍ରୀଲଙ୍କାରୁ ଆସିଥିବା ତାମିଲ ଭଦ୍ରବ୍ୟକ୍ତି ଶ୍ରୀ ସଭାପତିଙ୍କ ଘରେ ଅନୁଷ୍ଠିତ ହେଉଛି। ଆମେ ଶ୍ରୀ ସଭାପତିଙ୍କ ସହ ସଂଯୋଗ ସ୍ଥାପନ କରିବା ପରେ ସେ ଆମକୁ ପ୍ରତି ଗୁରୁବାର ସନ୍ଧ୍ୟାରେ ତାଙ୍କ ଘରକୁ ନେବା ପାଇଁ ଇଚ୍ଛା ପ୍ରକାଶ କଲେ। ଅଞ୍ଜୁ ଓ ପଲୀ ସାଇ ଭଜନ ଗାଉଥିବାରୁ ଆମ୍ଭମାନଙ୍କ ଯୋଗଦାନରେ ସେ ଖୁସୀ ହେଲେ। ଆମେ ରହିବା ପର୍ଯ୍ୟନ୍ତ ସପ୍ତାହରେ ଅନ୍ତତଃ ଗୋଟିଏ ସନ୍ଧ୍ୟା ଏକ ପବିତ୍ର ପରିବେଶ ମଧ୍ୟରେ କଟି ଯାଉଥିଲା।

୧୯୯୦ ମସିହା ଅକ୍ଟୋବର ୨୦ ତାରିଖ ଦିନ ସମଗ୍ର ବିଶ୍ୱରେ ଶ୍ରୀ ସତ୍ୟସାଇ ବାବାଙ୍କର ଅବତାର ଦିବସ ପାଳିତ ହୁଏ। ୧୯୪୦ ମସିହାର ଏହିଦିନରେ ସାଇବାବା ନିଜର ଦିବ୍ୟତ୍ୱ ସମ୍ପର୍କରେ ଘୋଷଣା କରିଥିଲେ। ଏହି ଉପଲକ୍ଷେ କାନାଡ଼ାର ରାଜଧାନୀ ଅଟୱା ସହରରେ ଏକ ବଡ଼ ଧରଣର ଉତ୍ସବର ଆୟୋଜନ କରାଯାଇଥିଲା। ଶ୍ରୀ ସଭାପତି ଆମକୁ ଦୁଇଦିନ ପାଇଁ ଅଟୱା ନେଇଗଲେ। ସାଇଦର୍ଶନ ସହିତ ପରିଚିତ ଥିବା କେତେକ ବିଶିଷ୍ଟ ଲୋକ ମଧ୍ୟ କାନାଡ଼ା ବାହାରୁ ଆସିଥିଲେ। ଗୋଟିଏ ଦଳଗତ ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ମୋତେ ସୁଯୋଗ ମିଳିଲା। ପ୍ରାଣଭରି ଏହି ପବିତ୍ର ମୁହୂର୍ତ୍ତକୁ ଅନୁଭବ କଲୁ।

ଡିସେମ୍ବର ମାସର ଶେଷ ସପ୍ତାହରେ ଟରଣ୍ଟୋର ବନ୍ଧୁମାନଙ୍କ ସମାବେଶରେ ଯୋଗଦେଲୁ ଏବଂ ଭାରତ ଫେରିଲୁ।

❖

(୩୦)

# ଖଳନାୟକଃ ଚକ୍ଷୁ ସଂକଟ

ଖଳ ନାୟକର ପରିକଳ୍ପନା ବ୍ୟତୀତ ଗଳ୍ପ ଉପନ୍ୟାସ ଲେଖା ଯାଇ ପାରିବ ନାହିଁ ବୋଲି ସମସ୍ତେ କୁହନ୍ତି। କିନ୍ତୁ ନିଜ ଜୀବନରେ ଖଳ ନାୟକର ଆବିର୍ଭାବ କେହି ଚାହାଁନ୍ତି ନାହିଁ। ମାତ୍ର ଅପ୍ରତ୍ୟାଶିତ ଭାବରେ ଖଳନାୟକ ଜୀବନରେ ଧସେଇ ପଶେ ଏବଂ ବହୁ ସଂଘର୍ଷ ବହୁ ସଂଗ୍ରାମର ପରିବେଶ ତିଆରି କରେ। ମୋ ଜୀବନରେ ମଧ୍ୟ ଛୋଟକାଟିଆ ଖଳନାୟକ ସବୁ ଆସିଛନ୍ତି। କିନ୍ତୁ ଚକ୍ଷୁ ସଙ୍କଟର ଖଳ ନାୟକ କେଇ ଦଶନ୍ଧି ଧରି ମୋତେ ଓଲଟ ପାଲଟ କରିଛି।

ମୋ ଚକ୍ଷୁ ସମ୍ପର୍କରେ ଇତିହାସ ଖୁବ୍ ଦୀର୍ଘ। ପ୍ରଥମ ଥର ପାଇଁ ମୁଁ ତା'ର ଧକ୍କା ଅନୁଭବ କରେ ୧୯୭୦ ମସିହା ଏପ୍ରିଲ ମାସରେ। ମୁଁ ସାମୟିକ ଭାବରେ ମୋ ସାଇକେଲ୍‌ରେ ଚଢ଼ି ଖାନ୍‌ନଗର ଶ୍ମଶାନ କାଳୀ ମନ୍ଦିରକୁ ଯାଏ। ମୁଁ ବଙ୍ଗାଳୀ ସାହିର ଉଚ୍ଚ ଗଡ଼ାଟି ଉପରକୁ ଉଠିଯାଇ କାଠଯୋଡ଼ି ବନ୍ଧରେ ଏହି ମନ୍ଦିରକୁ ଯାଏ। ଦିନେ ସନ୍ଧ୍ୟାରେ ସାଇକେଲ୍‌ରେ ଏହି ଗଡ଼ା ଉପରକୁ ଉଠୁଥିବା ସମୟରେ ଗୋଟିଏ ବଡ଼ ପୋକଟିଏ ଅଚାନକ ଭାବରେ ମୋ ବାମ ଚକ୍ଷୁରେ ପଶିଗଲା। ହଠାତ୍ ମୁଁ ସାଇକେଲ୍‌ରୁ ଓହ୍ଲାଇ ପଡ଼ିଲି ଏବଂ ବାମହାତରେ ବାମଆଖିଟିକୁ ଚାପି ଦେଲି। ସମ୍ଭବତଃ ପୋକଟି ତଳେ ପଡ଼ିଗଲା। ମୁଁ ନିଜକୁ ସ୍ୱାଭାବିକ୍ କରି ମନ୍ଦିର ଗଲି ଏବଂ ଘରକୁ ଫେରିଲି।

ତାହାର କିଛିଦିନ ପରେ ମୋର ଅନର୍ସ ପ୍ରାକ୍ଟିକାଲ ପରୀକ୍ଷା ଥାଏ। ତା'ର ପୂର୍ବଦିନ ରାତିରେ ନିଦ ହେଲା ନାହିଁ। ବାମ ଆଖିରେ ବାଲି ପଡ଼ି ଯାଇଥିବାର ଅନୁଭବ ପାଇଲି। କୌଣସି ମତେ ନିଜକୁ ସମ୍ଭାଳି ନେଲି। ସକାଳେ ଦର୍ପଣର ସାହାଯ୍ୟ ନେଇ ଦେଖିଲି ଯେ ବାମ ଚକ୍ଷୁର କଳାଡ଼ୋଳା ଉପରେ ଧଳା ବ୍ରଣ ପରି କ'ଣ ଗୋଟିଏ ଦିଶୁଛି। ସେଦିନ ପ୍ରାକ୍ଟିକାଲ୍ ପରୀକ୍ଷା ଥିବାରୁ ଆଉ କିଛି କରିବାର ଉପାୟ ନ ଥିଲା। ତା'ପର ଦିନ କଟକ ବଡ଼ ମେଡ଼ିକାଲ୍‌କୁ ଯାଇ ଡାକ୍ତରଙ୍କୁ ଦେଖାଇଲି। ଡାକ୍ତର ଗୋଟିଏ ଅଏଣ୍ଟମେଣ୍ଟ ଦେଲେ ଏବଂ ଏହା ମୋତେ ସାମୟିକ ସମାଧାନ ଦେଲା।

ମଝିରେ ମଝିରେ ବାମ ଆଖିରେ ବାଲି ପଡ଼ିବାର ଅସ୍ୱସ୍ତି ଲାଗେ। ଚକ୍ଷୁ ଡାକ୍ତରଙ୍କ ପାଖକୁ ଯିବାରୁ ସେ ଗୋଟିଏ ଆଇ ଡ୍ରପ ଦେଲେ। ତାକୁ ବ୍ୟବହାର

କରେ ଏବଂ ଅସ୍ୱସ୍ତିରୁ ରକ୍ଷାପାଏ। ଏହିପରି ଦୀର୍ଘ ପାଞ୍ଚ, ଛ' ବର୍ଷ ଚାଲିଲା। ମୁଁ ସେପରି କିଛି ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇ ନଥିଲି।

## ପ୍ରଥମ ଧକ୍କା

କାନାଡ଼ାକୁ ଯିବା ପରେ ପରେ ପ୍ରଥମ ଦୁଇମାସ କୌଣସି ସମସ୍ୟା ନ ଥିଲା। ମାତ୍ର ନଭେମ୍ବର ମାସରେ ପ୍ରକୃତ ଶୀତ ଋତୁ କାନାଡ଼ାରେ ଆରମ୍ଭ ହୁଏ। ଥର୍ମୋଷ୍ଟାଟ୍ ମାଧ୍ୟମରେ ଘର ଭିତରର ଉତ୍ତାପ ଆରାମଦାୟକ ରଖାଯାଏ। ମାତ୍ର ବାହାରେ ଜ୍ୟାକେଟ୍ ପିନ୍ଧିବାକୁ ହୁଏ ଏବଂ କିଛି ସମୟ ପାଇଁ ଅନ୍ତତଃ (ବସ୍‌କୁ ଅପେକ୍ଷା କରିବା ସମୟରେ) ଶୀତ ଅନୁଭୂତ ହୁଏ। ନଭେମ୍ବର ମାସରେ କିଙ୍ଗସ୍ଟନ୍‌ର ତାପମାତ୍ରା ଶୂନ୍ୟର ୫/୬ ଡ଼ିଗ୍ରୀ ତଳକୁ ଏବଂ ଡ଼ିସେମ୍ବରରେ ପ୍ରାୟ ଦଶ ଡ଼ିଗ୍ରୀ ତଳକୁ ଖସିଯାଏ। ନଭେମ୍ବର ମାସରେ ବାମ ଆଖିଟି ଖୁବ୍ ଲାଲ୍ ହୋଇ ଅସ୍ୱସ୍ତି ଅନୁଭବ କରିବାରୁ ପ୍ରଥମେ ଆମ ପରିବାରର ଡାକ୍ତର କାସିମ୍‌ଙ୍କ ସହିତ ପରାମର୍ଶ କଲି। ଅଳ୍ପ ସପ୍ତାହ ପରେ ସେ ପୂର୍ଣ୍ଣ ସମାଧାନ କରି ନ ପାରିବାରୁ ଚକ୍ଷୁ ବିଶେଷଜ୍ଞ ଡାକ୍ତର ମାକ୍‌ଲିନ୍‌ଙ୍କ ପାଖକୁ ପଠାଇଲେ।

ଡାକ୍ତର ମାକ୍‌ଲିନ୍ ମୋ ଚକ୍ଷୁର ସମସ୍ତ ପରୀକ୍ଷା ନିରୀକ୍ଷା ଶେଷ କରି ମନ୍ତବ୍ୟ ଦେଲେ ଯେ ମୁଁ ଟ୍ରାକୋମାର ଶରବ୍ୟ ହୋଇଛି। ସାଧାରଣତଃ ଭାରତ ପରି ଗ୍ରୀଷ୍ମପ୍ରଧାନ ଦେଶରୁ ଆସିଥିବା ଲୋକମାନଙ୍କର ଏପରି ଚକ୍ଷୁ ସମସ୍ୟା ଉପୁଜିଥାଏ। ସେ ମୋତେ FML ନାମକ ଏକ ଆଇ ଡ୍ରପ୍ ଦେଲେ। ଏହା ସହିତ ପ୍ରତିଦିନ ଅନ୍ତତଃ ଦୁଇଥର ଗୋଟିଏ ରୁମାଲ ବା ପରିଷ୍କାର କନା ସାହାଯ୍ୟରେ ଗରମ ସେକ ଦେବା ପାଇଁ ପରାମର୍ଶ ଦେଲେ। ଔଷଧର ମାତ୍ରା ଧୀରେ ଧୀରେ କମାଇବାକୁ ମଧ୍ୟ ପରାମର୍ଶ ଦେଲେ।

ମୁଁ ଦେଖିଲି ଯେ ଆଇଡ୍ରପ୍‌ଟି ବ୍ୟବହାର କଲା ପରେ ଧୀରେ ଧୀରେ ଅସ୍ୱସ୍ତି କମୁଛି। ପ୍ରାୟ ଦୁଇ ସପ୍ତାହ ପରେ ଆଖି ପରିଷ୍କାର ଓ ସ୍ୱାଭାବିକ ହୋଇ ଯାଉଛି। ମାତ୍ର ଦୁଇମାସ ପରେ ସକାଳୁ ଉଠିବା ସମୟରେ ଆଖି ପୁନଶ୍ଚ ଲାଲ୍, କଳା ଡ଼ୋଳା ଉପରେ ବ୍ରଣ ପରି ଧଳା ଧଳା ଦାଗ। ଏସବୁ ଦାଗ ଆଖି ଡ଼ୋଳା ଉପରେ ଘା'ବୋଲି ବୁଝିପାରିଲି। ପୁଣି ଚକ୍ଷୁ ବିଶେଷଜ୍ଞଙ୍କ ପାଖକୁ ଗଲି। ସେ ପୂର୍ବଥର ରଗଖ ଆଇଡ୍ରପ୍ ଦୈନିକ ଦୁଇଥର କରି ଦୁଇ ସପ୍ତାହ ପକାଇଥିବାକୁ କହିଥିଲେ; ବର୍ତ୍ତମାନ ଦୈନିକ ତିନିଥର କରି ଏକମାସ ପର୍ଯ୍ୟନ୍ତ ପକାଇବା ପାଇଁ ପରାମର୍ଶ ଦେଲେ।

ଫଳାଫଳ ପୂର୍ବପରି ଅସ୍ଥାୟୀ। କିଛିଦିନ ଭଲ ରହିଲା। ପୁଣି ତିନି ଚାରିମାସ ପରେ ଉତ୍କଟତର ହୋଇ ସମସ୍ୟା ଆସିଲା। ଡାକ୍ତର ପୁଣି ଔଷଧର ମାତ୍ରା ବଢ଼ାଇଲେ; ବ୍ୟବହାରର ଅବଧି ବଢ଼ାଇଲେ। ଡାକ୍ତର ମାକ୍‌ଲିନ୍ ତାଙ୍କଠାରୁ ଅଧିକ

ଅଭିଜ୍ଞ ଚିକିତ୍ସକ ଡକ୍ଟର ଉଇଲ୍‌ସଙ୍କ ପାଖକୁ ପଠାଇଲେ। ଏ ବିଶେଷଜ୍ଞ ମଧ୍ୟ ସମାନ ଔଷଧ ଦେଲେ। କାନାଡ଼ାରେ ଥିବା ଅବସ୍ଥାରେ ଅନ୍ୟ କୌଣସି ଶାରୀରିକ ସମସ୍ୟାର ସମ୍ମୁଖୀନ ହୋଇ ନଥିଲେ ମଧ୍ୟ ଚକ୍ଷୁର ସମସ୍ୟା ପୂରା ଚାରି ପାଞ୍ଚ ବର୍ଷ ଲାଗି ରହିଥିଲା।

ଅବଶ୍ୟ ମୋର ଚକ୍ଷୁ ସମସ୍ୟା କାନାଡ଼ାରେ ମୋର ଗବେଷଣା କାର୍ଯ୍ୟକୁ ବିପର୍ଯ୍ୟସ୍ତ କରି ନ ଥିଲା। ଆଖିରେ ଅସ୍ୱସ୍ତି ହେବା ମାତ୍ରେ ମୁଁ ରଗଖ ଆଇ ଡ୍ରପ୍ ବ୍ୟବହାର କରେ ଏବଂ ଦିନେ ଦୁଇଦିନ ମଧ୍ୟରେ ଏହା ମୋତେ ସ୍ୱାଭାବିକ୍ ଅବସ୍ଥାକୁ ଫେରି ଆସିବାରେ ସହାୟକ ହୁଏ। ୧୯୮୧ ମସିହାରେ ଭାରତକୁ ଫେରିବା ସମୟରେ ମୁଁ ନିଜେ କେତୋଟି ରଗଖ ଆଇ ଡ୍ରପ୍ ବ୍ୟାଗ୍‌ରେ ନେଇ ଆସିଥିଲି। ପ୍ରଥମେ ପ୍ରଥମେ ସମସ୍ୟା ଉପୁଜିଲେ ଏହାର ଉପଯୋଗ କରି ରକ୍ଷା ପାଉଥିଲି।

୧୯୮୨ରେ ମୋର ଚକ୍ଷୁ ସମସ୍ୟା ଉତ୍କଟତର ହେବାକୁ ଲାଗିଲା। ମୁଁ ଏକାଧିକ ଚକ୍ଷୁ ବିଶେଷଜ୍ଞ ସହିତ ପରାମର୍ଶ କଲି। ସମସ୍ତେ ପ୍ରାୟ ଗୋଟିଏ ପ୍ରକାର ମନ୍ତବ୍ୟ ଦେଲେ। ସେମାନେ କହିଲେ ଯେ "କାନାଡ଼ାରେ ଯେଉଁ ରୋଗ ନିରୂପଣ କରାଯାଇଛି ତାହା ଠିକ୍; ଏହା ତୃତୀୟ କିମ୍ବା ଚତୁର୍ଥ ସୋପାନର ଟ୍ରାକୋମା। କିନ୍ତୁ ଏହି ରୋଗ ପାଇଁ ପରାମର୍ଶ ଦିଆ ଯାଇଥିବା ରଗଖ ଆଇ ଡ୍ରପ୍‌ଟି ଠିକ୍ ନୁହେଁ। କାରଣ ଟ୍ରାକୋମା ପାଇଁ ରଗଖ ଆଇ ଡ୍ରପ୍ ପରି ଷ୍ଟିରୋଏଡ୍ କ୍ଷତିକାରକ। ଏହା କେବଳ ସମସ୍ୟାଟିକୁ କିଛି ସମୟ ଚାପି ଦେଇପାରେ, ମାତ୍ର ସମସ୍ୟା ଦୂର କରିବ ନାହିଁ। ବରଂ ରଗଖ ର ବହୁଳ ପ୍ରୟୋଗ ଫଳରେ ଚକ୍ଷୁର ପ୍ରାକୃତିକ ସୁରକ୍ଷା ଶକ୍ତି ନଷ୍ଟ ହୋଇଛି। ସୁତରାଂ ବାହାରର ସାମାନ୍ୟତମ ସଂକ୍ରମଣରେ ଏହା ପ୍ରଭାବିତ ହେଉଛି।"

ମୋର କିଛି କରିବାର ନ ଥିଲା। ସମ୍ଭବତଃ ଟ୍ରାକୋମା ପରି ଚକ୍ଷୁରୋଗ କାନାଡ଼ାର ମୂଳ ଅଧିବାସୀଙ୍କର ଆଦୌ ହେଉ ନ ଥିବାରୁ ଭ୍ରମାତ୍ମକ ପଦକ୍ଷେପ ନିଆ ଯାଇଛି।

୧୯୮୩ ମସିହାରୁ ସମସ୍ୟା ଧୀରେ ଧୀରେ ବୃଦ୍ଧି ପାଇ ୧୯୮୫/୮୬ ବେଳକୁ ଅସମ୍ଭାଳ ରୂପ ନେଲା। ଅତି କଷ୍ଟରେ ମନୋବିଜ୍ଞାନ ବିଭାଗକୁ ଯାଇ ଅନ୍ତତଃ ଅଧ୍ୟାପନା କାର୍ଯ୍ୟଟି ଚାଲୁ ରଖିବାର ଯତ୍‌ପରୋନାସ୍ତି ଚେଷ୍ଟା କରୁଥିଲି। କଳାଡ଼ୋଳା ଉପରେ ବାରମ୍ବାର ଘା' ହେବା ଫଳରେ ତାହା ମଧ୍ୟ ଦେଇ ଭିତରକୁ ଆଲୋକ ଯିବାରେ ବାଧା ଥିଲା। ସୁତରାଂ ଦୃଷ୍ଟି କ୍ଷମତା ଗଭୀର ଭାବରେ ସଂକୁଚିତ ହୋଇଗଲା। ଆଉ ଗୋଟିଏ ଅବସ୍ଥା ସମସ୍ୟାକୁ ଅଧିକ ଜଟିଳ କରିଥିଲା। FML ଆଇ ଡ୍ରପ୍ ସ୍ଥାନରେ ଭାରତୀୟ ଚକ୍ଷୁ ବିଶେଷଜ୍ଞମାନେ ଆଲ୍‌ବୁସିଡ୍ (Albucid) ନାମକ ଆଇ ଡ୍ରପ୍ ବ୍ୟବହାର କରିବାକୁ ପରାମର୍ଶ ଦେଇଥିଲେ। ସଲ୍‌ଫା ମାଧ୍ୟମରେ

ଆଖିର ଘା'କୁ ଧୋଇବାର ଏ ଏକ ପ୍ରକ୍ରିୟା। କିନ୍ତୁ ଡୋଳାକୁ ରକ୍ଷା କରିବାକୁ ଆଟ୍ରୋପିନ୍ ମଧ ବ୍ୟବହାର କରିବାକୁ ହେଉଥିଲା। ଏହା ଆଖିକୁ ବିସ୍ଫୋରିତ କରେ। ଆଟ୍ରୋପିନ୍ ବ୍ୟବହାର କଲା ପରେ ବାହାରୁ ଆଲୋକ ନେବାରେ ବେଶ୍ ଅସୁବିଧା ହୁଏ। ସୁତରାଂ ଅନେକ ସମୟରେ ଅନ୍ଧାର ଘରେ ବସିବାକୁ ହୁଏ। ଏପରିକି ସନ୍ଧ୍ୟା ଓ ରାତିବେଳା ସ୍ୱାଭାବିକ ଆଲୋକର ମାତ୍ରା ମଧ କଷ୍ଟଦାୟକ ମନେହୁଏ। ମୁଣ୍ଡପୋତି ଅନ୍ଧାର ଘରେ ବସି ରହି ସମୟ କାଟିବାକୁ ହୁଏ।

୧୯୮୭ ମସିହାରେ ନିରାଶାର ଅନ୍ଧକାର ମଧରେ ଗୋଟିଏ ଆଲୋକର ଧାରା ଦେଖିଲି। ପୂର୍ବରୁ ଉଲ୍ଲେଖ କରିଛି ଯେ ୧୯୮୭ ମସିହା ଜୁଲାଇମାସରୁ ୧୯୯୦ ଜୁନ୍ ପର୍ଯ୍ୟନ୍ତ ତିନି ବର୍ଷ ପାଇଁ ମୁଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଏକ ଫେଲୋସିପ୍ ପାଇଲି। ଏହା ହେଉଛି କଳା ଓ ସମାଜ-ବିଜ୍ଞାନରେ ପେସାଗତ ବୃତ୍ତି। ତିନିବର୍ଷ ପାଇଁ ଗତାନୁଗତିକ ଅଧାପନା କାର୍ଯ୍ୟରୁ ଛୁଟି। ଗୋଟିଏ ଗବେଷଣା ପ୍ରକଳ୍ପ ଉପରେ କାର୍ଯ୍ୟ କରିବାକୁ ହେବ। ଆବେଦନ କରିବା ସମୟରେ ଯେଉଁ ପ୍ରକଳ୍ପଟିର ପ୍ରସ୍ତାବ ଦିଆ ଯାଇଥିବ, ସେ ସମ୍ପର୍କରେ ଗବେଷଣା କରାଯିବ।

ସୌଭାଗ୍ୟବଶତଃ ଏହି ଫେଲୋସିପ୍‌ର ଅଂଶ ବିଶେଷ ରୂପେ ନିଯୁକ୍ତି ପାଇଥିବା ଅବନ୍ତିକା କର ମୋର ଜଣେ ପ୍ରାକ୍ତନ ଛାତ୍ରୀ। ଏତଦ୍‌ବ୍ୟତୀତ ସେ ଖୁବ୍ ପରିଶ୍ରମୀ ଓ କର୍ମନିଷ୍ଠ। ଅବନ୍ତିକା ଆମ ଘରକୁ ଆସେ। ମୋ ସାମନାରେ ଗୋଟିଏ ଚେୟାର୍‌ରେ ବସେ। ସେ ସମୟରେ ମୋର ଆଖିର ଅବସ୍ଥା ଏତେ ଖରାପ ଯେ ମୁଁ ଅବନ୍ତିକାକୁ ପ୍ରାୟ ଦେଖିପାରେ ନାହିଁ। ଗୋଟିଏ ବାଉଁଶରେ ଶାଢ଼ୀଟିଏ ଗୁଡ଼ା ହୋଇଥିବାର ଦୃଶ୍ୟ ମୋତେ ଦେଖାଯାଏ। କିନ୍ତୁ ଈଶ୍ୱରଙ୍କ କୃପାରୁ ମୋର ମୌଖିକ ପରାମର୍ଶ ଅନୁଯାୟୀ ସେ ବିଭିନ୍ନ ସ୍ଥାନକୁ (କେନ୍ଦ୍ରାପଡ଼ା, ନୟାଗଡ଼ ଇତ୍ୟାଦି)ଯାଏ। ସେଠାର ଗବେଷଣା ସମ୍ପର୍କିତ ତଥ୍ୟ (Data) ସଂଗ୍ରହ କରେ।

ମୋ ଚକ୍ଷୁ ସମସ୍ୟା ଶୀର୍ଷ ଅବସ୍ଥାରେ ଥିବା ସମୟରେ ସମ୍ଭବତଃ ମୋର ଦୃଷ୍ଟି ଶକ୍ତି ୩ ପ୍ରତିଶତରୁ ୩୦ ପ୍ରତିଶତ ମଧରେ ସୀମିତ ଥିଲା। ଶୌଚାଳୟ ପାଇଁ ଅଞ୍ଜୁ ଓ ପଲ୍ଲୀର ସାହାଯ୍ୟ ନେଉଥିଲି। ମୋ ସହିତ ମୋର ପତ୍ନୀ ଓ କନ୍ୟା ଯେଉଁ ବେଦନାର ବାଟ ଚାଲିଛନ୍ତି, ତାହା ମୁଁ ଭୁଲି ପାରିବି ନାହିଁ। ତାହାର ପରିଶୋଧ ପାଇଁ ମୋ ପାଖରେ କିଛି ସମ୍ବଳ ଥିଲା ବା ରହିଛି ବୋଲି ମୁଁ ଭାବେ ନାହିଁ। ତେବେ ଈଶ୍ୱରଙ୍କ ପାଖରେ କୃତଜ୍ଞତା ଜଣାଏ ଯେ ଅନ୍ତତଃ ତିନିବର୍ଷର ଛୁଟି ମୋତେ ଗତାନୁଗତିକ କର୍ମ ଚାପରୁ ମୁକ୍ତ ରଖି ଧୈର୍ଯ୍ୟ ଧରିବାକୁ ସାହସ ମିଳିଥିଲା।

ଓଡ଼ିଶାର ଚକ୍ଷୁ ବିଶେଷଜ୍ଞମାନେ ମୋତେ ଧାରଣା ଦେଲେ ଯେ ସମସ୍ୟାଟି ମୁଖ୍ୟତଃ ଆରମ୍ଭ ହୋଇ ଆଖିରେ ଷ୍ଟିରୋଏଡ୍ ଡ୍ରପ୍ ପକାଇବା ଘଟଣାରୁ। ଅଥଚ

ଏଠାରେ ମଧ୍ୟ ସେହି ତ୍ରୁଟିଟି ପୁଣି ବଡ଼ ଆକାରରେ କରାଗଲା। ଅବସ୍ଥା ଅସମ୍ଭାଳ ହେବାରୁ ଏଠାର ଡାକ୍ତର ମୋତେ ସିଷ୍ଟମିକ୍ ଷ୍ଟିରୋଏଡ୍ (ଖାଇବାକୁ ପଡୁଥିବା) ଦେଲେ। ତାହା ଆଖି ଯନ୍ତ୍ରଣା କିଛି ମାତ୍ରାରେ କମାଇଲେ ମଧ୍ୟ ଅନ୍ୟ କେତେକ ସମସ୍ୟା ସୃଷ୍ଟି କଲା। ମୋର ଶରୀରରେ ରକ୍ତ ଶର୍କରା ସ୍ତରର ବିପର୍ଯ୍ୟୟ ଘଟି ମଧୁମେହ ସୃଷ୍ଟି ହୋଇଛି ଏହା ମୁଁ ଜାଣି ପାରି ନ ଥିଲି। ଦୈବାତ୍ ରକ୍ତ ଶର୍କରା ମାପ କରିବାରୁ ଏହା ଜଣାଗଲା। ମୁଁ ମିଠା ପ୍ରିୟ ନୁହେଁ କି ଆମ ପରିବାରରେ ମଧୁମେହ ନାହିଁ। ସୁତରାଂ ମଧୁମେହ ଚିକିତ୍ସା କରୁଥିବା ଡାକ୍ତର ମତ ଦେଲେ ଯେ ସମ୍ଭବତଃ ଷ୍ଟିରୋଏଡ୍ ବ୍ୟବହାର ଫଳରେ ଏ ସମସ୍ୟା ଉପୁଜିଛି। ୧୯୮୭ ମସିହାରେ ମୁଁ ମଧୁମେହ ପାଇଁ ଔଷଧ ଖାଇବା ଆରମ୍ଭ କଲି।

## ଶଙ୍କର ନେତ୍ରାଳୟ

ଏକାଧିକ ଚକ୍ଷୁ ବିଶାରଦଙ୍କ ମତାମତ ଓ ପରାମର୍ଶ ଗ୍ରହଣ କରିଥିଲେ ମଧ୍ୟ ଶେଷ ବେଳକୁ ଡାକ୍ତର ଧୀରେନ୍ଦ୍ର ନାଥ ଆଚାର୍ଯ୍ୟ ମୋର ଚିକିତ୍ସା କରୁଥିଲେ। ତାଙ୍କର କନ୍ୟା ରୀତା ଆଚାର୍ଯ୍ୟ ମୋର ତତ୍ତ୍ୱାବଧାନରେ ମନୋବିଜ୍ଞାନରେ ଏମ୍.ଫିଲ୍. କରୁଥିଲା। ଏ ଦୃଷ୍ଟିରୁ ଡକ୍ଟର ଆଚାର୍ଯ୍ୟଙ୍କ ସହିତ ମୋର ଭଲ ସଂଯୋଗ ଥିଲା। ବେଳେ ବେଳେ ମୁଁ ତାଙ୍କର ରାଣୀହାଟ ବାସଭବନକୁ ଚାଲି ଯାଉଥିଲି। ଅନ୍ୟ ସମୟରେ ସେ କୌଣସି କାର୍ଯ୍ୟରେ ଭୁବନେଶ୍ୱର ଆସୁଥିବା ସମୟରେ ଆମର ବାଣୀବିହାର ଘରକୁ ଚାଲି ଆସୁଥିଲେ। ତାଙ୍କର ସମ୍ବେଦନଶୀଳତା ଭୁଲିବାର ନୁହେଁ। ଦୃଷ୍ଟି ଶକ୍ତି ଉଦ୍‌ବେଗଜନକ ଭାବରେ ହ୍ରାସ ପାଇଥିଲା। ୧୯୮୮-୮୯ ବେଳକୁ ଡକ୍ଟର ଆଚାର୍ଯ୍ୟ ମତଦେଲେ ଯେ କୌଣସି ଉପାୟରେ Corneal Grafting କରିବାକୁ ହେବ। ଦୁଇଟି ଆଖିର କଳା ଡ଼ୋଳାରେ ବାରମ୍ବାର ଘା ହୋଇ ଥିବାରୁ ଏବଂ ତା' ମଧ୍ୟ ଦେଇ ଆଲୋକ ଯାଉ ନଥିବାରୁ କ୍ଷତିଗ୍ରସ୍ତ କଳାଡ଼ୋଳା ଉଠାଇ ତା' ସ୍ଥାନରେ ଭଲ ଡ଼ୋଳାର ରୋପଣ ଆବଶ୍ୟକ।

ଡକ୍ଟର ଆଚାର୍ଯ୍ୟ ପୁନଶ୍ଚ ମତଦେଲେ ଯେ ଚେନ୍ନାଇର ଶଙ୍କର ନେତ୍ରାଳୟ ଏଥିପାଇଁ ପ୍ରକୃଷ୍ଟ ସ୍ଥାନ। ମାତ୍ର ଏ ଦିଗରେ ସେ ବିଶେଷ ପଦକ୍ଷେପ ନ ନେବାରୁ କଥା ବିଶେଷ ଆଗେଇ ପାରିଲା ନାହିଁ।

ଦୈବାତ୍ ମୋ ପାଖରେ ଭବିଷ୍ୟତରେ ସେ ନିଜେ ଏବଂ ତାଙ୍କରି ପତ୍ନୀ ଗବେଷଣା କରିବାର ଅଭିଳାଷ ରଖିଥିବା ଶ୍ରୀ ଜିତେନ୍ଦ୍ର ମହାନ୍ତି ଦିନେ ଶଙ୍କର ନେତ୍ରାଳୟର ଠିକଣା ନେଇ ମୋ ପାଖରେ ଉପସ୍ଥିତ ହେଲେ। ସେ କହିଲେ ଯେ ତାଙ୍କର ମାଇଁ ଶଙ୍କର ନେତ୍ରାଳୟ ଯାଇ ଉପକାର ପାଇଛନ୍ତି ଏବଂ ମୁଁ ମଧ୍ୟ ତୁରନ୍ତ ସେଠାକୁ ଯିବା ଉଚିତ୍ ହେବ ବୋଲି ଜୋର୍ ଦେଲେ। ମୁଁ ଯିବାକୁ ଚାହିଁଲେ ସେ

ଏବଂ ତାଙ୍କର ପତ୍ନୀ ଜାହାନ୍ ଆରା ବେଗମ୍ ମଧ୍ୟ ଆମ ସହିତ ଯିବାକୁ ରାଜିହେଲେ। ଜିତେନ୍ଦ୍ର ବାବୁ ସେତେବେଳେ ଆନ୍ଧ୍ରା ବ୍ୟାଙ୍କର ପରିଚାଳକ ରୂପେ କାର୍ଯ୍ୟ କରୁଥିଲେ। ମୁଁ ବିଳମ୍ବ ନ କରି ମୋର ସମସ୍ୟାର ସୂଚନା ଦେଇ ଶଙ୍କର ନେତ୍ରାଳୟକୁ ଚିଠି ଲେଖିଲି। ଜୁଲାଇ ୧୫ ତାରିଖ (୧୯୮୯) ଦିନ ପରାମର୍ଶ ପାଇଁ ଚିଠି ପାଇଲି।

ଜୁଲାଇ ୧୫ ତାରିଖକୁ ସତୃଷ୍ଣ ନୟନରେ ଅପେକ୍ଷା କଲି। ସେ ଦିନଟି ଅନ୍ୟ ଗୋଟିଏ କାରଣରୁ ଗୁରୁତ୍ୱପୂର୍ଣ୍ଣ। ସେ ଦିନ ମୋ ଝିଅ ଭୂମିକା (ପଲୀ) ଭୁବନେଶ୍ୱର ଡି.ଏମ୍. ସ୍କୁଲରେ ଭର୍ତ୍ତି ହେବାର କଥା। ଅସଂଖ୍ୟ ପିଲାଙ୍କ ମଧ୍ୟରୁ ପ୍ରବେଶିକା ପରୀକ୍ଷାରେ ସଫଳ ହୋଇ ସେ ମନୋନୀତ ହୋଇଥିଲା। ପୁଣି ସ୍କୁଲରୁ ଆସିଥିବା ଚିଠିରେ ଉଲ୍ଲେଖ ଥିଲା ଯେ ଆଡ୍‌ମିଶନ୍ ସମୟରେ ବାପମା'ଙ୍କୁ ଉପସ୍ଥିତ ରହିଥିବାକୁ ହେବ। ସ୍କୁଲରେ ଭର୍ତ୍ତି ହେବାର ସୁଯୋଗ ଆମେ କୌଣସି ମତେ ହରାଇବାକୁ ଚାହୁଁ ନଥିଲୁ। ସୌଭାଗ୍ୟବଶତଃ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଆମର ଅନୁରୋଧ ରକ୍ଷାକଲେ ଏବଂ କୌଣସି ଜଣେ ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତି ସ୍କୁଲକୁ ଆସି ଭୂମିକାର ଆଡ୍‌ମିଶନ୍ କରିପାରିବେ ବୋଲି କଥା ଦେଲେ। ତାଙ୍କର ଉଦାର ଦୃଷ୍ଟିକୋଣ ଯୋଗୁଁ ଆମେ କୃତଜ୍ଞତା ପ୍ରକାଶ କଲୁ। ଆମର ଉପର ଫ୍ଲାଟରେ ରହୁଥିବା ରେବା ନାନୀ ଏ ଦାୟିତ୍ୱ ନେବାକୁ ଖୁସିରେ ରାଜିହେଲେ।

ଚେନ୍ନାଇ ଶଙ୍କର ନେତ୍ରାଳୟ ଉଦ୍ଦେଶ୍ୟରେ ଅଞ୍ଜୁ, ମୁଁ ଓ ପଲୀ ବାହାରିଲୁ। ଆମ ସହିତ ଅଞ୍ଜୁର ବଡ଼ଭାଇ ଶ୍ୟାମଳେନ୍ଦୁ ଦତ୍ତ ବାହାରିଲେ। ଆମେ ତାଙ୍କୁ ଦାଦାମନି ବୋଲି ଡାକିଥାଉ। ଜିତେନ୍ଦ୍ର ବାବୁ ଓ ଜାହାନ୍ ଆରା ମଧ୍ୟ ଆସିଲେ। ଶଙ୍କର ନେତ୍ରାଳୟର ପାର୍ଶ୍ୱବର୍ତ୍ତୀ ରାଘବେନ୍ଦ୍ର ଲଜ୍‌ରେ ଆମର ରହିବା ବ୍ୟବସ୍ଥା ପାଇଁ ମୁଁ ପୂର୍ବରୁ ଏହି ଲଜ୍‌କୁ ଚିଠି ଲେଖିଥିଲି। ଆମ୍ଭେମାନେ ସେଠାରେ ରହିବାର କୌଣସି ଅସୁବିଧା ନ ଥିଲା। ଏ ଲଜ୍‌ର ସମ୍ମୁଖରେ ରାଜଭବନ ନାମକ ରେଷ୍ଟୋରାଁରେ ଜଳଖିଆ ଓ ମିଲ୍‌ସର ସୁବନ୍ଦୋବସ୍ତ ରହିଥିଲା।

ଶଙ୍କର ନେତ୍ରାଳୟର ବିଧିବିଧାନ ଓ ସେବାଶୈଳୀ ମୋତେ ଭଲ ଲାଗିଲା। ଜାହାନ୍ ଆରା ପାଖରେ ପଲୀ ରହିଥାଏ। ମୁଁ ପ୍ରାୟ ସକାଳ ସାଢ଼େ ନ'ଟା ଦଶଟା ବେଳକୁ ପରୀକ୍ଷା ନିରୀକ୍ଷାର କୋଠରୀ ମଧ୍ୟରେ ପଶିଲି। ବିଭିନ୍ନ ସ୍ତରରେ ମେଡ଼ିକାଲ ଛାତ୍ରଛାତ୍ରୀ, ସ୍ନାତକୋତ୍ତର ବିଭାଗର ଶିକ୍ଷାର୍ଥୀ ଓ ଡାକ୍ତରଙ୍କୁ ଭେଟିଲି। ସବା ଶେଷରେ ମୋ ପାଇଁ ସମ୍ପୃକ୍ତ କରା ଯାଇଥିବା ମହିଳା ଡାକ୍ତର ଜି.ସୀତାଲକ୍ଷ୍ମୀ। ମୁଁ ସଂକ୍ଷିପ୍ତ ଭାବରେ ମୋ ସମସ୍ୟାର ଇତିବୃତ୍ତି କହିଲି। ଓଡ଼ିଶାର ଡାକ୍ତରମାନଙ୍କ ପରାମର୍ଶ ଅନୁଯାୟୀ ମୁଁ ସେ ସମୟରେ ପ୍ରାୟ ପାଞ୍ଚଟି ଛ'ଟି ଆଇ ଡ୍ରପ ବ୍ୟବହାର କରୁଥିଲି।

କେଉଁ ଡ୍ରପ୍ ପ୍ରତି ଦୁଇଘଣ୍ଟାରେ ତ କେଉଁ ଡ୍ରପ୍ ପ୍ରତି ତିନି ଘଣ୍ଟାରେ। ବିଚିତ୍ର କାରବାର।

ଡାକ୍ତର ସୀତାଲକ୍ଷ୍ମୀ ରୋଗ ନିରୂପଣ ପରିପ୍ରେକ୍ଷୀରେ ମୋ ଫାଇଲ୍‌ରେ କ'ଣ ଲେଖିଲେ ସେ ପରିଭାଷାର ତାତ୍ପର୍ଯ୍ୟ ମୁଁ ବୁଝିପାରିଲି ନାହିଁ। ତେବେ ସେ ମୋତେ କହିଲେ ଯେ ବର୍ତ୍ତମାନ ଆଇଡ୍ରପ୍ ବ୍ୟବହାର କରିବାର ଆବଶ୍ୟକତା ନାହିଁ। କେବଳ ଆଣ୍ଟିବାୟୋଟିକ୍ ଟାବ୍‌ଲେଟ୍ ବ୍ୟବହାର କରିବାକୁ ହେବ। ପ୍ରତିଦିନ ଚାରୋଟି ଟେଟ୍ରାସାଇକ୍ଲିନ୍ ଏକମାସ ପାଇଁ, ଦୈନିକ ଦୁଇଟି କରି ଏକମାସ ପାଇଁ ଏବଂ ଗୋଟିଏ କରି ଏକମାସ ଖାଇବାକୁ ପରାମର୍ଶ ଦେଲେ। ଓଡ଼ିଶା ଫେରିବା ପୂର୍ବରୁ ଗୋଟିଏ ସପ୍ତାହ ପରେ ପୁନଶ୍ଚ ଆସିବାକୁ ଏବଂ ତିନିମାସ ପରେ ପୁଣି ଆସିବାକୁ ପରାମର୍ଶ ଦେଲେ। ପ୍ରଥମ ପରୀକ୍ଷା ନିରୀକ୍ଷା ପରେ ଡାକ୍ତର ଅଳ୍ପ କିଛିଦିନ ରହିବାକୁ କହିପାରନ୍ତି ବୋଲି ଆମେ ଆଶା କରିଥିଲୁ। ସୁତରାଂ ପ୍ରସ୍ତାବରେ ରାଜି ହେଲୁ।

ହୋଟେଲ୍‌କୁ ଆସି ସଙ୍ଗେ ସଙ୍ଗେ ଔଷଧ ବ୍ୟବହାର ଆରମ୍ଭ କଲୁ। ସାତଦିନ ରହିବାକୁ ହେବ। ଜିତେନ୍ଦ୍ର ବାବୁ ଦକ୍ଷିଣ ଭାରତ ବିଶେଷ ବୁଲି ନାହାନ୍ତି ବୋଲି ଥରେ ମୋତେ କହୁଥିଲେ। ମୁଁ ପ୍ରସ୍ତାବ ଦେଲି ଯେ ଜିତୁ ବାବୁ ଓ ଜାହାନ୍ ଆରା ଏଇ ସମୟ ମଧ୍ୟରେ ଅନ୍ତତଃ କେତେକ ପ୍ରସିଦ୍ଧ ସ୍ଥାନ ଦେଖିବାର ସୁଯୋଗ ପାଇବେ। ସେମାନେ ଖୁସୀ ହୋଇ ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମ ଏବଂ ବାଙ୍ଗାଲୋର ଓ ମହୀଶୂର ବୁଲି ଚାଲିଗଲେ। ସାତଦିନ ପୂର୍ବରୁ ପୁଣି ହୋଟେଲ୍‌କୁ ଫେରି ଆସିଲେ।

ହୋଟେଲ୍‌ରେ ଆମର ସମୟ କାଟିବା ବିଶେଷ ବିରକ୍ତିକର ନ ଥିଲା। ଦାଦାମନିଙ୍କ କଳିଙ୍ଗ ନଗର (ବଡ଼ବିଲ୍‌ରେ) ଲୁହା କାରଖାନାର ସହକର୍ମୀଙ୍କ ପୁଅ ଚେନ୍ନାଇରେ ପଢୁଥିଲେ। ତା'ର ନାମ ଗେଲ୍। ଗେଲ୍ ବେଳେ ବେଳେ ତା'ର ବନ୍ଧୁମାନଙ୍କ ସହିତ ଆସୁଥିଲା। ସୁତରାଂ ଆମେ ଆଖପାଖରେ ବୁଲିଯିବାରେ ଅସୁବିଧା ନ ଥିଲା।

ଔଷଧ ପ୍ରୟୋଗର ସୁଫଳ ଚମକପ୍ରଦ ହୋଇଥିଲା। ଆଣ୍ଟିବାୟୋଟିକ୍ ପ୍ରୟୋଗ କରିବାର ମାତ୍ର ଦୁଇଦିନ ମଧ୍ୟରେ ମୁଁ ସ୍ପଷ୍ଟ ପରିବର୍ତ୍ତନ ଲକ୍ଷ୍ୟ କଲି। ଆଖି ଲାଲ୍ ହେବାର ମାତ୍ରା କମିଗଲା। ପାଣି ବୋହିବା କମିଗଲା। ଅସ୍ୱସ୍ତି କମି ଦୃଷ୍ଟି ଶକ୍ତି ବୃଦ୍ଧି ପାଇବାର ମୁଁ ସ୍ପଷ୍ଟ ଅନୁଭବ ପାଇଲି। ଡାକ୍ତରଙ୍କ ନିର୍ଦ୍ଦେଶ ଅନୁଯାୟୀ ଗୋଟିଏ ସପ୍ତାହ ପରେ ମୁଁ ପୁନଶ୍ଚ ଶଙ୍କର ନେତ୍ରାଳୟ ଗଲି। ଡାକ୍ତର ସୀତାଲକ୍ଷ୍ମୀ ପୁଣି ପରୀକ୍ଷା ନିରୀକ୍ଷା କଲେ। ଅଗ୍ରଗତି ନେଇ ଖୁବ୍ ସନ୍ତୋଷ ପ୍ରକାଶ କଲେ। ମୁଁ ମଧ୍ୟ ମୋର ପ୍ରସନ୍ନତା ବ୍ୟକ୍ତ କଲି।

ଗଭୀର ଆଶା ଓ ଉତ୍ସାହ ନେଇ ମୁଁ ଚେନ୍ନାଇରୁ ଫେରିଲି। ୧୯୯୦ ମସିହାରେ ମୋର ବିଦେଶ ଭ୍ରମଣ (ହନଲୁଲୁ, ଜାପାନ ଓ କାନାଡ଼ା) ସମୟରେ ମୁଁ ମୋଟାମୋଟି ସମସ୍ୟାମୁକ୍ତ ଥିଲି। ନିୟମିତ ଭାବରେ ଆଣ୍ଟିବାୟୋଟିକ୍ ବ୍ୟବହାର କରୁଥିଲି।

ଖଳନାୟକର ଦୌରାତ୍ମ୍ୟରୁ ରକ୍ଷା ପାଇବା ସାମୟିକ ଥିଲା। ମୁଁ ଅନୁଭବ କଲି ଯେ ଆଣ୍ଟିବାୟୋଟିକ୍ ବ୍ୟବହାର କରୁଥିବା ସମୟରେ ଔଷଧ ଆଖିକୁ ସୁରକ୍ଷା ଦେଉଛି। କିନ୍ତୁ ଆଣ୍ଟିବାୟୋଟିକ୍ ମାତ୍ରା କମାଇ କମାଇ ଶେଷରେ ଔଷଧ ବନ୍ଦ କରିବାର ଏକମାସ ପରେ ପୁଣି ଆଖି ଲାଲ୍ ହେଉଛି। ପାଣି ବୋହୁଛି ଏବଂ ଆଖିରେ ଘା' ହୋଇ ବାଲି ପଡ଼ିବାର ଆସ୍ୱସ୍ତ ଲାଗୁଛି। କେବେ କେବେ ବର୍ଷରେ ଦୁଇ ଥର, ଆଉ କେତେବେଳେ ତିନିଥର ଏବଂ ଏପରିକି ଚାରିଥର ପର୍ଯ୍ୟନ୍ତ ଯିବାକୁ ପଡୁଛି। ଜୀବନ ଯନ୍ତ୍ରଣାର ଏହି କଷ୍ଟକର ମୁହୂର୍ତ୍ତରେ ମୋର ପତ୍ନୀ ଓ କନ୍ୟା ମଧ୍ୟ ଶାରୀରିକ ଓ ମାନସିକ ପୀଡ଼ାର ଶରବ୍ୟ ହେଉଛନ୍ତି। ସ୍ୱାଧୀନ ଭାବରେ ମୁଁ ଏକୁଟିଆ ଚେନ୍ନାଇ ଯିବାର ରାସ୍ତା ବନ୍ଦ। ମୋର ଝିଅ ବ୍ୟାଗ୍ ପତ୍ର ବୋହିବ, ପତ୍ନୀ ବାଟ କଢ଼ାଇବ- ଏପରି ଏକ ବେଦନାମୟ ସମୟ ବେଶ୍ ଦିନ ଚାଲିଲା।

ବିଂଶ ଶତକ ଅତିକ୍ରମ କରି ଏକବିଂଶ ଶତକରେ ପ୍ରବେଶ କରିବା ସମୟରେ କଷ୍ଟ ସାମାନ୍ୟ କମିଥିଲା। ଡାକ୍ତର ସୀତାଲକ୍ଷ୍ମୀ ମଧ୍ୟ ଗୋଟିଏ ସକାରାତ୍ମକ ମନ୍ତବ୍ୟ ଦେଲେ। ସେ କହିଲେ ଡୋଳା ଉପରେ ଯେଉଁ ସଂକ୍ରମଣ (Infection) ଘଟୁଥିଲା, ତାହା ସମ୍ଭବତଃ ନିୟନ୍ତ୍ରିତ ହୋଇଛି। ବର୍ତ୍ତମାନ ଡୋଳାକୁ ବାହାର କରି ନୂତନ ଡୋଳା ଗ୍ରାଫ୍‌ଟିଂ କରାଯାଇପାରେ। ପୂର୍ବରୁ ସଂକ୍ରମଣ ଥିବା ଅବସ୍ଥାରେ ଏହା କରିଥିଲେ ଅସୁବିଧାର ମଧ୍ୟ ସମ୍ଭାବନା ଥିଲା। କାରଣ ନୂତନ ଡୋଳା ମଧ୍ୟ ସଂକ୍ରମିତ ହୋଇପାରେ। ମାତ୍ର ବର୍ତ୍ତମାନ ସଂକ୍ରମଣ ନ ଥିବାରୁ ସମୟଟା ଉପଯୋଗୀ। ତେବେ ତରତର ହେବା ଉଚିତ୍ ନୁହେଁ। ଅଳ୍ପ ବୟସର କେହି ଚକ୍ଷୁଦାନ କରିଥିଲେ ସେଇଟି ରୋପଣ କରିବା ବିଜ୍ଞତା ହେବ।

ଡାକ୍ତର ସୀତାଲକ୍ଷ୍ମୀଙ୍କ କଥା ଶୁଣି କିଛିଟା ସାନ୍ତ୍ୱନା ମିଳିଲା। ମାତ୍ର କେବେ ଏପରି ଗ୍ରାଫ୍‌ଟିଂ ସମ୍ଭବ ହେବ? ଡାକ୍ତର ସେ ବିଷୟରେ କିଛି କହିପାରିଲେ ନାହିଁ।

୨୦୦୩ ମସିହାରେ ମୁଁ ଓ ଅଞ୍ଜୁ ଡାକ୍ତରଙ୍କ ସହିତ ପରାମର୍ଶ କରି ଚେନ୍ନାଇରେ କିଛିଦିନ ରହିବାର ନିଷ୍ପତ୍ତି ନେଲୁ। ମୋର ଝିଆରୀ କଳ୍ପନା ପଲ୍ଲୀର କଥା ବୁଝିବ। ଏତଦ୍‌ବ୍ୟତୀତ ମୋ ଘରର ଗ୍ୟାରେଜ୍ ଉପରେ ଥିବା ଗୋଟିଏ କୋଠରୀରେ ମୋର ଜଣେ ପ୍ରିୟ ଛାତ୍ର ପ୍ରଦୀପ ମହାପାତ୍ର ରହୁଥିଲା। ପ୍ରଦୀପ ଆମ ଘରେ ରହି ଏମ୍.ଏ. ପାଶ୍ କଲା; ମନସ୍ତତ୍ତ୍ୱରେ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି.

କଲା। ସେତେବେଳେ ସେ କଟକର ରଘୁନାଥଜୀ କଲେଜରେ ଅଧ୍ୟାପନା କରୁଥାଏ। ପ୍ରତିଦିନ କଟକ ଯାଇ ବାଣୀବିହାର ଫେରେ। କିନ୍ତୁ ଅନ୍ୟତ୍ର ଚାକିରି ଅନ୍ୱେଷଣ ମଧ୍ୟ କରୁଥାଏ। ଆମେ ପ୍ରଦୀପ ଓ କଞ୍ଚନାକୁ ଦାୟିତ୍ୱ ଦେଇ ଅନ୍ତତଃ ଦୁଇ ତିନି ସପ୍ତାହ ପାଇଁ ଚେନ୍ନାଇ ଗଲୁ। ଆଶା କରୁଥିଲୁ ସେହି ସମୟ ମଧ୍ୟରେ ଚକ୍ଷୁର ଶୈଲ୍ୟ ଚିକିତ୍ସା ହେବ। ଅନ୍ତତଃ ଗୋଟିଏ ଆଖିରେ ନୂଆ କଳାଡ଼ୋଳା ଲାଗିଯିବ।

ଶୈଲ୍ୟ ଚିକିତ୍ସା ପାଇଁ ଯାହା ଦରକାର ସେସବୁ ଟେଷ୍ଟ ସରିଲା। କେବଳ କର୍ଣ୍ଣିଆ (ଡ଼ୋଳା) ମିଳିବାକୁ ଅପେକ୍ଷା। ପ୍ରତିଦିନ ଲଜ୍‌ରୁ ଫୋନ୍ କରୁ କର୍ଣ୍ଣିଆ ମିଳିଛି କି ନାହିଁ। କେବଳ "ନାଃ" ଶବ୍ଦଟି ଶୁଣୁ। ଦୁଇ ସପ୍ତାହ ଅପେକ୍ଷା କରିବା ପରେ ଫେରି ଆସିବାକୁ ବାଧ୍ୟ ହେଲୁ। ଶଙ୍କର ନେତ୍ରାଳୟକୁ ଜଣାଇଲୁ ଯେ ସେମାନେ ଫୋନ୍ କଲେ ଆମେ ତୁରନ୍ତ ବିମାନ ଯୋଗେ ଚାଲି ଆସିବୁ।

## ନେତ୍ରାଳୟରୁ ଏଲ୍.ଭି.ପ୍ରସାଦ

କଷ୍ଟର ଦିନ ସହଜରେ ସରେ ନାହିଁ। ଶଙ୍କର ନେତ୍ରାଳୟର ଫୋନ୍ ଆସିଲା ନାହିଁ କି ଶୁଭ ସମାଚାର ମିଳିଲା ନାହିଁ।

ଚକ୍ଷୁର ସମସ୍ୟା ଯୋଗୁଁ ଅତୀତରେ ଥରେ ମୁଁ ବିଶ୍ୱବିଦ୍ୟାଳୟର ବିଭାଗୀୟ ମୁଖ୍ୟ ଦାୟିତ୍ୱ ନ ନେବା ପାଇଁ କର୍ତ୍ତୃପକ୍ଷଙ୍କୁ ଜଣାଇଥିଲି। ସେହି ଅନୁସାରେ ମୋ'ଠାରୁ କନିଷ୍ଠ ବ୍ୟକ୍ତି ବିଭାଗୀୟ ମୁଖ୍ୟ ହୋଇଥିଲେ। କିନ୍ତୁ ରୋଟେସନ୍ କ୍ରମରେ ପୁଣି ମୋର ପାଳି ଆସିଲା। ଏଥର ସ୍ଥିର କଲି ଯେ ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ ମୁଁ ଏ ଦାୟିତ୍ୱ ଗ୍ରହଣ କରିବି। ତଦନୁସାରେ ୨୦୦୪ ମସିହାର ଜୁନ୍ ମାସ ଆରମ୍ଭରେ ମୁଁ ମନୋବିଜ୍ଞାନ ବିଭାଗର ମୁଖ୍ୟ ଦାୟିତ୍ୱ ଗ୍ରହଣ କଲି। ସେହିବର୍ଷ ସେପ୍ଟେମ୍ବର ମାସରେ ଆମ ଘରେ ଦୀର୍ଘ ଦିନ ରହି ଶଯ୍ୟାଶାୟୀ ଅବସ୍ଥାରେ ରହିଥିବା ମୋର ଶାଶୁଙ୍କର ଦେହାନ୍ତ ହେଲା।

୨୦୦୫ ମସିହାରେ ଗୋଟିଏ ଛୋଟକାଟିଆ ଚମତ୍କାରିତା ଘଟିଲା। ମୁଁ ଆମ ଫ୍ଲାଟ ଘରର ବାହାର ପିଣ୍ଡାରେ ବସିଥାଏ। ଅଚାନକ ଭାବରେ ବନ୍ଧୁ ମନୋରଂଜନ ମହାନ୍ତି ପିଣ୍ଡା ଉପରକୁ ଉଠି ଆସିଲେ। ମନୋରଞ୍ଜନ ବାବୁ ଅଞ୍ଜୁର ପ୍ରିୟ ବନ୍ଧୁ ଆରତିର ସ୍ୱାମୀ। ମୋ ସହିତ ମଧ୍ୟ ମନୋରଞ୍ଜନ ବାବୁଙ୍କର ଯଥେଷ୍ଟ ଆଳାପ ଅଛି। ସେମାନେ କଟକରେ ରୁହନ୍ତି। ପୂର୍ବରୁ ଆରତି ଓ ମନୋରଞ୍ଜନ ବାବୁ ମଝିରେ ମଝିରେ ଆସନ୍ତି। ମାତ୍ର ବର୍ଷେ ଦୁଇବର୍ଷ ହେବ ସେମାନେ ପ୍ରାୟ ଆସି ନ ଥିଲେ। ସମୟଟା ଖରାବେଳ। ହଠାତ୍ ମନୋରଞ୍ଜନ ବାବୁଙ୍କୁ ଦେଖି ବିସ୍ମିତ ହେଲି। ଘର ଭିତରକୁ ଡାକିଲି। ସେ ଭିତରକୁ ଆସିଲେ କିନ୍ତୁ ଅଧିକ ସମୟ ରହିବାକୁ ରାଜି ହେଲେ ନାହିଁ

କଥାର କୌଣସି ପ୍ରାସଙ୍ଗିକତା ନ ଥାଇ ମଧ୍ୟ ମନୋରଞ୍ଜନ ବାବୁ କହିଲେ ଯେ ତାଙ୍କର ଖୁଡ଼ୀଙ୍କର ଯା'ଭିତରେ ଆଖିର ଗୋଟିଏ ଅସୁବିଧା ହୋଇଥିଲା ଏବଂ ସେ ହାଇଦ୍ରାବାଦ ଯାଇ ଚିକିତ୍ସିତ ହେଲେ। ହାଇଦ୍ରାବାଦର ଏଲ୍.ଭି. ପ୍ରସାଦ ଆଖି ଚିକିତ୍ସାଳୟରେ ସାଙ୍ଗୱାନା ନାମକ ଜଣେ ଡାକ୍ତର ଯେଉଁ ଆଇଡ୍ରପ୍ ଦେଇଥିଲେ ସେଥିରେ ଖୁବ୍ ଶୀଘ୍ର ଭଲ ହୋଇଗଲା। ମୁଁ ମନୋରଞ୍ଜନ ବାବୁଙ୍କୁ ଡାକ୍ତରଙ୍କ ପୂରା ନାଁଟି ପଚାରିଲି। ସେ କହିପାରିଲେ ନାହିଁ। ଏଲ୍.ଭି. ପ୍ରସାଦର ଠିକଣା ପଚାରିଲି। ତାହା ମଧ୍ୟ କହିପାରିଲେ ନାହିଁ। ଅଳ୍ପ ସମୟର କଥାବାର୍ତ୍ତା ପରେ ଚାଲିଗଲେ।

ମନୋରଞ୍ଜନ ବାବୁ ଚାଲିଗଲା ପରେ ମୁଁ ମନେ ମନେ ଭାବିଲି ଯେ ଏଲ୍.ଭି. ପ୍ରସାଦରେ ଚେଷ୍ଟା କଲେ କ୍ଷତି କ'ଣ? ଡାକ୍ତର ସାଙ୍ଗୱାନାଙ୍କ ପାଖକୁ ଚିଠିଟି ଲେଖା ଯାଇପାରେ। ଅଞ୍ଜୁ ମୋ କଥାକୁ ପସନ୍ଦ କଲା ନାହିଁ। ତା'ର ଯୁକ୍ତି ଥିଲା ଯେ ଶଙ୍କର ନେତ୍ରାଳୟ ମୋ ରୋଗର ଚିକିନିଖି ଇତିହାସ ଜାଣିଛନ୍ତି। ପୁଣି ଏକ ନୂତନ ଜାଗାରେ ପରୀକ୍ଷା ବିପଜ୍ଜନକ ହୋଇପାରେ। ମାତ୍ର ମୁଁ କହିଲି ଯେ ଶଙ୍କର ନେତ୍ରାଳୟରୁ ଆମେ ଉପକାର ପାଇଛୁ ସତ, ହେଲେ ଦୀର୍ଘ ଦିନ ଧରି ଗ୍ରାଫ୍‌ଟିଂ ତ ହେଲା ନାହିଁ। ଏବେ ଆଉ ଜଣେ ଡାକ୍ତରଙ୍କ ପରାମର୍ଶ ନେବାରେ କ୍ଷତି କ'ଣ? ଶେଷରେ ଅଞ୍ଜୁ ରାଜି ହେଲା। ମୁଁ ପୂରା ନାମଟି ନ ଜାଣି କେବଳ ଡକ୍ଟର ସାଙ୍ଗୱାନା ଲେଖିଲି। ଏଲ୍.ଭି. ପ୍ରସାଦର ଠିକଣା ସମ୍ଭବତଃ ଅସମ୍ପୂର୍ଣ୍ଣ ଥିଲା। ତଥାପି ଦୁଇ ସପ୍ତାହ ମଧ୍ୟରେ ଚିଠି ଆସିଲା। ସେପ୍ଟେମ୍ବର ମାସର ଗଣେଶ ପୂଜା ପାଖାପାଖି ଅଞ୍ଜୁ, ପତ୍ନୀ ଓ ମୁଁ ହାଇଦ୍ରାବାଦ୍ ଯାତ୍ରା କଲୁ। ମୋ ସହିତ ଶଙ୍କର ନେତ୍ରାଳୟର କାଗଜପତ୍ର ନେଇଥିଲି।

ଶଙ୍କର ନେତ୍ରାଳୟ ପରି ଏଠାରେ ମଧ୍ୟ ଶୃଙ୍ଖଳିତ ଭାବରେ ଦୁଇତିନି ଘଣ୍ଟା ମୋର ଚକ୍ଷୁର ପରୀକ୍ଷା ନିରୀକ୍ଷା ଚାଲିଲା। ଶେଷରେ ଚକ୍ଷୁ ବିଶେଷଜ୍ଞ ଡାକ୍ତର ବୀରେନ୍ଦ୍ର ସାଙ୍ଗୱାନ୍ ଆସି ମୋର ଚକ୍ଷୁ ପରୀକ୍ଷା କଲେ।

ଦୀର୍ଘ ହୃଷ୍ଟପୁଷ୍ଟ ଶରୀରର ମଣିଷ। ସାରାଦିନର ପରିଶ୍ରମ ପରେ ମଧ୍ୟ ବିରକ୍ତିର ଛିଟା ନାହିଁ। ଶଙ୍କର ନେତ୍ରାଳୟର କାଗଜ ପତ୍ର ଦେଖିଲେ। କହିଲେ: "କଳା ଡୋଳାର ଗ୍ରାଫ୍‌ଟିଂ ବ୍ୟତୀତ ଅନ୍ୟ କିଛି କରିବାର ନାହିଁ। ନେତ୍ରାଳୟ ମଧ୍ୟ ତାହାହିଁ ନିଷ୍ପତ୍ତି ନେଇଥିଲା।" କିନ୍ତୁ ଡାକ୍ତର ସାଙ୍ଗୱାନା ଯେ ପରବର୍ତ୍ତୀ ବାକ୍ୟଟି କହିଲେ, ତାହା ଆମକୁ ବିସ୍ମୟାଭୂତ କଲା। ସେ କହିଲେ "ଆପଣ ଚାହିଁଲେ ମୁଁ ପନ୍ଦରଦିନ ଏହା କରିପାରିବି। ଦେୟ ସମ୍ପର୍କରେ ଆଜି ଅଫିସ୍ ଆପଣଙ୍କୁ ବୁଝାଇ ଦେଇପାରିବ।" ମୋର ବିସ୍ମୟର କାରଣ ଥିଲା ଯେ ଶଙ୍କର ନେତ୍ରାଳୟ ମାସ ମାସ, ଏପରିକି ବର୍ଷ ବର୍ଷ ଧରି କଳାଡୋଳା ବା କର୍ଣ୍ଣିଆ ଯୋଗାଡ଼ କରିପାରିଲା ନାହିଁ; ଅଥଚ ଏମାନେ

ଦୁଇଦିନ ମଧ୍ୟରେ କର୍ଣ୍ଣିଆ ପାଇବେ କିପରି ? ମୁଁ ଏତେ ଖୁସୀ ହୋଇ ଯାଇଥିଲି ଯେ ମୁଁ ଆଉ ପ୍ରଶ୍ନ ପଚାରିଲି ନାହିଁ। କେବଳ କହିଲି- "ମୁଁ ବର୍ତ୍ତମାନ ଆମ ବିଶ୍ୱବିଦ୍ୟାଳୟର ଗୋଟିଏ ବଡ଼ ବିଭାଗର ବିଭାଗୀୟ ମୁଖ୍ୟ ରହିଛି। ବର୍ତ୍ତମାନ ମୁଁ ଏଠାରେ ରହିଗଲେ ଅନ୍ୟମାନଙ୍କର ଅସୁବିଧା ହେବ। ଆପଣ ଅନୁମୋଦନ କଲେ ମୁଁ ଡିସେମ୍ବର ମାସରେ ଆସିବାକୁ ଚାହୁଁଛି। ଡାକ୍ତର କହିଲେ: "କିଛି ଅସୁବିଧା ନାହିଁ।"

ଆମେ ଖୁସିରେ ଭୁବନେଶ୍ୱର ଫେରିଲୁ। ମୁଁ ମୋର ବିଭାଗୀୟ ମୁଖ୍ୟ ଦାୟିତ୍ୱ ହସ୍ତାନ୍ତର କରିବାକୁ ଚାହିଁଲି। ବିଶେଷ ଅସୁବିଧା ହେଲା ନାହିଁ। ପ୍ରଫେସର୍ ଶରତ କୁମାର ପାତ୍ର ଦାୟିତ୍ୱ ନେଲେ। ହାଇଦ୍ରାବାଦରେ କିଛି ଦିନ ରହିବାର ମାନସିକ ପ୍ରସ୍ତୁତି ନେଇ ଆମେ ଆସିଲୁ। ଆମ ସହିତ ଝିଅ ପଲୀ ଏବଂ ପୁତୁରା କ୍ଲିଟୁ (ପ୍ରତ୍ୟୁଷ) ମଧ୍ୟ ଆସିଥିଲେ। କିଛିଦିନ ଲାଗି ନିଜେ ରୋଷାଇ କରିବା ପାଇଁ ଅଞ୍ଜୁ ମଧ୍ୟ ପ୍ରସ୍ତୁତ ଥିଲା। ହାଇଦ୍ରାବାଦର ଆପୋଲୋ ପାଖାପାଖି ଘରଟିଏ ଭଡ଼ା ନିଆଗଲା।

ଡାକ୍ତରଙ୍କୁ ଦେଖା କରିବା ପରେ ସେ ଦିନ ସ୍ଥିର କଲେ। ଡାହାଣ ଆଖିଟି ଅଧିକ ଖରାପ ଅବସ୍ଥାରେ ଥିବାରୁ ପ୍ରଥମେ ଏହାର ଗ୍ରାଫ୍ଟିଂ କରାଯିବ ବୋଲି କହିଲେ। ଶଲ୍ୟ ଚିକିତ୍ସା ପାଇଁ ଯାହା ଦରକାର ପୂର୍ବରୁ ସେ ସମସ୍ତ କରାଗଲା।। ଶଙ୍କର ନେତ୍ରାଳୟରେ ଅନ୍ତିମ ଶଲ୍ୟ ଚିକିତ୍ସା ନ ହେଲେ ମଧ୍ୟ ସମଗ୍ର ଶରୀର ପାଇଁ ଜେନେରାଲ ନିଶ୍ଚେତକ ବ୍ୟବହାର ହେବ ବୋଲି ସେମାନେ ସୂଚନା ଦେଇଥିଲେ। ଏ ଦୃଷ୍ଟିରୁ ଦିନେ ଦୁଇଦିନ ହାସ୍‌ପାତାଲ୍‌ରେ କାଟିବାର ଥିଲା। ମାତ୍ର ଏଲ୍.ଭି. ପ୍ରସାଦରେ ଶୁଣିଲି ଯେ ସ୍ଥାନୀୟ ନିଶ୍ଚେତକ ପ୍ରୟୋଗ କରାଯିବ। ତେଣୁ ରହିବାର ଆବଶ୍ୟକତା ନାହିଁ। ବିଳମ୍ବିତ ଅପରାହ୍ଣ କିମ୍ବା ସନ୍ଧ୍ୟାରେ ମୁଁ ଯାଇପାରିବି।

ଡାକ୍ତର ସାଙ୍ଗୱାନ୍‌ଙ୍କ ଦକ୍ଷ ତତ୍ତ୍ୱାବଧାନରେ ମୋ ଦକ୍ଷିଣ ଚକ୍ଷୁରେ ନୂତନ ଡୋଳା ରୋପିତ ହେଲା। କାହାର ଏ ଡୋଳା ମୁଁ କହିପାରିବି ନାହିଁ। କିନ୍ତୁ ଯାହାର ଦୟାପୂର୍ଣ୍ଣ ଦାନ ଫଳରେ ମୋର ଦୃଷ୍ଟି ଶକ୍ତି ସକ୍ରିୟ ହେଉଛି ତାଙ୍କର ମଙ୍ଗଳ କାମନା ମୋର ସେ ମୁହୂର୍ତ୍ତରେ ପ୍ରାର୍ଥନା ଥିଲା। ଶଲ୍ୟ ଚିକିତ୍ସା ପ୍ରାୟ ଏକଘଣ୍ଟା ଲାଗିଲା। ମାତ୍ର ତା'ର ପୂର୍ବବର୍ତ୍ତୀ କେତେକ ବିଧିବିଧାନ (ରକ୍ତଚାପ ପରୀକ୍ଷା ଇତ୍ୟାଦି) ଦୁଇ ତିନିଘଣ୍ଟାର କାରବାର। ମୁଁ ପ୍ରାୟ ଗୋଟାଏ ସାଢ଼େ ଗୋଟାଏ ବେଳେ ଚିକିତ୍ସା ଗୃହରେ ପଶିଲି। ପାଞ୍ଚଟା ଛ'ଟା ବେଳକୁ ବାହାରିଲି। ବାହାରିବା ପରେ ମୋତେ ଗ୍ଲାସରେ ଫଳରସ ଦିଆଗଲା। ମୁଁ ପିଇଦେଲି ଓ ଧୀରେ ଧୀରେ ବାହାରକୁ ଆସିଲି। ଦକ୍ଷିଣ ଚକ୍ଷୁ ଉପରେ ବ୍ୟାଣ୍ଡେଜ୍। ବାମ ଚକ୍ଷୁଟି ଖୋଲା। ପରଦିନ ସକାଳେ ଡାକ୍ତର ମୋତେ ଦେଖିବେ ବୋଲି କହିଲେ।

ମୁଁ ପ୍ରତୀକ୍ଷାଳୟକୁ ଫେରିବା ପରେ ଦେଖିଲି ଅଞ୍ଜୁ ଓ ପତ୍ନୀ ନିଶ୍ଚୁପ୍ ହୋଇ ବସିଛନ୍ତି। ଦେହରେ ସମ୍ଭବତଃ ପ୍ରାଣ ନାହିଁ। ମୋତେ ଦେଖି ସାମାନ୍ୟ ହସିଲେ। କଷ୍ଟ ହେଉଛି କି ନାହିଁ ବୋଲି ପଚାରିଲେ। ମୁଁ କହିଲି: "ନାଃ।" ମୁଁ କହିଲି: "ନାଃ ଡାକ୍ତର ପେନ୍ କିଲର୍ ଦେଇଛନ୍ତି। ଆବଶ୍ୟକ ହେଲେ ବ୍ୟବହାର କରିବି।" ପ୍ରକୃତରେ ଆବଶ୍ୟକ ହୋଇ ନ ଥିଲା।

ଡାକ୍ତରଙ୍କ ନିର୍ଦ୍ଦେଶମତେ ପରଦିନ ସକାଳୁ ଏଲ୍.ଭି. ପ୍ରସାଦ ପୁଣି ଆସିଲୁ। ଡାକ୍ତର ସାଙ୍ଗୱାନ୍ ଦେଖିଲେ ଏବଂ କହିଲେ: "ମୁଁ ଯାହା ଭାବୁଥିଲି, ତାହାଠାରୁ ଖୁବ୍ ଭଲ ଅଛି। ଆଖି ଅବସ୍ଥା ଜଟିଳ ଥିଲା। ମାତ୍ର ମୁଁ ଦେଖୁଛି ଏହା ନିୟନ୍ତ୍ରଣରେ ରହିଛି।" ସେ ଆମକୁ ଗୋଟିଏ ସପ୍ତାହ ପରେ ଆସିବାକୁ ପରାମର୍ଶ ଦେଇ ବିଦାୟ ନେଲେ।

ଆମେ ଡାକ୍ତରଙ୍କ ପ୍ରକୋଷ୍ଠରୁ ବାହାରି ଆସି ଦେଖିଲୁ ଯେ ବାଣୀବିହାରର ଆମର ସମ୍ମାନାସ୍ପଦ ବିଷ୍ଣୁ ବାବୁ (ପ୍ରଫେସର୍ ବିଷ୍ଣୁ ପ୍ରସନ୍ନ ଆଚାର୍ଯ୍ୟ) ଏବଂ ତାଙ୍କର ପତ୍ନୀ ବିନି ନାନୀ ଅପେକ୍ଷା କରିଛନ୍ତି। ଆମ ଆନନ୍ଦର ସୀମା ରହିଲା ନାହିଁ। ଆମେ ଜାଣିଥିଲୁ ଯେ ସେମାନେ ସେହି ସମୟରେ ହାଇଦ୍ରାବାଦ ମଧ୍ୟ ଦେଇ ପୁଟପର୍ତ୍ତି ଯାଉଛନ୍ତି। କିନ୍ତୁ ସ୍ନେହବଶତଃ ସେ ଏଲ୍.ଭି.ପ୍ରସାଦ ଆସିବେ ବୋଲି ଆମେ ଆଶା କରି ନ ଥିଲୁ। ସେମାନେ ଆମ ସହିତ ଆମେ ରହୁଥିବା ସ୍ଥାନକୁ ଗଲେ। ମୋର ଆଖିରେ ଶଲ୍ୟ ଚିକିତ୍ସା ସଫଳ ହୋଇଛି ଶୁଣି ଖୁସୀ ହେଲେ। ଆମେ ଏକାଠି ମଧ୍ୟାହ୍ନ ଭୋଜନ କଲୁ ଏବଂ ସେମାନେ ବିଦାୟ ନେଲେ।

ଗୋଟିଏ ସପ୍ତାହ ପରେ ଡାକ୍ତରଙ୍କୁ ସାକ୍ଷାତ କଲୁ। ସେ ମୋ ପାଇଁ କେତୋଟି ଆଇ ଡ୍ରପ୍ ଲେଖିଦେଲେ। ମଝିରେ ମଝିରେ ଆସିବାକୁ କହିଲେ। ପରୀକ୍ଷା ନିରୀକ୍ଷା ପାଇଁ ପ୍ରଥମେ ଦୁଇମାସରେ ଥରେ ପୁଣି ଚାରିମାସରେ ଥରେ ଏବଂ ପ୍ରତି ଛ'ମାସରେ ଥରେ ଆସିବାକୁ ହେଲା। ମୋଟାମୋଟି ଅବସ୍ଥା ଭଲ ରହିବାରୁ ବାମ ଚକ୍ଷୁ ପାଇଁ ମଧ୍ୟ ଗ୍ରାଫ୍‌ଟିଂ ନିଷ୍ପତ୍ତି ନିଆଗଲା। ପ୍ରଥମଟି ୨୦୦୫ ଡିସେମ୍ବର ମାସରେ କରା ଯାଇଥିବା ବେଳେ ଦ୍ୱିତୀୟଟିର (ବାମ ଚକ୍ଷୁ) ଶଲ୍ୟ ଚିକିତ୍ସା ୨୦୦୭ ମଇ ମାସରେ କରାଗଲା। ଡାକ୍ତର ସାଙ୍ଗୱାନ୍‌ଙ୍କ କୁଶଳୀ ହାତ ଓ ସମ୍ବେଦନଶୀଳ ହୃଦୟ ହିଁ ମୋ ଜୀବନର ଏକ ବିରାଟ ଅନ୍ଧକାରକୁ ଦୂର କରିପାରିଛି। କୃତଜ୍ଞତା ସ୍ୱରୂପ ମୁଁ ମୋ ଲିଖିତ ପୁସ୍ତକ Mysteries of Mind ତାଙ୍କୁ ଅର୍ପଣ କରିଲି।

ଏବେ ମଧ୍ୟ ପରୀକ୍ଷା ନିରୀକ୍ଷା ପାଇଁ ତାଙ୍କର ସହାୟତା ଆବଶ୍ୟକ କରେ। ବର୍ତ୍ତମାନ ବର୍ଷରେ ଅନ୍ତତଃ ଥରେ ଯାଉଛି। ଈଶ୍ୱରଙ୍କ କରୁଣା ଫଳରେ ହିଁ ଅନ୍ଧକାର ଭିତରୁ ଆଲୋକକୁ ଆସି ପାରିଛି।

## ହରାଇବା ଓ ପାଇବାର ଅଙ୍କ

ସ୍କୁଲ କଲେଜର ଗୋଟିଏ ସ୍ତରରେ ହୁଏତ ଅଙ୍କ କଷିବାର କାମଟା ସରିଯାଏ। କିନ୍ତୁ ଜୀବନସାରା ଅଙ୍କ କଷିବାର ମାନସିକତା ଅବ୍ୟାହତ ରହେ।

ମୁଁ ଚାହେଁ ବା ନ ଚାହେଁ, ଆଖିର ପୀଡ଼ା ଆଉ କଷଣ ମୋଠାରୁ କ'ଣ ଲୁଟି ନେଇଛି, ତାହାର ହିସାବ ମୋ ମନରେ ସ୍ୱତଃ ଚାଲି ଆସେ। ଶାରୀରିକ ଯନ୍ତ୍ରଣା ତ ସାମାନ୍ୟ କଥା। ହୁଏତ ଆଖିରେ ଆଟ୍ରୋପିନ୍ ପକାଇବା ଫଳରେ ବାହାର ଆଲୋକ ଗ୍ରହଣ କରି ନ ପାରି ମାସ ମାସ ମୁଣ୍ଡପୋତି ବସିବାକୁ ହୁଏ। ଆଖିର ଘା' ଜନିତ ଯନ୍ତ୍ରଣାର ଉପଶମ ପାଇଁ ଡାକ୍ତର ଯେଉଁ ଚାରୋଟି ପେନ୍‌କିଲର୍ (ଛ'ଘଣ୍ଟାରେ ଥରେ) ଦେଇଥାଆନ୍ତି, ତା'ର ପ୍ରଭାବ ଚାରି ଘଣ୍ଟାରେ କମି ଯିବାରୁ ଯନ୍ତ୍ରଣାରେ ଛଟପଟ ହୁଏ। ଚାରି ଘଣ୍ଟାରୁ କେତେବେଳେ ଛ'ଘଣ୍ଟା ହେବ ଏବଂ ମୁଁ କିଛି ଖାଇସାରି ପୁଣି ପେନ୍‌କିଲର୍ ଖାଇବି, ସେ ମୁହୂର୍ତ୍ତକୁ ଅପେକ୍ଷା କରି ରହିଥାଏ।

ଅନ୍ୟ ବ୍ୟଥାଟି ମାନସିକ। ମୁଁ ଲେଖାଲେଖି କରିବାକୁ ଭଲପାଏ। ଏ ଲେଖା ଆଖି ବନ୍ଦ କରି ଲେଖିବାର କାମ ସହ ସମାନ। ଧାଡ଼ି ସବୁତ ଏପଟ ସେପଟ ହୋଇଯାଏ। ତା'ଛଡ଼ା ଲେଖିବା ସମୟରେ କେହି ଡାକିଦେଲେ କାଗଜ ଉପରୁ କଲମଟି ଉଠାଇ ନେଇ ପୁନଶ୍ଚ ଯଥା ସ୍ଥାନରେ କଲମ ଚଳାଇବା ସମ୍ଭବ ହୁଏ ନାହିଁ। କୌଣସି ସମ୍ବାଦପତ୍ର କିମ୍ବା ପତ୍ରପତ୍ରିକାରେ ମୋର ଲେଖା ପ୍ରକାଶ ପାଇଛି ବୋଲି କେହି ଜଣାଇଲେ ସେହି ପୃଷ୍ଠା ଉପରେ ମୋର ଡାହାଣ ହାତର ପାପୁଲିଟି ରଖି ମୁଁ ତା'ର ସ୍ପର୍ଶାନୁଭୂତି ପାଇବାକୁ ନିଷ୍ଫଳ ଚେଷ୍ଟା କରେ।

ସବୁଠାରୁ କଷ୍ଟଦାୟକ ହେଉଛି ମୋର ପ୍ରିୟଜନର ଦୁଃଖ। ବର୍ଷ ବର୍ଷ ଧରି ମୋର ଝିଅ ପଲ୍ଲୀର ଅନେକ କଥା ବୁଝି ପାରି ନାହିଁ। ସେ କ'ଣ ଟିକେ ଭଲ ଖାଇବ, ଭଲ ପିନ୍ଧିବ, କୁଆଡ଼େ ବୁଲିଯିବ- ଏ ସବୁ କାମ ଅବହେଳିତ ହୋଇଛି। ଅନ୍ୟ ପକ୍ଷରେ ମୋର ବାରମ୍ବାର ବ୍ୟାଗ୍ ଧରିଛି ଚେନ୍ନାଇ କିମ୍ବା ହାଇଦ୍ରାବାଦ୍ ଯାତ୍ରା ସମୟରେ।

ପତ୍ନୀ ଅଞ୍ଜୁର ଜୀବନ ମଧ୍ୟ ଯନ୍ତ୍ରଣା ବିଜଡ଼ିତ ହୋଇ ଯାଇଛି। ଡାକ୍ତରଙ୍କ ପାଖକୁ ନେବା, ବଜାରଘାଟ କରିବା, ଝିଅକୁ ସ୍କୁଲକୁ ପଠାଇବା ଅବା ଆଣିବା ପରି କାର୍ଯ୍ୟ ସବୁର ଗଦା ଭିତରେ ସେ ପୋତି ହୋଇ ପଡ଼ିଛି। ଚକ୍ଷୁ ଯନ୍ତ୍ରଣାରେ ଅସ୍ଥିର ହୋଇ ଖରାବେଳେ ମୁଁ ଶୋଇ ପଡ଼ିଥିବା ସମୟରେ ଦରୱାନ୍ ଭଳି ସେ ଘର ସାମ୍ନାରେ ବସିଥାଏ, ଯେପରି କେହି ଆମ କବାଟରେ କରାଘାତ କରି ମୋତେ ନିଦରୁ ଉଠାଇ ନ ଦିଅନ୍ତି। ଶାରୀରିକ ଆଉ ମାନସିକ କଷ୍ଟର ବୋଝ ମା' ଝିଅଙ୍କ ଉପରେ ଲଦି ହୋଇ ଯାଇଛି। ମୁଁ ଇଚ୍ଛାକୃତ ଭାବରେ ଏସବୁ କରି ନଥିଲେ ମଧ୍ୟ ଅପରାଧବୋଧରୁ ପୂରାପୂରି ମୁକ୍ତ ହେବା ମୋ ପକ୍ଷରେ କଷ୍ଟକର।

ହରାଇବାର ଗ୍ଲାନି ଓ ପୀଡ଼ା ଭିତରେ କିଛି ଯେ ପ୍ରାପ୍ତି ନ ଥିଲା, ସେ କଥା କହିବି ନାହିଁ। ଏ ଦୁର୍ଦ୍ଦିନ ମଧ୍ୟରେ କିଛିଟା କାମ ବାଧାପ୍ରାପ୍ତ ହେଲେ ମଧ୍ୟ ମୁଁ ମୋର ଗବେଷଣାରତ ଛାତ୍ରଛାତ୍ରୀମାନଙ୍କର ମୌଖିକ ସ୍ତରରେ ମାର୍ଗ ଦର୍ଶନ ବନ୍ଦ କରି ନଥିଲି। ଫଳ ସ୍ୱରୂପ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି. ସାରିଥିବା ଗବେଷକଙ୍କ ସଂଖ୍ୟା କେବଳ ରେକର୍ଡ଼ ପର୍ଯ୍ୟାୟର (ଏବେ ସୁଦ୍ଧା ୩୮) ନୁହେଁ, ଅନେକଙ୍କର ଏଥିପାଇଁ ସେହି ଦୁର୍ଦ୍ଦିନରେ ଈର୍ଷାର ପାତ୍ର ହୋଇଛି। ୧୯୯୭ ମସିହାରେ ଦୁଇ ଦୁଇଥର ଗୋଟିଏ ଦିନରେ ତିନି ତିନି ଜଣ ପି.ଏଚ୍.ଡ଼ି. ଗବେଷକଙ୍କ ମୌଖିକ ପରୀକ୍ଷା ହେବା ଫଳରେ କେହି କେହି ସହକର୍ମୀ ମନ୍ତବ୍ୟ ଦେଲେ: "ଫକୀର ଗୋଟିଏ ଦିନରେ ହାଟ୍ରିକ୍ କରିଦେଲା।" ମୁଁ ବୁଝିପାରିଲି ଯେ ଏ ମନ୍ତବ୍ୟରେ ପ୍ରଶଂସା ନ ଥିଲା, ଈର୍ଷା ହିଁ ଭରି ରହିଥିଲା। ଚକ୍ଷୁଗତ ସମସ୍ୟାର ଦୁର୍ଦ୍ଦିନ ମଧ୍ୟରେ ମୁଁ ଯେ ପୂରାପୂରି ଅକର୍ମଣ୍ୟ ହୋଇନାହିଁ, ସେ ଅନୁଭବ ଗଭୀର ହେଲା।

ସଙ୍କଟ ମଧ୍ୟରେ ସବୁଠାରୁ ବଡ଼ ପ୍ରାପ୍ତି ହେଉଛି ସମୟର ମୂଲ୍ୟ ବୁଝିବାର ଗଭୀରତା। ପ୍ରତିଟି ମୁହୂର୍ତ୍ତ ଯେ କେତେ ମୂଲ୍ୟବାନ ଏବଂ ପ୍ରତିଟି କ୍ଷଣକୁ ଜୀବନରେ କାର୍ଯ୍ୟକାରୀ ହେବ, ଏ ଉପଲବ୍ଧି ସମ୍ଭବତଃ ଅନ୍ୟ ମାଧ୍ୟମରେ ଆସି ନ ଥାନ୍ତା। ସବୁ ଦୁର୍ଦ୍ଦିନ ମଧ୍ୟରେ ମୁଁ ଆଶା ହରାଇ ନ ଥିଲି। କୃପାଳୁ ଈଶ୍ୱର ଯେ ମୋତେ ଦୟା କରିବେ ଏବଂ ମୋ ବହିର ପ୍ରୁଫ୍ ମୁଁ ନିଜେ ଦେଖିପାରିବି, ସେପରି ଆଶାଭରସା ମୋତେ ବଞ୍ଚାଇ ରଖିଥିଲା। ଜୀବନର ମହାବାତ୍ୟା ପରେ ମୁଁ ଉପଲବ୍ଧି କଲି ଯେ ଈଶ୍ୱରଙ୍କ ଆଶିଷ ଯେ କୌଣସି ଖଳନାୟକର ଚକ୍ରାନ୍ତ ପଣ୍ଡ କରିପାରେ।

❖

(୩୧)

# ପ୍ରଶାନ୍ତି ଅଭିମୁଖେ

ଆମ ପରିବାରଟି ବର୍ତ୍ତମାନ ଶ୍ରୀ ସତ୍ୟସାଇ ମହାସ୍ରୋତରେ ସାମିଲ ହୋଇଛି। ମୁଁ ଓ ଅଞ୍ଜୁ ଏ ସ୍ରୋତକୁ କିପରି ଆସିଲୁ, ତାହାର ସ୍ମୃତି ଚାରଣ କଲେ ମନରେ ଆନନ୍ଦର ତରଙ୍ଗ ସୃଷ୍ଟି ହୁଏ।

ପିଲାଦିନରୁ ମୁଁ ଯେ ଏକ ଶୃଙ୍ଖଳିତ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ଲାଳିତ ପାଳିତ ହୋଇଛି, ଏ କଥା କହି ପାରିବି ନାହିଁ। ଆମ ଘରେ କୌଣସି ସୁନିର୍ଦ୍ଦିଷ୍ଟ ପୂଜା ଘର ନ ଥିଲା। ଘରଟି ମଧ୍ୟ ଦୁଇ ବଖରା ବିଶିଷ୍ଟ ଛୋଟ ଘରଟିଏ ଥିଲା। ବାପା ନିୟମିତ ଭାବରେ କୌଣସି ମନ୍ଦିରକୁ ଯିବାର ଘଟଣା ମୋର ମନେ ନାହିଁ। ତେବେ ସେ ଗୋଟିଏ ବିସ୍କୁଟ କାରଖାନାରେ କାର୍ଯ୍ୟ କରୁଥିବାରୁ ସମୟ ସମୟରେ ସେ ଆମକୁ ଗାଡ଼ିରେ କେତେକ ଦର୍ଶନୀୟ ସ୍ଥାନ ନେଇ ଯାଇଥିଲେ। ବେଳେବେଳେ ଆମର କେତେକ ପ୍ରିୟ ପଡ଼ୋଶୀଙ୍କୁ ମଧ୍ୟ ଏପରି ସୁଯୋଗ ଦେଇଥିଲେ। ମୁଁ ଓ ମୋର ସାନଭାଇ ଅଳ୍ପ କେତେଥର ପୁରୀର ଜଗନ୍ନାଥ ମନ୍ଦିର, ଶରଣକୂଳର ଲଡୁକେଶ୍ୱର, ଓଡ଼ଗାଁର ଶ୍ରୀ ରଘୁନାଥ ଜୀ, କପିଳାସର ଶ୍ରୀ ଚନ୍ଦ୍ରଶେଖର ମହାଦେବଙ୍କ ମନ୍ଦିର ଓ ଯୋରନ୍ଦାର ଅଲେଖ ମନ୍ଦିର ଯାଇ ପାରିଥିଲୁ। ମାତ୍ର ଏହାକୁ ଭିତ୍ତି କରି ବାପାଙ୍କର ଧାର୍ମିକ ମନୋବୃତ୍ତି ସମ୍ପର୍କରେ ମନ୍ତବ୍ୟ ଦେଇ ହେବ ନାହିଁ।

ମୋର ବୟସ ଛ'ବର୍ଷ ହୋଇଥିବା ସମୟରେ ମୁଁ ବୋଉକୁ ହରାଇଥିଲି। ସୁତରାଂ ବୋଉର ଧାର୍ମିକ ଭାବନା ସମ୍ପର୍କରେ ମଧ୍ୟ ମୋର ବିଶେଷ ସ୍ମରଣ ନାହିଁ। ତେବେ ଶୋଇବା ପୂର୍ବରୁ ବୋଉ କ'ଣ ଗୋଟେ ପଢ଼ିଥାଏ ଏବଂ ବୁଢ଼ୀମା କଥାରୁ ଜାଣିଥିଲି ଯେ ମୋର ବୋଉ ଭାଗବତ ପଢ଼ିସାରି ଶୋଇବାକୁ ଯାଏ।

ମୋର ସଂଯୋଗର ମୂଳ ଖୁଅଟି ହେଉଛି ମୋର ବୁଢ଼ୀମା (ମୁଁ ମା' ବୋଲି ଡାକେ)। ଅତି ଛୋଟ ବୟସରୁ ମୁଁ ତା' କୋଳରେ କାଖ ହୋଇ ଆମ ଘରଠାରୁ ମାତ୍ର ଶହେ ମିଟର ଦୂରରେ ଥିବା ବୁଢ଼ୀମା'ଙ୍କ ଘରକୁ ଯାଏ। ବୁଢ଼ୀମା'ଙ୍କ ପୁଅକୁ ମୁଁ ଛୁଆବା' ଓ ତାଙ୍କ ପତ୍ନୀଙ୍କୁ ମୁଁ ଛୁଆମା' ଡାକେ। ସେମାନଙ୍କ ପୁଅ ମନି ମୋର ସମବୟସୀ ଓ ବନ୍ଧୁ। ମୋର ମା' ଓ ବୁଢ଼ୀମା' ମଧ୍ୟରେ ଅପୂର୍ବ ପ୍ରୀତି ଓ ସଦ୍‌ଭାବ ରହିଥିଲା। ବୁଢ଼ୀମା'ଙ୍କ ପିଣ୍ଡାକୁ ଲାଗି ଭାଗବତ ଟୁଙ୍ଗୀ। ପ୍ରତିଦିନ ସନ୍ଧ୍ୟାରେ ଭାଗବତ ପାଠ ହୁଏ। ମୋ ମା' କୋଳରେ ରହି ମୁଁ ପ୍ରତିଦିନ ଭାଗବତ ଶୁଣେ। ଗୋଟିଏ

ଦିନ ଶୋଇ ପଡ଼ିଥିବାରୁ ମା' ମୋତେ ନେଇ ନ ଥିଲା। ଅଧା ରାତିରେ ଚିତ୍କାର କରି ମୁଁ ମା'କୁ ବେଶ୍ ହଇରାଣ କରିଥିଲି। ସେହି ବୟସରେ ଭାଗବତର ବିନ୍ଦୁ ବିସର୍ଗ ମୁଁ ବୁଝି ନ ଥିବି ସତ, ହେଲେ ତାହାର ପ୍ରଭାବ ଥିଲା କି ନାହିଁ ବୋଲି କିଏ କହିବ ?

ନିଜ ଘରେ ବା ପରିବାରରେ ସେପରି ପ୍ରବାହ ନ ଥିଲେ ମଧ୍ୟ ପରିବେଶରେ କିଛିଟା ଆବାହାଓ୍ୱା ଥିଲା। ଆମ ସାହିରେ କାର୍ତ୍ତିକ ମାସର ପ୍ରତିଦିନ କୀର୍ତ୍ତନ ମଣ୍ଡଳୀ ରାସ୍ତା ଅତିକ୍ରମ କରେ। ଘରର ଚାରି ଦିଗରେ ମନ୍ଦିର ସବୁ ରହିଛି। ଖୁବ୍ ଅଳ୍ପ ଦୂରରେ ଶ୍ରୀ ଲକ୍ଷ୍ମୀ ନାରାୟଣ ମନ୍ଦିର ଓ ମଙ୍ଗଳା ମନ୍ଦିର। ସନ୍ଧ୍ୟା ବେଳେ ଦିନେ ଦିନେ ଲକ୍ଷ୍ମୀ ନାରାୟଣ ମନ୍ଦିରକୁ ଗଲେ ଅନ୍ୟ କୌଣସି ସମୟରେ ସନ୍ଧ୍ୟାରେ ମଙ୍ଗଳା ମନ୍ଦିରକୁ ଆରତି ସମୟରେ ଯାଇଥାଏ। ଉତ୍ସବ ସମୟରେ ଗୋଟିଏ ପ୍ରାନ୍ତରେ ଶ୍ରୀ ମଦନ ମୋହନଙ୍କ ମନ୍ଦିର କିମ୍ବା ଅନ୍ୟ ପ୍ରାନ୍ତରେ ଥିବା ଶ୍ରୀ କାମେଶ୍ୱର ମନ୍ଦିରକୁ ଯାଇଥାଏ।

ଚାଉଳିଆଗଞ୍ଜରୁ କାଠଗଡ଼ା ସାହି ଆସିବା ପରେ (ପ୍ରାଥମିକ ଶିକ୍ଷା ପରେ) ସମ୍ପୃକ୍ତି ଆଉ ଟିକେ ବଢ଼ିଲା। ଆମ ଘରକୁ ଲାଗି ଶ୍ରୀ ପ୍ରକଟନାଥ ମହାଦେବଙ୍କ ମନ୍ଦିର। ସ୍ନାନ ପରେ ପରେ ସେଠାକୁ ଯାଇ କିଛି ସ୍ତୁତି ଗାନ କରେ। ପାର୍ଶ୍ୱ ଦେବାଦେବୀଙ୍କୁ ପ୍ରଣାମ କରେ। ସନ୍ଧ୍ୟାବେଳେ ଆମ ଘରର ଉପର ମହଲାରେ ଯେଉଁଠାରେ ପୂଜାସ୍ଥାନ ଓ ଫଟୋ ରହିଛି, ସେଠାରେ ଶ୍ରୀ ଭାଗବତର ଏକାଦଶ ସ୍କନ୍ଧର ଗୋଟିଏ ଅଧ୍ୟାୟ ପଢ଼ିଥାଏ। ଏକାଦଶ ସ୍କନ୍ଧ ପଢ଼ିବାର ଅଭ୍ୟାସଟି ବହୁଦିନ ପର୍ଯ୍ୟନ୍ତ ବଳବତ୍ତର ଥିଲା। ଏପରିକି ୧୯୭୬ ମସିହାରେ କାନାଡ଼ା ଯିବା ସମୟରେ ଆମେ ଦୁଇଟି ଛୋଟିଆ ବ୍ୟାଗ୍ ନେଇଥିଲେ ମଧ୍ୟ ଏକାଦଶ ସ୍କନ୍ଧ ନେବା ପାଇଁ ଭୁଲି ନ ଥିଲି।

ହାଇସ୍କୁଲରେ ପଢ଼ିବା ସମୟରେ ଆଖପାଖରେ କେତେକ ବନ୍ଧୁ ଜୁଟି ଗଲେ। ଆମେ କେତେକ ବନ୍ଧୁ ଏକାଠି ହୋଇ ସନ୍ଧ୍ୟାରେ ଚୌଧୁରୀ ବଜାରର ଶ୍ରୀ ଗୋପାଳଜୀଙ୍କ ମନ୍ଦିରକୁ ଯାଉ। ଆରତୀ ପରେ ପରେ ଫେରିଆସୁ। ବାହାରୁ କିଣା ହୋଇଥିବା କୌଣସି ମିଷ୍ଟାନ୍ନ ଶ୍ରୀ ଗୋପାଳଜୀଙ୍କୁ ଅର୍ପଣ କରାଯାଏ ନାହିଁ। କେବଳ ମନ୍ଦିର ବେଢ଼ା ମଧ୍ୟରେ ପ୍ରସ୍ତୁତ ଏକ ମିଷ୍ଟାନ୍ନ "ଚକଟା" ଅର୍ପଣ କରାଯାଏ। ଏହାର ସ୍ୱାଦ ଏତେ ଲୋଭନୀୟ ଯେ ଏବେ ମଧ୍ୟ ମନେ ପଡ଼ିଲେ ଜିଭ ଓଦା ହୁଏ। ଏତଦ୍‌ବ୍ୟତୀତ ପ୍ରତି ଗୁରୁବାର ସନ୍ଧ୍ୟାରେ ବଳରାମ ଭାଇ ଓ ତାଙ୍କର କେତେଜଣ ବନ୍ଧୁଙ୍କ ସହିତ ଚାଲି ଚାଲି କଟକ ଚଣ୍ଡୀ ମନ୍ଦିରକୁ ଯାଇଥାଉ।

ବାହ୍ୟିକ ଉପଚାର ବାହାରକୁ ଯାଇ କିଛି ଆଧ୍ୟାତ୍ମିକ ସାହିତ୍ୟ ପଢ଼ିବାର ସୁଯୋଗ ଆସିଲା ନବମ, ଦଶମ ଶ୍ରେଣୀରେ। ଏହି ସମୟରେ ବିଭିନ୍ନ ଧରଣର ରଚନା

(କେବଳ ଆଧ୍ୟାତ୍ମିକ ନୁହେଁ) ପଢ଼ିବାର ଏକରକମ ଆଗ୍ରହ ଜନ୍ମିଲା। ଘରପାଖରେ ଥିବା ପଢ଼ିଆରୀ ପାଠାଗାର ଏଥିପାଇଁ ବିଶେଷ ସୁଯୋଗ ପ୍ରଦାନ କଲା। ମୁଁ ନିୟମିତ ଭାବରେ ବେଶ୍ କିଛି ସମୟ ଏହି ପାଠାଗାରରେ କଟାଇଲି। ବିଭିନ୍ନ ପତ୍ରପତ୍ରିକା ଓ ଗ୍ରନ୍ଥାବଳୀ ପାଠ କଲି।

ଶ୍ରୀ ଅରବିନ୍ଦ ଆଶ୍ରମରୁ ନିୟମିତ ଭାବରେ ପ୍ରକାଶିତ ପତ୍ରିକା "ନବଜ୍ୟୋତି" ମୋର ଦୃଷ୍ଟି ଆକର୍ଷଣ କଲା। ଏହାର ଉଚ୍ଚକୋଟୀର ଭାଷା ମୋତେ ମୁଗ୍ଧ କଲା। ମାତ୍ର ମୁଁ କ୍ରମଶଃ ଅନୁଭବ କଲି ଯେ ଭାବଧାରା ସବୁ ମୋର ଅବୋଧ୍ୟ ରହି ଯାଉଛି। ସୁତରାଂ ମୁଁ ଅଧିକ ଅଗ୍ରସର ହୋଇ ପାରିଲି ନାହିଁ। ତେବେ କେବେ କେଉଁଠି ଶ୍ରୀ ଅରବିନ୍ଦ ଦର୍ଶନ ଉପରେ ସ୍ୱତନ୍ତ୍ର ପାଠଚକ୍ର ଅନୁଷ୍ଠିତ ହେଉଥିଲେ କିମ୍ବା କୌଣସି ବକ୍ତା ଭାଷଣ ଦେଉଥିଲେ ମୁଁ ଶୁଣିବାରେ ଆଗ୍ରହୀ ହେଲି। କେତେଥର କଟକର ମାତୃମନ୍ଦିର ଯାଇ ଭାଷଣ ଶୁଣିବା କିମ୍ବା ଉତ୍ସବରେ ଯୋଗଦାନ କରିବାର ଆନନ୍ଦ ଅନୁଭବ କଲି।

କଲେଜ ଜୀବନ ଏବଂ ଚାକିରି ଜୀବନର ଆଦ୍ୟ ଭାଗରେ ଆଧ୍ୟାତ୍ମିକତାର ବିଶେଷ ଆଲୋଡ଼ନ ମୁଁ ଅନୁଭବ କରିଛି ବୋଲି କହିପାରୁ ନାହିଁ। ପ୍ରଭାବଶାଳୀ ଆଲୋଡ଼ନର ଅନୁଭବ ୧୯୮୫ ମସିହାର ମଧ୍ୟ ଭାଗରେ ଜୀବନ ବଳୟରେ ସମ୍ଭବତଃ ପ୍ରବେଶ କରିଥିଲା।

## ପ୍ରଥମ ଆଲୋଡ଼ନ

ସମ୍ଭବତଃ ପ୍ରଥମ ଆଲୋଡ଼ନର ଅନୁଭବ ଆସିଥିଲା ୧୯୮୪ ମସିହାର ଶେଷ ବେଳକୁ। ଆମ୍ଭେମାନେ ୧୯୮୩ ମସିହା ମାର୍ଚ୍ଚ ମାସରେ ସହିଦନଗରରୁ ବାଣୀବିହାର ପରିସର ମଧ୍ୟକୁ ଆସିଥାଉ। ଗୋଟିଏ ବର୍ଷରୁ ଅଧିକ ସମୟ କ୍ୟାମ୍ପସ ଜୀବନର ଅନୁଭବ ଗତାନୁଗତିକ ଧାରାରେ ଚାଲିଥାଏ। ଆମର ବ୍ୟାଚେଲର ଫ୍ଲାଟ ସାମ୍ନାରେ ବିସ୍ତୀର୍ଣ୍ଣ ପଡ଼ିଆ। ସେଠାରେ ପଲୀ ତା'ର ସମବୟସୀ ପିଲାମାନଙ୍କ ସହିତ ଅପରାହ୍ଣରେ ଖେଳେ। ଅନେକଗୁଡ଼ିଏ ପିଲାଙ୍କ କାକଳିରେ କିଛିଟା ବିରସତା କଟିଯାଏ। ତଥାପି ଭିତରେ କେମିତି ଗୋଟାଏ ଅଭାବବୋଧ ଥିଲା ପରି ମନେହେଉ ଥିଲା।

ଆମ ଫ୍ଲାଟଠାରୁ ଅଳ୍ପ ଦୂରରେ ପରିସଂଖ୍ୟାନ ବିଭାଗର ପ୍ରଫେସର୍ ଆଇ. ଏସ୍. ରାଓଙ୍କ ଘରେ ପ୍ରତି ଗୁରୁବାର ସନ୍ଧ୍ୟାରେ ଭଜନ ହୁଏ। ଗୁରୁବାର ଦିନ ଏଠାକୁ ଯିବା ପାଇଁ ଅଞ୍ଜୁ ଇଚ୍ଛା ପ୍ରକାଶ କଲା। ମୁଁ ମଧ୍ୟ ଏ ଦିଗରେ ତାକୁ ପ୍ରୋତ୍ସାହିତ କଲି। କଲେଜ ସ୍ତରରେ ଥିବା ସମୟରେ ଶାନ୍ତିନିକେତନର ତାଲିମପ୍ରାପ୍ତ ବିଶିଷ୍ଟ ଗୁରୁ ବିଶ୍ୱନାଥ ରାଓଙ୍କ ତତ୍ତ୍ୱାବଧାନରେ ସଙ୍ଗୀତ ଶିକ୍ଷା କରୁଥିଲା। ସୁତରାଂ ଆମେ ଭାବିଲୁ ଯେ ଭଜନ ଗାଇବାର ଏହି ସୁଯୋଗ ପୂର୍ବ ଅଭ୍ୟାସଟିକୁ ବଳବତ୍ତର କରିବ।

ଅଞ୍ଜୁ ନିୟମିତ ଭାବରେ ପ୍ରଫେସର ରାଓ ବାବୁଙ୍କ ଘରକୁ ଗୁରୁବାର ଭଜନ ସନ୍ଧ୍ୟାରେ ଯିବାକୁ ଆରମ୍ଭ କଲା। ସେଠାରେ ଶ୍ରୀ ସତ୍ୟସାଇ ବାବାଙ୍କର ଭଜନ ହେଉଥିବାର ସୂଚନା ପାଇଲୁ। ଏତଦ୍‌ବ୍ୟତୀତ ପ୍ରଫେସର୍ ରାଓଙ୍କ ପ୍ରେରଣାରେ ଏବଂ ପରିସଂଖ୍ୟାନ ବିଭାଗର ଛାତ୍ରମାନଙ୍କ ଉଦ୍ୟମରେ ବାଣୀବିହାରରେ ପ୍ରତି ମାସରେ ଦୁଇଥର ପାଠଚକ୍ର ହେଉଥିଲା। ଗୋଟିଏ ପାଠଚକ୍ର ହେଉଛି ବୌଦ୍ଧିକ ପାଠଚକ୍ର। ଏଥିରେ ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିଷୟ ସବୁ (ଯଥା: ମୂଲ୍ୟବୋଧର ଗୁରୁତ୍ୱ, କର୍ମଯୋଗ ଇତ୍ୟାଦି) ଆଲୋଚିତ ହୁଏ। ଅନ୍ୟ ପାଠଚକ୍ରଟି ସାଇ ଆଶ୍ରିତମାନଙ୍କ ପାଇଁ ଉଦ୍ଦିଷ୍ଟ। ଏଠାରେ ଶ୍ରୀ ସତ୍ୟସାଇ ବାବାଙ୍କର ଦର୍ଶନ ଓ ବାର୍ତ୍ତା ଆଲୋଚିତ ହୋଇଥାଏ। ପ୍ରାୟ କୋଡ଼ିଏ ପଚିଶଜଣ ବ୍ୟକ୍ତି ଏପରି ପାଠଚକ୍ରରେ ଅଂଶ ଗ୍ରହଣ କରନ୍ତି। ଜଣେ ମୁଖ୍ୟ ଆଲୋଚକ ରୁହନ୍ତି। ମୁଁ ଏସବୁ ପାଠଚକ୍ରରେ ଯୋଗ ଦେବା ଆରମ୍ଭ କଲି ଏବଂ ଆନନ୍ଦ ଅନୁଭବ କଲି। କ୍ରମଶଃ ମୋର ଆଗ୍ରହ ବଢ଼ିବାକୁ ଲାଗିଲା ଏବଂ ସମୟ ସମୟରେ ମୁଁ ମୁଖ୍ୟ ଆଲୋଚକର ଭୂମିକା ଗ୍ରହଣ କଲି।

ସେ ସମୟରେ ପୂର୍ବତନ ଏମ୍.ପି. ଓ ବିଶିଷ୍ଟ ସାହିତ୍ୟିକ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା ଶ୍ରୀ ସତ୍ୟସାଇ ସେବା ସଂଗଠନର ରାଜ୍ୟ ସଭାପତି ଥିଲେ। ସେ ଆମର ପ୍ରିୟ ପାରିବାରିକ ବନ୍ଧୁ କ୍ଷୀରୋଦ ଭାଇଙ୍କ କାକା ହୋଇଥିବାରୁ ଆମେ ବେଳେବେଳେ ତାଙ୍କର ସହିଦନଗର ବାସଭବନକୁ ଯାଉଥିଲୁ। ଥରେ ସେ ଆମକୁ "ରସ ବୈ ସଃ" ବହିଟି ପଢ଼ିବାକୁ ଦେଲେ। ଆମେ ଦୁହେଁ ମୁଗ୍ଧ ହେଲୁ। ପୁସ୍ତକଟିର କିଛି ଅଂଶ ଆତ୍ମଜୀବନୀମୂଳକ। ଶ୍ରୀଯୁକ୍ତ ପଣ୍ଡା (ଆମେ ତାଙ୍କୁ ନନା ବୋଲି ଡାକିଥାଉ) ପ୍ରଥମେ କରମଲା ଆଶ୍ରମର ପୀଠଗୁରୁ ଶ୍ରୀ ଅଭିରାମ ପରମ ହଂସଦେବଙ୍କ ଶିଷ୍ୟ ଥିଲେ। ସେ କିପରି ଭାବରେ ଶ୍ରୀ ସତ୍ୟସାଇ ସେବା ସଂଗଠନକୁ ଆସିଲେ ତାହାର ବିବରଣୀ ଦିଆଯାଇଛି। କେତେକ ଅଲୌକିକ ଲୀଳା ମଧ୍ୟ ବର୍ଣ୍ଣନା କରାଯାଇଛି।

ବହିଟି ଫେରାଇବା ପାଇଁ ନନାଙ୍କ ଘରକୁ ଯିବାକୁ ହେଲା। ଅଞ୍ଜୁ ପଚାରିଲା: "ନନା! ଆପଣ ଯାହା ଲେଖିଛନ୍ତି, ତାହା କ'ଣ ସତ?" ନନା କହିଲେ: "ମା" ମୁଁ ଏ ବୟସରେ ମିଛ ବା ଲେଖିବି କାହିଁକି? ତେବେ ତୋର ସତ୍ୟସାଇଙ୍କ ନାମ ନେବାରେ ଆବଶ୍ୟକତା ନାହିଁ। ତାଙ୍କୁ ଯେଉଁ ନାମରେ ଡାକିଲେ ମଧ୍ୟ ସେ ଓଃ କରିବେ।" ନନା ବ୍ରହ୍ମପୁରର ଲୋକ। ସେ ସେହି ସ୍ଥାନର ଶୈଳୀରେ ଏ କଥା ପ୍ରକାଶ କଲେ।

ଆମେ ଘରକୁ ଫେରି ଧୀରେ ଧୀରେ କିଛି କିଛି ସାଇ ସାହିତ୍ୟ ପଢ଼ିବା ଆରମ୍ଭ କଲୁ। ପୁଟପର୍ତ୍ତିରେ ଶ୍ରୀ ସତ୍ୟସାଇ ବାବାଙ୍କ ଆଶ୍ରମ ହେଉଛି ପ୍ରଶାନ୍ତିନିଳୟମ୍। ପ୍ରଶାନ୍ତିନିଳୟମ୍ କିପରି ଯିବାକୁ ହୁଏ, ତାହା ନନାଙ୍କଠାରୁ ବୁଝିଲୁ। ମାତ୍ର ୧୯୮୫ ମସିହାରେ ମନସ୍ଥ କରିଥିଲେ ମଧ୍ୟ ପ୍ରଶାନ୍ତି ଯିବା ସମ୍ଭବପର ହେଲା ନାହିଁ।

ପରବର୍ଷ ଯିବା ପାଇଁ ନିଜକୁ ପ୍ରସ୍ତୁତ କଲୁ। ଡିସେମ୍ବର ଶେଷ ଭାଗରେ ଖ୍ରୀଷ୍ଟପର୍ବ ପାଇଁ ପ୍ରାୟ ଦଶଦିନର ଛୁଟି। ସୁତରାଂ ଏହି ସମୟଟି ଉପଯୋଗୀ ହେବ ବୋଲି ଭାବିଲୁ। ଛୁଟି ହେବା ମାତ୍ରେ ଡିସେମ୍ବର ୨୦/୨୧ ବେଳକୁ ବାହାରି ଯିବୁ ଏବଂ ନୂଆ ବର୍ଷ କଟାଇ ଜାନୁଆରୀ ୨/୩ରେ ବାହାରି ଆସିବାର ଯୋଜନା ହେଲା। ପଲ୍ଲୀ ଚାରି ବର୍ଷର ହୋଇଥାଏ। ପ୍ରଶାନ୍ତି ପାଇଁ ସିଧାସଳଖ ରେଳ ସଂଯୋଗ ନ ଥାଏ। ତଥାପି ସାହସ ଓ ଉନ୍ମାଦନା ନେଇ ବାହାରି ପଡ଼ିଲୁ।

ହାଇଦ୍ରାବାଦ୍ ଦେଇ ଲୋକମାନେ ପ୍ରଶାନ୍ତି ଯାଉଥିଲେ। ଆମେ ମଧ୍ୟ ଅପରାହ୍ଣରେ ଭୁବନେଶ୍ୱରରୁ ଯାଇ ସିକନ୍ଦରାବାଦ ଷ୍ଟେସନରେ ପହଞ୍ଚିଲୁ। ସେଠାରୁ ଧରମାଭରମ ଯିବାକୁ ହେବ। ରାତି ପ୍ରାୟ ସାଢ଼େ ଆଠଟାରେ ଗୁନ୍ତକଲ୍ ଏକ୍ସପ୍ରେସ୍ ସିକନ୍ଦରାବାଦ୍ ଷ୍ଟେସନରୁ ବାହାରେ। ଏଥିରେ ଗୋଟିଏ ଧରମାଭରମ ବଗି ଥାଏ। ଆମେ ରାତ୍ରି ଭୋଜନ ଶେଷ କରି ଧରମାଭରମ ବଗିରେ ବସିଲୁ। ଏ ବଗିର ସମସ୍ତ ଯାତ୍ରୀ ପୁଟପର୍ତ୍ତିର ଯାତ୍ରୀ। ସୁତରାଂ କଥାବାର୍ତ୍ତା ବେଶ୍ ଜମିଲା। ବିଶେଷତଃ ଗୋପାଳ ବାବୁ ନାମକ ଜଣେ ଯୁବକ ତାଙ୍କର ପିଇସାଙ୍କୁ ନେଇ ପ୍ରଶାନ୍ତି ଆଶ୍ରମ ଯାଉଥିଲେ। ପୂର୍ବରୁ ଗୋପାଳ ବାବୁ ଏକାଧିକ ବାର ପ୍ରଶାନ୍ତି ଯାଇଛନ୍ତି। ତାଙ୍କର ପିଇସା ପ୍ରଥମ ଥର ଲାଗି ପ୍ରଶାନ୍ତି ଯାଉଛନ୍ତି। ଗୋପାଳ ବାବୁ ତାଙ୍କ ଅତୀତ ଅଭିଜ୍ଞତାରୁ କେତେ ମଜା ମଜା କଥା କହିଲେ। ସମୟ ସୁରୁଖୁରୁରେ ବିତିଗଲା।

ପ୍ରତ୍ୟୁଷରେ ଗୁନ୍ତକଲ୍ ଏକ୍ସପ୍ରେସ୍‌ଟି ଗୁନ୍ତକଲ୍‌ରେ ପହଞ୍ଚିଲା। ଆମେ ଜାଣିଥିଲୁ ଯେ ଧରମାଭରମ ବଗିଟି ଅଲଗା ହେବ। ପ୍ରାୟ ଦିନ ଦଶଟା ବେଳେ ଏହି ବଗିଟି ଧର୍ମାଭରମ ପାସେଞ୍ଜର ସହିତ ସଂଯୁକ୍ତ ହେବ ଏବଂ ଏହି ପାସେଞ୍ଜର ଆମକୁ ପ୍ରାୟ ସାଢ଼େ ଏଗାରଟା ବେଳକୁ ଧର୍ମାଭରମରେ ପହଞ୍ଚାଇବ। ମଝିରେ ପ୍ରାୟ ଚାରି ଘଣ୍ଟାର ବ୍ୟବଧାନ। ତେଣୁ ଆମେ ଗୁନ୍ତକଲ୍ ଷ୍ଟେସନ୍‌ରେ ଦାନ୍ତପତ୍ର ଘଷି ଜଳଖିଆ ଖାଇଲୁ। ପାସେଞ୍ଜରକୁ ଅପେକ୍ଷା କଲୁ।

ନିର୍ଦ୍ଧାରିତ ସମୟ ଦଶଟାରେ ଧର୍ମାଭରମ ବଗି ପାସେଞ୍ଜରରେ ଲାଗିଲା ଏବଂ ଗତି କରିବାକୁ ଆରମ୍ଭ କଲା। ପୁଟପର୍ତ୍ତିରେ ପହଞ୍ଚିବା ପାଇଁ ମନର ବ୍ୟଗ୍ରତା ଅଧିକ ଥିବାରୁ ପାସେଞ୍ଜରର ଧିମାଗତି ବିରକ୍ତ ଲାଗୁଥାଏ। ଦିନ ସାଢ଼େ ଏଗାରଟା ବାରଟା ବେଳକୁ ଗାଡ଼ି ଧର୍ମାଭରମ୍‌ରେ ପହଞ୍ଚିଲା। ଧର୍ମାଭରମ ସିଲ୍କ ଲାଗି ବିଖ୍ୟାତ। ଏହା ବ୍ୟତୀତ ଏ ସ୍ଥାନ ବିଷୟରେ ବିଶେଷ କିଛି ଜଣା ନ ଥିଲା। ଓହ୍ଲାଇବା ପରେ ଧର୍ମାଭରମ ବସ୍‌ଷ୍ଟେଜ୍‌ରୁ ବସ୍ ନେଇ ପୁଟପର୍ତ୍ତି ଯିବାକୁ ହେବ। ସୁତରାଂ ରେଳଷ୍ଟେସନର ବାହାରକୁ ଆସି ସହର ମଧ୍ୟକୁ ଯିବା ପାଇଁ ଟାଙ୍ଗା ନେଲୁ। ଟାଙ୍ଗାରେ ବସିବାର ଅନୁଭବ ପଲ୍ଲୀ ପାଇଁ ପ୍ରଥମ। ତେଣୁ ସେ ଖୁବ୍ ଖୁସୀ ହେଉଥାଏ।

ଆମେ ସହର ମଧ୍ୟକୁ ଆସି ବସ୍‌ଷ୍ଟାଣ୍ଡର ପାଖାପାଖି ଏକ ହୋଟେଲ୍‌ରେ ଖାଇନେଲୁ। ଧର୍ମାଭରମ୍‌ରୁ ପୁଟ୍ଟପର୍ତ୍ତି ପ୍ରାୟ ୩୦/୪୦ କିଲୋମିଟର ଦୂର। ଆମେ ପ୍ରାୟ ଚାରିଟା ବେଳକୁ ପହଞ୍ଚିଲୁ। ପୁଟ୍ଟପର୍ତ୍ତି ବସ୍‌ଷ୍ଟାଣ୍ଡର ଅଳ୍ପ ଦୂରରେ ପ୍ରଶାନ୍ତିନିଲୟମ୍। ବିରାଟ ପ୍ରାଚୀର ପରିବେଷ୍ଟିତ ବିସ୍ତୀର୍ଣ୍ଣ ଇଲାକା। ମୁଖ୍ୟ ପ୍ରବେଶ ଦ୍ୱାରଟି ଗଣେଶ ଗେଟ୍। ଭିତରକୁ ପ୍ରବେଶ କରିବା ମାତ୍ରେ ସମ୍ମୁଖରେ ଗଣେଶ ମନ୍ଦିର। ବାମ ପାର୍ଶ୍ୱରେ ନବଗ୍ରହ ବିଗ୍ରହମାନ ରହିଛି। ସ୍ଥାନେ ସ୍ଥାନେ ସ୍ୱେଚ୍ଛାସେବୀ ରହିଛନ୍ତି। ଏଠାରେ ସ୍ୱେଚ୍ଛାସେବୀ ସେବାଦଳ ନାମରେ ପରିଚିତ। ପ୍ରଶାନ୍ତିନିଳୟମ୍‌ରେ ଅନେକ ସ୍ଥାୟୀ ସେବାଦଳ କର୍ମୀ ରହିଛନ୍ତି। ପୁଣି ପ୍ରତିମାସରେ ବିଭିନ୍ନ ରାଜ୍ୟର ସେବାଦଳ କର୍ମୀ ଏଠାକୁ ଆସି ସେବା ଓ ଶୃଙ୍ଖଳାରକ୍ଷା କାର୍ଯ୍ୟ କରନ୍ତି। ଓଡ଼ିଶାର ସେବା ଦଳ କର୍ମୀ ଅଗଷ୍ଟ ମାସର ଦ୍ୱିତୀୟାର୍ଦ୍ଧରେ ଆସନ୍ତି। ସେବା ଦଳକୁ କର୍ମୀମାନଙ୍କ ମୁହଁରେ "ସାଇରାମ" "ସାଇରାମ" ଶବ୍ଦଟି ଲାଗିଥାଏ। ଆକଟ କଲାବେଳେ "ସାଇରାମ" କୁହନ୍ତି। ପୁଣି ଦୃଷ୍ଟି ଆକର୍ଷଣ କରିବାକୁ ସାଇରାମ କୁହନ୍ତି।

ଆମେ ସେବାଦଳ କର୍ମୀମାନଙ୍କ ସୂଚନା ଅନୁଯାୟୀ ରହିବାସ୍ଥାନ ବ୍ୟବସ୍ଥା କରୁଥିବା ଅଫିସ୍ ଦିଗରେ ଆଗେଇଲୁ। ସମ୍ମୁଖ ଗେଟ୍ ଦେଇ ପ୍ରବେଶ କରିବା ପରେ ଗଣେଶ ମନ୍ଦିରର ଦକ୍ଷିଣ ପଥ ଦେଇ ଭିତରକୁ ଚାଲିବା ସମୟରେ ବାମ ପାର୍ଶ୍ୱରେ ସୁନ୍ଦର ପ୍ରଶାନ୍ତି ମନ୍ଦିର। ମନ୍ଦିର ସାମନାରେ ବିସ୍ତୃତ ବାଲୁକା ଭୂମି। ସେତେବେଳେ ଭକ୍ତମାନଙ୍କର ବସିବା ପାଇଁ କଂକ୍ରିଟ ହଲ୍ (ଆଜି ଯାହା ସାଇ କୁଲବନ୍ତ୍ ନାମରେ ପରିଚିତ) ନ ଥିଲା। ଚାରିଆଡ଼େ ବାଲୁକାମୟ। ମନ୍ଦିର ସାମନାରେ ଛୋଟ ଛୋଟ ଚାରି ପାଞ୍ଚୋଟି ମନ୍ଦିର ଆକାରର ଆଶ୍ରୟସ୍ଥଳ ରହିଥିଲା।

ବାଲୁକାପୂର୍ଣ୍ଣ ଏହି ସମାବେଶ ସ୍ଥଳକୁ ବାଦ୍ ଦେଲେ ବାମ ପାଖରେ ବହିର ଷ୍ଟୋର୍ ଓ ଆଶ୍ରମର କେତେକ ଅଫିସ୍। ଡାହାଣ ପାଖରେ କ୍ୟାଣ୍ଟିନ୍। ଗୋଟିଏ ଅଫିସରେ କର୍ମକର୍ତ୍ତାମାନେ ଆଗନ୍ତୁକମାନଙ୍କ ପାଇଁ ରହିବା ସ୍ଥାନ ବା ସେଡ୍ ଯୋଗାଇ ଦେଉଥିଲେ। କ୍ୟାଣ୍ଟିନ୍‌ଟି ଯେଉଁଠି ସରିଛି ସେଠାରୁ ସେଡ୍ ବା ଆଶ୍ରୟ ସ୍ଥଳ ଆରମ୍ଭ ହେଉଥିଲା। ପ୍ରତିଟି ଆଶ୍ରୟ ସ୍ଥଳ ଗୋଟିଏ ଗୋଟିଏ ଲମ୍ବା ହଲ୍। ଏଥିରେ କୌଣସି ଖଟ କିମ୍ବା ବିଛଣା ନ ଥିଲା। ପରିଦର୍ଶକମାନଙ୍କୁ କେବଳ ଆୟତକାର ସ୍ଥାନଟିଏ ସୁନିର୍ଦ୍ଦିଷ୍ଟ କରି ଦିଆ ଯାଉଥିଲା। ଆଶ୍ରୟସ୍ଥଳ ବୁଝାବୁଝି କରୁଥିବା ସେବାଦଳ କର୍ମୀ ପ୍ରବେଶ ଦ୍ୱାର ପାଖରେ ଉପସ୍ଥିତ ରୁହନ୍ତି। ସେ ଅଫିସ୍ ଦେଇଥିବା କାଗଜଟି ଦେଖି ଲୋକମାନଙ୍କୁ ସେମାନଙ୍କ ନିର୍ଦ୍ଦିଷ୍ଟ ସ୍ଥାନ ସୂଚିତ କରି ଦିଅନ୍ତି।

ଆମର ସେଡ୍‌ର ନମ୍ବର ମନେ ନାହିଁ। ତେବେ କ୍ୟାଣ୍ଟିନ୍‌ରୁ ଏହା ଖୁବ୍ ପାଖାପାଖି ନୁହେଁ କି ଖୁବ୍ ଦୂରରେ ନୁହେଁ। ଆମେ ଆମର ସ୍ଥାନରେ ସତରଞ୍ଜିଟି

ପକାଇଦେଇ କିଛିଦିନ ପାଇଁ ସେଠାରେ ବସା ବାନ୍ଧିଲୁ। ଆଶ୍ରମର ଦୈନନ୍ଦିନ ଜୀବନ ଗଭୀର ଶୃଙ୍ଖଳା ଉପରେ ପ୍ରତିଷ୍ଠିତ। ଅତି ପ୍ରତ୍ୟୁଷରେ (ଅର୍ଥାତ୍ ଭୋର୍ ଚାରିଟା ବେଳେ) ମନ୍ଦିରରେ ପୁରୁଷ ଓ ମହିଳା ଏକତ୍ରିତ ହୁଅନ୍ତି। ବାମ ପାଖରେ ମହିଳା ଓ ଦକ୍ଷିଣ ପାର୍ଶ୍ୱରେ ପୁରୁଷମାନେ ବସନ୍ତି। ସମ୍ମୁଖରେ ଦୁଇଟି ବିରାଟ ଫଟୋ ଥାଏ। ଗୋଟିଏ ଶିରଡ଼ି ସାଇବାବାଙ୍କର ଏବଂ ଅନ୍ୟଟି ଶ୍ରୀ ସତ୍ୟସାଇ ବାବାଙ୍କର। ଦକ୍ଷିଣ ପାର୍ଶ୍ୱରେ ଶ୍ରୀ ସତ୍ୟସାଇବାବାଙ୍କ ଲାଗି ଗୋଟିଏ ସୁଦୃଶ୍ୟ ଚେୟାର ରହିଥାଏ। ପ୍ରତ୍ୟୁଷରେ ନରନାରୀ କିଛି ସମୟ ଲାଗି ଓଁକାର ଧ୍ୱନି କରନ୍ତି। ତା'ପରେ ସେମାନେ ମନ୍ଦିରରୁ ଶୃଙ୍ଖଳିତ ଭାବରେ ଧାଡ଼ିବାନ୍ଧି ନଗର ସଂକୀର୍ତ୍ତନରେ ବାହାରି ଯାଆନ୍ତି। ପୁରୁଷ ଓ ନାରୀମାନେ ଦୁଇଟି ପୃଥକ୍ ଦଳରେ ଏହି ନଗର ସଂକୀର୍ତ୍ତନ (ଆଶ୍ରମର ପରିସର ମଧ୍ୟରେ) କରାଯାଏ। ଏହି ସଂକୀର୍ତ୍ତନରେ ଭଜନ ଗାନ କରାଯାଏ। ସମଗ୍ର ବାତାବରଣଟିକୁ ଆଧ୍ୟାତ୍ମିକତାର ଭାବଭାବନାରେ ପରିପୂର୍ଣ୍ଣ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ। ଆମେ ଗୋଟିଏ ସପ୍ତାହରୁ ଅଧିକ ରହିଲେ ମଧ୍ୟ କେବଳ ଥରେ ଦୁଇଥର ଏଥିରେ ଯୋଗ ଦେଇ ପାରିଥିଲୁ।

ସକାଳେ ବାବାଙ୍କର ଦର୍ଶନର ସମୟ ସେତେବେଳେ ୭ଟା ୧୫ମିନିଟ୍‌ରେ ରହିଥିଲା। ଅବଶ୍ୟ ପରେ ଏହା ଥରେ ଦୁଇଥର ପରିବର୍ତ୍ତିତ ହୋଇଛି। କେବେ କେବେ ଏହି ସମୟ ଘ୬.୪୫ ମିନିଟ୍‌କୁ ରଖା ଯାଇଛି। ଦର୍ଶନ ପାଇଁ ଆସିଥିବା ସାଇ ଆଶ୍ରିତମାନଙ୍କୁ ଦର୍ଶନ ନିରୂପିତ ସ୍ଥାନରେ ବାଲିରେ ବସିବାକୁ ହୁଏ। କିନ୍ତୁ କେଉଁ କ୍ରମରେ ସେମାନେ ବସିବେ ତାହା ଲଟେରୀ ଦ୍ୱାରା ନିର୍ଦ୍ଧାରିତ ହୁଏ। ଏହା ସତ ଯେ ମନ୍ଦିର ସମ୍ମୁଖରେ ପ୍ରଥମ ଧାଡ଼ିରେ ବସିଥିବା ଲୋକମାନେ ବାବାଙ୍କର ଦର୍ଶନ ଭଲ ରୂପେ ପାଇ ପାରିବେ। ଏହି ପ୍ରତ୍ୟାଶା ନେଇ ପ୍ରତ୍ୟେକ ବ୍ୟକ୍ତି ପ୍ରଥମ କିମ୍ବା ଦ୍ୱିତୀୟ ଧାଡ଼ିରେ ବସିବା ପାଇଁ ଆଗ୍ରହୀ ରୁହନ୍ତି।

ଦର୍ଶନ ପରିସର ବାହାରେ ଲୋକମାନେ ଧାଡ଼ିବାନ୍ଧି ବସନ୍ତି। ଭୋର୍ ଚାରିଟା ପାଞ୍ଚଟାରୁ ଏହି ଧାଡ଼ି ଆରମ୍ଭ ହୋଇଥାଏ। ବାବା ଦର୍ଶନ ଦେବାର ପ୍ରାୟ ଏକ ଘଣ୍ଟା ପୂର୍ବରୁ ଜଣେ ବରିଷ୍ଠ ସେବା ଦଳ କର୍ମୀ ଲଟେରୀ କରିବାକୁ ଆସନ୍ତି। ସେ ଅପେକ୍ଷାରତ ଧାଡ଼ିସବୁର ଅଗ୍ରଭାଗକୁ ଯାଇ ସବା ଆଗରେ ବସିଥିବା ଲୋକଙ୍କୁ ବ୍ୟାଗ ମଧ୍ୟରୁ ଗୋଟିଏ ନମ୍ବର କାଢ଼ିବାକୁ କୁହନ୍ତି। ଅଗ୍ରଭାଗର ଲୋକଟି ବ୍ୟାଗ୍ ମଧ୍ୟରୁ ଗୋଟିଏ ଟୋକନ୍ ବାହାର କରେ। ଏହି ଟୋକେନ୍‌ରେ ଲେଖାଥିବା ନମ୍ବରଟି ଅଗ୍ର ଭାଗର ସେହି ଲୋକସମେତ ସେହି ଧାଡ଼ି ପ୍ରତି ଉଦ୍ଦିଷ୍ଟ ରହେ। ଏହି ଅନୁସାରେ ଅପେକ୍ଷା କରିଥିବା ସବୁ ଧାଡ଼ିର ଗୋଟିଏ ଗୋଟିଏ କ୍ରମିକ ନମ୍ବର ପ୍ରଦାନ କରାଯାଏ।

ଲଟେରୀ କାର୍ଯ୍ୟ ଶେଷ ହେବା ପରେ ସେବାଦଳ କର୍ମୀ କ୍ରମିକ ସଂଖ୍ୟା ଅନୁଯାୟୀ ଧାଡ଼ି ସବୁକୁ ଦର୍ଶନ ପରିସରକୁ ଯିବା ପାଇଁ ଆହ୍ୱାନ କରନ୍ତି। ତଦନୁସାରେ ପ୍ରଥମ ଧାଡ଼ିରେ ମନ୍ଦିର ସାମନାରେ ବସନ୍ତି। ମନ୍ଦିରର ବାରଣ୍ଡା ଓ ଏହି ଧାଡ଼ି ମଧ୍ୟରେ ବାଟ ଥାଏ। ବାବା ସେହି ପଥ ଦେଇ ଆସନ୍ତି ଓ ଯାଆନ୍ତି। ପ୍ରଥମ ଧାଡ଼ି ପଛରେ ଲଟେରୀର ଦ୍ୱିତୀୟ ଧାଡ଼ି ଓ ତୃତୀୟ ଧାଡ଼ି ଇତ୍ୟାଦି ବସନ୍ତି। ଦର୍ଶ ପରିସରର ଅଧାଅଧି ପୁରୁଷମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ସ୍ଥଳେ ଅନ୍ୟ ଅଂଶଟି ମହିଳାଙ୍କ ପାଇଁ ଉଦ୍ଦିଷ୍ଟ ରହିଥାଏ।

ଠିକ୍ ସାତଟା ପନ୍ଦର ମିନିଟ୍ ସମୟରେ ସାଇବାବା ଦର୍ଶନ ପରିସର ମଧ୍ୟକୁ ଆସନ୍ତି। ସେ ଧୀର ଗତିରେ ଗୋଟିଏ ଦିଗରୁ ପ୍ରବେଶ କରନ୍ତି। ମନ୍ଦିର ଓ ଭକ୍ତମାନେ ବସିଥିବା ସ୍ଥାନ ମଧ୍ୟବର୍ତ୍ତୀ ପଥ ଦେଇ ସେ ଆସନ୍ତି। ତାଙ୍କର ଚାଲିବା ମନେହୁଏ ସତେ ଯେପରି ଏକ ମସୃଣ ଚଟାଣ ଉପରେ ଲାଲ ରଙ୍ଗର ଏକ ଦିବ୍ୟବସ୍ତୁ ଗଡ଼ି ଚାଲିଛି। ସେ ସ୍ଥାନେ ସ୍ଥାନେ ଅଳ୍ପ କ୍ଷଣ ପାଇଁ ଠିଆ ହୋଇ ରୁହନ୍ତି। ନିକଟସ୍ଥ ଲୋକମାନେ କୌଣସି ଚିଠିପତ୍ର ଦେଲେ ସେ ଗ୍ରହଣ କରିପାରନ୍ତି। ଧୀର ଗତିରେ ଯିବା ପାଇଁ ଯେତିକି ସମୟ ଲାଗେ ସେଇ ସମୟ ଅତିକ୍ରାନ୍ତ ହେଲା ପରେ ସେ ମନ୍ଦିରର ବାରଣ୍ଡା ଉପରକୁ ଉଠି ଯାଆନ୍ତି। ଏହି ବାରଣ୍ଡା ଉପରେ ପ୍ରଶାନ୍ତିନିଳୟମ୍‌ର କର୍ମକର୍ତ୍ତା (ଯଥା:-କୁଳପତି ଇତ୍ୟାଦି) ବସିଥାଆନ୍ତି। ସେମାନଙ୍କୁ ହୁଏତ ପରିଚାଳନାଗତ ନିର୍ଦ୍ଦେଶ କିଛି ଦିଅନ୍ତି। କୌଣସି କୌଣସି ଭକ୍ତ ଆତୁର ହୋଇ ବାବାଙ୍କ ବ୍ୟକ୍ତିଗତ ସାକ୍ଷାତକାର ପାଇଁ ପ୍ରାର୍ଥନା କରୁଥିଲେ ବାବା ସେମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତିଙ୍କୁ ସାକ୍ଷାତକାର ପାଇଁ ଡାକନ୍ତି। ସେମାନେ ପ୍ରଥମେ ବାରଣ୍ଡାରେ ଅପେକ୍ଷା କରନ୍ତି ଏବଂ ବାବା ସୂଚନା ଦେଲେ ମନ୍ଦିର ସଂଲଗ୍ନ ଏକ ସାକ୍ଷାତକାର କୋଠରୀକୁ ଯାଆନ୍ତି।

ଆମର ପୁଟପର୍ତ୍ତିରେ ଅବସ୍ଥାନ କାଳରେ ବ୍ୟକ୍ତିଗତ ସାକ୍ଷାତକାରର ସୁଯୋଗ ପାଇଥିବା କିଛି ଲୋକଙ୍କର ଅନୁଭୂତି ଶୁଣିବାର ସୁଯୋଗ ପାଇଥିଲୁ। ସେମାନେ ବାବାଙ୍କର ମାହାତ୍ମ୍ୟ ଓ ଚମତ୍କାରିତା ବର୍ଣ୍ଣନା କରିଥିଲେ। ପ୍ରଥମ କିମ୍ବା ଦ୍ୱିତୀୟ ଧାଡ଼ିରେ ବସିଥିବା ସମୟରେ ବାବା ଅଳ୍ପ ସମୟ ପାଇଁ ସମ୍ମୁଖରେ ଅଟକି ଗଲେ ତାଙ୍କର ଦୁଇ କୋମଳ ପାଦକୁ ସ୍ପର୍ଶ କରି ପ୍ରଣାମ କରିବାର ସୌଭାଗ୍ୟ ମିଳିଥାଏ। ଆମେ ଦଶଦିନ ମଧ୍ୟରେ ଦୁଇ ତିନିଥର ଏପରି ପାଦ ନମସ୍କାରର ସୌଭାଗ୍ୟ ପାଇଥିଲୁ।

ଦର୍ଶନ ପରେ ଠିକ୍ ନ'ଟା ବେଳକୁ ଭଜନ ଆରମ୍ଭ ହୁଏ। ଭଜନର ଅଗ୍ର ଗାୟକ ଗାୟିକାମାନେ ମନ୍ଦିର ଭିତରେ ବସୁଥିଲେ। ଅଧଘଣ୍ଟା ଭଜନ ହୁଏ। ଗୋଟିଏ

ଭଜନ ମହିଳା ପାର୍ଶ୍ୱରୁ ଅନ୍ୟଟି ପୁରୁଷ ପାର୍ଶ୍ୱରୁ। ଏହିପରି ସାଢ଼େ ନ'ଟା ପର୍ଯ୍ୟନ୍ତ ଭଜନ ଚାଲେ। ଦର୍ଶନ ପରିସରରେ ବସିଥିବା ଲୋକମାନେ ପାଳି ଧରନ୍ତି। ଭଜନ ସମୟରେ ମନ୍ଦିର ଭିତରେ ଅଗ୍ର ଗାୟକମାନଙ୍କ ସମ୍ମୁଖରେ ସୁସଜ୍ଜିତ ଆସନରେ ବାବା ବସି ଶୁଣନ୍ତି। ଭଜନ ଶେଷରେ ଆରତି ଗ୍ରହଣ କରି ଚାଲି ଯାଆନ୍ତି।

ଅପରାହ୍ଣରେ ମଧ୍ୟ ଦର୍ଶନ ଓ ଭଜନ କାର୍ଯ୍ୟକ୍ରମ ରହିଥାଏ। ସେତେବେଳେ ବାବା ଘ୪.୧୫ ମିନିଟ୍‌ରେ ଦର୍ଶନ ଦେଉଥିଲେ। ଭଜନ ପାଞ୍ଚଟାରେ ଆରମ୍ଭ ହେଉଥିଲା।

କ୍ୟାଣ୍ଟିନ ସମ୍ମୁଖରେ ଏକ ବିରାଟ ହଲ୍ ହେଉଛି ପୂର୍ଣ୍ଣଚନ୍ଦ୍ର ପ୍ରେକ୍ଷାଳୟ। ବିଶିଷ୍ଟ ଦିବସମାନଙ୍କରେ ବାବା ପୂର୍ଣ୍ଣଚନ୍ଦ୍ର ପ୍ରେକ୍ଷାଳୟରେ ଦିବ୍ୟ ସମ୍ଭାଷଣ ପ୍ରଦାନ କରନ୍ତି। ବାବା ତେଲେଗୁ ଭାଷାରେ କହନ୍ତି ଏବଂ ବାବାଙ୍କର ପରମ ଅନୁଗତ ବିଶିଷ୍ଟ ବ୍ୟକ୍ତି ଇଂରାଜୀରେ ଭାଷାନ୍ତର କରନ୍ତି। ପୁଟପର୍ତ୍ତିରେ ପ୍ରଥମ ଅବସ୍ଥାନ ସମୟରେ ସମ୍ଭବତଃ ସନାତନ ସାରଥିର ସମ୍ପାଦକ ଶ୍ରୀ ନରସିଂହମ୍ ବାବାଙ୍କ ଦିବ୍ୟ ସମ୍ଭାଷଣର ଇଂରାଜୀ ଭାଷାନ୍ତର କରୁଥିଲେ। ଆମେ ଥିବା ସମୟରେ ଡିସେମ୍ବର ୨୫ର ଖ୍ରୀଷ୍ଟପର୍ବ ଉପଲକ୍ଷେ ଓ ଜାନୁଆରୀ ୧ରେ ନୂଆବର୍ଷ ଉପଲକ୍ଷେ ବାବା ଦିବ୍ୟ ସମ୍ଭାଷଣ ପ୍ରଦାନ କରିଥିଲେ ଏବଂ ଆମ୍ଭେମାନେ ଆଗ୍ରହର ସହିତ ଶୁଣିଥିଲୁ। ଶେଷରେ ଭଜନ ଗାଇ ବାବା ତାଙ୍କର ସମ୍ଭାଷଣ ଶେଷ କରନ୍ତି। ତାଙ୍କର ମଧୁବର୍ଷୀ ଭଜନ ଏତେ ପ୍ରଭାବଶାଳୀ ଯେ ପଲୀ ଯେଉଁଠାରେ ଥିଲେ ମଧ୍ୟ ଭଜନ ଶୁଣି ପୂର୍ଣ୍ଣ ଚନ୍ଦ୍ର ହଲ୍‌କୁ ଦୌଡ଼ିଆସେ।

ପ୍ରଥମ ଅବସ୍ଥାନର ଆଉ ଏକ ସ୍ମରଣୀୟ ଘଟଣା ହେଉଛି ବିଦେଶୀ ଭକ୍ତମାନଙ୍କର ଖ୍ରୀଷ୍ଟପର୍ବ ମହୋତ୍ସବ। ଡିସେମ୍ବର ୨୫ର ପ୍ରତ୍ୟୁଷରେ ହଜାର ହଜାର ଖ୍ରୀଷ୍ଟଧର୍ମୀ ବିଦେଶୀ ଭକ୍ତ ଧାଡ଼ିବାନ୍ଧି ଶୃଙ୍ଖଳିତ ଭାବରେ ମହମବତୀ ଧରି ଶୋଭାଯାତ୍ରା ସହ ମନ୍ଦିର ପ୍ରାଙ୍ଗଣକୁ ପ୍ରବେଶ କଲେ। ବାବା ମନ୍ଦିରର ଉପର ମହଲାରୁ ସମସ୍ତଙ୍କୁ ଦର୍ଶନ ଦେଲେ। ସେ ଏକ ଭାବପୂର୍ଣ୍ଣ ମୁହୂର୍ତ୍ତ। ବିଦେଶୀମାନଙ୍କ ଇଂରାଜୀ ବୃନ୍ଦଗାନରେ ସମଗ୍ର ବାତାବରଣ ଭକ୍ତିପ୍ଲୁତ ଅବସ୍ଥାରେ ରହିଥାଏ। ବାବା ଅଭୟହସ୍ତ ଟେକି ସମସ୍ତଙ୍କୁ ଆଶୀର୍ବାଦ ପ୍ରଦାନ କଲେ। ନୂଆବର୍ଷ ଦିନ ମଧ୍ୟ ଅନୁରୂପ ଉତ୍ସବ ପାଳିତ ହୋଇଥିଲା।

ପୁଟପର୍ତ୍ତିରେ ରହଣୀ ଓ ଅନୁଭୂତି ବହୁ ଦୃଷ୍ଟିରୁ ଅନନ୍ୟ ଥିଲା। ଯିବା ପୂର୍ବରୁ ଆମେ ସ୍ଥିର କରିଥିଲୁ ଯେ ପ୍ରଥମେ ପୁଟପର୍ତ୍ତିରେ ଅଳ୍ପଦିନ ରହିବା ପରେ ମଝିରେ ଅନ୍ତତଃ କିଛିଦିନ ଲାଗି ଅନ୍ୟତ୍ର ଚାଲିଯିବୁ। ପୁଟପର୍ତ୍ତିରୁ ତିରୁପତି ଯିବା ପାଇଁ ଦୈନିକ ବସ୍ ବ୍ୟବସ୍ଥା ରହିଛି। ପୁଣି ନୂଆବର୍ଷ ବେଳକୁ ପୁଟପର୍ତ୍ତି ଫେରି ଆସିବାର

ଯୋଜନା କରିଥିଲୁ। ମାତ୍ର ପୁଟ୍ଟପର୍ତ୍ତି ଏତେ ଭଲ ଲାଗିଲା ଯେ ଅନ୍ୟ କୌଣସି ସ୍ଥାନକୁ ଯିବା ପାଇଁ ଇଚ୍ଛା ହେଲା ନାହିଁ।

ଅନୁଭୂତିର ଗଭୀରତା ନେଇ ଭୁବନେଶ୍ୱର ଫେରିଲୁ। ଜୀବନର ଗୋଟିଏ ଖିଅ ପ୍ରଶାନ୍ତି ସହିତ ଯୋଡ଼ି ହୋଇଗଲା ପରି ମନେହେଲା।

**ସାଇ-ସମ୍ପ୍ରୀତି**

ପ୍ରଶାନ୍ତିରୁ ଆମେ ଫେରିଲୁ ୧୯୮୭ ମସିହା ଜାନୁଆରୀରେ ଏହାପରେ ବହୁବାର ପ୍ରଶାନ୍ତି ଯାଇଛୁ। ପୂର୍ବପରି ଦୁଇ ଦୁଇଥର ଟ୍ରେନ ବଦଳାଇବା, ଟାଙ୍ଗା ନେବା ଏବଂ ବସ୍ ଚଢ଼ିବାର ଜଟିଳତା ନାହିଁ। ପୁଟ୍ଟପର୍ତ୍ତିରେ ରେଳ ଷ୍ଟେସନ ହୋଇଛି। ସିଧା ସଳଖ ପ୍ରଶାନ୍ତି ଏକ୍ସପ୍ରେସ୍ ଯୋଗେ ଭୁବନେଶ୍ୱରରୁ ପ୍ରଶାନ୍ତିନିଲୟମ୍ ଷ୍ଟେସନ୍‌କୁ ଯାଇପାରୁଛୁ।

ସମୟ କ୍ରମେ ପ୍ରଶାନ୍ତିନିଲୟମ୍‌ରେ ମଧ୍ୟ ବହୁ ବିଧିବିଧାନର ପରିବର୍ତ୍ତନ ଘଟିଛି। ଆମ୍ଭେମାନେ ଧାରାବାହିକ ପ୍ରଶାନ୍ତି ଯିବା ସମୟରେ ଥରେ ମୋ ମନକୁ ଗୋଟିଏ ଭାବନା ଆସିଲା। ମନ୍ଦିର ସାମନାରେ ବସିବା ସ୍ଥାନ ବାଲୁକାମୟ ଥିଲା। ଭାବିଲି ଯେ କିଛି ବାଲି ସଙ୍ଗରେ ନେଇଯିବି। ଏ ବାଲି ଆମ୍ଭମାନଙ୍କ ପାଇଁ ଶରଧା ବାଲି। ତଥାପି ଡର ଥାଏ ଯେ ସେବାଦଳର କର୍ମୀମାନେ ଦେଖିଲେ ବାଧା ଦେଇ ପାରନ୍ତି। ତେବେ ବାବାଙ୍କ ଦର୍ଶନ ପାଇଁ ଅପେକ୍ଷା କରିବା ସମୟରେ ଗୋଟିଏ ଖାଲି ଅମୂଲ ଟିଣ ଡ଼ବାରେ ଧୀରେ ଧୀରେ ବାଲି ଭର୍ତ୍ତି କଲି। ସେମାନଙ୍କ ନଜର ଆଢୁଆଳରେ ନେଇ ଆସିଲି। ବାଲିପୂର୍ଣ୍ଣ ଡବାଟି ଭୁବନେଶ୍ୱର ଆସିଲା। ଆଶ୍ଚର୍ଯ୍ୟର କଥା ଯେ ପରବର୍ତ୍ତୀ ଥର ପୁଟ୍ଟପର୍ତ୍ତୀ ଯାଇ ଦେଖିଲି ଯେ ଆଉ ବାଲୁକାମୟ ପ୍ରାଙ୍ଗଣ ନାହିଁ। ସମଗ୍ର ପ୍ରାଙ୍ଗଣଟି କଂକ୍ରିଟ୍ ଚଟାଣରେ ରୂପାନ୍ତର ହୋଇଛି।

ଆମର ପରମ ସୌଭାଗ୍ୟ ଯେ ଆମର ଜୀବନ ବଳୟରେ ସାଇ କରୁଣାର ଛିଟା ଆମେ ସବୁବେଳେ ଅନୁଭବ କରିଛୁ। ପତ୍ନୀ ଚାରିବର୍ଷ ବୟସରୁ ଆମର ବାଣୀବିହାର ସତ୍ୟସାଇ ସେବା ସମିତିରେ ପ୍ରଭୁଙ୍କ ଭଜନ ଗାଇ ପାରିଛି। ଅଞ୍ଜୁ ନିୟମିତ ଏ କାର୍ଯ୍ୟ କରି ଆସିଛି। ଅନ୍ତପ୍ରେରଣାର ଆହ୍ୱାନରେ ଶ୍ରୀ ସତ୍ୟସାଇବାବାଙ୍କର ଦିବ୍ୟ ସମ୍ଭାଷଣର କେତୋଟି ପୁସ୍ତକର ଓଡ଼ିଆ ଭାଷାନ୍ତର କରିପାରିଛି। ୧୯୯୯ ମସିହାରେ ଶ୍ରୀ ସତ୍ୟସାଇ ବାବାଙ୍କର ଦିବ୍ୟ ସମ୍ଭାଷଣରେ ଚତୁର୍ଥ ଭାଗ ଏବଂ ୨୦୦୪ ମସିହାରେ ପଞ୍ଚଦଶ ଭାଗର ଭାଷାନ୍ତର କରିବାର ସୌଭାଗ୍ୟ ହୋଇଛି। ୨୦୧୨ ମସିହାର ରୀତା ବ୍ରୁସ୍‌କ ଲିଖିତ Love of Conscienc ପୁସ୍ତକର ଓଡ଼ିଆ ଅନୁବାଦ "ବିବେକ ସଂପ୍ରୀତି" ସମ୍ଭବପର ହୋଇଛି।

ଶ୍ରୀ ସତ୍ୟସାଇ ବାବାଙ୍କର ଆଶ୍ରିତମାନେ ଶିରିଡ଼ିର ସାଇବାବାଙ୍କୁ ସତ୍ୟସାଇବାବାଙ୍କ ପୂର୍ବ ଅବତାର ସ୍ମରଣ କରି ଭକ୍ତି କରନ୍ତି। ଏହି ପରମ୍ପରାର ଅନୁଗତ ହୋଇ ଶ୍ରୀ ରାମଚନ୍ଦ୍ର ତୁକାରାମ କାକାଡ଼େଙ୍କ ଲିଖିତ "ଶିରିଡ଼ିରୁ ପୁଟ୍ଟପର୍ତ୍ତି" ଇଂରାଜୀ ପୁସ୍ତକର ଓଡ଼ିଆ ଅନୁବାଦ କରିଥିଲି। ପରେ ଶ୍ରୀ ସୁରେଶ ଚନ୍ଦ୍ର ପଣ୍ଡାଙ୍କ ସହିତ ମିଳିତ ଭାବରେ "ଶିରିଡ଼ିର ସାଇବାବା" ପୁସ୍ତକ ରଚିତ ହେଲା। ଏହି ଭାବ ପ୍ରବାହର ଅନ୍ୟତମ ପରିପ୍ରକାଶ ହେଉଛି ଶ୍ରୀ ସାଇ ସତ୍‌ଚରିତ ଗାଥା। ଏହା ଏକ ନିତ୍ୟ ପାରାୟଣ ଗ୍ରନ୍ଥ। ମୂଳ ମରାଠୀ ଭାଷାରୁ ଇଂରାଜୀ ଅନୁବାଦର ଆଶ୍ରୟ ନେଇ ରାମଚରିତ ମାନସ ପଦାବଳୀ ଶୈଳୀରେ ଏହା ଲେଖି ଯାଇଛି। ଏହାର ରଚନା ସମୟରେ ମୁଁ ମୋର ଚକ୍ଷୁ ସମସ୍ୟାର ଶୀର୍ଷତମ ଯନ୍ତ୍ରଣା ପର୍ଯ୍ୟାୟରେ ରହିଥିଲି। ତଥାପି ଈଶ୍ୱରଙ୍କ ଆଶୀର୍ବାଦ ହିଁ ଏହାକୁ ସଫଳ ରୂପ ଦେଇ ପାରିଲା। ଏ ବହିଟି ୨୦୦୨ ମସିହାରେ ଲୋକାର୍ପଣ ହେବାର ଦିନ ହେଉଛି ବିଜୟାଦଶମୀ (ମଙ୍ଗଳବାର ଅକ୍ଟୋବର ୧୫ ତାରିଖ)। ସ୍ମରଣ କରାଯାଇପାରେ ଯେ ୧୯୧୮ ମସିହା ଅକ୍ଟୋବର ୧୫ ମଙ୍ଗଳବାର ଦିନ ହିଁ ଶ୍ରୀ ଶିରିଡ଼ି ସାଇବାବାଙ୍କ ମହାସମାଧି ଘଟିଥିଲା।

ସାଇସେବକ ହିସାବରେ ଯାହା କରିବାର କଥା ତାହା ହୁଏତ ମୁଁ ଏ ଯାବତ୍ କରିପାରିନାହିଁ। ହୁଏତ ବହୁ ସତ୍‌ସଙ୍ଗରେ ସାମିଲ ହୋଇଛି; ମୁଖ୍ୟ ଆଲୋଚକ ହୋଇଛି। କିନ୍ତୁ ଅବତାର ପୁରୁଷ ଶ୍ରୀ ସତ୍ୟସାଇ ନିଃସର୍ତ୍ତ ପ୍ରେମ ଓ ସେବାର ଯେଉଁ ସଂସ୍କାରଧର୍ମୀ ବାର୍ତ୍ତା ଦେଇଛନ୍ତି, ତାହାକୁ ଜୀବନରେ ଅଂଶୀଭୂତ କରିବାର ବହୁପଥ ବାକି ରହିଛି।

❖

(୩୨)

# ବିଶ୍ୱବିଦ୍ୟାଳୟ ଜୀବନ

ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହିସାବରେ ମୁଁ ୧୯୭୫ ମସିହାର ୨୧ ତାରିଖ ଦିନ ପ୍ରବେଶ କରିଥିଲି ଏବଂ ୨୦୦୮ ମସିହାର ମଇ ମାସ ୩୧ ତାରିଖରେ ଅବସର ଗ୍ରହଣ କଲି। ଏ ଦୃଷ୍ଟିରୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୁଁ ୩୩ ବର୍ଷରୁ ଅଧିକ କାଳ ସମୟ ଅତିବାହିତ କରିଛି। ଅବଶ୍ୟ ଏହା ପୂର୍ବରୁ ପ୍ରାୟ ଦେଢ଼ ବର୍ଷ ରେଭେନ୍ସା କଲେଜରେ ଅସ୍ଥାୟୀ ଅଧ୍ୟାପକ ରୂପେ କାର୍ଯ୍ୟ କରିଥିଲି। ଜୀବନର ଏକ ବୃହତ୍ତର ଅଂଶ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ କଟିଛି। ଏ ମାଟିର ବାସ୍ନା, ଏ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ଶ୍ରଦ୍ଧା, ସହକର୍ମୀଙ୍କ ସଦିଚ୍ଛା, ସାଙ୍ଗସାଥୀଙ୍କ ମମତା ଏବଂ ବିଶ୍ୱବିଦ୍ୟାଳୟର ସମ୍ବଳ ମୋର ବ୍ୟକ୍ତିଗତ ବିକାଶରେ ମୁଖ୍ୟ ଭୂମିକା ନେଇଛି। ମୋର ଶିରା ପ୍ରଶିରାରେ କୃତଜ୍ଞତାର ସ୍ରୋତ ସଦା ସର୍ବଦା ଗତିଶୀଳ। ଆଜିର ସ୍ମୃତି ଚାରଣ ସମୟରେ ଅନ୍ତତଃ କିଛିଟା ପ୍ରତିଧ୍ୱନିକୁ ସାଉଁଟି ଆଣିବାର ପ୍ରୟାସ କରୁଛି।

**ମୋର ଛାତ୍ରଛାତ୍ରୀ**

ବିଶ୍ୱବିଦ୍ୟାଳୟର କେତେକ ବିଭାଗ ତୁଳନାରେ ମନୋବିଜ୍ଞାନର ବିଭାଗ ଖୁବ୍ ବଡ଼ ନ ଥିଲା। ମୁଁ ଛାତ୍ର ଥିବା ସମୟରେ ସ୍ନାତକୋତ୍ତର ମନୋବିଜ୍ଞାନ ବିଭାଗରେ ୩୨ ଜଣ ଛାତ୍ରଛାତ୍ରୀ ଥିଲେ। ମୁଁ ଅଧ୍ୟାପନା ଆରମ୍ଭ କରିବାଠାରୁ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ଏହା ୪୮ ଥିଲା। କେତେକ ଅବଶ୍ୟ ପିଏଚ୍.ଡ଼ି. ଗବେଷଣା ଛାତ୍ରଛାତ୍ରୀ ହିସାବରେ ପୂରା ସମୟ ଦେଉଥିଲେ। ଏ ଦୃଷ୍ଟିରୁ ବିଭାଗର ଛାତ୍ରଛାତ୍ରୀ ସଂଖ୍ୟା ୧୦୦ ପାଖାପାଖି ହେବ ବୋଲି କୁହାଯାଇ ପାରେ।

ବ୍ୟକ୍ତି ହିସାବରେ ମୋତେ ଅନେକ ଅନ୍ତର୍ମୁଖୀ (Introvert) କହିପାରନ୍ତି। ମୁଁ ମଧ୍ୟ ବାଧା ଦେବି ନାହିଁ। ମୁଁ ସାଧାରଣତଃ ଅଳ୍ପଭାଷୀ। ସ୍କୁଲ କଲେଜର ବକ୍ତୃତା ପ୍ରତିଯୋଗିତାରେ ମୁଁ କେବେ ବ୍ୟର୍ଥ ହୋଇଛି ବୋଲି ମୋର ମନେ ନାହିଁ। ତଥାପି ଔପଚାରିକ ବକ୍ତୃତା ଦକ୍ଷତା ଥିଲେ ମଧ୍ୟ ସାମାଜିକ କଥାବାର୍ତ୍ତାରେ (Social Talk) ମୁଁ ବିଶେଷ ଦକ୍ଷ ନୁହେଁ। ମୁଁ ବକ୍ତା ହୋଇପାରେ, ମାତ୍ର କଥନପ୍ରିୟ ନୁହେଁ। ତଥାପି ମୋର ଛାତ୍ରଛାତ୍ରୀ ସଂଯୋଗ ଭଲ ଥିଲା ବୋଲି ମୁଁ ଅନୁଭବ କରିଛି। ସ୍କୁଲରେ ପଢ଼ିବା ସମୟରେ ମୋର ସାଙ୍ଗମାନେ ଆମ ଘରକୁ ଆସି ପାଠ ବୁଝୁ ଥିବାରୁ ମୁଁ

କେବେ କେବେ ଶିକ୍ଷକଙ୍କ ଅପମାନସୂଚକ ମନ୍ତବ୍ୟର ଶରବ୍ୟ ହୋଇଛି। ସମ୍ଭବତଃ ବୁଝାଇବାର ଶୈଳୀଟି ମୋର ଭଲ ଥିଲା। ତେଣୁ ସେମାନେ ଆସୁଥିଲେ।

ରେଭେନ୍ସା କଲେଜରେ ଅଧ୍ୟାପନା ସମୟରେ ମଧ୍ୟ ମୋର ଅନୁଭବ ଅଛି ଯେ କେତେକ ଅନୁସନ୍ଧିତ୍ସୁ ଛାତ୍ର କଲେଜ ଆରମ୍ଭ ହେବା ପୂର୍ବରୁ ସକାଳେ ଆମ କାଠଗଡ଼ା ସାହି ଘରକୁ ଚାଲି ଆସୁଥିଲେ। ପରିବାରଟି ବଡ଼ ଏବଂ ଏକରକମ ଏକାନ୍ନବର୍ତ୍ତୀ ପରିବାର ହୋଇଥିବାରୁ ନିର୍ଦ୍ଦିଷ୍ଟ ପଢ଼ାଘର ନ ଥିଲା। ସୌଷ୍ଠବପୂର୍ଣ୍ଣ ଭାବରେ ଗୋଟିଏ ସ୍ଥାନରେ ବସି ଆଲୋଚନା କରିବାର ସୁଯୋଗ ନ ଥିଲା। ତଥାପି ମୋ ପିଇସାଙ୍କ ଭାଇଙ୍କର ଗୋଟିଏ ଲଜିଂ ଥିବାରୁ ମୁଁ ତା'ର ଉପଯୋଗ କରୁଥିଲି। ତଳ ମହଲାର ଗୋଟିଏ କୋଠରୀ ଖୋଲିବା ପାଇଁ କହୁଥିଲି। ସେଠାରେ ବସି ଆମେ ବହୁ ଆଲୋଚନା (ପାଠ୍ୟବିଷୟ ଅବଶ୍ୟ) କରିପାରୁଥିଲୁ। ମୋର ସୌଭାଗ୍ୟ ଯେ ମୁଁ ରେଭେନ୍ସା ଛାଡ଼ିବା ପରେ ଅନର୍ସ କ୍ଲାସରେ (ତୃତୀୟ ବର୍ଷ ଡ଼ିଗ୍ରୀ) ଥିବା ପିଲାମାନେ ପଞ୍ଚମ ବାର୍ଷିକ ଛାତ୍ରଛାତ୍ରୀ ହୋଇ ବାଣୀବିହାର ଆସିଲେ। ସେମାନଙ୍କ ସହିତ ଗଢ଼ି ଉଠିଥିବା ସୁସମ୍ପର୍କ ପୁନଶ୍ଚ ବଳବତ୍ତର ହେଲା।

ବାଣୀବିହାର ଆସିବା ପରେ ମୁଁ କଟକରୁ ଯିବା ଆସିବା କରୁଥିଲି। ୧୯୮୧ ମସିହାରେ କାନାଡ଼ାରୁ ଫେରିବା ପରେ ପ୍ରାୟ ଦୁଇବର୍ଷ ସହିଦ ନଗରରେ ରହିଲି। କିନ୍ତୁ ୧୯୮୩ ମସିହା ମାର୍ଚ୍ଚ ମାସରେ ବାଣୀବିହାର କ୍ୱାର୍ଟରକୁ ଆସିବା ପରେ ସମ୍ପର୍କ ବଢ଼ିଗଲା। ପୂର୍ବରୁ କେବଳ ଅଳ୍ପ କେତେଜଣ ଛାତ୍ରଛାତ୍ରୀଙ୍କୁ ପରୀକ୍ଷା କରାଯାଇ ଥେସିସ୍ ପତ୍ରଟି ଦିଆ ଯାଉଥିଲା। ମାତ୍ର ୧୯୯୦ ମସିହାର ପାଖାପାଖି ନିୟମର ପରିବର୍ତ୍ତନ ଘଟିଲା। ସବୁ ଛାତ୍ରଛାତ୍ରୀ ଥେସିସ୍ ବା ପ୍ରୋଜେକ୍ଟ ନେବା ବାଧ୍ୟତାମୂଳକ କରାଗଲା। ଏ ଦୃଷ୍ଟିରୁ ଅଧ୍ୟାପକ ଅଧ୍ୟାପିକାମାନଙ୍କ ସହିତ ଛାତ୍ରଛାତ୍ରୀଙ୍କର ଯୋଗାଯୋଗ ବୃଦ୍ଧି ପାଇଲା। ଆମ ବିଭାଗର ଶ୍ରୀକାନ୍ତ ଦାଶ ଓ ମୁଁ ଅପେକ୍ଷାକୃତ ଅଧିକ ପିଲାଙ୍କର ଦାୟିତ୍ୱ ନେଉଥିଲୁ। ପ୍ରତିବର୍ଷ ପ୍ରାୟ ଆଠ ଦଶଜଣ ଛାତ୍ରଛାତ୍ରୀ ମୋ ତତ୍ତ୍ୱାବଧାନରେ ପ୍ରୋଜେକ୍ଟ କରୁଥିଲେ। ପ୍ରୋଜେକ୍ଟ କାମ ପାଇଁ ସେମାନଙ୍କୁ ଏବଂ ମୋତେ ଅଧିକ ସମୟ ଦେବାକୁ ପଡୁଥିଲା। ବହୁ ସମୟରେ ସେମାନେ କ୍ୱାଟରକୁ ଆଲୋଚନା ପାଇଁ ଆସୁଥିଲେ। ମୋ ଚକ୍ଷୁ ସଙ୍କଟ ଉତ୍କଟତର ଥିବା ସମୟରେ ମଧ୍ୟ ମୁଁ ସେମାନଙ୍କୁ ମୋର ପରାମର୍ଶ ଓ ସମୟ ଦେଉଥିଲି। ସେମାନଙ୍କ ଶ୍ରଦ୍ଧାର ପରିପ୍ରକାଶ ମୁଁ ବିଭିନ୍ନ ରୂପରେ ଦେଖି ପାରୁଥିଲି।

ଗବେଷଣାର ତତ୍ତ୍ୱାବଧାନ କେତେକ ସମ୍ପର୍କକୁ ଗଭୀର କରିଥିଲା। ମୁଁ ଏ ଯାବତ୍ ପ୍ରାୟ ୩୮ ଜଣ ଛାତ୍ରଛାତ୍ରୀଙ୍କୁ ସେମାନଙ୍କ ଡକ୍ଟରେଟ୍ ଡିଗ୍ରୀ ଲାଭରେ ସହାୟତା କରିପାରିଛି। ଏମାନଙ୍କ ମଧ୍ୟରୁ କେତେକ ନିଜର ଦକ୍ଷତା ଓ ବୁଦ୍ଧିମତ୍ତା

ଫଳରେ ଉଚ୍ଚତର ସୋପାନକୁ ଯାଇ ପାରିଛନ୍ତି। ମୋ ପାଖରେ ଏମ୍.ଏ. ଓ ଏମ୍.ଫିଲ୍. କରିଥିବା ଡକ୍ଟର ରାମକୃଷ୍ଣ ମିଶ୍ର ବର୍ତ୍ତମାନ କାନାଡ଼ାର ଆଲବର୍ଟା ସହରରେ ଜଣେ କ୍ଲିନିକାଲ୍ ମନୋବିଜ୍ଞାନୀ। ଏମ୍.ଏ., ଏମ୍.ଫିଲ୍. ଓ ପି.ଏଚ୍.ଡ଼ି. ପାଇଥିବା ଡକ୍ଟର ଶ୍ୱେତଲୀନା ବିଦ୍ୟାଧର ଟାଟା Interaction/Systemର ଡିଜାଇନ୍ ଶାଖାର ଡେପୁଟୀ ମ୍ୟାନେଜର୍। ମୋର ପି.ଏଚ୍.ଡ଼ି. ଗବେଷକ ଡକ୍ଟର ଜୀତେନ୍ଦ୍ର ମହାନ୍ତି କିଟସ୍ ବାଣିଜ୍ୟ ସ୍କୁଲରେ ପ୍ରଫେସର ଏବଂ ତାଙ୍କର ପତ୍ନୀ ଡକ୍ଟର ଜାହାନ୍‌ଆରା ବେଗମ୍ ଏକ କଲେଜର ପୂର୍ବତନ ଅଧ୍ୟକ୍ଷା ଏବଂ ବର୍ତ୍ତମାନ ଶିକ୍ଷାବିଭାଗର ଉଚ୍ଚପଦାଧିକାରୀ। ମୋର ଏମ୍.ଏ. ଥେସିସ୍‌ର ଛାତ୍ରୀ ଡକ୍ଟର ଭାସ୍ୱତୀ ପଟ୍ଟନାୟକ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗର ମୁଖ୍ୟ ଏବଂ ମୋର ଡକ୍ଟରେଟ୍ ଛାତ୍ରୀ ଡକ୍ଟର ସଙ୍ଗୀତା ରଥ ରେଭେନ୍ସା ବିଶ୍ୱବିଦ୍ୟାଳୟ ମନୋବିଜ୍ଞାନ ବିଭାଗର ମୁଖ୍ୟ ପ୍ରଫେସର। ଅନ୍ୟ ସବୁ ଡକ୍ଟରେଟ୍ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଡଃ ନିରଞ୍ଜନ ସିଂ, ଡଃ ବନାନୀ ମହାନ୍ତି, ଡଃ ସତ୍ୟ ଭୂୟ, ଡଃ ଶେଫାଳିକା ସିହ୍ନା, ଡଃ କଳ୍ପନା ସାହୁ, ଡଃ ପ୍ରବୀର ପଟ୍ଟନାୟକଙ୍କ, ଡଃ ପ୍ରଦୀପ ମହାପାତ୍ର, ଡଃ ସତ୍ୟବ୍ରତ ତ୍ରିପାଠୀ ଉଚ୍ଚତର ପଦବୀ ଅଳଙ୍କୃତ କରି ପାରିଛନ୍ତି। ଏପରି ସଂଯୋଗର ତୃପ୍ତି ମୋତେ ଆନନ୍ଦ ଦେଇଛି। ଏବେ ମଧ୍ୟ ଏମାନେ ସାମାଜିକ ଓ ଶିକ୍ଷାଗତ ଆଲୋଚନାରେ ମୋର ସମ୍ପୃକ୍ତି କାମନା କରନ୍ତି। ଜଣେ ଶିକ୍ଷକ ପାଇଁ ଏହା ଏକ ପ୍ରୀତିପଦ ଅନୁଭବ।

## ଅଧ୍ୟାପନା ଓ ଗବେଷଣା

୧୯୭୫ ମସିହା ଜାନୁଆରୀ ମାସରୁ ଆରମ୍ଭ ହୋଇଥିବା ଅଧ୍ୟାପକ ଜୀବନ ଏ ପର୍ଯ୍ୟନ୍ତ ମଧ୍ୟ ଗୋଟିଏ ଦୃଷ୍ଟିରୁ ଅବ୍ୟାହତ ରହିଛି। ଅବଶ୍ୟ ଦୀର୍ଘକାଳୀନ ପେସାଗତ ଜୀବନ ମଧ୍ୟରେ କେତେକ ବଡ଼ ଧରଣର ବିରତି ଓ ଅନୁଭୂତି ଗତ ଭିନ୍ନତା ଆସିଛି। ରାଜ୍ୟଗୋଷ୍ଠୀ ବୃତ୍ତି ଲାଗି ୧୯୭୬ରୁ ୧୯୮୧ କୁଇନ୍ସ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. କଲି। ୧୯୮୭ରୁ ୧୯୯୦ କୁଇନ୍ସ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପେସାଗତ ଫେଲୋସିପ୍ ଲାଭ କଲି। ପୁଣି ୧୯୯୦ ମସିହାରେ ଚାରିମାସ ଲାଗି ଭାରତ-କାନାଡ଼ା ଶାସ୍ତ୍ରୀ ପରିଷଦର ସହାୟତାରେ ଫେଲୋସିପ୍ ଲାଭ କରି ଚାରିମାସ ଲାଗି କୁଇନ୍ସ ବିଶ୍ୱବିଦ୍ୟାଳୟରେ ପରିଦର୍ଶକ ପ୍ରଫେସର ରୂପେ ବିଦେଶୀ ଛାତ୍ରଛାତ୍ରୀମାନଙ୍କୁ ପଢ଼ାଇଛି ଏବଂ ଗବେଷଣା ପ୍ରକଳ୍ପ ପାଇଁ କାର୍ଯ୍ୟ କରିଛି। ତା'ଛଡ଼ା ୧୯୯୭ ମସିହାରେ ଏକ ବର୍ଷ ଆଠମାସ ପାଇଁ Study Leave ମଧ୍ୟ ନେଇଛି। ବିଶ୍ୱବିଦ୍ୟାଳୟର ଅଧ୍ୟାପନା ଦାୟିତ୍ୱକୁ ଏଡ଼ାଇଯାଇ ଖୁସୀ ହେବାର ମାନସିକତା ମୋର ଲକ୍ଷ୍ୟ ନ ଥିଲା। ଏହାକୁ ବିଚ୍ଛିନ୍ନତା ନ ଭାବି ଜ୍ଞାନ ଆହରଣର ଓ ଅନୁଭୂତିର ଉତ୍କର୍ଷ ରୂପେ ବିଚାର କରିଛି।

ସେହି ମନୋଭାବ ନେଇ ଯେଉଁଠି ଯେତେବେଳେ ଆଲୋଚନା ଚକ୍ର, ସମ୍ମାନ ଓ ସମ୍ମିଳନୀର ସୁଯୋଗ ଆସିଛି, ମୁଁ ଆଗ୍ରହ ପ୍ରକାଶ କରି ଗବେଷଣା ନିବନ୍ଧ ଲେଖିଛି ଏବଂ ଯୋଗ ଦେଇଛି। ଶିକ୍ଷା, ରାଜନୀତି ବିଜ୍ଞାନ, ସମାଜ ବିଜ୍ଞାନ ଏବଂ ଗୃହ ବିଜ୍ଞାନ ପରି ଅନ୍ୟ ଶୃଙ୍ଖଳାର ରାଜ୍ୟସ୍ତରୀୟ ଓ ଜାତୀୟ ସ୍ତରର ଶତାଧିକ ସମ୍ମିଳନୀରେ ଯୋଗ ଦେଇଛି। ସେହିପରି ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବା ପାଇଁ ବହୁ ଦେଶ ଭ୍ରମଣ କରିଛି। ଦୀର୍ଘ ସମୟ କଟାଇଥିବା କାନାଡ଼ା ଓ ଆମେରିକା ଯୁକ୍ତରାଷ୍ଟ୍ରକୁ ବାଦ୍ ଦେଲେ ଜାପାନ, ତୁର୍କୀ, ଇଂଲଣ୍ଡ, ଫ୍ରାନ୍ସ, ବେଲ୍‌ଜିୟମ୍, ସ୍ପେନ୍, ହଲାଣ୍ଡ, ଜର୍ମାନୀ ଏବଂ ସ୍ୱେଡନ ପରି ଦେଶକୁ ଯାଇପାରିଛି। ଏପରି ପରିଭ୍ରମଣ କେବଳ ମୋତେ ବହୁ ସଂସ୍କୃତିର ସୌନ୍ଦର୍ଯ୍ୟ ଅନୁଭବ କରିବାରେ ସହାୟକ ହୋଇ ନାହିଁ, ମୋର ଅଜ୍ଞତା ଓ ପରିସୀମତ୍ୱ ଦୂର କରିବାରେ ସାହାଯ୍ୟ କରିଛି।

ଆରମ୍ଭରେ ମୁଁ ଅଧ୍ୟାପକ ରୂପେ ଯୋଗ ଦେଲେ ମଧ୍ୟ ୧୯୮୩ ମସିହାରେ ମୁଁ ରିଡ଼ର୍ ପଦକୁ ଉନ୍ନୀତ ହେଲି। ବିଶ୍ୱବିଦ୍ୟାଳୟର ନିୟମ ଅନୁଯାୟୀ ବରିଷ୍ଠତା ଭିତ୍ତିରେ ପଦୋନ୍ନତି ଘଟି ନଥାଏ। ପ୍ରତିଥର ଯୋଗ୍ୟତା ଆକଳନ ଓ ସାକ୍ଷାତକାର ଭିତ୍ତିରେ ପଦୋନ୍ନତି ଘଟିଥାଏ। ପୁନଶ୍ଚ ୧୯୯୯ ମସିହାରେ ପ୍ରଫେସର୍ ପଦ ପାଇଁ ଯୋଗ୍ୟ ବିବେଚିତ ହେଲି। ଥରେ ମୁଁ ବିଭାଗୀୟ ମୁଖ୍ୟ ପଦବୀ ଗ୍ରହଣ ନ କରିବାର ଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ୨୦୦୪-୨୦୦୫ ଶିକ୍ଷାବର୍ଷରେ ବିଭାଗୀୟ ମୁଖ୍ୟ ଦାୟିତ୍ୱ ଗ୍ରହଣ କରିଥିଲି।

ଶିକ୍ଷକ ଜୀବନର ଦୀର୍ଘକାଳ ମଧ୍ୟରେ ମୋର ସେବା ଅର୍ପଣ କରିଛି। ମୋର ପ୍ରିୟ ଛାତ୍ରଛାତ୍ରୀମାନଙ୍କୁ ସାଧାରଣ ମନୋବିଜ୍ଞାନର କିଛି ଅଂଶ, ସାମାଜିକ ମନୋବିଜ୍ଞାନ ଏବଂ ଶିକ୍ଷା ମନୋବିଜ୍ଞାନ ପଢ଼ାଇଛି। ଏମ୍.ଫିଲ୍ ଛାତ୍ରଛାତ୍ରୀମାନଙ୍କ ଗବେଷଣା ପଦ୍ଧତି ଶିକ୍ଷା ଦେଇଛି। ସର୍ବୋପରି ଗବେଷଣାର ଉତ୍କର୍ଷ ପାଇଁ ବହୁସଂଖ୍ୟକ ଗବେଷଣା ପ୍ରକଳ୍ପର ନିର୍ଦ୍ଦେଶକ ହେବାର ସୁଯୋଗ ପାଇଛି। ବ୍ୟକ୍ତିଗତ ଉଦ୍ୟମ ଫଳରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (UGC), ଜାତୀୟ ଶିକ୍ଷା ଓ ଗବେଷଣା ପରିଷଦ (NCERT) ଏବଂ ଭାରତୀୟ ସମାଜ ବିଜ୍ଞାନ ସଂସ୍ଥା (ICSSR) ପ୍ରଭୃତିଙ୍କୁ ଆବେଦନ କରି ଗବେଷଣା ପ୍ରକଳ୍ପ ପାଇଁ ଆର୍ଥିକ ସହାୟତା ହାସଲ କରିପାରିଛି। ହଲାଣ୍ଡର ଏକ ବିଦେଶୀ ସଂସ୍ଥା ମଧ୍ୟ ଗବେଷଣା ସହାୟତା ପ୍ରଦାନ କରିଛି। ଖୁସିର କଥା ଯେ ଭାରତ-କାନାଡ଼ା ଶାସ୍ତ୍ରୀ ପରିଷଦର ଆର୍ଥିକ ସହାୟତା ଫଳରେ ପ୍ରାୟ ପ୍ରତିବର୍ଷ ଗୋଟିଏ ଦୁଇଟି ଜାତୀୟ ସମ୍ମିଳନୀ ଆୟୋଜନ କରିବାର ସୌଭାଗ୍ୟ ହୋଇଛି। ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ମନୋବିଜ୍ଞାନୀ ଓ ଅନ୍ୟ କେତେକ ବିଶେଷଜ୍ଞଙ୍କୁ ମନୋବିଜ୍ଞାନ ବିଭାଗରେ ଏକତ୍ରିତ କରିବା ଏବଂ ଛାତ୍ରଛାତ୍ରୀମାନଙ୍କୁ

ସେମାନଙ୍କ ବକ୍ତବ୍ୟ ଶୁଣିବାରେ ସୁଯୋଗ ଦେବା ଏକ ବିଶେଷ ପରମ୍ପରା। ଏହି ପର୍ଯ୍ୟାୟରେ ବିଶ୍ୱର ବିଖ୍ୟାତ ମନୋବିଜ୍ଞାନୀ ହାରୀ ଟ୍ରିଆଣ୍ଡିସ୍ (ଯୁକ୍ତରାଷ୍ଟ୍ର ଆମେରିକାର ଇଲିନୟ ବିଶ୍ୱବିଦ୍ୟାଳୟ) ଏବଂ ଜନ୍ ବେରୀ (କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟ) ଉତ୍କଳର ସମାବେଶରେ ଯୋଗ ଦେଇଛନ୍ତି। ଅଧ୍ୟାପନା ଗବେଷଣା ଏବଂ ସମ୍ମାନ୍ସ ଆୟୋଜନର କାର୍ଯ୍ୟକ୍ରମ ମାଧ୍ୟମରେ ବ୍ୟକ୍ତିଗତ ବିକାଶ ସହିତ ସାମୂହିକ ଉତ୍କର୍ଷର ଆନନ୍ଦ ନେଇପାରିଛି।

### ମୋ ଲେଖା, ମୋ ଜୀବନ

ଅଧ୍ୟାପନା ଓ ଗବେଷଣା ପାଇଁ ଶକ୍ତି ଓ ସମୟ ଦେଇଛି। ତଥାପି ମା'କୁ ଭଲ ପାଇବା ପରି ସାହିତ୍ୟକୁ ବିଶେଷତଃ ଓଡ଼ିଆ ସାହିତ୍ୟକୁ ଭଲ ପାଇବାର ଏକ ନିଶା ପେଶା ସହିତ ସମତାଳ ରକ୍ଷା କରି ଚାଲିଥିଲା। ୧୯୮୧ ମସିହାରେ କାନାଡ଼ାରୁ ଫେରିବା ପରେ ଗ୍ରୀଷ୍ମାବକାଶରେ ଲେଖାଲେଖି ଆରମ୍ଭ କଲି। ପତ୍ରପତ୍ରିକାରେ ପ୍ରକାଶ ପାଇଲା ମଧ୍ୟ। ୧୯୮୨ ମସିହାରେ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା ଜୀବନ ରଙ୍ଗ ପୁରସ୍କାର ଏବଂ ୧୯୮୫ ମସିହାରେ ସହକାର ପୁରସ୍କାର ଯଥେଷ୍ଟ ପ୍ରୋତ୍ସାହନ ଦେଲା। ୧୯୮୩ ମସିହାରୁ ଦୈନିକ "ସମ୍ବାଦ"ରେ ଯେଉଁ "ମନ ପରିଭାଷା" ସ୍ତମ୍ଭ ଆରମ୍ଭ କରିଥିଲି ତାହା ଏ ପର୍ଯ୍ୟନ୍ତ ମଧ୍ୟ ପାଠକୀୟ ଶ୍ରଦ୍ଧା ଲାଭ କରିଛି।

ପତ୍ରପତ୍ରିକାରେ ଲେଖିବାର କିଛି ବର୍ଷ ପରେ ପୁସ୍ତକ ପ୍ରକାଶ ପାଇଁ ଆଗ୍ରହ ଜନ୍ମିଲା। ବିଶିଷ୍ଟ ପୁସ୍ତକ ପ୍ରକାଶନ ସଂସ୍ଥା 'ଗ୍ରନ୍ଥମନ୍ଦିର' ମୋର ପ୍ରଥମ ପୁସ୍ତକ 'ବିଚିତ୍ର ମନ' ୧୯୮୮ ମସିହାରେ ପ୍ରକାଶ କଲେ। ତା'ପରେ ଧାରାବାହିକ ଭାବେ ମୋର ମନସ୍ତାତ୍ତ୍ୱିକ ରଚନା ପ୍ରକାଶ ପାଇବାକୁ ଲାଗିଲା। ଏ ଯାବତ୍ ପ୍ରାୟ କୋଡ଼ିଏଟି ଓଡ଼ିଆ ବହି ଓ ପନ୍ଦରଟି ଇଂରାଜୀ ବହିର ରଚନା ସମ୍ଭବ ହୋଇଛି। ରଚନା ମଧ୍ୟରେ ଶ୍ରୀ ସତ୍ୟସାଇ ବାବାଙ୍କର ଦୁଇଟି ଦିବ୍ୟ ସମ୍ଭାଷଣ ସଙ୍ଗେ ଅନ୍ୟ କେତୋଟି ଆଧ୍ୟାତ୍ମିକ ରଚନାର ଓଡ଼ିଆ ଅନୁବାଦ ପ୍ରକାଶ ପାଇଛି। ଶ୍ରୀସାଇ ସତ୍‌ଚରିତ ଗାଥା ଏଥି ମଧ୍ୟରୁ ଅନ୍ୟତମ।

ଓଡ଼ିଆ ସାହିତ୍ୟର ଜଣେ ସେବକ ରୂପେ ଲେଖିବା ସମୟରେ କେବଳ ବହିର କାଟତି ବା ବ୍ୟବସାୟିକ ଆକର୍ଷଣ ପ୍ରତି ଧ୍ୟାନ ଦେଇନି। ଉଚ୍ଚତର ଭାବନାର ପରିପ୍ରକାଶ ପାଇଁ ଭାଷାର କିଛିଟା ଗାମ୍ଭୀର୍ଯ୍ୟ ଆବଶ୍ୟକ। ସୁତରାଂ ଲେଖିବା ସମୟରେ ତଥ୍ୟର ବୈଜ୍ଞାନିକ ଭିତ୍ତି ଭୂମିକୁ ଗୁରୁତ୍ୱ ଦେବା ସହିତ ପ୍ରକାଶଭଙ୍ଗୀ ଓ ସାହିତ୍ୟିକ ମୂଲ୍ୟ ପ୍ରତି ମଧ୍ୟ ଅଭିନିବିଷ୍ଟ ହେବାର ପ୍ରୟାସ କରିଛି। ଓଡ଼ିଶାର ଯଶସ୍ୱୀ ଲେଖକ ଚିତ୍ତ ରଞ୍ଜନ ଦାସ, ମନୋଜ ଦାସ ଏବଂ ଚନ୍ଦ୍ରଶେଖର ରଥଙ୍କୁ ମୋର ମାନସ ଚକ୍ଷୁରେ ଉଚ୍ଚସ୍ଥାନ ଦେଇ ମୋ ଲେଖାରେ ବ୍ରତୀ ହୋଇଛି।

ଅବଶ୍ୟ ସାମୟିକ ଭାବରେ ସାହିତ୍ୟ ବିଷୟକ ସଭା ସମିତିରେ ଯୋଗ ଦେଇ ବକ୍ତାର ଭୂମିକା ନେଇଥିଲେ ମଧ୍ୟ ଏହାକୁ ସୀମିତ ରଖିଛି। ବେଶୀ ସମୟ ଚିନ୍ତନ ଓ ଲେଖାଲେଖିରେ ଦେଇଛି। ତେବେ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଆଦିତ୍ୟ କୁମାର ମହାନ୍ତିଙ୍କ ନେତୃତ୍ୱରେ ପରିଚାଳିତ ରେନେସାଁ ଇଉନିଭର୍ସାଲ ସହ ସମ୍ପୃକ୍ତି ମୋ ଭିତରେ କିଛିଟା ପ୍ରସାରଣ ଭୂମିକା ସକ୍ରିୟ ରଖିଛି। ଏହି ଅନୁଷ୍ଠାନ ଭୁବନେଶ୍ୱର, ପୁରୀ, ଭଦ୍ରକ ଓ ଢେଙ୍କାନାଳରେ ପ୍ରତି ମାସରେ ଉଚ୍ଚକୋଟୀର ଆଲୋଚନା ଚକ୍ର ଆୟୋଜନ କରିଥାଏ। ଏହାର ଆମନ୍ତ୍ରଣରେ ମୁଁ ବହୁଥର ଏହି ସବୁ ସ୍ଥାନରେ ମନସ୍ତତ୍ତ୍ୱ ଆଧାରିତ ବିଷୟବସ୍ତୁ ସମ୍ପର୍କରେ ଅଭିଭାଷଣ ପ୍ରଦାନ କରିଛି। ବକ୍ତବ୍ୟ ଭିନ୍ନ ହେଲେ ମଧ୍ୟ ଲକ୍ଷ୍ୟ ଏକ ଓ ଅଭିନ୍ନ। ମନସ୍ତାତ୍ତ୍ୱିକ ଭାବଧାରା କେବଳ ଗବେଷଣାର ସାମଗ୍ରୀ ନୁହେଁ, ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନର ଉତ୍କର୍ଷ ପାଇଁ ଏହାର ଅବଦାନ ରହିଛି। ଏହି କଥାର ସାରମର୍ମ ମୁଁ ବୁଝାଇବାର ପ୍ରୟାସ କରିଛି। ସ୍ଥଳ ବିଶେଷରେ ବିଭିନ୍ନ କଲେଜକୁ ଅତିଥି ହୋଇ ଯିବା ସମୟରେ ମଧ୍ୟ ମନସ୍ତତ୍ତ୍ୱର ଜୀବନଧର୍ମୀ ସମାଗ୍ରୀର ପରିବେଷଣର ଉଦ୍ୟମ କରିଛି। ମୋର ସାହିତ୍ୟ-ପ୍ରୀତି, ଲେଖାଲେଖି ଏବଂ ବକ୍ତବ୍ୟ ପ୍ରଦାନ ଏକ ପୃଥକୀକୃତ କାର୍ଯ୍ୟ ନୁହେଁ, ଏସବୁ ମୋ ଜୀବନ ଝୋଟିରେ ମିଶାମିଶି ହୋଇ ଯାଇଥିବା ରଙ୍ଗ ସମୂହ।

## ଲୋକ ସମ୍ପର୍କ ଓ ଗୋଷ୍ଠୀ ସମ୍ପର୍କ

ଆମର ବିଭାଗୀୟ ସମ୍ପର୍କ ଏକ ପାରିବାରିକ ସମ୍ପର୍କ। ଗୋଟିଏ ପରିବାର ମଧ୍ୟରେ ବି ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଭିନ୍ନତା ଥାଏ। ତଥାପି ପରିବାର ଏକ ସାମାଜିକ ଆନନ୍ଦର ଉତ୍ସ ହୁଏ। ଆମ ବିଭାଗଟି ଉତ୍କଳ ବିଶ୍ୱବିଦ୍ୟାଳୟର ଅନ୍ୟ ବିଭାଗଠାରୁ ବଡ଼ ଥିଲା। ବିଶେଷତଃ ୧୯୮୦ ମସିହାରେ ଏହା ଅଗ୍ରଶିକ୍ଷା କେନ୍ଦ୍ରର ମାନ୍ୟତା ପାଇଲା ପରେ ଏହାର ଅବୟବ ପୁଣି ବଢ଼ିଗଲା। ଅଧ୍ୟାପନା ପାଇଁ ୧୯ଟି ପଦବୀ। ଅପେକ୍ଷାକୃତ ଅଧିକ ସଂଖ୍ୟାରେ ଶିକ୍ଷକମଣ୍ଡଳୀ। ପୁଣି କେତେଜଣ ଗବେଷକ ସହାୟକ। ସୌଭାଗ୍ୟବଶତଃ ଦୁଇଜଣ ମୁଖ୍ୟ ଗବେଷକ ସହାୟକ ରବୀନ୍ଦ୍ର ନାଥ ସାହୁ ଓ ଜାନକୀ ବଲ୍ଲଭ ସ୍ୱାଇଁ ଅତୀତରେ (ଏମ.ଏ. ସମୟରେ) ମୋର ସହପାଠୀ ଥିଲେ। ଏବେ ମଧ୍ୟ ସେମାନଙ୍କ ସହ ଗଭୀର ସଦ୍‌ଭାବ ରହିଛି।

ଆମ ବିଭାଗରେ ବୟସ ଭିତ୍ତିରେ ବିଭିନ୍ନ ବୟସର ବ୍ୟକ୍ତିଥିଲେ। କେତେକ ଆମର ଶିକ୍ଷକ ଶିକ୍ଷୟିତ୍ରୀ। ଅବଶ୍ୟ ମୁଁ ୧୯୮୧ରେ କାନାଡ଼ାରୁ ଫେରିବା ବେଳକୁ ଅସାମାନ୍ୟ ନେତୃତ୍ୱର ଅଧିକାରୀ ପ୍ରଫେସର୍ ରାଧାନାଥ ରଥ ଅବସର ଗ୍ରହଣ କଲେ। ପ୍ରଫେସର ରଥ ବିଭାଗୀୟ ମୁଖ୍ୟ ଥିବା ସମୟରେ ତାଙ୍କ ସହିତ କାର୍ଯ୍ୟ

କରିବାରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହୋଇନାହିଁ। ମୋ ବୟସର ଅଧ୍ୟାପକମାନଙ୍କୁ ପ୍ରଫେସର୍ ରଥ ଯେଉଁ ଦାୟିତ୍ୱ ଦେଉଥିଲେ ସେଥିରେ ସେ ହସ୍ତକ୍ଷେପ କରୁ ନ ଥିଲେ। ବିଶ୍ୱାସ ଓ ଭରସା ରଖୁଥିଲେ। ତାଙ୍କର ଅବସର ଗ୍ରହଣ ପରେ ଆମର ଅତୀତର ଶିକ୍ଷକ ଶିକ୍ଷୟିତ୍ରୀ ଥିଲେ ପ୍ରଫେସର୍ ସରୋଜ ମିଶ୍ର, ବିରଞ୍ଚି ପୁହାଣ, କସ୍ତୁରୀ ଯାଚକ, ଶାନ୍ତିଲତା ସାହୁ ଓ ଅଜିତ୍ କୁମାର ମହାନ୍ତି। ସେମାନଙ୍କ ସହ ଭଲ ସମ୍ପର୍କ ରହିଥିଲା। ପ୍ରଫେସର ବିଶ୍ୱବନ୍ଧୁ ଚାଟାର୍ଜୀ ମୋତେ ପଢ଼ାଇ ନଥିଲେ ଏବଂ ସେ ବହୁତ ବିଳମ୍ବରେ ଆମ ବିଭାଗରେ ଯୋଗ ଦେଇଥିଲେ। କିନ୍ତୁ ତାଙ୍କର ଜ୍ଞାନ ଓ ବ୍ୟକ୍ତିତ୍ୱ ପ୍ରତି ମୋର ଗଭୀର ସମ୍ମାନ ଥିଲା। ମୁଁ ବାଣୀବିହାର ପରିସରକୁ ଆସିବା ପୂର୍ବରୁ ମଧ୍ୟ ଅଞ୍ଜୁ ଓ ମୁଁ ଆମର ସହିଦନଗର ବାସଭବନରୁ ବାଣୀବିହାର ସନ୍ଧ୍ୟାରେ ଆସୁଥିଲୁ। ତାଙ୍କ ସହିତ ସାହିତ୍ୟ, ସଙ୍ଗୀତ, ଫିଲ୍ମ ଏବଂ ଅନ୍ୟ କେତେକ ବିଷୟ ଆଲୋଚନା କରୁଥିଲୁ। ଖୁସି ମନରେ ଘରକୁ ଫେରୁଥିଲୁ। ସେ ପ୍ରାୟ ୧୯୮୩/୮୪ ବେଳକୁ ଅବସର ଗ୍ରହଣ କଲେ ଏବଂ ଆଇଜଲ୍ ଯାଇ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କଲେ। ଅଳ୍ପଦିନ ପରେ ତାଙ୍କର ଦେହାନ୍ତ ଘଟିଲା। ଏହା ଆମ ପରିବାର ପାଇଁ ଏକ ଦାରୁଣ ସମ୍ବାଦ ଥିଲା।

ମୋର ସମବୟସୀମାନଙ୍କ ମଧ୍ୟରେ ଆଗେ ଚାରିପାଞ୍ଚ ଜଣ ରହିଥିଲୁ। ଉଦୟ ନାଥ ଦାଶ ଓ ମୁଁ ସହପାଠୀ ଥିଲୁ। ଆମେ ପ୍ରାୟ ଏକା ସମୟରେ ପି.ଏଚ୍.ଡ଼ି. ସାରିଲୁ ଏବଂ ରିଡର୍ ହେଲୁ। ମୁଁ କୁଇନ୍ସରେ ପି.ଏଚ୍.ଡ଼ି. ସାରିବାର କିଛି ମାସ ପରେ ଉଦୟ କାନାଡ଼ାର ଆଲବର୍ଟା ବିଶ୍ୱବିଦ୍ୟାଳୟରେ ଶିକ୍ଷା ମନୋବିଜ୍ଞାନ ବିଭାଗରେ ପି.ଏଚ୍.ଡ଼ି. ସାରିଥିଲା। ମୋଠାରୁ ଗୋଟିଏ ବର୍ଷ ସିନିୟର୍ ଥିଲେ ଶ୍ରୀକାନ୍ତ ଦାଶ ଓ ବନମାଳୀ ମହାନ୍ତି। ଶ୍ରୀକାନ୍ତ ଦାଶ ମୋ ପରି ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରି କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. ଡିଗ୍ରୀ ହାସଲ କରିଥିଲେ। ଏ ଦୁଇଜଣଙ୍କ ସହିତ ମୋର ଖୁବ୍ ଭଲ ସମ୍ପର୍କ ରହିଥିଲା। ବିଶେଷତଃ ଶ୍ରୀକାନ୍ତ ବାବୁ ମଧ୍ୟ ସାହିତ୍ୟ ପ୍ରାଣ ଥିଲେ ଏବଂ ତାଙ୍କ ବ୍ୟକ୍ତିତ୍ୱରେ କରୁଣା ଓ ସମ୍ବେଦନଶୀଳତାର ଗଭୀର ଛାପ ରହିଥିଲା। ମୁଁ ବିଭାଗୀୟ ମୁଖ୍ୟ ଥିବା ସମୟରେ ଏ ଦୁଇ ଜଣଙ୍କର ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ ମୁଁ ସବୁବେଳେ ପାଇ ପାରୁଥିଲି। ମୋର ତଳ ବ୍ୟାଚ୍‌ରେ ଶରତ ପାତ୍ର ମୋର ଶ୍ରଦ୍ଧେୟ। ଶରତ ମଧ୍ୟ ମୋତେ ବଡ଼ଭାଇ ପରି ସମ୍ମାନ କରୁଥିଲା।

ମୋର ସ୍ନେହାସ୍ପଦ ଓ ଛାତ୍ରଛାତ୍ରୀତୁଲ୍ୟ ଅଧ୍ୟାପକ ଅଧ୍ୟାପିକାମାନଙ୍କ ମଧ୍ୟରେ ନାରାୟଣ ପତି, ସୁଧାକର ରଥ, ପ୍ରଭାସ ମିଶ୍ର, ନିର୍ଲିପ୍ତା ପଟ୍ଟନାୟକ, ପ୍ରତାପ ରଥ, ନନ୍ଦିତା ବାବୁ ଓ ନମିତା ଦାସ ରହିଥିଲେ। ବହୁତ ପରେ କାନାଡ଼ାରେ ଦୀର୍ଘଦିନ ରହି ଆସିଥିବା ବିନୋଦ କର ଆମ ବିଭାଗରେ ଯୋଗ ଦେଲେ। ସେ ପ୍ରଥମେ

ଅଧ୍ୟାପକ ପରେ ରିଡ଼ର ଏବଂ ଆମ ସହିତ ୧୯୯୯ରେ ପ୍ରଫେସର ହେଲେ। ସେ ବୟସରେ ଆମଠାରୁ ବେଶ୍ ବଡ଼। କିନ୍ତୁ ମନସ୍ତତ୍ତ୍ୱ ବ୍ୟତୀତ ସାହିତ୍ୟ ପରି ଅନ୍ୟ କେତେକ ବିଷୟରେ ତାଙ୍କର ଆଗ୍ରହ ଥିଲା। ସେ ମୋତେ ବିଶେଷ ଶ୍ରଦ୍ଧା କରୁଥିଲେ। ପ୍ରଫେସର ହେବା ପରେ ତାଙ୍କର ଅକାଳ ମୃତ୍ୟୁ ଆମ ବିଭାଗ ପାଇଁ ଦାରୁଣ ବ୍ୟଥାର କାରଣ ହୋଇଥିଲା।

ଅଧ୍ୟାପକ ଓ ଗବେଷକ ସହାୟକ ବ୍ୟତୀତ ଅନ୍ୟ ସବୁ କର୍ମଚାରୀମାନେ ମଧ୍ୟ ଆମ ଗୋଷ୍ଠୀର ଅଂଶବିଶେଷ। ଶ୍ରୀ ନିରଞ୍ଜନ ବେହୁରା (ନିଲୁ ବାବୁ) ଡ଼ିମୋନଷ୍ଟ୍ରେଟର ହିସାବରେ ଏବଂ ଅମିନ୍‌ଲୁ ଇସ୍‌ଲାମ୍ ଗବେଷଣା ସହାୟକ ରୂପେ ବିଭାଗ ଆରମ୍ଭରୁ କାର୍ଯ୍ୟ କରୁଥିଲେ। ବଡ଼ ପରିବାରରେ ସାମୟିକ ଭାବରେ ଛୋଟକୋଟିଆ ମତାନ୍ତର ଘଟିଥାଏ। ଏହାକୁ ବାଦ୍‌ଦେଲେ ସେପରି କିଛି କମ୍ପନ ଘଟି ନ ଥିଲା।

ବିଭାଗ ବାହାରେ ବନ୍ଧୁବଳୟର ପରିଧି କ୍ରମଶଃ ବିସ୍ତୃତ ହେବାକୁ ଲାଗିଥିଲା। ସାମାଜିକ ସ୍ତରରେ ବନ୍ଧୁ ବନ୍ଧୁ ଥିଲେ ମଧ୍ୟ ଆମ ପରିବାରଟି ଶ୍ରୀ ସତ୍ୟସାଇ ବାବାଙ୍କର ଆଶ୍ରିତ ହେବା ପରେ ଏବଂ ଆମ୍ଭେମାନେ ସାଇ ସମିତିର ସେବା କାର୍ଯ୍ୟରେ ସଂଶ୍ଳିଷ୍ଟ ହେବା ପରେ ସାଇ ପରିବାର ସଭ୍ୟମାନେ ଆମର ସାଇଭାଇ ହୋଇଗଲେ।

ଅଷ୍ଟଦଶକରେ ଶ୍ରୀ ସତ୍ୟସାଇ ସେବା ସମିତିର ରାଜ୍ୟ ସଭାପତି ଶ୍ରୀ ଆଇ.ଏସ୍. ରାଓଙ୍କ ଘରେ ବାଣୀବିହାରରେ ପ୍ରତି ଗୁରୁବାର ଦିନ ଭଜନ ହେଉଥିଲା ଏବଂ ଆମେ ସେଠାକୁ ଯାଉଥିଲୁ। ଫଳରେ ଭଜନରେ ଯୋଗ ଦେଉଥିବା ପରିବାର ସହ ଆମର ମିତ୍ରତା ହେଲା। ପ୍ରଫେସର ବିଷ୍ଣୁ ପ୍ରସନ୍ନ ଆଚାର୍ଯ୍ୟ (ଗଣିତ ବିଭାଗ), ନାରାୟଣ ହଜାରୀ (ରାଜନୀତି ବିଜ୍ଞାନ), ଗୁରୁଚରଣ ପ୍ରଧାନ (ରସାୟନ), ବେଣୁଧର ପ୍ରଧାନ (ରାଜନୀତି ବିଜ୍ଞାନ) ଏବଂ ଅନ୍ୟ କେତେକ ପରିବାର ସହିତ ସମ୍ପର୍କ ଗଠିତ ହେଲା।

୧୯୯୩ ମସିହାରେ ପ୍ରଫେସର୍ ରାଓ ଅବସର ଗ୍ରହଣ କରିବା ପରେ ପ୍ରଫେସର୍ ବିଷ୍ଣୁ ପ୍ରସନ୍ନ ଆଚାର୍ଯ୍ୟଙ୍କ ବାସଗୃହରେ ସାପ୍ତାହିକ ଭଜନ କାର୍ଯ୍ୟକ୍ରମ ଚାଲିଲା। ବିଷ୍ଣୁବାବୁ ଆମର ଫ୍ଲାଟର ପାର୍ଶ୍ୱବର୍ତ୍ତୀ ଫ୍ଲାଟରେ ରହୁଥିଲେ। ସେ ଖୁବ୍ ସ୍ନେହୀ। ତାଙ୍କର ପତ୍ନୀଙ୍କୁ ଆମେ ବିନୀ ନାନୀ ଡାକିଥାଉ। ସେ ମଧ୍ୟ ଖୁବ୍ ସ୍ନେହୀ। ବିଷ୍ଣୁ ବାବୁ ମୋଠାରୁ ବଡ଼ ହେଲେ ମଧ୍ୟ ଆମ ଦୁଇ ପରିବାର ମଧ୍ୟରେ ଏକ ସ୍ନେହସମ୍ପର୍କ ଗଢ଼ି ଉଠିଲା। ମୋର ଝିଅ ପଲୀ ସେତେବେଳେ ଛୋଟ। ସେ ବିନୀ ନାନୀଙ୍କୁ "ବିନୀ" ବୋଲି ଡାକିବାକୁ ଆରମ୍ଭ କଲା। ଆଜି ମଧ୍ୟ ସେ ଡାକଟି ଅପରିବର୍ତ୍ତିତ ରହିଛି।

ପ୍ରାୟ ୧୯୯୮/୯୯ ମସିହା ବେଳକୁ ଦର୍ଶନ ବିଭାଗର ରମେଶ ଚନ୍ଦ୍ର ଦାସ ତାଙ୍କର ସହିଦନଗର ବାସଭବନ ଛାଡ଼ି ବାଣୀବିହାର କ୍ୱାଟରକୁ ଆସିଲେ। ତାଙ୍କର

ପୁଅ ସାଇ ଛୋଟ ହୋଇଥାଏ। ସେ ମଧ୍ୟ ଜଣେ ସାଇ ଆଶ୍ରିତ ହୋଇ ଥିବାରୁ ତାଙ୍କ ସହ ଗଭୀର ସମ୍ପର୍କ ରୂପ ନେଲା। ବିଷ୍ଣୁ ବାବୁ ଅବସର ଗ୍ରହଣ କରି ବାଣୀବିହାର ପରିସର ଛାଡ଼ି ଆଚାର୍ଯ୍ୟବିହାର ଚାଲିଗଲେ। ଏହାପରେ ପ୍ରଫେସର ଗୁରୁଚରଣ ପ୍ରଧାନଙ୍କ ଘରେ ସାପ୍ତାହିକ ସାଇଭଜନ ଚାଲିଥିଲା ଏବଂ ଆମେ ସବୁ ଏକତ୍ରିତ ହେଉଥିଲୁ। ତାଙ୍କର ଅବସର ଗ୍ରହଣ ପରେ ରମେଶ ବାବୁଙ୍କ ବାଣୀବିହାର ବାସଭବନରେ ଗୁରୁବାର ଭଜନ ଆରମ୍ଭ ହେଲା। ଏହା ପ୍ରାୟ ୨୦୧୫ ଜୁନ୍ ପର୍ଯ୍ୟନ୍ତ ସେଠାରେ ଚାଲିଥିଲା। ବର୍ତ୍ତମାନ ଏହା ଅନ୍ୟ ଜଣେ ଅଧ୍ୟାପକ ସୁଶାନ୍ତ ସାହୁଙ୍କ ବାଣୀବିହାର ବାସଭବନରେ ଅନୁଷ୍ଠିତ ହେଉଛି।

ରମେଶ ବାବୁଙ୍କ ଘରେ ଭଜନ ଓ ଅନ୍ୟ ସମସ୍ତ ସାଇ ସେବା ଜନିତ କାର୍ଯ୍ୟକ୍ରମ ହେଉଥିଲା ସମୟରେ ଆମର ବିଧିବଦ୍ଧ ଯୋଗଦାନ ସମ୍ପର୍କକୁ ଗଭୀର କରିଥିଲା। ତାଙ୍କର ପତ୍ନୀ କୈଳାସିନୀ ଦାସ ଓ ପୁଅ ସାଇ ମଧ୍ୟ ପରିବାରର ନିବିଡ଼ ସମ୍ପର୍କର ଘେରରେ ରହିଥିଲେ। ରମେଶ ବାବୁଙ୍କ ପରିବାର ଅନ୍ୟ ଜଣେ ବନ୍ଧୁ ପ୍ରଫେସର ରଘୁନାଥ ପଣ୍ଡା ଓ ତାଙ୍କର ପତ୍ନୀ କଳ୍ପନା ଏବଂ ଆମର ପରିବାର ଏକାଠି ହୋଇ ଆମେ କେତେଥର ବିଭିନ୍ନ ଜାଗାକୁ ବୁଲି ଯାଇଛୁ। ହରିଦ୍ୱାର, ଋଷିକେଶ, ଡେରାଡୁନ୍, ଶିରିଡ଼ି, ଅକଲ୍‌କୋଟ୍ ଏବଂ ଏହିପରି ଅନେକଗୁଡ଼ିଏ ସ୍ଥାନ ବୁଲି ଯାଇଛୁ। ରମେଶ ବାବୁ ମୁଖ୍ୟ ଦାୟିତ୍ୱ ନେଇ ଏ ସବୁ ପରିଭ୍ରମଣର ବ୍ୟବସ୍ଥା କରନ୍ତି ଏବଂ ଆମେ ଆମୋଦ ଅନୁଭବ କରୁ। ଆମ ଭିତରେ ଗଢ଼ି ଉଠିଥିବା ଏହି ପ୍ରୀତିପୂର୍ଣ୍ଣ ନିବିଡ଼ ସମ୍ପର୍କଟି ହଠାତ୍ ଏକ ବଜ୍ରାଘାତର ଶରବ୍ୟ ହେଲା। ୨୦୧୬ ମସିହାରେ ଆମେ ଆମେରିକା ଯୁକ୍ତରାଷ୍ଟ୍ର ଯାଇଥିବା ସମୟରେ ରମେଶ ବାବୁ ମାର୍ଚ୍ଚ ମାସରେ ଗୁରୁଗାଓଁଠାରେ ତାଙ୍କ ଝିଅାରୀଙ୍କ ଘରେ ହୃଦ୍‌ଘାତର ଶରବ୍ୟ ହୋଇ ପରଲୋକ ଗମନ କଲେ। କେବଳ ଆମ ପରିବାର ପାଇଁ ନୁହେଁ, ଭୁବନେଶ୍ୱରର ସମସ୍ତ ସାଇପରିବାର ପାଇଁ ଏ ଆଘାତଟି ଦାରୁଣ। ବ୍ୟକ୍ତିଗତ ଭାବେ ଏପରି ଅକୃତ୍ରିମ ଅନାବିଳ ବନ୍ଧୁ ପାଇବା ଆମ ଜୀବନର ଏକ ବିଡ଼ମ୍ବନା ହୋଇ ରହିଯିବ।

ମଝିରେ ମଝିରେ କେତୋଟି ବିରାମ ଚିହ୍ନକୁ ବାଦ୍‌ଦେଲେ ଦୀର୍ଘ ୩୩ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ବାତାବରଣ ମଧ୍ୟରେ କଟିଛି। ଜୀବନ ଗଠନ ଓ ବିକାଶର ବହୁ ଉପାଦାନ ଏହି ମାଟିରୁ ସଂଗ୍ରହ କରିଛି। ସ୍ଥଳ ବିଶେଷରେ ଆହ୍ୱାନପୂର୍ଣ୍ଣ ସମସ୍ୟାର ମଧ୍ୟ ସମ୍ମୁଖୀନ ହୋଇଛି। ତଥାପି ମୋର ଆନୁଗତ୍ୟର ସ୍ୱର ଜୀବନର ଶେଷ ପର୍ଯ୍ୟନ୍ତ ଜୀବନ୍ତ ରହିବ।

ଶିକ୍ଷା ଓ ଗବେଷଣା ମାଧ୍ୟମରେ ଅଗଣିତ ଛାତ୍ରଛାତ୍ରୀଙ୍କୁ ସାହାଯ୍ୟ କରିଛି। ଜୀବନଧର୍ମୀ ଲେଖା ଓ ସାହିତ୍ୟ ମାଧ୍ୟମରେ ଜନସାଧାରଣଙ୍କ ସମସ୍ୟା ସାମଧାନ ଓ

ମାନସିକ ବିକାଶ ଦିଗରେ କିଛି କରିପାରନ୍ତି। ଧାରାବାହିକ ଭାବେ ଓଡ଼ିଆ ସମ୍ବାଦପତ୍ର ପାଇଁ ଲେଖୁଥିବାରୁ ସମୟ ସମୟରେ ଲୋକମାନେ ମାନସିକ ସମସ୍ୟାର ସମାଧାନ ପାଇଁ ମୋର ସହାୟତା ଲୋଡ଼ିଛନ୍ତି। ଉପଦେଶରେ ଏପରି ସୁଯୋଗ ଆସିବା ସମୟରେ ମୁଁ ଯଥାସମ୍ଭବ ମାର୍ଗଦର୍ଶନ ଦେବାର ପ୍ରଯତ୍ନ କରିଛି। ଉତ୍କଳ ବିଶ୍ୱବିଦ୍ୟାଳୟରେ କାଟିଥିବା କେଇ ଦଶନ୍ଧି ମୋ ଜୀବନର କୌଣସିମତେ ସମୟ କଟାଇଦେବାର ଜୀବନ ନୁହେଁ ଏହା ଏକ ଉପଲବ୍ଧି ଓ ପ୍ରସାରଣର ସମୟ।

❖

## (୩୩)

# ଜାଭିୟର୍ ବାତାୟନ

ଜାଭିୟର୍ ବିଶ୍ୱବିଦ୍ୟାଳୟ ଏକ ମର୍ଯ୍ୟାଦାବନ୍ତ ଶିକ୍ଷା ଅନୁଷ୍ଠାନ। ଜାଭିୟର ମ୍ୟାନେଜମେଣ୍ଟ ସଂସ୍ଥା (Xavier Institute of Management) ରୂପେ ଏହା ୧୯୮୭ ମସିହା ଅକ୍ଟୋବର ମାସରୁ କାର୍ଯ୍ୟ କରିଆସୁଛି। ୨୦୧୩ ମସିହା ଜୁଲାଇ ମାସରୁ ଏହା ଜାଭିୟର ବିଶ୍ୱବିଦ୍ୟାଳୟ ସ୍ତରକୁ ଉନ୍ନୀତ ହୋଇଛି। ଓଡ଼ିଶା ସରକାରଙ୍କ ଆଇନ୍ ବଳରେ ଏହା ଘରୋଇ ବିଶ୍ୱବିଦ୍ୟାଳୟ ରୂପେ ବୃହତ୍ତର ପରିସରର ରୂପରେଖ ନେଇଛି। ଏହି ବିଶ୍ୱବିଦ୍ୟାଳୟରେ ମୋର ପ୍ରବେଶ କେବଳ ଆକସ୍ମିକ ନୁହେଁ, ଏହା ଈଶ୍ୱର ପ୍ରେରିତ ବୋଲି ମୋର ମନେହୁଏ।

ଜାଭିୟର୍ ମ୍ୟାନେଜ୍‌ମେଣ୍ଟ ସଂସ୍ଥା ୧୯୮୭ ମସିହାରେ ଆରମ୍ଭ ହେଲା। ଏହା ଜେସୁଟ୍ ସମାଜର ପ୍ରୟାସ। ଏହା ପୂର୍ବରୁ ଜାମସେଦ୍‌ପୁରରେ ଏହି ଜେସୁଟ୍ ସୋସାଇଟ୍ ଉଦ୍ୟମରେ ଆରମ୍ଭ ହୋଇଥିବା Xavier Labour Relation Institute (XLRI) ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରିଥିଲା। ଏଥିରୁ ବାହାରିଥିବା ସ୍ନାତକମାନେ ଦେଶର ବିଭିନ୍ନ ସଂସ୍ଥାରେ କାର୍ଯ୍ୟକରି ଖ୍ୟାତି ଅର୍ଜନ କରିଥିଲେ। ସୁତରାଂ ଡଃ ଡି.ସୁଜାଙ୍କ ପ୍ରୟାସରେ ଭୁବନେଶ୍ୱରରେ ଏକ ପରିଚାଳନା ବିଜ୍ଞାନର ସଂସ୍ଥା ପ୍ରତିଷ୍ଠିତ ହେବାର ଖବର ଓଡ଼ିଶାରେ ଉତ୍ସାହ ସୃଷ୍ଟି କରିଥିଲା।

୧୯୮୭ ମସିହାରେ ମଧ୍ୟଭାଗରେ ମୁଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଏକ ବିଶିଷ୍ଟ ଫେଲୋସିପ୍ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲି। ଏହା ବ୍ୟବସ୍ଥା ଅନୁଯାୟୀ ତିନିବର୍ଷ ଗତାନୁଗତିକ ଅଧ୍ୟାପନା କାର୍ଯ୍ୟରୁ ଛୁଟି ମିଳିବ। ସବୁତକ ସମୟ ଗବେଷଣା ଖର୍ଚ୍ଚ ପାଇଁ ଅନୁଦାନ ଆୟୋଗ ଆର୍ଥିକ ସମ୍ବଳ ଯୋଗାଇବ। ଏହା ସତ୍ତ୍ୱେ ଏ ଦାୟିତ୍ୱ ସହିତ ଜାଭିୟରର କିଛି କାର୍ଯ୍ୟରେ ସଂଶ୍ଳିଷ୍ଟ ହେବା ପାଇଁ ମନସ୍ଥ କଲି। ସୁତରାଂ ମୋର ଶିକ୍ଷାଗତ ସଫଳତାର ଏକ ସଂକ୍ଷିପ୍ତ ବିବରଣୀ ଫାଦର୍ ଡ଼ି.ସୁଜାଙ୍କ ପାଖକୁ ପଠାଇଦେଲି।

ଦିନେ ମୁଁ ମୋର ବାଣୀବିହାର ଫ୍ଲାଟରେ ବସିଥିବା ସମୟରେ ଜଣେ ଭଦ୍ରବ୍ୟକ୍ତି ଦେଖା କରିବାକୁ ଆସିଲେ। ପରିଚୟ ପରେ ମୁଁ ଜାଣିଲି ଯେ ସେ ହେଉଛନ୍ତି ଜାଭିୟର୍ ସଂସ୍ଥାର ରେଜିଷ୍ଟ୍ରାର୍ ଶ୍ରୀ ବିମଳେନ୍ଦୁ ମହାନ୍ତି। ମୋର ଆବେଦନ ପତ୍ର ସମ୍ପର୍କରେ ଆଲୋଚନା କରିବା ପାଇଁ ଜାଭିୟରର ନିର୍ଦ୍ଦେଶକ ଫାଦର୍ ଡି.ସୁଜା

ଡକାଇଛନ୍ତି ବୋଲି ସେ କହିଲେ। ବିମଳେନ୍ଦୁ ବାବୁଙ୍କ ସହିତ କଥାବାର୍ତ୍ତା ପରେ ସାକ୍ଷାତର ଦିନ ଓ ସମୟ ସ୍ଥିର କଲି।

ତା'ପର ଦିନ ଗୋଟିଏ ରିକ୍ସା କରି ଜାଭିୟର୍ ଗଲି। ମାସଟି ସମ୍ଭବତଃ ଜୁଲାଇ। ଆଖପାଖରେ ବିଶେଷ ଘର ନ ଥିଲା। ଜାଭିୟର୍‌ର ନିର୍ମାଣ କାର୍ଯ୍ୟ ମଧ୍ୟ ଅସମ୍ପୂର୍ଣ୍ଣ। ଚାରିଆଡ଼େ ମାଲମାଲ ଇଟାଗଦା। ତେବେ କେତୋଟି କୋଠରୀ ବ୍ୟବହାର ଉପଯୋଗୀ ଥିଲା। ଗୋଟିଏ ସୌଷ୍ଠବପୂର୍ଣ୍ଣ କୋଠରୀରେ ମୁଁ ଫାଦର ଡି.ସୁଜା ଏବଂ ଫାଦର୍ ଆବ୍ରାହାମ୍‌ଙ୍କୁ ସାକ୍ଷାତ କଲି। ସେମାନେ ମୋର ଶିକ୍ଷାଗତ ସଫଳତା ସମ୍ପର୍କରେ ସନ୍ତୋଷ ପ୍ରକାଶ କଲେ। ମୁଁ ବିଶ୍ୱବିଦ୍ୟାଳୟ ଚାକିରି ଛାଡ଼ି ଜାଭିୟର୍ ଆସିବାକୁ ପ୍ରସ୍ତୁତ ଅଛି କି ନାହିଁ ବୋଲି ପଚାରିଲେ।

ମୁଁ ବିନମ୍ର ଭାବରେ ଜଣାଇଲି ଯେ ମୁଁ ନିକଟ ଅତୀତରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତରଫରୁ ଏକ ପେସାଗତ ଫେଲୋସିପ୍ ପାଇଛି। କେତେକ ଦୃଷ୍ଟିରୁ ଏହା ଅନନ୍ୟ। ଏ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର କୌଣସି ବ୍ୟକ୍ତି ଏ ସମ୍ମାନର ଅଧିକାରୀ ହୋଇ ନାହାଁନ୍ତି। ସୁତରାଂ ଏଇଟି ଛାଡ଼ିଦେବା ମୋ ପକ୍ଷରେ ବିଜ୍ଞତା ହେବ ନାହିଁ। ମୁଁ ବର୍ତ୍ତମାନ ପାଇଁ ପାର୍ଟ ଟାଇମ୍ ଦାୟିତ୍ୱ ନେଇପାରେ। ୧୯୯୦ ମସିହା ପରେ ପୂରା ଦାୟିତ୍ୱ କଥା ଚିନ୍ତା କରିବି। ଫାଦର୍ ଡି.ସୁଜା ମତଦେଲେ ଯେ ସେମାନେ ବର୍ତ୍ତମାନ ପୂରା ସମୟ ଦେଇ ପାରୁଥିବା ଅଧ୍ୟାପକ ଚାହାଁନ୍ତି। ପୁଣି ମୁଁ ଯେଉଁ ବିଷୟଟି ପଢ଼ାଇବି, ତାହା ଫାଦର୍ ଡି.ସୁଜା ଏବଂ ଫାଦର୍ ଆବ୍ରାହମ୍ ମଧ୍ୟ ପଢ଼ାଇଥାଆନ୍ତି। ସୁତରାଂ ଏ ବିଷୟଟି ପାଇଁ ଚାହିଦା କମ୍ ରହିଛି। ଅବଶ୍ୟ କିଛି ବର୍ଷ ପରେ ଜାଭିୟର୍‌ରେ ଅନ୍ୟତ୍ର ଚାକିରି କରୁଥିବା ଲୋକମାନଙ୍କ ପାଇଁ ପାର୍ଟ ଟାଇମ୍ ଏମ୍.ବି.ଏ. ପ୍ରୋଗ୍ରାମ ଆରମ୍ଭ ହେବ। ସେତେବେଳେ ସମ୍ଭବତଃ ମୋର ସହାୟତା ଲୋଡ଼ାଯିବ'ହେବ।

ପ୍ରକୃତରେ ତାହା ହିଁ ହେଲା। ମୁଁ ମୋର ପୂରା ସମୟ ଗବେଷଣାରେ ଦେଲି। ତା' ସହିତ ୧୯୮୫ ମସିହାରୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯେଉଁ ଏମ୍.ବି.ଏ. ଆରମ୍ଭ ହୋଇଥିଲା, ତାହାର ଅତିଥି ଅଧ୍ୟାପକ ରୂପେ ପରିଚାଳନା ବିଜ୍ଞାନ ପଢ଼ାଇବାକୁ ଆରମ୍ଭ କରି ସାରିଥିଲି।

୧୯୯୩ ମସିହା ବେଳକୁ ଜାଭିୟର୍‌ରୁ ଅନୁରୋଧ ଆସିଲା ସେମାନଙ୍କ ପାର୍ଟ ଟାଇମ୍ Executive Programme ରେ ସାଂଗଠନିକ ବ୍ୟବହାର (Organizational Behaviour) ପଢ଼ାଇବା ପାଇଁ। ମୁଁ ଖୁସିରେ ଏ ଅନୁରୋଧ ଗ୍ରହଣ କଲି। ଉତ୍କଳ ବିଶ୍ୱବିଦ୍ୟାଳୟର ଅନୁମୋଦନ କ୍ରମେ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ସମୟ (ଦିନ ଦଶଟାରୁ ସନ୍ଧ୍ୟା ପାଞ୍ଚଟା) ବାହାରେ ଜାଭିୟର୍‌ରେ ଅଧ୍ୟାପନାର ସୁଯୋଗ

ପାଇଲି। ସର୍ତ୍ତ ଅନୁଯାୟୀ ମୁଁ ମୋର ଅଧ୍ୟାପନା ବାବଦକୁ ଯେଉଁ ଅର୍ଥ ପାଏ, ତାହାର ଏକଚତୁର୍ଥାଂଶ ଉତ୍କଳ ବିଶ୍ୱବିଦ୍ୟାଳୟ ପାଣ୍ଠିରେ ଜମା କରିଥାଏ।

ପରିଚାଳନା ବିଜ୍ଞାନ ସମ୍ପର୍କିତ ଜ୍ଞାନ ଏବଂ ଜାଭିୟର୍‌ର ସମ୍ବଳ ମୋତେ ବେଶ୍ ଆନନ୍ଦ ଦେଲା। ବିଶେଷତଃ Executive Programmeକୁ ଆସୁଥିବା ଛାତ୍ରଛାତ୍ରୀମାନେ ଭାରତର ବିଭିନ୍ନ ସ୍ଥାନରୁ ଆସିଥାଆନ୍ତି। ପୁଣି ପ୍ରାୟ ସମସ୍ତଙ୍କର ପରିଚାଳନାଗତ ଅଭିଜ୍ଞତା ରହିଥାଏ। ଏପରି ଏକ ଗୋଷ୍ଠୀ ସହିତ ପାରସ୍ପରିକ କ୍ରିୟା ଅନୁକ୍ରିୟା ବିଶେଷ ଫଳପ୍ରଦ ଥିଲା। ଗୋଟିଏ ବର୍ଷ ନିୟମିତ (Regular) ବ୍ୟାଚ୍‌ର ଦୁଇଟି ବିଭାଗ (Section) ପଢ଼ାଇବାର ସୁଯୋଗ ପାଇଲି। Executive Programme ରେ ଗୋଟିଏ କୋର୍ସ ପାଇଁ ୧୫ ଘଣ୍ଟା ପଢ଼ାଇବା ସ୍ଥଳେ ନିୟମିତ ବ୍ୟାଚ୍ ପାଇଁ ୩୦ ଘଣ୍ଟା ଅଧ୍ୟାପନା କରିବାର ବିଧି। ସୁତରାଂ ସେ ବର୍ଷ ୬୦ ଘଣ୍ଟା ପଢ଼ାଇବାର ମାନସିକ ତୃପ୍ତି ମୋ ପାଇଁ ଏକ ବିଶେଷ ସମ୍ବଳ ଥିଲା।

**ଗବେଷଣା ପ୍ରଫେସର୍**

ଅତିଥି ପ୍ରଫେସର୍ ଭୂମିକାରୁ ରିସର୍ଚ୍ଚ ପ୍ରଫେସର୍ ଦାୟିତ୍ୱ ନେବାର ମାନ୍ୟତା ଲାଭ କରିବା ମୋ ଜୀବନର ଏକ ବିଶିଷ୍ଟ ଘଟଣା। ଏ ଘଟଣାଟି କେବଳ ମୋ ଜୀବନ ଗବାକ୍ଷରେ ଏକ ଉପଲବ୍ଧିର ଆଲୋକ ଦେଖାଇଥିଲା। ସର୍ବନିୟନ୍ତା ଈଶ୍ୱରଙ୍କ କରୁଣା ପ୍ରତି ମୋ ମନରେ ଆସ୍ଥା ଭାବ ଗଭୀର କରିଥିଲା।

୨୦୦୮ ମସିହାର ମଇ ମାସର ଶେଷ ଦିନରେ ମୁଁ ମନୋବିଜ୍ଞାନ ବିଭାଗର ଦାୟିତ୍ୱରୁ ଅବସର ଗ୍ରହଣ କଲି। ତତ୍‌କାଳୀନ ବିଭାଗୀୟ ମୁଖ୍ୟ ମୋର ଅବସର ଗ୍ରହଣ କାଗଜପତ୍ରରେ ଯଥାରୀତି ସ୍ୱାକ୍ଷର କଲେ। ତାହାର ଦୁଇତିନି ମାସ ପୂର୍ବରୁ ମୋର ସମ୍ମାନସ୍ପଦ ଓ ଶୁଭେଚ୍ଛୁ ମୋର ଶିକ୍ଷକମାନେ ମୋତେ ବିଶ୍ୱବିଦ୍ୟାଳୟର ଅନୁଦାନ ଆୟୋଗ ପ୍ରଦତ୍ତ ଏମିରିଟସ୍ ଫେଲୋସିପ୍ (Emeritis Fellowship) ପାଇଁ ଆବେଦନ କରିବାକୁ ପରାମର୍ଶ ଦେଇଥିଲେ। ବିଶେଷତଃ ଆମ ପରିବାରର ବିଶିଷ୍ଟ ପରାମର୍ଶଦାତା ପ୍ରଫେସର୍ ବିଷ୍ଣୁ ପ୍ରସନ୍ନ ଆଚାର୍ଯ୍ୟ ମୋତେ ବାରମ୍ବାର ଏ କଥା ମନେ ପକାଇଦେଲେ। ମୁଁ ଜାଣିଥିଲି ଯେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବିଜ୍ଞାନ ବିଭାଗରେ ୧୦୦ ଜଣଙ୍କୁ ଏବଂ କଳା ବିଭାଗରେ ୧୦୦ ଜଣଙ୍କୁ ଏପରି ସମ୍ମାନ ପ୍ରଦାନ କରନ୍ତି। ପ୍ରତି ଏମିରିଟସ୍ ଫେଲୋ ଦୁଇ ବର୍ଷ ଏ ପଦବୀରେ ରହିବା ପରେ ସେ ଅବସର ନିଅନ୍ତି। ପୁନଶ୍ଚ ମନୋନୟନ କରାଯାଇ ଏହି ସ୍ଥାନ ପୂରଣ କରାଯାଏ। ଏପରି ବ୍ୟକ୍ତି ଦୁଇ ବର୍ଷ ପାଇଁ ମାସିକ ଫେଲୋସିପ୍ ପାଆନ୍ତି ଏବଂ ନିଜସ୍ୱ ଗବେଷଣା ପ୍ରକଳ୍ପ ପାଇଁ ଆର୍ଥିକ ସାହାଯ୍ୟ ପାଆନ୍ତି।

ପ୍ରସ୍ତାବଟି ମନ୍ଦ ଲାଗିଲା ନାହିଁ। ମୁଁ ମୋର ସମସ୍ତ କାର୍ଯ୍ୟାବଳୀ ଓ କୃତିତ୍ୱକୁ ଏକାଠି କରି ଗୋଟିଏ ପୁସ୍ତିକା ଆକାରରେ ମୋର ବିବରଣୀ (CV) ପ୍ରସ୍ତୁତ କଲି। ସମ୍ଭବତଃ ମାର୍ଚ୍ଚ (୨୦୦୮) ମାସରେ ତତ୍କାଳୀନ ବିଭାଗୀୟ ମୁଖ୍ୟଙ୍କ ଅନୁମୋଦନ କ୍ରମେ ବିଭାଗ ସମୂହର ମୁଖ୍ୟଙ୍କ (PG Council Chairman) ଅଫିସ୍‌ରେ ଦେଇ ଆସିଲି। ନିୟମାନୁଯାୟୀ ବିଭାଗ ସମୂହର ଅଧ୍ୟକ୍ଷ ନିଜର ଅନୁମୋଦନ ସହ କୁଳପତିଙ୍କ କାର୍ଯ୍ୟାଳୟକୁ ପଠାଇଲେ।

ମୁଁ ମୋର ଆବେଦନର ଏକ ଅଗ୍ରୀମ କପି ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପୁରସ୍କାର ଓ ଫେଲୋସିପ୍ ବିଭାଗକୁ ପଠାଇଦେଲି। ଆଶା କରୁଥିଲି ଯେ କୁଳପତିଙ୍କ ଅଫିସ୍ ନିର୍ଦ୍ଦିଷ୍ଟ ସମୟରେ ମୋର ଆବେଦନଟି ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗକୁ ପଠାଇବ। ଏହା ଏକ ଚିରାଚରିତ ଧରାବନ୍ଧା ନିୟମ। ପୁଣି ମୋର କାର୍ଯ୍ୟ ବିବରଣୀଟିର (CV) କଳେବର ପଚାଶ ପୃଷ୍ଠାରୁ ଅଧିକ ହେବ। ସୁତରାଂ ଏ କ୍ଷେତ୍ରରେ କୌଣସି ବାଧା ଉପୁଜିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି।

ମୁଁ ମଇ ୩୧ରେ ଅବସର ଗ୍ରହଣ କରିବା ପରେ ଜୁନ୍ ପ୍ରଥମ ସପ୍ତାହରେ ପୁଟପର୍ତ୍ତି ଗଲି ଏବଂ ଦ୍ୱିତୀୟ ସପ୍ତାହରେ ଫେରିଲି। ଆଶ୍ଚର୍ଯ୍ୟର କଥା ଯେ ସେ ପର୍ଯ୍ୟନ୍ତ ମୋର ଆବେଦନ ପତ୍ରର ଉତ୍କଳ ବିଶ୍ୱବିଦ୍ୟାଳୟ ଜରିଆରେ ଯିବାକୁ ଥିବା ଅଫିସ୍ କପି ଅନୁଦାନ ଆୟୋଗକୁ ଯାଇନାହିଁ। ମୋର ବିସ୍ମୟର ସୀମା ରହିଲା ନାହିଁ। ଜାଣିବାକୁ ପାଇଲି ଯେ ଜୁନ୍ ମାସ ୧ ତାରିଖରେ ଆଉ ଜଣେ ବ୍ୟକ୍ତି ବିଭାଗୀୟ ମୁଖ୍ୟ ହୋଇଛନ୍ତି ଏବଂ ସେ କୁଳପତିଙ୍କୁ ଲେଖିଛନ୍ତି ଯେ ମୋର ଏମିରିଟସ୍ ଫେଲୋସିପ୍ ପ୍ରସ୍ତାବଟି ବିଭାଗୀୟ ଷ୍ଟାଫ୍ କାଉନ୍‌ସିଲ୍‌ରେ ଆଲୋଚିତ ହୋଇନାହିଁ।

ବିଭାଗୀୟ ମୁଖ୍ୟଙ୍କ ଏପରି ମନ୍ତବ୍ୟ ନିଶ୍ଚିତ ଭାବରେ ଈର୍ଷା ପ୍ରଣୋଦିତ ଓ ଦାୟିତ୍ୱହୀନ। ମନୋବିଜ୍ଞାନ ବିଭାଗ ଆରମ୍ଭ ହେବାଠାରୁ ଏ ପର୍ଯ୍ୟନ୍ତ ଯେଉଁ ସମସ୍ତ ଗବେଷଣା ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି ଏବଂ ଆଲୋଚନା ଚକ୍ର ବା ସମ୍ମାନ ଆୟୋଜିତ ହୋଇଛି, ତାହାର କେତେ ଭାଗ ମୋ ନିର୍ଦ୍ଦେଶନାର ଫଳ- ତାହାର ପରିସଂଖ୍ୟାନ ସୂଚାଇବା ମୋର ବିନମ୍ରତାର ଉଲଙ୍ଘନ ହେବ। ସୁତରାଂ ସେ ପରିସଂଖ୍ୟାନ ମୁଁ ଏଠାରେ ଉଲ୍ଲେଖ କରିବି ନାହିଁ। ତେବେ ଏହା ସ୍ପଷ୍ଟ ଯେ ମୁଁ ଅତୀତରେ ଯେତେ ବିକାଶମୂଳକ ପ୍ରସ୍ତାବ (ଗବେଷଣା ପ୍ରକଳ୍ପ ଓ ସେମିନାର)ଦେଇଛି ତାହା ମୁଖ୍ୟଙ୍କ ଦସ୍ତଖତ ସହ କୁଳପତିଙ୍କ ଅଫିସ୍‌କୁ ଯାଏ। ପରେ ଆର୍ଥିକ ସହାୟତା ଦେଉଥିବା ସଂସ୍ଥାକୁ ଯାଏ। ଅନୁଦାନ ସଂସ୍ଥା ଆର୍ଥିକ ସହାୟତାର ସବୁଜ ସଙ୍କେତ ଦେବା ପରେ କାର୍ଯ୍ୟକ୍ରମଟି କେବେ ବିଭାଗରେ ଅନୁଷ୍ଠିତ ହେବ, ସେ ବିଷୟରେ

ବିଭାଗର ଷ୍ଟାଫ୍ କାଉନ୍‌ସିଲ୍‌ରେ ଚର୍ଚ୍ଚା ହୁଏ। ସୁତରାଂ ଏ ଅଭିନବ କଥାଟି ଶୁଣି ମୁଁ ବିସ୍ମିତ ହେବା ସ୍ୱାଭାବିକ। ପୁଣି ଜଣେ ବିଭାଗୀୟ ମୁଖ୍ୟ ଅନୁମୋଦନ କରି ପଠାଇବା ପରେ ଅନ୍ୟ ମୁଖ୍ୟଙ୍କ ନକାରାତ୍ମକ ମନ୍ତବ୍ୟ ଦୁର୍ଭାଗ୍ୟଜନକ ନିଶ୍ଚୟ।

ମୁଁ କୁଳପତିଙ୍କୁ ବ୍ୟକ୍ତିଗତ ଭାବେ ସାକ୍ଷାତ କଲି। ସେ ବିଭାଗୀୟ ମୁଖ୍ୟଙ୍କ ଚିଠି କଥା କହିଲେ ନାହିଁ। ସେ କହିଲେ ଯେ ଏମିରିଟସ୍ ଫେଲୋସିପ୍ ପାଇଁ ମାନଦଣ୍ଡ ପ୍ରସ୍ତୁତ କରାଯାଉଛି ଏବଂ ନିର୍ଦ୍ଦିଷ୍ଟ ସମୟରେ ମୋର ଆବେଦନ ପତ୍ର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗକୁ ପଠାଇ ଦିଆଯିବ। ମାତ୍ର ଆଶ୍ଚର୍ଯ୍ୟର କଥା ଯେ କୁଳପତି ବିଭାଗୀୟ ମୁଖ୍ୟଙ୍କୁ ଲେଖିଥିବା ଦୁଇଟି ଚିଠିର (ଜୁନ୍‌ରୁ ଅଗଷ୍ଟ ୨୦୦୮ ମଧ୍ୟରେ) ମୋ ପାଖକୁ ଫରଓ୍ୱାଡ଼େଡ଼ କରା ଯାଇଥିବା ଚିଠିର କପି ପାଇଲି। ମୋ ଆବେଦନ ସମ୍ପର୍କରେ ବିଭାଗୀୟ ଷ୍ଟାଫ୍ କାଉନ୍‌ସିଲ୍ କ'ଣ ନିଷ୍ପତ୍ତି ନେଇଛି, ତାହା ଜଣାଇବାକୁ କୁଳପତି ବିଭାଗୀୟ ମୁଖ୍ୟଙ୍କୁ ଚିଠି ଲେଖିଥିଲେ। ଜଣେ ବରିଷ୍ଠ ପ୍ରଫେସର୍ ହିସାବରେ ମୋତେ ଘଟଣାଟି ଅବାକ୍ ଲାଗିଲା। ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର୍ ହିସାବରେ ମୁଁ ଭଲ ରୂପେ ଜାଣେ ଯେ ଅତୀତରେ ଦକ୍ଷ ଓ ବିଜ୍ଞ କୁଳପତିମାନେ ଅନ୍ୟତ୍ର କାର୍ଯ୍ୟ କରୁଥିବା କୃତି ଶିକ୍ଷକ ଓ ବିଦ୍ୱାନ୍‌ମାନଙ୍କୁ ନିଜ ବିଶ୍ୱବିଦ୍ୟାଳୟକୁ ଆଣିବାର ପ୍ରୟାସ କରିବାକୁ ଆଗ୍ରହୀ; ଅଥଚ କବାଟ କିଳି ତାକୁ ବାଧା ଦିଆ ଯାଉଛି।

ଘଟଣାଟି ଜୁଲାଇ ମାସରେ ନାଟକୀୟ ମୋଡ଼ ନେଲା। ଜୁଲାଇ ମାସରେ ଜାଭିୟର୍ ମ୍ୟାନେଜ୍‌ମେଣ୍ଟର ସଂସ୍ଥା ପରିଦର୍ଶକ ଅଧ୍ୟାପକ ରୂପେ ମୋତେ କ୍ଲାସ ନେବା ପାଇଁ ଚିଠିଟିଏ ପଠାଇଥିଲେ। ମୁଁ ସମ୍ମତି ଦେଲି ଏବଂ ବ୍ୟକ୍ତିଗତ ଭାବେ ଡିନ୍‌ଙ୍କୁ ଦେଖାକଲି। ମୁଁ ତାଙ୍କୁ ଜଣାଇଲି ଯେ ମୁଁ ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଥିବାରୁ ସେମାନଙ୍କ ଅନୁମତି ନେଇ ସକାଳେ (ଦଶଟା ପୂର୍ବରୁ) କିମ୍ବା ସନ୍ଧ୍ୟାରେ କ୍ଲାସ ନେଉଥିଲି। ବର୍ତ୍ତମାନ ମୁଁ ଅବସର ଗ୍ରହଣ କରିଥିବାରୁ ଦଶଟାରୁ ପାଞ୍ଚଟା ମଧ୍ୟରେ କ୍ଲାସ ନେବାକୁ ଚାହୁଁଛି। ଏ ସୂଚନାଟି ଦେବା ମାତ୍ରେ ଡିନ୍ ଖୁବ୍ ଖୁସୀ ହେଲେ ଏବଂ ଜାଭିୟର୍ ସହିତ ପୂର୍ଣ୍ଣ ସଂଯୋଗ ରକ୍ଷା କରିବାକୁ ଅନୁରୋଧ କଲେ। ଇମେଲ୍‌ରେ ମୋର ପୂର୍ଣ୍ଣ ବିବରଣୀଟି ପଠାଇଦେଇ ପରଦିନ ଅନୁଷ୍ଠାନର ନିର୍ଦ୍ଦେଶକଙ୍କୁ ସାକ୍ଷାତ କରିବାର ପରାମର୍ଶ ଦେଲେ।

ସୂଚନା ଅନୁଯାୟୀ ଡିନ୍‌ଙ୍କ ଉପସ୍ଥିତିରେ ଜୁଲାଇ ମଧ୍ୟ ଭାଗରେ ମୁଁ ଡିରେକ୍ଟର ଫାଦର୍ ପି.ଟି.ଜୋସେଫ୍‌ଙ୍କୁ ଦେଖା କଲି। ବିଗତ ୧୯୯୩ରୁ ଦୀର୍ଘ ଦିନ ଧରି ମୁଁ ଜାଭିୟର୍ ସହିତ ସମ୍ପୃକ୍ତ ଥିବାରୁ ମୋର ଦାୟିତ୍ୱ ଗ୍ରହଣ ମୋ ପାଇଁ ଓ ଅନୁଷ୍ଠାନ ପାଇଁ ଉପକାରୀ ହେବ ବୋଲି ଜୋର୍ ଦେଇ କହିଲେ। ମୁଁ ଗବେଷଣା କାର୍ଯ୍ୟରେ

ଖୁବ୍ ବେଶୀ ସମୟ ଦେଇଥିବାରୁ "ରିସର୍ଚ୍ଚ ପ୍ରଫେସର୍" ପଦବୀଟି ମୋ ପାଇଁ ଯୁକ୍ତିଯୁକ୍ତ ହେବ। ନିର୍ଦ୍ଦେଶକ କହିଲେ ଯେ ଜାଭିୟର୍ ସଂସ୍ଥାରେ ଏପରି ପଦବୀ ନାହିଁ। କିନ୍ତୁ ମୋ ପାଇଁ ବର୍ତ୍ତମାନ ସୃଷ୍ଟି କରାଯାଉଥିବା ଏହି ପଦବୀଟି ଅନ୍ୟମାନଙ୍କୁ ଗବେଷଣା କାର୍ଯ୍ୟରେ ପ୍ରେରଣା ଦେବ। ମୁଁ ସମ୍ମତି ପ୍ରକାଶ କଲି। ମୁଁ ଅଗଷ୍ଟ ୧ (୨୦୦୮) ତାରିଖରୁ ମୋର ଦାୟିତ୍ୱ ଗ୍ରହଣ କରିବି ବୋଲି ଜଣାଇ ଦିଆଗଲା।

କଥାବାର୍ତ୍ତାର ପରଦିନ ମୁଁ ଚିଠିଟି ପାଇଲି। ମୁଁ ଖୁବ୍ ଆନନ୍ଦିତ ହେଲି। କାରଣ ମୁଁ ଏମିରିଟସ୍ ଫେଲୋସିପ୍ ପରି ଲଙ୍କେନ୍ଟିଏ ଆଶା କରୁଥିବା ସମୟରେ ମୋତେ ରସଗୋଲା ପ୍ରାପ୍ତିର ଆନନ୍ଦ ମିଳିଲା। ମୁଁ ଈଶ୍ୱରଙ୍କ ପାଖରେ କୃତଜ୍ଞତା ଜଣାଇଲି। ଜୁଲାଇ ମାସରେ ମଧ୍ୟ ଅତିଥି ପ୍ରଫେସର୍ ରୂପେ ମୁଁ ଜାଭିୟର୍‌ରେ ପଢ଼ାଉଥିଲି। ଅଗଷ୍ଟ ଆରମ୍ଭରେ ନୂଆ ଦାୟିତ୍ୱ ନୂଆ ସମ୍ମାନ ମୋତେ ଅଧିକ ଖୁସି ଦେଲା। ଏହି ସମୟରେ ମଧ୍ୟ ମୁଁ ମୋର ବାଣୀବିହାର କ୍ୱାଟର ଛାଡ଼ି ଶୈଳଶ୍ରୀ ବିହାରରେ ନିଜ ଘରକୁ ଚାଲି ଆସିଲି। ଦୁଇ ଦୁଇଟି ଗୃହ ପ୍ରବେଶର ସୁଯୋଗ ଆନନ୍ଦକୁ ଦ୍ୱିଗୁଣିତ କଲା।

ଉତ୍କଳ ବିଶ୍ୱବିଦ୍ୟାଳୟର କ୍ଷତଟି ମୋର ବେଶୀଦିନ ରହିଲା ନାହିଁ। ଈଶ୍ୱରଙ୍କ କରୁଣାର ଏକ ସ୍ପଷ୍ଟ ଝଲକ ମୁଁ ଦେଖି ପାରିଲି ସେପ୍ଟେମ୍ବର ୧୮/୧୯ରେ। ସେଦିନ ମୋର ମନୋବିଜ୍ଞାନ ବିଭାଗର ପୂର୍ବତନ ସହକର୍ମୀ ଓ ଶ୍ରଦ୍ଧେୟ ବନ୍ଧୁ ଶ୍ରୀକାନ୍ତ ଦାଶଙ୍କର ଏକ ଗବେଷଣା ଛାତ୍ରର (ଶୁଭାଶିଷ) ପି.ଏଚ୍.ଡ଼ି.ର ମୌଖିକ ପରୀକ୍ଷା। ଉପସ୍ଥିତ ରହିବା ପାଇଁ ଶ୍ରୀକାନ୍ତ ବାବୁ ଅନୁରୋଧ କରିଥିଲେ। ଅନୁରୋଧ ରକ୍ଷା କରି ମୁଁ ମନୋବିଜ୍ଞାନ ବିଭାଗକୁ ଯାଉଥିଲି।

ଅବସର ଗ୍ରହଣ କରିବା ପରେ ମୁଁ ସେଠାକୁ ଯାଇ ନଥିଲି। ବିଭାଗର କର୍ମଚାରୀ ଅନେକଗୁଡ଼ିଏ ଚିଠି ମୋ ହାତରେ ଟେକି ଦେଲା। ତା' ମଧ୍ୟ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପୁରସ୍କାର ଓ ଫେଲୋସିପ୍ ବିଭାଗର ଚିଠିଟି ସ୍ପଷ୍ଟ ବାରି ହେଉଥିଲା। ମୁଁ ପଢ଼ିବାକୁ ଆରମ୍ଭ କଲି ଏବଂ ଚମତ୍କୃତ ହୋଇ ଉଠିଲି। ଏପ୍ରିଲ ମାସର ଚିଠିର ପୁନରାବୃତ୍ତି। ଅନୁଦାନ ଆୟୋଗ ଜଣାଇଛନ୍ତି ଯେ ମୁଁ ଏମିରିଟସ୍ ଫେଲୋସିପ୍ ପାଇବାରେ କୃତକାର୍ଯ୍ୟ ହୋଇଛି। ମୋତେ ଏ ସମ୍ମାନ ସେପ୍ଟେମ୍ବର ୩୦ ମଧ୍ୟରେ ଗ୍ରହଣ କରିବାକୁ ହେବ। ଏ ହେଉଛି ଦ୍ୱିତୀୟ ଚିଠି। ପ୍ରଥମ ଚିଠିଟି ମୋତେ, ବିଭାଗୀୟ ମୁଖ୍ୟ ଓ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାରଙ୍କୁ ଏପ୍ରିଲ୍ ମାସରେ ଦିଆ ଯାଇଥିଲା।

ମୋର ଜାଣିବାକୁ ବାକି ରହିଲା ନାହିଁ ଯେ ବିଭାଗୀୟ ଓ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଦାୟିତ୍ୱହୀନ ଭାବରେ ମୋ ଚିଠିଟି ମୋ ପାଖରେ ପହଞ୍ଚାଇବାରେ

ଅବହେଳା କରିଛନ୍ତି। ଈଶ୍ୱରଙ୍କ ଦରବାରରେ ମୋ କାମର ଯେ ସ୍ୱୀକୃତି ମିଳିଛି, ଏହି ଭାବନା ମୋତେ ଉଲ୍ଲସିତ କଲା। ମୁଁ କୁଳପତିଙ୍କୁ ଗୋଟିଏ ପ୍ରତିବାଦର ଚିଠି ଲେଖିଲି। ମୁଁ ଚାହିଁଥିଲେ ପ୍ରେସ୍ ଓ କୁଳାଧିପତିଙ୍କ ଦରବାରରେ ଏକ ଆଲୋଡ଼ନ ସୃଷ୍ଟି କରିଥାଆନ୍ତି। କିନ୍ତୁ ଜାଭିୟରର ରିସର୍ଚ୍ଚ ପ୍ରଫେସର୍ ସମ୍ମାନ ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ସମ୍ମାନଜନକ ପତ୍ର ମୋ ଅନ୍ତର୍ଜଗତରୁ ଯେଉଁ ଆନନ୍ଦ ଫଲ୍‌ଗୁ ସୃଷ୍ଟି କଲା, ମୁଁ ତାହାକୁ ପାଣିଚିଆ କରିବାକୁ ଚାହିଁଲି ନାହିଁ।

## ମୁକ୍ତ ପରିବେଶ

ଅଗଷ୍ଟ (୨୦୦୮) ଆରମ୍ଭରୁ ଜାଭିୟର୍ ପରିବେଶରେ ମୋର ନୂତନ ଭୂମିକା ସଂଶ୍ଳିଷ୍ଟ କାର୍ଯ୍ୟ ଆରମ୍ଭ କଲି। ଅନୁଷ୍ଠାନର ନିର୍ଦ୍ଦେଶକଙ୍କ ସହିତ ପ୍ରଥମ ଆଲୋଚନା ସମୟରେ ସ୍ପଷ୍ଟ କରିଦେଇଥିଲି ଯେ ମୁଁ ପ୍ରଶାସନିକ କାର୍ଯ୍ୟର ଭାର ନେବି ନାହିଁ। ମୋର ସବୁତକ ସମୟ ଅଧ୍ୟାପନା ଓ ଗବେଷଣା କାର୍ଯ୍ୟରେ ବିନିଯୋଗ କରିବି। ନିର୍ଦ୍ଦେଶକ ସମ୍ମତି ପ୍ରକାଶ କରିଥିଲେ।

ଜାଭିୟରର ମାନଦଣ୍ଡ ଅନୁଯାୟୀ ପ୍ରତ୍ୟେକ ଅଧ୍ୟାପକଙ୍କୁ ପ୍ରତିବର୍ଷ ଚାରୋଟି କୋର୍ସ ପଢ଼ାଇବାକୁ ହୁଏ। ପ୍ରତି କୋର୍ସ ୩୦ ଘଣ୍ଟାର ଅଧ୍ୟାପନା ଆବଶ୍ୟକ କରେ। କୌଣସି କାରଣରୁ ଏହାଠାରୁ ଅଧିକ ସମୟ ଅଧ୍ୟାପନା କଲେ ସେଥିପାଇଁ ସ୍ୱତନ୍ତ୍ର ପାରିଶ୍ରମିକ ମିଳେ। ଏ ଦୃଷ୍ଟିରୁ କାର୍ଯ୍ୟର ଚାପ ଅଧିକ ନ ଥିଲା। ମନୋବିଜ୍ଞାନ ଶୃଙ୍ଖଳାରେ ମୋର ଅଭିଜ୍ଞତା ସାଂଗଠନିକ ବ୍ୟବହାର (Organizational Behaviour) ପଢ଼ାଇବାରେ ବେଶ୍ ସହାୟକ ହେଲା। ବଳକା ସମୟରେ ମୁଁ ମୋର ଗବେଷଣା କାର୍ଯ୍ୟ ଓ ଲେଖାଲେଖି ତ୍ୱରାନ୍ୱିତ କରିପାରିଲି।

ଜାଭିୟରର ମୁକ୍ତ ପରିବେଶ ମୋତେ ଆନନ୍ଦ ଦେଲା। କୋର୍ସର ଆଭିମୁଖ୍ୟ ଓ ପଠନ ସାମଗ୍ରୀର ପରିକଳ୍ପନା ଓ ସମ୍ପାଦନାର ଦାୟିତ୍ୱ ପୂରାପୂରି ଶିକ୍ଷକଙ୍କର। ଏଥିରେ କେହି ହସ୍ତକ୍ଷେପ କରନ୍ତି ନାହିଁ। ସୁତରାଂ ମାନସିକ ପ୍ରସନ୍ନତା ହରାଇବାର ପ୍ରଶ୍ନ ନାହିଁ।

ପ୍ରଥମ ବର୍ଷ ପରେ ୨୦୦୯ ବେଳକୁ ମୁଁ ଆଉ ଏକ ସହଯୋଗ ଲାଭ କଲି। ଅଧ୍ୟାପନା ପାଇଁ ଆବଶ୍ୟକ ହେଉଥିବା ପାଠ୍ୟ ସାମଗ୍ରୀର କପି ଏବଂ ଅନ୍ୟ ସବୁ ଅଫିସ୍ ସମ୍ପର୍କିତ ସାହାଯ୍ୟ ଯୋଗାଇବା ପାଇଁ ସେକ୍ରେଟାରୀ ବ୍ୟବସ୍ଥା ରହିଥିଲା। ଜଣେ ଜଣେ ସେକ୍ରେଟାରୀ ଚାରି ପାଞ୍ଚ ଜଣ ପ୍ରଫେସରଙ୍କ ସହାୟତା ଯୋଗାଇ ଥାଆନ୍ତି। ମୋର ସେକ୍ରେଟାରୀ ସଂଗୀତା ଖୁବ୍ ଦକ୍ଷ। ମୋ କାମରେ ବିଶେଷ ପ୍ରତିବନ୍ଧକ ନ ଥିଲା। ମୁଁ ଅନୁଷ୍ଠାନରୁ ଆଉ ଗୋଟିଏ ସୁବିଧା ପାଇଲି। ଗବେଷଣା ପାଇଁ କୌଣସି ସହାୟକଙ୍କ ଆବଶ୍ୟକତା ଥିଲେ ଏ ବାବଦରେ ଅନୁଷ୍ଠାନ ବର୍ଷକୁ

ଏକ ଲକ୍ଷ ଟଙ୍କା ଯୋଗାଇ ଦେବାର ବ୍ୟବସ୍ଥା ଥିଲା। ଏହାର ସୁଯୋଗ ନେଇ ମୁଁ ନିବେଦିତା ଦାସ୍‌ଙ୍କୁ ନିଯୁକ୍ତି ଦେଲି।

ନିବେଦିତା ଦାସ କଟକରେ ରହେ। ସେ ତା'ର ସ୍ନାତକ ଶିକ୍ଷା ମନସ୍ତତ୍ତ୍ୱରେ ସମାପ୍ତ କରି ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏମ୍.ଫିଲ୍, କରୁଥିଲା। ବିବାହିତ ହେବା ପରେ ଏମ୍.ଫିଲ୍ ଶିକ୍ଷା ଅସମାପ୍ତ ରହିଲା। ସେ ମନସ୍ତତ୍ତ୍ୱରେ ପି.ଏଚ୍.ଡ଼ି. କରିବା ପାଇଁ ଆଗ୍ରହୀ ବୋଲି ଜାଣିବାକୁ ପାଇଲି। ଯୋଗାଯୋଗ ହେବା ପରେ ମୁଁ ସାହାଯ୍ୟ କରିବାକୁ ରାଜି ହେଲି। କିନ୍ତୁ ଏଥିପାଇଁ ତାକୁ ନିୟମିତ ଭାବରେ ଜାଭିୟର୍ ଆସିବାକୁ ହେବ ଏବଂ ମୋତେ ଗବେଷଣା କାର୍ଯ୍ୟରେ ସାହାଯ୍ୟ କରିବାକୁ ହେବ। ସେ ରାଜି ହେଲା। ମୁଁ ଅନୁଷ୍ଠାନର ଗବେଷଣା ପାଣ୍ଠିରୁ ମାସିକ ସହାୟତା ବ୍ୟବସ୍ଥା କରିଦେଲି। ସେ ତା'ର ନିଜ ଗାଡ଼ିରେ ଯେପରି ଆସିପାରିବ, ତା'ର ବ୍ୟବସ୍ଥା କରାଗଲା।

ଏ ବ୍ୟବସ୍ଥା ଦୁଇଜଣଙ୍କ ପାଇଁ ଉପଯୋଗୀ ଥିଲା। ନିବେଦିତା ଆମ ପରିବାରର ଝିଅଟି ପରି କାର୍ଯ୍ୟ କଲା। ତାଙ୍କ ଘରେ ସମସ୍ତେ ଶ୍ରୀ ଅରବିନ୍ଦ ଓ ଶ୍ରୀ ମା'ଙ୍କ ଆଶ୍ରିତ। ଏପରି ଏକ ଆଧ୍ୟାତ୍ମିକ ପରିବେଶରେ ଜୀବନ ନିର୍ବାହ କରୁଥିବା ବ୍ୟକ୍ତିର ଆଚରଣ ଉତ୍ତମ ହେବା ସ୍ୱାଭାବିକ। ଏତଦ୍‌ବ୍ୟତୀତ ନିବେଦିତାର ଓଡ଼ିଆ ଓ ଇଂରାଜୀ ଭାଷାରେ ଦକ୍ଷତା ଭଲ। କମ୍ପ୍ୟୁଟର ପ୍ରୟୋଗରେ ମଧ୍ୟ ପାରଦର୍ଶିତା ରହିଛି। ଏସବୁ ସମ୍ବଳର ଅଧିକାରୀ ହୋଇ ନିବେଦିତା କୃତିତ୍ୱର ସହିତ ମୋ ତତ୍ତ୍ୱାବଧାନରେ ତା'ର ପି.ଏଚ୍.ଡ଼ି. କାମ ଶେଷ କଲା। ଆମ ଦୁହିଁଙ୍କର କେତେଗୁଡ଼ିଏ ଗବେଷଣାମୂଳକ ଲେଖା ମଧ୍ୟ ଜର୍ଣ୍ଣାଲ୍‌ରେ ପ୍ରକାଶ ପାଇଲା। ନିବେଦିତାର ପି.ଏଚ୍.ଡ଼ି. ଲାଭ ପରେ ମନୋବିଜ୍ଞାନରେ ଏମ୍.ଏ. ଡ଼ିଗ୍ରୀ ହାସଲ କରିଥିବା ଆଦ୍ୟାଶା ମହାନ୍ତି ମୋତେ ଅନୁରୂପ ଭାବରେ ସାହାଯ୍ୟ କରିପାରିଥିଲା।

ଜାଭିୟର୍‌ରେ କ୍ରମଶଃ ମୁଁ ଶିକ୍ଷାଗତ ଓ ଗବେଷଣାଗତ କାର୍ଯ୍ୟ କଳାପ ବିସ୍ତୃତ କରିବାକୁ ଚେଷ୍ଟା କଲି। ୨୦୧୧ ମସିହାରେ ଭାରତ-କାନାଡ଼ା ଶାସ୍ତ୍ରୀ ପରିଷଦର ସହାୟତାରେ ଏକ ଜାତୀୟ ସମ୍ମିଳନୀ ଆୟୋଜନ କଲି। କାନାଡ଼ାରେ ରହୁଥିବା ବିଶିଷ୍ଟ ମନସ୍ତତ୍ତ୍ୱବିଦ୍ ପ୍ରଫେସର୍ ଜଗନ୍ନାଥ ପ୍ରସାଦ ଦାସ ମୁଖ୍ୟ ଅତିଥି ରୂପେ ଅଭିଭାଷଣ ଦେଇଥିଲେ। ସୌଭାଗ୍ୟବଶତଃ କାନାଡ଼ାର ମ୍ୟାକ୍‌ମାଷ୍ଟର ବିଶ୍ୱବିଦ୍ୟାଳୟର ପ୍ରଫେସର ଶ୍ରୀ ଗୋପାଳ ମହାନ୍ତିଙ୍କ ସମେତ ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ।

ଛାତ୍ରଛାତ୍ରୀମାନେ ମୋର ଅଧ୍ୟାପନାର ସାମଗ୍ରୀକୁ କିପରି ଗ୍ରହଣ କରୁଛନ୍ତି ସେ ବିଷୟରେ ମୁଁ ସ୍ଥିର ନିଶ୍ଚିତ ହେବା ପରେ ମୁଁ ଅନ୍ୟ କେତେକ ନୂତନ କୋର୍ସ ପ୍ରଥମ ଥର ପାଇଁ ଆରମ୍ଭ କରିବାର ପ୍ରୟାସ କଲି। ୨୦୧୦ ମସିହାରେ ବ୍ୟକ୍ତିଗତ

ବିକାଶର ସହାୟକ ହେବା ଭଳି ଗୋଟିଏ କୋର୍ସ ବ୍ୟକ୍ତିଗତ ଅଭିବୃଦ୍ଧି (Personal Growth & Development) ଆରମ୍ଭ କଲି। ଆତ୍ମବିଶ୍ୱାସର ଗଠନ, ଆଶାବାଦିତା ଓ ସମନ୍ୱୟଶୀଳତା ପରି ନୂଆ ନୂଆ ଧାରଣାକୁ ପରିଚାଳନା ବିଜ୍ଞାନର ପରିସର ମଧ୍ୟକୁ ଆଣିଲି। ୨୦୧୩-୧୪ ବେଳକୁ ମନସ୍ତାତ୍ତ୍ୱିକ ଉପଦେଶର ଗୁରୁତ୍ୱ ଅନୁଭବ କରି କର୍ମଚାରୀ ଉପଦେଶନ (Employees' Counselling) ନାମକ ଆଉ ଏକ କୋର୍ସ ଅର୍ପଣ କଲି। ଏବେ ମୋର ସଦ୍ୟତମ ପରିକଳ୍ପନା ହେଉଛି ନେତୃତ୍ୱର ସ୍ନାୟୁବିଜ୍ଞାନ (Neuroscience of Leadership)। ସ୍ନାୟୁ ବିଜ୍ଞାନରେ ଏବେ ଯେଉଁ ଅଭୂତପୂର୍ବ ବିକାଶ ଘଟୁଛି, ଆମର ପରିଚାଳନା ବିଜ୍ଞାନର ଛାତ୍ରଛାତ୍ରୀମାନେ ଅପରିଚିତ ରହିବା ଠିକ୍ ନୁହେଁ। ସୁତରାଂ ମୁଁ ଏପରି ଏକ କୋର୍ସ ଗତ ବର୍ଷ ଆରମ୍ଭ କରିଛି। ଏକ ପ୍ରସାରିତ ଦୃଷ୍ଟିଭଙ୍ଗୀ ନେଇ ପରୀକ୍ଷା ନିରୀକ୍ଷା କରିବାର ସାହସ ଏ ମୁକ୍ତ ପରିବେଶରେ ସମ୍ଭବ ହୋଇଛି। ସମୟ, ସହଯୋଗ ଓ ସ୍ୱାଧୀନତା ମୋର କାର୍ଯ୍ୟକୁ ସକାରାତ୍ମକ ରୂପ ରେଖ ଦେବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସୁଖାନୁଭୂତି ମଧ୍ୟ ଦେଇଛି।

## ସ୍ଥିତି ଓ ବିସ୍ତୃତି

ଜାଭିୟରରେ କିଛି ବର୍ଷ କାର୍ଯ୍ୟ କଲା ପରେ ମୁଁ ଏହାର ରୀତିନୀତି ଓ ବିଧିବିଧାନ ସହିତ ବେଶ୍ ପରିଚିତ ହୋଇଗଲି। ମୋର ନିଯୁକ୍ତି ସମୟରେ ମୁଁ କୌଣସି ପ୍ରଶାସନିକ ଦାୟିତ୍ୱ ଗ୍ରହଣ କରିବି ନାହିଁ ବୋଲି କହିଥିଲେ ମଧ୍ୟ ମଝିରେ ସାମୟିକ ଭାବରେ ଆମର ସାଂଗଠନିକ ବ୍ୟବହାର (Organisational Behaviour) ବିଭାଗର ଆବାହକ ଦାୟିତ୍ୱ ନେବା ପାଇଁ ଅନୁରୋଧ କରାଗଲା। ମୁଁ ଏ ଦାୟିତ୍ୱ ଦୁଇ ତିନି ବର୍ଷ ନିର୍ବାହ କଲି।

୨୦୧୩ ମସିହାରେ ଜାଭିୟର ମ୍ୟାନେଜ୍‌ମେଣ୍ଟ ସଂସ୍ଥାର ଏକ ବିରାଟ ଧରଣର ପରିବର୍ତ୍ତନ ଘଟିଲା। ଏହି ଅନୁଷ୍ଠାନ କିଛି ବର୍ଷ ପୂର୍ବରୁ ରାଜ୍ୟ ସରକାରଙ୍କ ବିଧାନସଭା ଅନୁମୋଦିତ ଘରୋଇ ବିଶ୍ୱବିଦ୍ୟାଳୟର ମାନ୍ୟତା ପାଇଁ ପ୍ରୟାସ କରୁଥିଲା। ଏହାର ଫଳ ସ୍ୱରୂପ ୨୦୧୩ ମସିହା ଜୁଲାଇ ମାସରେ ଏହା ବିଶ୍ୱବିଦ୍ୟାଳୟର ମାନ୍ୟତା ପାଇଲା।

ପୁରୀ ଜିଲ୍ଲାର ହରିରାଜପୁର ଅଞ୍ଚଳରେ (ଜଟଣୀଠାରୁ ୭ କି.ମି. ଦୂରବର୍ତ୍ତୀ) ଜାଭିୟର୍ ସିଟି କ୍ୟାମ୍ପସ୍ ନାମକରଣ ନେଇ ୩୫ ଏକର ପରିମିତ ବିରାଟ ପରିସର ମଧ୍ୟରେ ଜାଭିୟର୍ ବିଶ୍ୱବିଦ୍ୟାଳୟର ରୂପ ନେଲା। ନୂଆ ନୂଆ ସ୍କୁଲ ସ୍ଥାପିତ ହେବାକୁ ଆରମ୍ଭ କଲା। ସ୍ୱତନ୍ତ୍ର ଭାବରେ ମାନବ ସମ୍ବଳ ସ୍କୁଲଟି ବିକଶିତ ହେଲା। ମୁଁ ମୁଖ୍ୟତଃ ଏହି ସ୍କୁଲ ସହିତ ସଂଶ୍ଳିଷ୍ଟ ହେଲି। ସୁତରାଂ କ୍ଲାସ ନେବା ପାଇଁ ଏହି ନୂତନ ପରିସରକୁ ଯିବା ଆସିବା କରିବାକୁ ପଡ଼ିଲା।

ଜାଭିୟର୍ ବିଶ୍ୱବିଦ୍ୟାଳୟର ବିକାଶ ପରେ ଦୁଇଟି ବିଶିଷ୍ଟ ଘଟଣା ହେଉଛି ବିଶ୍ୱସ୍ତରୀୟ ସମ୍ମିଳନୀରେ ଯୋଗଦେବା ପାଇଁ ଅଷ୍ଟ୍ରେଲିଆ ଓ କାଲିଫର୍ଣ୍ଣିଆ ଯାତ୍ରା। ଏକ ଅଗ୍ରଣୀ ଅନୁଷ୍ଠାନ ରୂପେ ଜାଭିୟର୍ ଦେଶ ଭିତରର ଓ ବାହାରର ସମ୍ମିଳନୀରେ ଯୋଗଦାନ ଓ ଅଂଶ ଗ୍ରହଣକୁ ଉତ୍ସାହିତ କରିଥାଏ। ଏଥିପାଇଁ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା ରହିଛି।

ଆଲୋଚନା ଚକ୍ର ଓ ସମ୍ମିଳନୀରେ ଅଂଶ ଗ୍ରହଣ ପାଇଁ ଆର୍ଥିକ ସହାୟତା ନେଇ ଜାଭିୟର୍ ମ୍ୟାନେଜ୍‌ମେଣ୍ଟ ସଂସ୍ଥାର ପ୍ରଫେସର୍ ରୂପେ ମୁଁ କେତୋଟି ନୂତନ ସ୍ଥାନକୁ ଯାଇ ପାରିଥିଲି। ଗୋଟିଏ ଥର ପରିବାର ସହ ମୁଁ ରାଜସ୍ଥାନର ଜୟପୁର ସହରର ଆମିଟି ବିଶ୍ୱବିଦ୍ୟାଳୟକୁ ଗଲି। ସମ୍ମିଳନୀ କାର୍ଯ୍ୟ ଶେଷ କରିବା ପରେ ଜୟପୁରର ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ କରିବା ବେଶ୍ ଆନନ୍ଦଦାୟକ ଥିଲା। ବିଶେଷତଃ ଏ ଅଞ୍ଚଳର ବିଭିନ୍ନ ଦୁର୍ଗ ଓ ଐତିହାସିକ ସ୍ଥାନ ଭ୍ରମଣ କରିବାର ଅନୁଭୂତି ବେଶ୍ ସୁଖକର। ଆଜ୍‌ମୀର ଯାଇ ସେଠାର ବହୁ ପୁରାତନ ମୁସ୍‌ଲିମ୍ ପୀଠ ଦେଖିବାର ଅନୁଭୂତି ଏକ ଅନନ୍ୟ ଧରଣର। ସେହିପରି ଜାଭିୟର୍‌ର ଆର୍ଥିକ ସହାୟତା ଫଳରେ ଭେଲୋର୍‌ରେ ଏକ ସମ୍ମିଳନୀରେ ଯୋଗ ଦେବା ସହିତ ଭେଲୋର୍ ନିକଟବର୍ତ୍ତୀ ଶ୍ରୀପୁରମ୍‌ର ସ୍ୱର୍ଣ୍ଣମନ୍ଦିର ଦେଖିବାର ସୁଯୋଗ ମଧ୍ୟ ଏକ ବିଶିଷ୍ଟ ସୁଯୋଗ।

୨୦୧୩ ମସିହାର ଜାଭିୟର୍ ବିଶ୍ୱବିଦ୍ୟାଳୟ ଜନ୍ମ ନେବା ପରେ ଅଷ୍ଟ୍ରେଲିଆର ସିଡ୍‌ନୀ ସହରରେ ଗୋଟିଏ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବାର ସୁଯୋଗ ମିଳିଲା। ଅଞ୍ଜୁ ଓ ମୁଁ ୨୦୧୩ ଜୁଲାଇ ମାସରେ ସିଡ୍‌ନୀ ଗଲୁ। ସମ୍ମିଳନୀଟିରେ ସମାଜ, ପରିବାର ଓ କର୍ମକ୍ଷେତ୍ର ସମ୍ପର୍କରେ ଆଲୋଚନା ହେଉଥିଲା। ବର୍ତ୍ତମାନ ପରିସ୍ଥିତିରେ ପରିବାର ଓ କର୍ମକ୍ଷେତ୍ର କିପରି ପରିବର୍ତ୍ତିତ ହେଉଛି, ତାହାର ରୂପରେଖ ସମ୍ପର୍କରେ ବିଭିନ୍ନ ଦେଶରୁ ଆସିଥିବା ବିଶେଷଜ୍ଞମାନଙ୍କର ମତାମତ ଶୁଣିଲି। କିଛି ସମୟ ପାଇଁ ସିଡ୍‌ନୀ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗକୁ ଗଲି ଏବଂ ସେଠାରେ କେତେକ ଅଧ୍ୟାପକଙ୍କ ସହିତ କଥାବାର୍ତ୍ତା କଲି। ମନସ୍ତତ୍ତ୍ୱ ଓ ନେତୃତ୍ୱ କ୍ଷେତ୍ରରେ କ'ଣ ସବୁ କାର୍ଯ୍ୟ କରା ଯାଉଛି, ତାହାର ଏକ ମୋଟାମୋଟି ଧାରଣା କଲି।

ଜୁଲାଇ ମାସଟି ଅଷ୍ଟ୍ରେଲିଆରେ ଶୀତଋତୁ। ତଥାପି ବାହାରେ ବୁଲାବୁଲି କରିବାର ଆଗ୍ରହ ଥିଲା। ସିଡ୍‌ନୀର ବେଶ୍ ଦୂରରେ ଥିବା ବ୍ଲୁ ମାଉଣ୍ଟେନ୍ ଦେଖିବାକୁ ଗଲୁ। ପାହାଡ଼ ପର୍ବତର ଶୋଭା ବ୍ୟତୀତ ସବୁଜ ବନାନୀକୁ ଯୋଜନାବଦ୍ଧ ଭାବେ ସୁସଜ୍ଜିତ କରି ଯେଉଁ କମନୀୟ ଶୋଭା ରଚନା କରିଛନ୍ତି, ତାହାର ଚମତ୍କାରିତା ଦେଖିଲୁ। ଅଷ୍ଟ୍ରେଲିଆ ଏକ କଙ୍ଗାରୁର ଦେଶ। ଭାବିଥିଲୁ ଅଷ୍ଟ୍ରେଲିଆରେ ପହଞ୍ଚିବା ମାତ୍ରେ କଙ୍ଗାରୁ ଦେଖିବୁ। ମାତ୍ର ଏହା ସମ୍ଭବ ନୁହେଁ। ସିଡ୍‌ନୀଠାରୁ ବହୁ ଦୂରରେ

କେତେକ ସ୍ଥାନରେ କଙ୍ଗାରୁ ଦୃଷ୍ଟିଗୋଚର ହୁଏ। ତେବେ ଆମେ ପେଙ୍ଗୁଇନ୍ ଦେଖିବା ପାଇଁ ଦୁଇଶହ କି.ମି. ଦୂରରେ ଥିବା ଏକ ଦ୍ୱୀପ ପ୍ରିନ୍ସ ଆଇଲାଣ୍ଡକୁ ଗଲୁ। ଯିବା ବାଟରେ ମଧ୍ୟାହ୍ନ ଭୋଜନ ପାଇଁ ଗୋଟିଏ ସ୍ଥାନରେ ଅଟକି ରହିଲୁ। ସେଠାରେ ଗୋଟିଏ ଛୋଟକାଟିଆ ଫାର୍ମ ଥିଲା। ସେଠାରେ ଅଷ୍ଟ୍ରେଲିଆର କେତେକ ଜୀବଜନ୍ତୁ ରହିଥିଲେ। ପରିଦର୍ଶକଙ୍କ ପାଇଁ ଏପରି ବ୍ୟବସ୍ଥା କରାଯାଇଥିଲା। ସେଠାରେ କଙ୍ଗାରୁ ଦେଖିବାର ସୁଯୋଗ ପାଇଲୁ। ନିର୍ଦ୍ଦିଷ୍ଟ ସ୍ଥାନରେ ପେଙ୍ଗୁଇନ୍ ଦେଖିବାର ବ୍ୟବସ୍ଥା କରାଯାଇଛି। ପାଞ୍ଚଟାରୁ ଛ'ଟା ମଧ୍ୟରେ ଦଳଦଳ ପେଙ୍ଗୁଇନ୍ ସମୁଦ୍ର ତଟରେ ଦୃଷ୍ଟିଗୋଚର ହୁଅନ୍ତି। ଭଲ ରୂପେ ଦେଖିବା ପାଇଁ ପରିବେଶ ବିଭାଗ ପୂର୍ବରୁ ଦର୍ଶକମାନଙ୍କ ସ୍ଥାନ ଓ ସମୟ ସୁନିର୍ଦ୍ଦିଷ୍ଟ କରାଯାଇଛି। ପ୍ରକୃତରେ ଏ ଦୃଶ୍ୟଟି ସବୁ ପରିଦର୍ଶକ ମନଭରି ଉପଭୋଗ କରନ୍ତି।

ଅଷ୍ଟ୍ରେଲିଆରୁ ଫେରିବା ସମୟରେ ଆମେ ଗୋଟିଏ ସପ୍ତାହ ସିଙ୍ଗାପୁରରେ କଟାଇଲୁ। ମନୋଜ୍ଞ ପରିବେଶ ଓ ପ୍ରଯୁକ୍ତି ବିଦ୍ୟାର ସଫଳ ରୂପାୟନ ପ୍ରତି ମୁହୂର୍ତ୍ତରେ ଅନୁଭବର ବିଷୟ। ସୌନ୍ଦର୍ଯ୍ୟ ଓ ସଫଳତାର ଦୃଶ୍ୟରାଜି ମନରେ ଦୀର୍ଘଦିନ ଧରି ଅମଳିନ ରହିବ ଏଥିରେ ସନ୍ଦେହ ନାହିଁ।

୨୦୧୬ ମସିହାର ମାର୍ଚ୍ଚ ମାସରେ କାଲିଫର୍ଣ୍ଣିଆ ଭ୍ରମଣର ସୁଯୋଗ ଆଉ ଏକ ବିଶେଷତ୍ୱପୂର୍ଣ୍ଣ ଅନୁଭୂତି। କାନାଡ଼ାରେ ଅବସ୍ଥାନ ସମୟରେ ମୁଁ ଯୁକ୍ତରାଷ୍ଟ୍ର ଆମେରିକାର ପୂର୍ବାଞ୍ଚଳ ଓ ମଧ୍ୟ ପଶ୍ଚିମାଞ୍ଚଳର ବହୁ ସହର ଦେଖିଥିଲି। ୧୯୯୦ ମସିହାରେ ପ୍ରଶାନ୍ତ ମହାସାଗର ତଟବର୍ତ୍ତୀ ହନଲୁଲୁ ଦେଖିବାର ସୌଭାଗ୍ୟ ପାଇଲି। ତଥାପି କାଲିଫର୍ଣ୍ଣିଆ ଦେଖିବାର ଆଶା ମନରେ ଏକ ଅଭାବବୋଧ ହୋଇ ରହି ଯାଇଥିଲା।

୨୦୧୬ ମସିହା ମାର୍ଚ୍ଚମାସରେ ଏପରି ଏକ ସୁଯୋଗ ଆସିଲା। କାଲିଫର୍ଣ୍ଣିଆର ରିଭର୍ ସାଇଡ୍ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆୟୋଜିତ ଏକ ସମ୍ମିଳନୀରେ ଯୋଗ ଦେବା ପାଇଁ ଆମେ କାଲିଫର୍ଣ୍ଣିଆ ଯାତ୍ରା କଲୁ। ଆମ ସହିତ ଆମର ଜଣେ ପାରିବାରିକ ବନ୍ଧୁ ଅରୁନ୍ଧତୀ ବିଶ୍ୱାଳ ମଧ୍ୟ ଯାଇଥିଲେ। ଆମର ଗନ୍ତବ୍ୟ ସ୍ଥାନଟି କାଲିଫର୍ଣ୍ଣିଆର ଲସ୍ ଆଞ୍ଜେଲସ୍ ସହରର ନିକଟବର୍ତ୍ତୀ। ମୁଁ ଓ ଶ୍ରୀମତୀ ବିଶ୍ୱାଳ ରିଭର୍‌ସାଇଡ୍ ବିଶ୍ୱବିଦ୍ୟାଳୟରେ ଆମର ଗବେଷଣା ନିବନ୍ଧ ଉପସ୍ଥାପନ କରିବା ପରେ ବୁଲାବୁଲି କରିବାର ସୁଯୋଗ ପାଇଲୁ। କାନାଡ଼ାରେ ରହୁଥିବା ଆମର ପ୍ରିୟତମ ବନ୍ଧୁ ହେଉଛନ୍ତି ଡଲି ଓ ବୁଟୁବାବୁ। ଡଲିର ସାନ ଭଉଣୀ ମିଲି ଲସ୍‌ଆଞ୍ଜେଲେସ୍‌ରେ ରହେ। ମିଲି ଓ ତାହାର ପତି ଗୋପାଳ ବାବୁ ଶ୍ରଦ୍ଧାର ସହ ଆମକୁ ଲସ୍‌ଆଞ୍ଜେଲେସ୍ ବୁଲାଇଲେ। ବିଶେଷତଃ ହଲିଉଡ୍ ରାସ୍ତାଘାଟରେ ବୁଲିବା, ଓସ୍କାର ପୁରସ୍କାର ପ୍ରଦାନର ସୌଧରେ ବୁଲିବା ଏବଂ ତାରକାମାନଙ୍କ ବାସସ୍ଥାନ

ବ୍ରେଭେରୀ ହିଲ୍‌ର ଶୋଭା ଦେଖିବାର ଅନୁଭବ ମନୋଜ୍ଞ ରହିଥିଲା। ଆମେ ପ୍ରତିଟି ମୁହୂର୍ତ୍ତକୁ ଉପଭୋଗ କଲୁ।

ଲସ୍‌ଆଞ୍ଜେଲେସ୍‌ରୁ ଲାସ୍ ଭାଗାସ୍ ସହରକୁ ଗଲୁ। ଏହା ଆମେରିକାର ବିଶିଷ୍ଟ ମନୋରଞ୍ଜନ କେନ୍ଦ୍ର। ଜୁଆଖେଳ ବା କାସିନୋ ଥିବା ବହୁ ଚାକଚକ୍ୟପୂର୍ଣ୍ଣ ହୋଟେଲ୍ ରହିଛି। ରାତିରେ ଏ ସହରଟି ଏକ ବିଚିତ୍ର ଶୋଭା ଧାରଣ କରେ। ହୋଟେଲ୍ ସିଜର୍ ପାଖରେ କିଛି ବାଦ୍ୟ ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିଲୁ। ଏଠାରେ ଆମେ ଯେଉଁ "ଟ୍ରମ୍ପରେସିଡ଼େନ୍‌ସୀ"ରେ ରହିଥିଲୁ ତାହାର ସବୁ ବ୍ୟବସ୍ଥା ରାଜକୀୟ। ପରେ ଟ୍ରମ୍ପ ଆମେରିକାର ରାଷ୍ଟ୍ରପତି ହେବା ପରେ ଏ ହୋଟେଲ୍‌ର ମାହାତ୍ମ୍ୟ କଥା ମନକୁ ବେଶୀ ପ୍ରଭାବିତ କଲା। ଲାସ୍ ଭାରାସ୍‌ରୁ ପ୍ରାୟ ୩୦୦ କି.ମି. ଦୂରରେ ଥିବା ଗ୍ରାଣ୍ଡ କାନିୟନ୍ ଏକ ଜୀବନବ୍ୟାପୀ ଅନୁଭୂତି। ଗୋଟିଏ ଗାଡ଼ିରେ ସେଠାକୁ ଗଲୁ। କିଲୋମିଟରେ କିଲୋମିଟର ବ୍ୟାପୀ ମୃତ ଆଗ୍ନେୟଗିରିରୁ ବାହାରି ଆସିଥିବା ପର୍ବତମାଳାର ଦୃଶ୍ୟ ପ୍ରକୃତରେ ବିସ୍ମୟକର। ନିଜେ ସ୍ରଷ୍ଟା ତୂଳୀ ଧରି ପର୍ବତରେ ବିଭିନ୍ନ ରଙ୍ଗ ଦେଇଛନ୍ତି। ସ୍ରଷ୍ଟା ହାତୁଡ଼ି ଧରି କୋଣାର୍କରେ ଅଙ୍କିତ ମୂର୍ତ୍ତି ପରି ଏଠାରେ ମଧ୍ୟ କାରୁକାର୍ଯ୍ୟ କରିଛନ୍ତି, ଏପରି ମନେହେଲା। ଭକ୍ତି, ବିସ୍ମୟ ଓ ଆନନ୍ଦରେ ନିଜର ସତ୍ତା ହଜିଗଲା ପରି ମନେହେଲା।

ପରବର୍ତ୍ତୀ ପର୍ଯ୍ୟାୟରେ ଆମେ ସାନ୍‌ଫ୍ରାନ୍‌ସିସ୍କୋ ସହରକୁ ଗଲୁ। ପ୍ରଯୁକ୍ତି ବିଦ୍ୟାର ଚମତ୍କାରୀତା ଛତ୍ରେ ଛତ୍ରେ ପ୍ରତିଫଳିତ। ତା' ସହିତ ପ୍ରାକୃତିକ ଶୋଭାରାଜିର ପ୍ରଭାବ ମଧ୍ୟ କମ୍ ନୁହେଁ। ବିଶେଷତଃ ମୁର୍ ଉଡସ୍ (Moor Woods) ନାମକ ପ୍ରାକୃତିକ ବନାନୀ ମଧ୍ୟରେ ନିରବତା, କମନୀୟତା ଏବଂ ଧ୍ୟାନଶୀଳ ଅବସ୍ଥା ଆଣି ଦେଲା ପରି ମନେହେଲା।

ଶେଷ ପର୍ଯ୍ୟାୟରେ ଆମେ ଟେକ୍‌ସାସ ରାଜ୍ୟକୁ ଗଲୁ। ହ୍ୟୁଷ୍ଟନ୍ ମଧ୍ୟ ଚମତ୍କାର। ବିଶେଷତଃ ବିଜ୍ଞାନ ଓ ଆକାଶ ଯାତ୍ରାର ବିଖ୍ୟାତ ସ୍ଥାନ ନାସାରେ ବୁଲାବୁଲି କରିବାରେ ପୂରା ଦିନଟି କଟିଗଲା। ଟେକ୍‌ସାସ୍‌ରେ ଅବସ୍ଥାନ କାଳରେ ଦୁଇଦିନ ପାଇଁ ଅନ୍ୟତମ ସହର ଡାଲାସ୍ ଗଲୁ। ଡାଲାସ୍‌ର ଏକ ବିଶେଷତ୍ୱ ରହିଛି ଆମେରିକାର ପୂର୍ବତନ ରାଷ୍ଟ୍ରପତି ଓ ବିଶ୍ୱର ଜଣେ ପ୍ରିୟତମ ନେତା ଜନ୍ ଏଫ୍ କେନେଡ଼ୀଙ୍କ ସହ ସମ୍ପୃକ୍ତି। ଏଠାରେ ଜଣେ ଆତତାୟୀ କେନେଡ଼ୀଙ୍କୁ ହତ୍ୟା କରିଥିଲା। ଆମେ ସେ ସ୍ଥାନଟି ପରିଦର୍ଶନ କଲୁ। ମୁଁ ଷଷ୍ଠ ଶ୍ରେଣୀରେ ପଢୁଥିବା ସମୟରେ କେନେଡୀଙ୍କ ମୃତ୍ୟୁ ସମ୍ବାଦ ବିଶ୍ୱରେ ଶୋକାକୁଳ ପରିବେଶ ସୃଷ୍ଟି କରିଥିଲା। ମୁଁ ମଧ୍ୟ ଗଭୀର ଦୁଃଖ ଅନୁଭବ କରିଥିଲି। ସୁତରାଂ ମୁଁ ଡ଼ାଲାସ'ର ସେହି ସ୍ଥାନରେ ଏକ ଭାବମୟ ମିଜାସ୍ ଅନୁଭବ କଲି। ଦେଖିଲି ଯେ ଆମ ଦେଶ

ପରି ସେ ସ୍ଥାନରେ କୌଣସି ସୌଧ ନିର୍ମାଣ କରା ଯାଇନାହିଁ। କେବଳ କେନେଡ଼ୀ ଯେଉଁଠାରେ ଟଳି ପଡ଼ିଥିଲେ, ରାସ୍ତାର ସେହି ସ୍ଥାନରେ ଗୋଟିଏ ଚିହ୍ନ ଅଙ୍କିତ ହୋଇଛି। ଆତତାୟୀ ଯେଉଁ ଗୋଦାମ ଘର ଭିତରୁ ଗୁଳି ମାରିଥିଲା ସେହିଟିକୁ ଗୋଟିଏ କେନେଡ଼ୀ ସଂଗ୍ରହାଳୟରେ ରୂପାନ୍ତର କରାଯାଇଛି। ମୁଁ ସେ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ନତମସ୍ତକ ହେଲି।

ମୋର କାଲିଫର୍ଣ୍ଣିଆ ଯାତ୍ରା ବହୁ ଦୃଷ୍ଟିରୁ ପ୍ରୀତିପଦ ଥିଲା। ଆମ ବାଣୀବିହାରର ଜଣେ ସମ୍ମାନସ୍ପଦ ବ୍ୟକ୍ତିତ୍ୱ ବିଶିଷ୍ଟ ଗାନ୍ଧିବାଦୀ ଓ ରାଜନୀତି ବିଜ୍ଞାନର ପ୍ରାକ୍ତନ ପ୍ରଫେସର ବେଣୁଧର ପ୍ରଧାନଙ୍କ କନିଷ୍ଠ କନ୍ୟା ସିଲି ଘରେ ଆମେ ହ୍ୟୁଷ୍ଟନ୍‌ରେ ରହୁଥିଲୁ। ସିଲି ଓ ତା'ର ପତି ଦିଲ୍ଲୀପ୍ ବାବୁ ଶ୍ରଦ୍ଧାର ସହ ଆମର ଯତ୍ନ ନେଉଥିଲେ। ତାଙ୍କର ଅତିଥି ପରାୟଣତା ବହୁଦିନ ମନେ ରହିବ।

ବିଶ୍ୱର କେତେକ ବିଶିଷ୍ଟ ସ୍ଥାନ ପରିଭ୍ରମଣ କରିଥିଲେ ମଧ୍ୟ ଶାନ୍ତିନିକେତନ ଯିବାର ଏକ ଅଭୀପ୍ସା ସଦାବେଳେ ମୋ ଭିତରେ ରହିଥିଲା। ୨୦୧୬ ମସିହା ସେପ୍ଟେମ୍ବର ମାସରେ ଅଞ୍ଜୁ ଓ ମୁଁ ଶାନ୍ତିନିକେତନ ଗଲୁ। ଶାନ୍ତି ଆଉ ଆନନ୍ଦ ପ୍ରଚୁର ମିଳିଲା। ଫ୍ରଏଡ଼ଙ୍କ ସହିତ ରବୀନ୍ଦ୍ରନାଥଙ୍କ ଫଟୋ ଅପାର ଆନନ୍ଦ ଦେଲା। ଭବିଷ୍ୟତରେ ପୁଣି ଏକ ସୁଯୋଗକୁ ମୁଁ ଅପେକ୍ଷା କରିଛି।

ପୁଣି ଏକ ଭ୍ରମଣଯୋଗ ୨୦୧୭ ମସିହା ନଭେମ୍ବର ମାସରେ ଅଚାନକ ଭାବରେ ଉପସ୍ଥିତ ହେଲା। ଆବୁଧାବିରେ ପରିଚାଳନା ବିଜ୍ଞାନ ସମ୍ପର୍କୀୟ ଏକ ଆନ୍ତର୍ଜାତିକ ସମ୍ମିଳନୀ ଅନୁଷ୍ଠିତ ହେଉଥିବା କଥା ପ୍ରଥମେ ମୋର ଝିଅ‌ାରୀ ଜଣାଇଲା। ଜାଭିୟର୍ ବିଶ୍ୱବିଦ୍ୟାଳୟ ତରଫରୁ ସେଠାକୁ ଯାଇ ଏକ ଗବେଷଣା ସନ୍ଦର୍ଭ ଉପସ୍ଥାପନ କରିବାର ତା'ର ଆଗ୍ରହ ଥିଲା। ଆରମ୍ଭରେ ମୋର ଏ ବିଷୟରେ ଆଗ୍ରହ ନଥିଲା। ଆମେରିକା, କାନାଡ଼ା ଏବଂ ଏତେଗୁଡ଼ିଏ ଇଉରୋପୀୟ ଦେଶ ଦେଖି ସାରିବା ପରେ ସଂଯୁକ୍ତ ଆରବ ରାଷ୍ଟ୍ରସଂଘର (United Arab Emeritus ବା UAE) ଆବୁଧାବି ଓ ଦୁବାଇରେ କ'ଣ ବା ଅଧିକା ଦେଖିବି? ଏପରି ଏକ ମନୋଭାବ କିଛିଟା ଶିଥିଳତା ସୃଷ୍ଟିକଲା। ମାତ୍ର କଳ୍ପନା ପୁଣି ଅନୁରୋଧ ଜଣାଇଲା ଏବଂ ସୌଭାଗ୍ୟକ୍ରମେ ଅଂଶ ଗ୍ରହଣ କରିବା ପାଇଁ ସନ୍ଦର୍ଭ ଦେବାର ଶେଷ ତାରିଖ ଅକ୍ଟୋବର ୩୧ ତାରିଖକୁ ଘୁଞ୍ଚାଇଲା। ଏହାର ସୁଯୋଗ ନେଇ ମୁଁ ମତ ବଦଳାଇଲି ଏବଂ ନଭେମ୍ବର ୧୮ ତାରିଖରେ ମୁଁ, କଳ୍ପନା ଓ ଅଞ୍ଜୁ ଆବୁଧାବି ଯିବା ପାଇଁ ସ୍ଥିର କଲୁ।

ପ୍ରକୃତରେ ଏ ଭ୍ରମଣଟି ଅତ୍ୟନ୍ତ ସୁଖକର ଥିଲା। ପହଞ୍ଚିବା ମୁହୂର୍ତ୍ତରେ ସେ ଦେଶ ଛାଡ଼ିବା ପର୍ଯ୍ୟନ୍ତ କୌଣସି ବିରକ୍ତିକର ଅନୁଭବର ସମ୍ଭାବନା ନ ଥିଲା।

କଠୋର ଶାସ୍ତି ବିଧାନର ଭୟ ହେଉ କିମ୍ବା ଅନ୍ୟ କୌଣସି କାରଣ ହେଉ, ରାସ୍ତାଘାଟ ଦୋକାନ ବଜାରରେ ଦୈନନ୍ଦିନ ଜୀବନ ପୂରାପୂରି ଭୟଶୂନ୍ୟ। ଟାକ୍‌ସିବାଲା ସହିତ ଦରକଷାକଷିର ଝାମେଲା ନାହିଁ କି ଦୋକାନ ବଜାରରେ ଉଚ୍ଚବାଚର କଥାବାର୍ତ୍ତା ନାହିଁ। ଶାନ୍ତ ଓ ପ୍ରୀତିପ୍ରଦ ବାତାବରଣରେ କମନୀୟ ରହିଥିଲା। ଆମେ ଆବୁଧାବିର ପାର୍କ ରୋଟାନା ନାମଧେୟ ଏକ ବିରାଟ ହୋଟେଲ୍‌ରେ ରହିଲୁ। ଆବୁଧାବି ବିଶ୍ୱବିଦ୍ୟାଳୟ ତରଫରୁ ଏଠାରେ ପରିଚାଳନା ବିଜ୍ଞାନର ଏକ ଆନ୍ତର୍ଜାତିକ ସମ୍ମିଳନୀ ହେଉଥିଲା। ମୁଁ ମୋର ବ୍ୟକ୍ତିଗତ ଗବେଷଣା ସନ୍ଦର୍ଭ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଅନ୍ୟ ଏକ ଅଧିବେଶନର ସଭାପତି ଦାୟିତ୍ୱ ତୁଲାଇବାର ସୌଭାଗ୍ୟ ଅର୍ଜନ କଲି।

ଦ୍ୱିତୀୟ ଦିନ ସମ୍ମିଳନୀ ଉଦ୍‌ଯାପିତ ହେବାର ଅଳ୍ପ ସମୟ ପୂର୍ବରୁ ମୁଁ, ଅଞ୍ଜୁ ଓ କଳ୍ପନା ଆବୁଧାବି ଛାଡ଼ିବାକୁ ପ୍ରସ୍ତୁତ ହେଉଥିଲୁ। ଦୁବାଇରେ ରହୁଥିବା ଆମର ଏକ ପ୍ରିୟ ପରିବାର ଶ୍ରୀ ନିତ୍ୟାନନ୍ଦ ଉପାଧ୍ୟାୟ ଓ ତାଙ୍କର ପତ୍ନୀ ଆମ ପାଇଁ କାର୍ ପଠାଇଥିଲେ। ଦୁବାଇ ଆବୁଧାବିରୁ ମାତ୍ର ଦେଢ଼ଘଣ୍ଟାର ରାସ୍ତା। ଛାଡ଼ିବାର ଅବ୍ୟବହିତ ପୂର୍ବରୁ ସମ୍ମିଳନୀର ଆୟୋଜକ ଡ.ସିଂହ ମୋତେ ଅଳ୍ପ ସମୟ ଲାଗି ଅଟକି ଯିବାକୁ ଅନୁରୋଧ ଜଣାଇଲେ। ମୁଁ କାରଣ ପଚାରିବାରୁ ସେ ସ୍ମିତହସି ନିରବ ରହିଲେ। ମୁଁ ଭାବିଲି ଯେ ସେ ସମ୍ଭବତଃ ବିଦାୟକାଳୀନ ଅଧିବେଶନରେ ପ୍ରତିଭାଗୀ ହିସାବରେ ପଦେ ଦୁଇପଦ କହିବାକୁ ଅନୁରୋଧ କରିବେ। ମାତ୍ର ବିଦାୟକାଳୀନ ଅଧିବେଶନରେ ମୋତେ ପୁରସ୍କାର ଗ୍ରହଣ ପାଇଁ ଆହ୍ୱାନ କରାଗଲା। ମୋର ସନ୍ଦର୍ଭଟି ଶ୍ରେଷ୍ଠ ଉପସ୍ଥାପନର ମାନ୍ୟତା ପାଇଛି ବୋଲି ମୁଁ ପ୍ରଶଂସାପତ୍ର ଓ ସମ୍ବର୍ଦ୍ଧନା ଗ୍ରହଣ କଲି। ବିସ୍ମୟ ଓ ଆନନ୍ଦାନୁଭୂତି ମୁଁ ଅନୁଭବ କଲି।

ଆବୁଧାବିର ଏକ ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ ହେଉଛି ଗ୍ରାଣ୍ଡମସ୍କ ବା ବିରାଟ ମସ୍‌ଜିଦ୍। ଏହାର ଶୋଭା ପ୍ରକୃତରେ ଅତୁଳନୀୟ। ଏଠାରେ ପ୍ରବେଶ କରିବା ମାତ୍ରେ ଏକ ମଜାଦାର୍ ଅନୁଭୂତି ହେଲା। ପ୍ରବେଶ କରିବା ପାଇଁ ପୁରୁଷ ଓ ମହିଳାମାନଙ୍କ ପାଇଁ କୋଠରୀ ଆକାରର ପ୍ରବେଶ ଦ୍ୱାର ରହିଛି। ଇସ୍‌ଲାମୀୟ ପରମ୍ପରା ଅନୁଯାୟୀ ପୁରୁଷମାନଙ୍କ ପ୍ରବେଶ ଦ୍ୱାର ଦେଇ ମୁଁ ଏବଂ ଖଡ଼ଗପୁର ଆଇ.ଆଇ.ଟିରୁ ଆସିଥିବା ମୋର ଜଣେ ଛାତ୍ର 'ରବି' ପ୍ରବେଶ କଲୁ। ତା'ପରେ ଆମେ ଦୁଇଜଣ ମସ୍‌ଜିଦ୍‌କୁ ଯିବାର ସିମେଣ୍ଟ ପାହାଚ ଉପରେ ଅଞ୍ଜୁ, କଳ୍ପନା ଓ ଆଇ.ଆଇ.ଟି.ରୁ ଆସିଥିବା ମୋର ଅନ୍ୟତମ ଛାତ୍ରୀ ଅତସୀକୁ ଅପେକ୍ଷା କରି ଚାହିଁଛୁ। ମାତ୍ର ସେମାନଙ୍କର ଦେଖାଦର୍ଶନ ନାହିଁ। ମୁଁ ଦେଖୁଛି ଯେ ଦଳ ଦଳ ବୁର୍ଖା ପିନ୍ଧି ଥିବା ମହିଳା ବିରାଟ ମସ୍‌ଜିଦ୍ ଅଭିମୁଖେ ଆଗେଇ ଯାଉଛନ୍ତି। ମାତ୍ର ଏମାନେ

ଗଲେ କୁଆଡ଼େ? ହଠାତ୍ ମୁଁ ଅନୁଭବ କଲି ଯେ ଜଣେ ଧୂସର ରଙ୍ଗର ବୁର୍ଖା ପିନ୍ଧିଥିବା ମହିଳା ମୋ ଆଡ଼େ ଚାହିଁ ହସୁଛି। ସେ ଆଉ କେହି ନୁହେଁ, ମୋର ପତ୍ନୀ ଅଞ୍ଜୁ। ମୋର ବୁଝିବାକୁ ବାକି ରହିଲା ନାହିଁ ଯେ ମସ୍‌ଜିଦ୍‌ରେ ପ୍ରବେଶ କରୁଥିବା ସମସ୍ତ ମହିଳାମାନଙ୍କୁ କେଶ ସମେତ ଶରୀରକୁ ବୁର୍ଖାବୃତ ରଖିବାକୁ ହେବ। ସ୍ଥାନୀୟ ନିୟମକୁ ସମ୍ମାନ ଜଣାଇ ଆମେ ବିରାଟ ମସ୍‌ଜିଦ୍ ଦିଗରେ ଆଗେଇଲୁ।

ମସ୍‌ଜିଦ୍‌ଟି ପ୍ରକୃତି ଅନିର୍ବଚନୀୟ ଶୋଭାର ଅଧିକାରୀ। ମଝିରେ ଏକ କୃତ୍ରିମ ସୁନ୍ଦର ଜଳାଶୟ ରହିଛି। ସ୍ତମ୍ଭମାନଙ୍କରେ ସୁବର୍ଣ୍ଣର ସାଜସଜ୍ଜା ରହିଛି। ଶୃଙ୍ଖଳିତ ରୀତିରେ ପରିଦର୍ଶକମାନେ ଭ୍ରମଣ କରୁଛନ୍ତି। ଗ୍ରାଣ୍ଡ ମସ୍କ ଦେଖିସାରିବା ପରେ ଅନ୍ୟ ଏକ ଦର୍ଶନୀୟ ସ୍ଥାନ EMIRITOS PALACE ସନ୍ଧ୍ୟା ସମୟରେ ଦେଖିବାକୁ ଗଲୁ। ବୈଭବ ଓ ଗରିମାର ଏକ ଗନ୍ତାଘର। ସୁବର୍ଣ୍ଣର ପ୍ରାଚୁର୍ଯ୍ୟ ଏକ ସାଧାରଣ କଥା, ଏହା ବ୍ୟତୀତ ମନପ୍ରାଣକୁ ଅଭିଭୂତ କଲାଭଳି ସମଗ୍ର ପ୍ରାସାଦଟିରେ ଅନେକ କିଛି ବିଭବ ରହିଛି।

ପରଦିନ ମୁଁ, ଅଞ୍ଜୁ ଓ କଳ୍ପନା ଦୁବାଇ ଯାଇ ଆମର ପ୍ରିୟ ଲୋକ ନିତ୍ୟାନନ୍ଦ ଉପାଧ୍ୟାୟ ଓ ତାଙ୍କର ପତ୍ନୀ ଛୋଟ୍ କୁନିଙ୍କ ଆତିଥ୍ୟ ଗ୍ରହଣ କଲୁ। ସେଦିନ ସନ୍ଧ୍ୟାରେ ଆମେ ଯେଉଁ ଚମତ୍କାରୀତାର ବଳୟ ମଧ୍ୟକୁ ପ୍ରବେଶ କଲୁ, ତାହା ଜୀବନର ଏକ ଅନନ୍ୟ ଅନୁଭବ ହୋଇ ରହିଯିବ। ନିତ୍ୟାନନ୍ଦ ବାବୁ ଆମକୁ MIRACLE CARDENକୁ ନେଇଗଲେ। ପ୍ରକୃତରେ ଏହା ଅବିଶ୍ୱାସ୍ୟ। କିଲୋମିଟରେ କିଲୋମିଟରେ ବ୍ୟାପୀ ବିଭିନ୍ନ ଫୁଲର ଅପୂର୍ବ ସମାରୋହ, ବିଭିନ୍ନ ଧରଣର ସାଜସଜ୍ଜା। ପୁରାଣପଠିତ ଇନ୍ଦ୍ରପୁରୀର ଶୋଭା ସତେ କ'ଣ ଏହାଠାରୁ ଅଧିକ? ଶୁଣିଲୁ ଯେ ଏହି ଉଦ୍ୟାନଟି ମାତ୍ର ଅଳ୍ପ କିଛି ସପ୍ତାହ ପୂର୍ବରୁ ଖୋଲିଛି। ଗ୍ରୀଷ୍ମ ଆଧିକ୍ୟ ଯୋଗୁଁ ଏହା ଏପ୍ରିଲଠାରୁ ପ୍ରାୟ ବନ୍ଦ ହୋଇଯାଏ। ନଭେମ୍ବରରୁ ମାର୍ଚ୍ଚ ମଧ୍ୟରେ ପରିଦର୍ଶକମାନେ ପ୍ରକୃତିର ସୌନ୍ଦର୍ଯ୍ୟ ଏବଂ ମାନବୀୟ କଳାକୌଶଳର ଅପୂର୍ବ ସମନ୍ୱୟ ଦେଖି ଆତ୍ମହରା ହୁଅନ୍ତି। ଆମର ମଧ୍ୟ ଯେଉଁ ଅନୁଭୂତି ହେଲା ତାହା ଚିରାଚରିତ ଇନ୍ଦ୍ରିୟାନୁଭୂତିର ବହୁ ଊର୍ଦ୍ଧ୍ୱରେ।

ଚମତ୍କାରୀତାପୂର୍ଣ୍ଣ ଉଦ୍ୟାନ ବ୍ୟତୀତ ଅନ୍ୟ କେତେକ ଦର୍ଶନୀୟ ସ୍ଥାନ ଦେଖିଲୁ। ବିଶ୍ୱର ସର୍ବୋତ୍ତମ ଅଟ୍ଟାଳିକା "ବୁର୍ଜ ଖଲିଫା" ଦେଖିଲୁ। ଆଳୁ, ବାଇଗଣ ବିକା ହେବାଭଳି ସୁନା ଓ ସୁନା ନିର୍ମିତ ଅଳଙ୍କାରର ବିପଣୀ GOLD SOUKE ଦେଖିଲୁ। ବିସ୍ମୟଥାଳୀରେ ବହୁ ଜିନିଷ ଭରିଗଲା। କିନ୍ତୁ MIRACLE CARDENର ସ୍ମୃତି ଓ ଦୁବାଇର ଭ୍ରମଣପ୍ରୀତି ମନ ପରଦାରେ ଅଳିଭା ହୋଇ ରହିଗଲା।

ଜ୍ଞାଭିୟର୍ ଗବାକ୍ଷ ଏବେ ମଧ୍ୟ ଉନ୍ମୁକ୍ତ। ଏହାର କଳେବର ଓ କାର୍ଯ୍ୟ ପରିସର ପ୍ରତିଦିନ ବୃଦ୍ଧି ପାଇବାରେ ଲାଗିଛି। ମୁଁ ୨୦୦୮ ମସିହାରେ ପ୍ରବେଶ କରିବା ସମୟରେ ଅଧ୍ୟାପକ ସଂଖ୍ୟା ଚାଳିଶ ପଚାଶ ପାଖାପାଖି ଥିବା ସ୍ଥଳେ ବର୍ତ୍ତମାନ ଏକଶହ ଟପିବାକୁ ବସିଲାଣି। ନୂଆ ସ୍କୁଲ ଅନ୍ତର୍ଭୁକ୍ତ ହେଉଛି। ପ୍ରତିବର୍ଷ ନୂଆ ନୂଆ ପିଲାଙ୍କ ସହିତ କ୍ରିୟା ଅନୁକ୍ରିୟା ଏବଂ ନୂତନ ଜ୍ଞାନ ଭଣ୍ଡାର ସହିତ ପରିଚିତ ଜୀବନର ଗତିଶୀଳତାକୁ ବଢ଼ାଇବ ବୋଲି ଆଶା ରଖିଛି।

❖❖

(୩୪)

# ଇଉରୋପ ଏବଂ ଇଉରୋପ

ଉତ୍ତର ଯୌବନରେ ସ୍ମୃତି ଚାରଣ କଲାବେଳେ ପରିଭ୍ରମଣର ଭୂଗୋଳ ଓ ଇତିହାସକୁ ସଜେଇ ରଖିବାକୁ ଇଚ୍ଛାହୁଏ। ମୋର କେମିତି ଉପଲବ୍ଧି ଆସେ ଯେ ମୋ ଦେଶ ମୋତେ ଶିଖାଇଛି ଜୀବନ ଦର୍ଶନ। ବୈଷମ୍ୟ ମଧ୍ୟରେ ଏକତ୍ୱ ଦେଖିବାର କଳା ମୋ ଦେଶ ଅନ୍ୟମାନଙ୍କୁ ଶିଖାଇଛି। ବନ୍ଧୁ ସମୟରେ ବିଶ୍ୱାସର ସଙ୍କଟ ମଧ୍ୟରେ ବିଶ୍ୱାସକୁ ଦୃଢ଼ କରିବାର ମାର୍ଗଦର୍ଶନ ଏ ଦେଶର ବିଶେଷତ୍ୱ। ଅନ୍ୟ ପକ୍ଷରେ ଜୀବନ ଗଠନରେ ଉତ୍ତର ଆମେରିକାର (ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ା) ଅବଦାନ ହେଉଛି କର୍ମଯୋଗର ମାହାତ୍ମ୍ୟ। ଜୀବନରେ ଯେଉଁ କେତୋଟି ଦିନ ଏ ଭୂଖଣ୍ଡରେ ଅତିବାହିତ କରିଛି, ଲୋକମାନଙ୍କର କର୍ମନିଷ୍ଠା, ପରିଶ୍ରମଶୀଳତା, ସମୟାନୁବର୍ତ୍ତିତା ଏବଂ ପେସାଗତ ଦୃଷ୍ଟିଭଙ୍ଗୀ ମୋତେ ଅଭିଭୂତ କରିଛି। ଜୀବନ ଦର୍ଶନ ଓ କର୍ମଶୈଳୀର ସେହି କାନ୍‌ଭାସ୍ ଉପରେ ଇଉରୋପ ମୋତେ ଚିତ୍ରଶିଳ୍ପୀର ସୁନ୍ଦର ଚିତ୍ରାଙ୍କନ ପରି ଅନୁଭୂତ ହୋଇଛି। ସବୁଜିମାର ବିସ୍ତୃତି, ଉଦ୍ୟାନ-ପ୍ରତିମ ପରିବେଶର ପ୍ରାଚୁର୍ଯ୍ୟ ଏବଂ କଳା ସଂସ୍କୃତିର ଝଲକ ମନପ୍ରାଣକୁ ଭିନ୍ନ ଏକ ଅନୁଭବର ସ୍ତରକୁ ନେଇ ଯାଇଛି।

ଇଉରୋପ ମାଟିରେ ପ୍ରଥମ ସ୍ପର୍ଶର ସମୟ ହେଉଛି ୧୯୮୦ ମସିହାର ମଇମାସ। କାନାଡ଼ାର କୁଇନ୍ ବିଶ୍ୱବିଦ୍ୟାଳୟରେ ମୋର ପି.ଏଚ୍.ଡ଼ି. କାର୍ଯ୍ୟ ଶେଷ ହେବାପରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ମୁଁ ଓ ଅଞ୍ଜୁ ଗୋଟିଏ ସପ୍ତାହ ପ୍ୟାରିସ୍‌ରେ ଏବଂ ଗୋଟିଏ ସପ୍ତାହ ଲଣ୍ଡନରେ କଟାଇଥିଲୁ। ଅନ୍ୟତ୍ର ଏହାର ବର୍ଣ୍ଣନା ଦେଉଥିବାରୁ ଏଠାରେ ତାହାର ପୁନରାବୃତ୍ତି କରୁନାହିଁ। ପୁନଶ୍ଚ ୧୯୯୦ ମସିହାର ସେପ୍ଟେମ୍ବର ମାସରେ ପରିବାର ସହ ଦ୍ୱିତୀୟ ଥର କାନାଡ଼ା ଯିବା ସମୟରେ ମଝିବାଟ ଲଣ୍ଡନରେ ଏୟାର୍ ଇଣ୍ଡିଆ ବିଳମ୍ବରେ ପହଞ୍ଚିବାରୁ ପରବର୍ତ୍ତୀ ଏୟାର୍ କାନାଡ଼ା ପ୍ଲେନ୍‌ରେ ଯାଇପାରିନଥିଲୁ। ଗୋଟିଏ ଦିନ ଲଣ୍ଡନରେ କାଟିବାକୁ ହେଲା। ମୋର କନ୍ୟା ପଲ୍ଲୀ (ଭୂମିକା) ଆମ ସହିତ ଗୋଟିଏ ଦିନ ଲଣ୍ଡନ୍ ବୁଲିବାର ସୁଯୋଗ ପାଇଥିବାରୁ ଆମର ଆନନ୍ଦ ବହୁଗୁଣିତ ହୋଇଥିଲା।

ପରବର୍ତ୍ତୀ ପର୍ଯ୍ୟାୟରେ ଇଉରୋପର ଅନ୍ୟ କେତୋଟି ଦେଶ ବୁଲିବାର ସୁଯୋଗ ମିଳିଲା। ଏହା ଇରୋପ୍ରେମକୁ ଅଧିକ ବଢ଼ାଇଦେଲା।

## ବେନେଲକ୍ସ ଭୂଖଣ୍ଡ

ବେଲଜିୟମ୍, ନେଦରଲ୍ୟାଣ୍ଡ (ହଲାଣ୍ଡ) ଏବଂ ଲକ୍ଜେମ୍‌ବର୍ଗ ଦେଶ ତିନୋଟିକୁ ଏକତ୍ର ବେନେଲକ୍ସ ଭୂଖଣ୍ଡ କୁହନ୍ତି। ତିନୋଟି ପୃଥକ୍ ଦେଶ ହେଲେ ମଧ୍ୟ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଯିବାରେ କଟକଣା ନାହିଁ। ଯେ କୌଣସି ଗୋଟିଏ ଦେଶକୁ ଭିସା ପାଇଁ ଆବେଦନ କଲେ ସମଷ୍ଟିଗତ ଭାବରେ ବେନେଲକ୍ସ ଭିସା ମିଳିଥାଏ। ଏହାର ଉପଯୋଗ କରି ତିନୋଟି ଦେଶକୁ ଯିବା ସମ୍ଭବପର ହୁଏ।

୧୯୯୨ ଜୁଲାଇ ମାସରେ ଆନ୍ତର୍ଜାତିକ ବହୁସଂସ୍କୃତି ମନୋବିଜ୍ଞାନ (INTERNATIONAL ASSOCIATION FOR CROSS-CULTURAL PSYCHOLOGY ବା IACCP) ର ଦ୍ୱିବାର୍ଷିକ ସମ୍ମିଳନୀ ବେଲଜିୟମ୍‌ର ଲିଏଜ୍ ସହରରେ ସ୍ଥିର ହୋଇଥିଲା। ସୌଭାଗ୍ୟକ୍ରମେ ସେ ବର୍ଷ IACCP ଏକ ଅଭିନବ ନିର୍ଘୋଷଣ କଲା ଯେ ଏହି ସଂଗଠନ ବିକାଶମୁଖୀ ଦେଶସମୂହର କେତେକ ମନୋବିଜ୍ଞାନୀଙ୍କୁ ସମ୍ମିଳନୀରେ ଯୋଗ ଦେବା ପାଇଁ ଆର୍ଥିକ ସହାୟତା ପ୍ରଦାନ କରିବ। ଏହା ସହିତ ଏହି ମନୋବିଜ୍ଞାନୀମାନେ ସମ୍ମିଳନୀର ପରେ ପରେ ଅନ୍ୟ ଏକ ସ୍ଥାନରେ ସମ୍ମିଳିତ ହୋଇ ଗୋଟିଏ କର୍ମଶାଳାରେ ଯୋଗଦେଇ ପାରିବେ। ମୁଁ IACCPର ସଦସ୍ୟ ହିସାବରେ ଏ ସୂଚନା ପାଇଲି ଏବଂ ମୋର ଆବେଦନ ପତ୍ର ଓ ବ୍ୟକ୍ତିଗତ ବିବରଣୀ ପଠାଇଲି। ସୁଖର କଥା ଯେ ମନୋନୀତ ହୋଇଥିବା ଦଶ ବାର ଜଣ ମନୋବିଜ୍ଞାନୀଙ୍କ ମଧ୍ୟରେ ମୁଁ ସ୍ଥାନ ପାଇଥିଲି। ତଦନୁସାରେ ଜୁଲାଇରେ (୧୯୯୨) ମୁଁ ବ୍ରସେଲ୍ ଅଭିମୁଖେ ଯାତ୍ରା କଲି। ଆୟୋଜକମାନେ ଠିକ୍ ସମୟରେ ଏୟାର୍ ଟିକେଟ୍ ପଠାଇଥିଲେ। ସୁତରାଂ ବିଶେଷ ଅସୁବିଧା ନ ଥିଲା। ପ୍ଲେନ୍ ମଧ୍ୟରେ ବମ୍ବେ ବିଶ୍ୱବିଦ୍ୟାଳୟର ପ୍ରୟୋଗାତ୍ମକ ମନୋବିଜ୍ଞାନର ଅଧ୍ୟାପିକା ମନୀଷା ସେନ୍ ମଧ୍ୟ ଲିଏଜ୍ ଯାଉଛନ୍ତି। ମୋତେ ଖୁସୀ ଲାଗିଲା। ଆମେ ନିର୍ଦ୍ଧାରିତ ସମୟରେ ଲିଏଜ୍‌ରେ ପହଞ୍ଚିବା ପରେ ଜାଣିବାକୁ ପାଇଲୁ ଯେ ଲିଏଜ୍ ବେଶୀ ଦୂର ନୁହେଁ। ପୁଣି ବିମାନ ବନ୍ଦରରୁ ସିଧା ସଳଖ ସବ୍‌ୱେରେ ରେଳଷ୍ଟେସନ୍‌କୁ ଯାଇହେବ ଏବଂ ସେଠାରୁ ରେଳଯୋଗେ ଲିଏଜ୍ ଯିବାକୁ ପଡ଼ିବ। ଏଠାରେ ଇଉରୋପର ରେଳ ବ୍ୟବସ୍ଥା ଇଉରେଲ୍ ସମ୍ପର୍କରେ ସାମାନ୍ୟ ସୂଚନା ଦେବା ଉଚିତ୍ ମନେକରୁଛି।

ସମଗ୍ର ଇଉରୋପରେ ରେଳ ବ୍ୟବସ୍ଥା ଇଉରେଲ୍ ଏକ ସୁନ୍ଦର ସଂଗଠନ। ଇଉରୋପର ଯେ କୌଣସି ସ୍ଥାନରେ ଟିକେଟ୍ କ୍ରୟ କରି ଅନ୍ୟ ସ୍ଥାନକୁ ଯିବାରେ ବାଧା ନାହିଁ। ପ୍ରତି ଷ୍ଟେସନ୍‌ରେ ନିଶ୍ଚିତ ଭାବରେ ଗୋଟିଏ ଦୁଇଟି ସୂଚନା କେନ୍ଦ୍ର ଥାଏ ଏବଂ ସେମାନଙ୍କୁ ଗନ୍ତବ୍ୟ ସ୍ଥଳ ଜଣାଇଲେ ସେମାନେ ଗୋଟିଏ କମ୍ପ୍ୟୁଟର ସିଟ୍‌ରେ ସବୁ ତଥ୍ୟ ଯୋଗାଇ ଦିଅନ୍ତି। ସପ୍ତାହର ଶେଷଦିନ (ଶୁକ୍ର, ଶନି ଓ

ରବିବାର) ଟିକେଟ୍‌ର ଦର କମ୍ ହୁଏ। ପୁଣି ଦଳଗତ ଭାବେ ଯାତ୍ରା କରୁଥିଲେ ଦର ଆହୁରି କମିଯାଏ। ତିନିଜଣିଆ ଦଳ ପାଇଁ ଯେଉଁ ଦେୟ, ପାଞ୍ଚଜଣଇଆ ଦଳ ପାଇଁ ତା'ଠାରୁ କମ୍ ଦେୟରେ ଟିକେଟ୍ ମିଳେ। ଟ୍ରେନ୍‌ର ଡବାଗୁଡ଼ିକ ଖୁବ୍ ପରିଷ୍କାର। ଆଦୌ ଗହଳି ନାହିଁ। ସମୟାନୁବର୍ତ୍ତୀତା ଏତେ ମାତ୍ରାରେ କାର୍ଯ୍ୟକରେ ଯେ ଆମର ଇଉରୋପର ଭ୍ରମଣ କାଳରେ ଦୁଇ ତିନି ମିନିଟ୍ ବିଳମ୍ବ ପାଇଁ ନିର୍ଦ୍ଦିଷ୍ଟ ସମୟରେ ଟ୍ରେନ୍‌ରେ ଯାଇ ନପାରି ପରବର୍ତ୍ତୀ ଟ୍ରେନ୍‌ରେ ଯିବାକୁ ପଡ଼ିଛି। ଅତୀତରେ (୧୯୮୧ ମସିହାରେ) ଲଣ୍ଡନ ଓ ପ୍ୟାରିସ୍‌ରେ ରେଳ ଯାତ୍ରାର ଅନୁଭବ ଥିଲେ ମଧ ପୁନଶ୍ଚ ରେଳଯାତ୍ରା ଆମୋଦପୂର୍ଣ୍ଣ ହୋଇଥିଲା।

ପ୍ରାୟ ଦେଢ଼ ଘଣ୍ଟା ମଧ୍ୟରେ ଆମେ ଲିଏଜ୍‌ରେ ପହଞ୍ଚିଲୁ। ବିଶ୍ୱବିଦ୍ୟାଳୟ ହେଉଛି ସମ୍ମିଳନୀର କେନ୍ଦ୍ର। ଏଠାକୁ ଯାଉଥିବା ସିଟିବସ୍‌ର ନମ୍ବର ପଚାରି କ୍ୟାମ୍ପସ୍‌କୁ ଯିବାର ଅସୁବିଧା ହେଲା ନାହିଁ। ଏଠାରେ ଗୋଟିଏ ଜିନିଷ ମୋ ଦୃଷ୍ଟିରୁ ଅଛପା ଯାଇ ନଥିଲା। ସାଧାରଣତଃ ମୁଁ କୌଣସି ପେସାଦାର ସମ୍ମିଳନୀକୁ ଗଲେ ମୋ ସହିତ ଯଥାସମ୍ଭବ ଛୋଟ ସୁଟ୍‌କେଶ୍‌ଟି ନେଇଥାଏ। ଯିବା ଆସିବାରେ ବିଶେଷ ଅସୁବିଧା ହୁଏ ନାହିଁ। ମୁଁ ଦେଖିଲି ଯେ ମନୀଷା ଏକ ପ୍ରକାଣ୍ଡ ସୁଟ୍‌କେଶ୍ ଧରିଛି (ମୋ ସୁଟ୍‌କେଶ୍‌ର ପ୍ରାୟ ଚାରିଗୁଣ)। ପୁଣି ସେ କହୁଛି ଯେ ତା'ର ସାମାନ୍ୟ ଜ୍ୱର ଅଛି। ଏଥିପାଇଁ ମୁଢ଼ି ଖାଇବା ଭଳି ବାରମ୍ବାର କ୍ରୋସିନ୍ ଖାଉଛି। ମୁଁ ସହାନୁଭୂତିଶୀଳ ହୋଇ ତାକୁ କିପରି ସାହାଯ୍ୟ କରିପାରିବି ବୋଲି ପଚାରିଲି। ମନ ଭିତରେ କିନ୍ତୁ ବେଶ୍ ସାହାସ ଆସିଲା ଯେ ପ୍ରତିବନ୍ଧକ ସତ୍ତ୍ୱେ ସେ ଯଦି ବିଦେଶ ଭୂଇଁରେ ସ୍ୱାଭାବିକ ରହିଛି, ମୁଁ ସଙ୍କୁଚିତ ହେବି କାହିଁକି ?

ଅପରାହ୍ଣ ସନ୍ଧ୍ୟାରେ ଆମେ ବିଶ୍ୱବିଦ୍ୟାଳୟ ପରିସରରେ ଥିବା ହଷ୍ଟେଲରେ ପହଞ୍ଚିଲୁ। ସମ୍ମିଳନୀର ପ୍ରତିନିଧିମାନଙ୍କ ପାଇଁ ଛାତ୍ରଛାତ୍ରୀମାନଙ୍କର ହଷ୍ଟେଲରେ ରହିବା ବ୍ୟବସ୍ଥା ହୋଇଥିଲା। ଖୁସୀ ଲାଗିଲା ଯେ ବେଲଜିୟାନ୍ ଭାଷାରେ ହଷ୍ଟେଲକୁ ହୋମସ୍ କୁହାଯାଏ, ଯାହାର ଅର୍ଥ ହେଉଛି ଘର। କିଛି ସ୍ୱେଚ୍ଛାସେବୀ ଛାତ୍ର ଅତିଥିମାନଙ୍କର ରହିବାର ବନ୍ଦୋବସ୍ତ କରୁଥିଲେ। ପୂର୍ବପ୍ରସ୍ତୁତ ତାଲିକା ଅନୁଯାୟୀ ମୋତେ ନିର୍ଦ୍ଦିଷ୍ଟ କୋଠରୀକୁ ପଠାଇ ଦିଆଗଲା। ମୁଁ ସେଠାରେ ପହଞ୍ଚି ଦେଖିଲି ଯେ ଆଲାହାବାଦ୍ ବିଶ୍ୱବିଦ୍ୟାଳୟର କିଛି ଅଧ୍ୟାପକ ଅଧ୍ୟାପିକା ପାଖାପାଖି କୋଠରୀରେ ରହିଛନ୍ତି। ଏ ବିଶ୍ୱବିଦ୍ୟାଳୟର ଡ.ଜନକ ପାଣ୍ଡେ, ନିଶା ଧାୱାନ୍ ଓ ପୂର୍ଣ୍ଣିମା ମିଶ୍ରଙ୍କ ସହିତ ମୋର ପୂର୍ବରୁ ପରିଚିତି ଥିଲା। ସୁତରାଂ ଆମେ ଏକାଠି ହୋଇ ବୁଲିଯିବାର ଯୋଜନା ପ୍ରସ୍ତୁତ କରିଦେଲୁ।

ସାରା ଇଉରୋପ ଓ ଆମେରିକାରେ ଅଧିକାଂଶ ପେସାଗତ ସମ୍ମିଳନୀ ସାଧାରଣତଃ ଜୁନ୍‌ରୁ ଅଗଷ୍ଟ ମଧ୍ୟରେ ଅନୁଷ୍ଠିତ ହୋଇଥାଏ। ଏ ସମୟଟି ଗ୍ରୀଷ୍ମଋତୁ। ଗ୍ରୀଷ୍ମଋତୁ

ହେଲେ ମଧ୍ୟ ଆମ ଦେଶ ପରି ଗରମ ନ ଥାଏ। ଶୀତର ସରା ନ ଥାଏ। ବିଶେଷ ସୁବିଧା ହେଉଛି ଯେ ଦଶଟା ପର୍ଯ୍ୟନ୍ତ ଦିବାଲୋକ ରହିଥାଏ। ପ୍ରକୃତରେ ସନ୍ଧ୍ୟା (ଆଲୋକର ଅଭାବ) ପ୍ରାୟ ସାଢ଼େ ଦଶ/ଏଗାରଟା ବେଳକୁ ଅନୁଭବ ହୁଏ। ସୁତରାଂ ବାହାରେ ଦୀର୍ଘ ସମୟ ଧରି ବୁଲାବୁଲି କରିବା ସମ୍ଭବ ହୁଏ। ଲିଏଜ୍ ଏତେ ବଡ଼ ନଗର ନୁହେଁ। ଗ୍ରାମାଞ୍ଚଳର ଶାନ୍ତ ପରିବେଶ। ଆମ ଦଳଟି ଆଖପାଖ ଅଞ୍ଚଳ ବୁଲାବୁଲି କରି ଦେଖିଲୁ। ସ୍ଥିରକଲୁ ଯେ ଲିଏଜ୍‌ର ମନୋବିଜ୍ଞାନର କଂଗ୍ରେସ ସରିବା ପରେ ଆମେ ବ୍ରସେଲ୍ (ବେଲ୍‌ଜିୟମ୍‌ର ରାଜଧାନୀ) ଯିବୁ ଏବଂ ସେଠାରୁ ଅନ୍ୟ କେତେକ ଦର୍ଶନୀୟ ସ୍ଥାନ ବୁଲିଯିବା ଅଧିକ ସହଜ ହେବ।

ଲିଏଜ୍‌ରେ ତିନି ଦିନ ଧରି ଆନ୍ତର୍ଜାତିକ ବହୁ ସଂସ୍କୃତି ମନୋବିଜ୍ଞାନ କଂଗ୍ରେସ ଯଥାରୀତି ଅନୁଷ୍ଠିତ ହେଲା। କାର୍ଯ୍ୟସୂଚୀ ଅନୁଯାୟୀ ମୁଁ ମୋର ଗବେଷଣା ସନ୍ଦର୍ଭ ଉପସ୍ଥାପନ କଲି। ଶେଷ ଦିନ ବିରାଟ ଏକ ଭୋଜିରେ ଆପ୍ୟାୟିତ ହେବା ପରେ କଂଗ୍ରେସର କର୍ମକର୍ତ୍ତାମାନେ ଆମକୁ ବିଦାୟ ସମ୍ବର୍ଦ୍ଧନା ଜଣାଇଲେ। ପ୍ରୟୋଗାତ୍ମକ ମନୋବିଜ୍ଞାନର କଂଗ୍ରେସଟି ବ୍ରସେଲ୍‌ରେ। ବ୍ରସେଲ୍‌କୁ ରେଳ ଯୋଗେ ଯିବା ପାଇଁ ପ୍ରସ୍ତୁତ ହେବା ସମୟରେ କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟର ଜନ୍ ବେରୀ ତାଙ୍କ କାର୍‌ରେ ନେଇ ଯିବାର ପ୍ରସ୍ତାବ ଦେଲେ। ଏହା ଏକ ସୁନ୍ଦର ସୁଯୋଗ। ମୁଁ ରାଜି ହେଲି। ପ୍ରଫେସର୍ ବେରୀ ସ୍ଥାନୀୟ ସଂସ୍ଥାରୁ କାରଟି ଭଡ଼ାରେ ନେଇଥିଲେ ଏବଂ ନିଜେ ଡ୍ରାଇଭ୍ କରୁଥିଲେ। ଆମ ସହିତ ଜନ୍ ବେରୀଙ୍କ ଆଉ ଜଣେ ନରୱେରୁ ଆସିଥିବା ଛାତ୍ର ଯୋଗଦେଲେ। ଆମେ ତିନିଜଣ ବ୍ରସେଲ୍‌ରେ ପହଞ୍ଚିଲୁ।

ବ୍ରସେଲ୍‌ରେ ପ୍ରାୟ ସଂଧ୍ୟା ଛ'ଟା ବେଳକୁ ପହଞ୍ଚିଲୁ। ବ୍ରସେଲ୍‌ରେ ଯେଉଁ କଂଗ୍ରେସଟି ଅନୁଷ୍ଠିତ ହେବାକୁ ଯାଉଥିଲା ତାହା ହେଉଛି INTERNATIONAL UNION OF PSYCHOLOGICAL SCIENCE। ଏହି କଂଗ୍ରେସରେ ମୋର ଗୋଟିଏ ଗବେଷଣା ସନ୍ଦର୍ଭ ଉପସ୍ଥାପନ କରିବା ବ୍ୟତୀତ ଗୋଟିଏ ଅଧିବେଶନରେ ପୌରହିତ୍ୟ କରିବାର ଆମନ୍ତ୍ରଣ ରହିଥିଲା। ଜନ୍‌ବେରୀ ତାଙ୍କର ପୂର୍ବ ନିର୍ଦ୍ଧାରିତ ହୋଟେଲ୍‌ରେ ରହିଲେ। ମୋତେ ପରାମର୍ଶ ଦେଲେ ଯେ ମୁଁ ସେଦିନ ସନ୍ଧ୍ୟାରେ କଂଗ୍ରେସର ପରିଚାଳନା କକ୍ଷକୁ ଯାଇ ମୋର ରହିବା ସ୍ଥାନର ଅନ୍ୱେଷଣ କରିବା ପରିବର୍ତ୍ତେ ନରୱେର ସେହି ଛାତ୍ରଙ୍କ ସହିତ ହୋଟେଲ୍‌କୁ ଚାଲିଯିବା ଅଧିକ ଭଲ ହେବ। ପରଦିନ ସକାଳେ ମୁଁ କଂଗ୍ରେସର ନିୟନ୍ତ୍ରଣ ଗୃହକୁ ଯାଇ ମୋ ରହିବା ସ୍ଥାନର ସୂଚନା ପାଇ ପାରିବି। ନରେୱେର ସେହି ଗବେଷକ ଛାତ୍ର ଆଣ୍ଡ୍ର୍ୟୁ ରାଜି ହୋଇ କହିଲା ଯେ ସେ ଗୋଟିଏ ଦୁଇ ଶଯ୍ୟା ବିଶିଷ୍ଟ କୋଠରୀ ରିଜର୍ଭ କରିଛି। ସୁତରାଂ ଦୁଇଜଣ ରହିବାରେ କୌଣସି ବାଧା ନାହିଁ। ଜନ୍ ବେରୀ ଆହୁରି ମଧ୍ୟ

ପ୍ରସ୍ତାବ ଦେଲେ ଯେ ଆମେ ଦୁଇଜଣ ହୋଟେଲ୍‌ରେ ସୁଟ୍‌କେଶ୍ ରଖିବା ପରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ମିଳିତ ହୋଇପାରୁ। ତିନିଜଣ ଏକତ୍ର ସନ୍ଧ୍ୟା ସମୟ ବ୍ରସେଲ୍‌ର ମୁଖ୍ୟ ଛକ ପାଖାପାଖି ସମୟ କାଟିବୁ ଏବଂ ରାତ୍ର ଭୋଜନ ଶେଷ କରି ନିଜ ହୋଟେଲ୍‌କୁ ଫେରିଯିବୁ।

ପ୍ରକୃତରେ ଆମେ ଖୁବ୍ ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ ହୋଇ ଛକ ପାଖକୁ ଚାଲି ଆସିଲୁ। ଛକଟିର ନାମ ଗ୍ରାଣ୍ଡ ପ୍ଲା ବା Big Square (ବଡ଼ ଛକ)। ଏହା ବ୍ରସେଲ୍‌ର କେନ୍ଦ୍ର ସ୍ଥଳରେ ଅବସ୍ଥିତ। ବେଶ୍ ଲୋକାରଣ୍ୟ, ଛକଟି ଏକ ବିରାଟ ବୃତ୍ତ। ଏଥିରୁ ଅନେକଗୁଡ଼ିଏ ଗଳି ବିଭିନ୍ନ ଦିଗକୁ ଗତି କରିଛି। ପ୍ରତିଟି ଗଳି ସୁସଜ୍ଜିତ। ଆଲୋକମାଳାରେ ଦର୍ଶନୀୟ। ସାଧାରଣତଃ ଯୁକ୍ତରାଷ୍ଟ୍ର କିମ୍ବା କାନାଡ଼ାରେ ପ୍ରକୋଷ୍ଠ କିମ୍ବା ପ୍ରାସାଦର ବାହାରେ ରାସ୍ତା ପଟେ ବିଶେଷ କିଛି ଦର୍ଶନୀୟ ବସ୍ତୁ ରଖା ଯାଇ ନଥାଏ। ଯାହାଥାଏ ତାହା କେବଳ ପ୍ରକୋଷ୍ଠ ମଧ୍ୟରେ। ମାତ୍ର ଆମ ଦେଶ ପରି ବେଲ୍‌ଜିୟମ୍‌ରେ ରେଷ୍ଟୁରାଣ୍ଟ ଓ ଦୋକାନ ବାହାରେ ବହୁ ଆକର୍ଷଣକାରୀ ଦ୍ରବ୍ୟ ସଜ୍ଜିତ ରହିଥାଏ। ରେସ୍ତୋରାଂ ହୋଇଥିଲେ ଆକୃଷ୍ଟ କରିବା ପାଇଁ ଲୋଭନୀୟ ଖାଦ୍ୟ ପଦାର୍ଥ ସୁସଜ୍ଜିତ ହୋଇ ରଖା ଯାଇଥିଲା। ଦେଖିବା ପାଇଁ ବେଶ୍ ଆକର୍ଷଣୀୟ। ବୁଲାବୁଲି କରୁଥିବା ସମୟରେ ଜନ୍ ବେରୀ ସୂଚାଇଲେ ଯେ ଗୋଟିଏ ସ୍ଥାନରେ ସିଙ୍ଗଡ଼ା ଭଳି ଗୋଟିଏ ପଦାର୍ଥ ମିଳିଥାଏ। ଆମକୁ ବ୍ରସେଲ୍‌ରେ ସମୋସା ଖୁଆଇବାର ଲୋଭ ଦେଖାଇ ଜନ୍ ବେରୀ ସେ ସ୍ଥାନକୁ ନେଲେ। ଆମେ ସେ ପଦାର୍ଥଟିକୁ ଚାଖିଲୁ। ପ୍ରକୃତରେ ଏକରକମ ସିଙ୍ଗଡ଼ା। ସିଙ୍ଗଡ଼ା ଖାଇବାର ସ୍ମୃତିକୁ ମନେ ପକାଇ ଖୁସୀ ହେଲି। ବୃତ୍ତାକାରର ସେହି ପ୍ରକାଣ୍ଡ ଛକର ମଧ୍ୟ ଭାଗରେ ବସି ରହି ଦୃଶ୍ୟ ଉପଭୋଗ କରିବା ପାଇଁ କେତେକ ଚେୟାର୍ ପଡ଼ିଛି। ଆମେ ତିନି ଜଣ ସେଠାରେ କିଛି ସମୟ ବସି ରହି ଆନନ୍ଦ ଅନୁଭବ କଲୁ। କିଛି ସମୟ ପରେ ରାତ୍ରି ଭୋଜନ ସମାପନ କରି ହୋଟେଲ୍‌କୁ ଫେରି ଆସିଲୁ।

ପରଦିନ ସକାଳୁ ମୁଁ ନିଜର ରହିବା ସ୍ଥାନକୁ ଯିବାକୁ ଇଚ୍ଛା କଲି। ମୁଁ ଆଶ୍ଚର୍ଯ୍ୟ ସହିତ ରହିଥିବା ହୋଟେଲ୍‌ଟି ବଡ଼ ନୁହେଁ, ମାତ୍ର ସୁନ୍ଦର। ଇଉରୋପୀୟ ସବୁ ହୋଟେଲର ନିୟମ ଅନୁଯାୟୀ ସକାଳବେଳା ପ୍ରାତଃଭୋଜନ ଦିଆଯାଏ। ଏଥିପାଇଁ ପୃଥକ୍ କରି ପଇସା ଦେବାକୁ ପଡ଼ି ନଥାଏ। ମୁଁ ଜାଣିଥିଲି ଯେ ବ୍ରସେଲ୍‌ରେ ଓଡ଼ିଶାର ପୂର୍ବତନ ଡି.ପି.ଆଇ. ଓ ସୁବିଖ୍ୟାତ ଇଂରାଜୀ ପ୍ରଫେସର୍ ବିଧୁଭୂଷଣ ଦାସଙ୍କ କନ୍ୟା ପ୍ରାଜ୍ଞ ପାରମିତା ରୁହନ୍ତି। ପ୍ରାଜ୍ଞ ପାରମିତାଙ୍କ ମା' ପ୍ରଫେସର୍ ପ୍ରଭାତ ନଳିନୀ ଦାସ ତାଙ୍କ ପାଇଁ ମୋ ହାତରେ ଚିଠିଟିଏ ଦେଇଥିଲେ। ସୁତରାଂ ମୁଁ ପ୍ରାଜ୍ଞ ପାରମିତାଙ୍କୁ ଫୋନ୍ କଲି। ସେ ମୋ ପାଖରେ ପି.ଏଚ୍.ଡ଼ି. କରୁଥିବା ଜୀତେନ୍ଦ୍ର

ମହାନ୍ତିଙ୍କ ମାମୁଁ ଝିଅ ଭଉଣୀ, ମୋତେ ଚିହ୍ନିଲେ ଏବଂ ଆନନ୍ଦ ପ୍ରକାଶ କଲେ। କୌଣସି ଏକ ବ୍ୟସ୍ତତା ଫଳରେ ସେ ନିଜେ ନ ଆସିଲେ ମଧ୍ୟ ତାଙ୍କର ଡ୍ରାଇଭର ଆସିବ ଏବଂ ମୋତେ ନିର୍ଦ୍ଦିଷ୍ଟ କଂଗ୍ରେସ ପରିସରରେ ପହଞ୍ଚାଇଦେଇ ଚିଠି ନେଇ ଚାଲିଯିବ। ମୁଁ ଆଶ୍ୱସ୍ତ ହେଲି।

ସକାଳ ପ୍ରାୟ ଦଶଟା ସମୟରେ କଂଗ୍ରେସର ମୁଖ୍ୟ ସ୍ଥାନରେ ପହଞ୍ଚିଲି। ପ୍ରାଞ୍ଜ ପାରମିତାଙ୍କ ଡ୍ରାଇଭର୍ ମୋତେ ସେଠାରେ ଛାଡ଼ି ଦେଲେ। ମୋର ରହିବାର ନିର୍ଦ୍ଦିଷ୍ଟ ସ୍ଥାନ ସମ୍ପର୍କରେ ସୂଚନା ସଂଗ୍ରହ କରିବା ସମୟରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗର ବରିଷ୍ଠ ପ୍ରଫେସର୍ ଜି.ସି.ଗୁପ୍ତାଙ୍କ ସହିତ ମୋର ସାକ୍ଷାତ ହେଲା। ଏକା ହଷ୍ଟେଲର ପାଖା ପାଖି କୋଠରୀଦୁଇଟି ଆମକୁ ଦିଆ ଯାଇଥିଲା। ଆମେ ଏକାଠି ଟ୍ୟାକ୍ସି ଧରି ହଷ୍ଟେଲ୍ ଗଲୁ ଏବଂ ସେଠାରେ ରହିଲୁ।

ସେ ଦିନ ଅପରାହ୍ଣରେ ଏହି ଅନ୍ତର୍ଜାତୀୟ କଂଗ୍ରେସ ଉଦ୍‌ଘାଟନ ହେଲା। ବିରାଟ ସମାବେଶ। ରାଜକୀୟ ଠାଣୀରେ ବ୍ୟାଣ୍ଡ୍‌ବାଦ୍ୟ ସହ ରିଫ୍ରେସ୍‌ମେଣ୍ଟ ଓ ପାନୀୟ ବିତରଣ କରାଗଲା। ପ୍ରଥମ ଉଦ୍‌ଘାଟନୀ ଅଧିବେଶନଟି ଯେଉଁ ପ୍ରକାଣ୍ଡ ହଲ୍‌ରେ ଅନୁଷ୍ଠିତ ହେଉଥିଲା ତାହାର ନାମ ଆଗୋରା (Agora)। ଲୋକମାନେ ଇଚ୍ଛା କଲେ ତାଙ୍କ ରୁଚି ଅନୁଯାୟୀ ଅନ୍ୟ ଭାଷାରେ ଭାଷଣ ଶୁଣି ପାରିବେ। ପ୍ରବେଶ ସମୟରେ ଇୟରଫୋନ୍ ସଂଗ୍ରହ କରିବାକୁ ହେବ। ବେଲ୍‌ଜିୟମ୍‌ରେ ମୁଖ୍ୟତଃ ତିନୋଟି ଭାଷା ବ୍ୟବହୃତ ହୁଏ: ବେଲ୍‌ଜୀୟାନ୍, ଫରାସୀ ଓ ଜର୍ମାନ୍ ଭାଷା। କିଛି କିଛି ଲୋକ ଇଂରାଜୀ ଜାଣନ୍ତି। ଭାଷାରେ ବିଶେଷ ଅସୁବିଧା ହେଉ ନଥାଏ।

ଉଦ୍‌ଘାଟନର ପରଦିନ ମୋର ଗବେଷଣା ସନ୍ଦର୍ଭ ଉପସ୍ଥାପନ ଓ ଗୋଟିଏ ଅଧିବେଶନର ପୌରହିତ୍ୟ ଦାୟିତ୍ୱ ସମାପନ ପରେ ହାଲୁକା ଅନୁଭବ କଲି। ଆଲାହାବାଦ୍‌ରୁ ଆସିଥିବା ପ୍ରଫେସର୍ ନିଶା ଧାୱନ ଓ ତାଙ୍କର ଅନ୍ୟ କେତେକ ସହକର୍ମୀଙ୍କ ସହିତ ଏକଜୁଟ୍ ହୋଇ ବୁଲି ଯିବାର ମସୁଧା ହେଲା। ଆମ ଦଳର ସମସ୍ତେ ପ୍ରାୟ ପାଖାପାଖି ବୟସର ହୋଇଥିବାରୁ ଭାବବିନିମୟରେ ବାଧ ନଥିଲା। ଗୋଟିଏ ପୁରାଦିନ ଲକ୍‌ଜେମ୍‌ବର୍ଗ ଓ ଅନ୍ୟ ଗୋଟିଏ ପୁରାଦିନ ହଲାଣ୍ଡର ଆମଷ୍ଟରଡାମ୍ ଯିବା ପାଇଁ ସ୍ଥିର କରାଗଲା।

ଆମେ ଟ୍ରେନ୍‌ରେ ଲକ୍‌ଜେମ୍‌ବର୍ଗ ଯାତ୍ରା କରି ସେଠାରେ ବୁଲାବୁଲି କରିବାର ଯୋଜନା କଥା କେତେକ ବରିଷ୍ଠ ପ୍ରଫେସର୍‌ଙ୍କ କାନରେ ପଡ଼ିଲା। ସେମାନେ ଆମ ସହିତ ଯିବା ପାଇଁ ଇଚ୍ଛା ପ୍ରକାଶ କଲେ। ସୁତରାଂ ଚାରିଜଣିଆ ଦଳ ସ୍ଥାନରେ ସାତ ଜଣିଆ ଦଳଟି ରୂପ ନେଲା। ବରିଷ୍ଠ ପ୍ରଫେସର୍‌ମାନଙ୍କ ମଧ୍ୟରେ ପ୍ରଫେସର୍ ଜି.ସି. ଗୁପ୍ତା (ଦିଲ୍ଲୀ) ଜନକ ପାଣ୍ଡେ (ଆଲାହାବାଦ) ଏବଂ ଜୟବଲ୍ଲଭ ସିହ୍ନା (ପାଟ୍‌ନା)

ରହିଥିଲେ। ମୋ ବ୍ୟତୀତ ଦଳରେ ଆଲାହାବାଦ୍‌ର ନିଶା ଧାୱନ୍, କବିତା ଚୌଧୁରୀ ଏବଂ ପୂର୍ଣ୍ଣିମା ମିଶ୍ର ରହିଥିଲେ।

ଲକ୍‌ଜେମ୍‌ବର୍ଗ ଦେଶଟି ବଡ଼ ନୁହେଁ, କିନ୍ତୁ ସୌନ୍ଦର୍ଯ୍ୟରେ ଭରପୂର। ଶୀତର ପ୍ରାଦୁର୍ଭାବ କିମ୍ବା ରୌଦ୍ରର ଯନ୍ତ୍ରଣା ନ ଥିବାରୁ ଧୀରେ ଧୀରେ ଚାଲି ଚାଲି ବୁଲିବାକୁ ଭଲ ଲାଗୁଥିଲା। ଦୀର୍ଘ ସମୟ ଧରି ଗୋଟିଏ କମନୀୟ ଉଦ୍ୟାନରେ ବୁଲିବା ପରି ମନେ ହେଉଥାଏ। ବେଶ୍ କେତୋଟି ଦର୍ଶନୀୟ ସ୍ଥାନ ଦେଖିବା ପରେ ରାତି ଏଗାରଟା ବେଳକୁ ହଷ୍ଟେଲ୍‌କୁ ଫେରି ଆସିଥିଲୁ। ଗୋଧୂଳି ସମୟ ପରି ଲାଗୁଥାଏ। ବିଶେଷ କ୍ଳାନ୍ତି ନ ଥାଏ।

ତା'ପର ଦିନର ଆନନ୍ଦ ଅପେକ୍ଷାକୃତ ଅଧିକ ଥିଲା। ବରିଷ୍ଠମାନେ ଆମ ସହିତ ନ ଥିଲେ। ଆମେ ଜାଣିଥିଲୁ ଯେ ହଲାଣ୍ଡର ମୁଖ୍ୟ ନଗର ଆମଷ୍ଟରଡାମ୍ ଯିବା ପାଇଁ ବ୍ରସେଲ୍‌ରୁ ପ୍ରତି ଘଣ୍ଟାରେ ଟ୍ରେନ୍ ଯାଉଛି। ଇଉରୋପର ଦେଶଗୁଡ଼ିକ ଛୋଟ ଛୋଟ ଭୂଖଣ୍ଡ। ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଗଲାବେଳେ ଭାରତର ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଗଲା ପରି ଅନୁଭୂତ ହୁଏ। ଆମେ ଜାଣିଥିଲୁ ଯେ ପ୍ରାୟ ଦେଢ଼ଘଣ୍ଟା ଦୁଇଘଣ୍ଟା ମଧ୍ୟରେ ଆମେ ଆମଷ୍ଟରଡାମ୍‌ରେ ପହଞ୍ଚିଯିବୁ। ମାତ୍ର ପ୍ରାତଃ ଭୋଜନ ଶେଷ କରି ଷ୍ଟେସନ୍‌ରେ ଦୁଇ ମିନିଟ୍ ବିଳମ୍ବରେ ପହଞ୍ଚିବା ପରେ ଜାଣିଲୁ ଯେ ଟ୍ରେନ୍ ଚାଲି ଯାଇଛି। ବିଶେଷ ଅସ୍ୱସ୍ତି ନଥିଲା। ଘଣ୍ଟାଏ ପରେ ପରବର୍ତ୍ତୀ ଟ୍ରେନ୍‌ରେ ଆମଷ୍ଟରଡାମ୍ ଯାତ୍ରା କଲୁ।

ହଲାଣ୍ଡ ବା ନେଦରଲ୍ୟାଣ୍ଡ ଦେଶଟି ସମୁଦ୍ରର ପାର୍ଶ୍ୱବର୍ତ୍ତୀ ଦେଶ। ବନ୍ଧ ଦିଆଯାଇ ସମୁଦ୍ରକୁ ଅଲଗା କରାଯାଇଛି। ଦେଶଟି ନିମ୍ନଭାଗରେ ରହିଛି। ସମୁଦ୍ରର କୂଳେ କୂଳେ ବହୁ ପବନଚାଳିତ କଳମାନ ରହିଛି। "ବନ୍ଧ" ବା ଡ୍ୟାମ୍ ଶବ୍ଦଟି ହଲାଣ୍ଡ୍‌ବାସୀ ବା ଡଚ୍‌ମାନଙ୍କ ଜୀବନଧାରାର ଏକ ଅବିଚ୍ଛେଦ୍ୟ ଅଂଗ। ବହୁ ବଡ଼ ବଡ଼ ସହରର ନାମର ଶେଷ ଭାଗଟି ଡ୍ୟାମ୍ (ଯଥା:-ଆମଷ୍ଟର୍‌ଡାମ୍, ରୋଟର୍‌ଡାମ୍ ଇତ୍ୟାଦି)। ରୋଟର୍‌ଡାମ୍ ହୀରା ବ୍ୟବସାୟ ପାଇଁ ପ୍ରସିଦ୍ଧ। ବାଟରେ ଟ୍ରେନ ମଧ୍ୟରୁ ଶୋଭା ଉପଭୋଗ କରି ପ୍ରାୟ ଘଣ୍ଟାଏ ଦେଢ଼ ଘଣ୍ଟା ମଧ୍ୟରେ ଆମେ ଆମଷ୍ଟର୍‌ଡାମ୍‌ରେ ପହଞ୍ଚିଲୁ। ପୂର୍ବରୁ ଆମକୁ ସୂଚନା ଦିଆ ଯାଇଥିଲା ଯେ ଷ୍ଟେସନ୍‌ରୁ ବାହାରିବା ମାତ୍ରେ ଭ୍ରମଣକାରୀମାନଙ୍କ ପାଇଁ ନୌବିହାର ପାଇଁ ଟିକେଟ୍ ମିଳିପାରିବ। ଡଚ୍‌ମାନଙ୍କର ମୁଖ୍ୟ ଭାଷା ଡଚ୍ ହେଲେ ମଧ୍ୟ ଅଧିକାଂଶ ବ୍ୟକ୍ତି ଇଂରାଜୀ ବୁଝି ପାରନ୍ତି। ସୁତରାଂ ଭାବର ଆଦାନପ୍ରଦାନରେ କୌଣସି ଅସୁବିଧା ହେଉ ନଥାଏ।

କେବଳ ଆମଷ୍ଟର୍‌ଡାମ୍ ନୁହେଁ, ଅଧିକାଂଶ ଇଉରୋପୀୟ ସହରମାନଙ୍କର ଦର୍ଶନୀୟ ସ୍ଥାନ ସବୁ ପରିଦର୍ଶନ କରିବାର ମୁଖ୍ୟ ଓ ସହଜ ବାଟ ହେଉଛି

ନୌବିହାର। ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ସବୁକୁ ନଦୀ କିମ୍ୱା ବିରାଟ ଏକ କେନାଲ୍ ଦ୍ୱାରା ସଂଯୁକ୍ତ କରାଯାଉଛି। କେନାଲ୍‌ରେ ସକାଳ ଛ'ଟାରୁ ସନ୍ଧ୍ୟା ଛ'ଟା ପର୍ଯ୍ୟନ୍ତ ଏକାଧିକ କମ୍ପାନୀର ନୌକା ବୃତ୍ତାୟିତ ଗତିରେ ବୁଲୁଥାଏ। ଜଣେ ପରିଦର୍ଶନକାରୀ ଯେ କୌଣସି ଗୋଟିଏ ସ୍ଥାନରେ ଗୋଟିଏ କମ୍ପାନୀର ଟିକେଟ୍ କିଣି ନୌକାରେ ବସିବେ। ନୌକାଟି ଗୋଟିଏ ଷ୍ଟପେଜ୍‌ରୁ ଅନ୍ୟ ଷ୍ଟପେଜ୍‌କୁ ଯାଇ ସେଠାରେ ଓହ୍ଲାଇ ପଡ଼ିବେ ଏବଂ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଦର୍ଶନୀୟ ସ୍ଥାନସବୁ ଦେଖିବାର ସୁଯୋଗ ପାଇବେ। ଦର୍ଶନୀୟ ସ୍ଥାନ ପାଇଁ ଟିକେଟ୍ ବ୍ୟବସ୍ଥା ରହିଥିଲେ ସେଠାରେ କ୍ରୟ କରିବାର ଆବଶ୍ୟକତା ନାହିଁ, କାରଣ ବୋଟ୍‌ର ଟିକେଟ୍ ସହିତ ଏହା ମିଶି ଯାଇଛି। ଦର୍ଶନୀୟ ସ୍ଥାନ ଦେଖିବା ପରେ ପୂର୍ବ ଷ୍ଟପେଜ୍‌କୁ ଫେରି ଆସିବେ ଏବଂ ସେହି କମ୍ପାନୀର ନୌକାରେ ବସିବେ। ନୌକାଟି ପରବର୍ତ୍ତୀ ଷ୍ଟପେଜ୍‌କୁ ଗତି କରିବ ଏବଂ ପରିଦର୍ଶକ ସେଠାରେ ଓହ୍ଲାଇ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଦର୍ଶନୀୟ ସ୍ଥାନ ଦେଖିବେ। ଏହିପରି ଭାବରେ ସକାଳ ଛ'ଟାରୁ ସନ୍ଧ୍ୟା ଛ'ଟା ପର୍ଯ୍ୟନ୍ତ ପରିଦର୍ଶକ ନିଜର ରୁଚି ଅନୁଯାୟୀ ଦର୍ଶନୀୟ ସ୍ଥାନ ଦେଖିବେ। ବିଳମ୍ୱରେ ଆରମ୍ଭ କରି ଛ'ଟା ପୂର୍ବରୁ ଯାତ୍ରା ଶେଷ କରି ପାରିଲେ, ସେଥିରେ କୌଣସି ବାଧା ନାହିଁ। ପ୍ରତି ଷ୍ଟପେଜ୍‌ରେ କମ୍ପାନୀର ନୌକାଟି କେତେବେଳେ ପହଞ୍ଚିବ ଏବଂ କେତେବେଳେ ଛାଡ଼ିବ, ତାହା ଟିକେଟ୍‌ରେ ଲେଖା ହୋଇଥାଏ। ନୌକାଟି ବଡ଼ ଏବଂ ସୁଦୃଶ୍ୟ। ପୁଣି ସ୍ୱୟଂଚାଳିତ ପ୍ରକ୍ରିୟାରେ ନୌକାଟିକୁ କାଚ ପରଦାରେ ଆବୃତ କରାଯିବା ସମ୍ଭବ ହୋଇଥିବାରୁ ଖରା ବର୍ଷାର ବିଶେଷ ଅସୁବିଧା ନ ଥାଏ।

ସେହି ପ୍ରକ୍ରିୟାରେ ଆମର ଚାରିଜଣିଆ ଦଳଟି ଆମଷ୍ଟରଡାମ୍‌ର ମୁଖ୍ୟ ସ୍ଥାନସବୁ ଦେଖିନେଲୁ। ସେଠାର ମୁଖ୍ୟ ମିଉଜିୟମ୍ ବା ସଂଗ୍ରହାଳୟର ନାମ ହେଉଛି ରିଜ୍। ରିଜ୍ ସଂଗ୍ରହାଳୟରେ ବହୁ ଦର୍ଶନୀୟ ବସ୍ତୁ ରହିଥିଲେ ମଧ୍ୟ ବହୁ ପରିଦର୍ଶକ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରୁଣ୍ଡ ହେଉଥିଲେ। ତାହାର ନାମ ହେଉଛି NIGHT WATCHMAN। ଏହା ଗୋଟିଏ ବିରାଟ ଆକାରର କାନ୍‌ଭାସ୍ ଚିତ୍ର। ଏହାକୁ ଏପରି ସ୍ଥାନରେ ରଖା ଯାଇଛି ଯେ ସମ୍ମୁଖର ବାତାୟନ ଦେଇ ଆସୁଥିବା ଆଲୋକ ସୂର୍ଯ୍ୟଙ୍କର ଅବସ୍ଥିତି ଅନୁଯାୟୀ ବୃଦ୍ଧି ପାଇଲେ ଏହା ଏକ ପ୍ରକାର ଦିଶେ। ପୁଣି ଅପରାହ୍ଣ/ସନ୍ଧ୍ୟା ଓ ରାତିରେ ବାହାର ଆଲୋକ କମିଗଲେ ମଧ୍ୟ ଏହା ଉଜ୍ଜ୍ୱଳତା ବୃଦ୍ଧି ପାଏ। ଏହି ବିସ୍ମୟକର ଚିତ୍ରଟିକୁ ଦେଖିବା ପାଇଁ ଅଗଣିତ ଲୋକ ସେଠାରେ ରୁଣ୍ଡ ହୁଅନ୍ତି। ଆମଷ୍ଟରଡାମ୍‌ର ଅନ୍ୟ ସବୁ ସ୍ଥାନ ଦେଖି ରାତି ଏଗାରଟା ବେଳକୁ ବ୍ରସେଲ୍ ଫେରି ଆସିଲୁ।

ବ୍ରସେଲ୍ ବେଲ୍‌ଜିୟମ୍‌ର ରାଜଧାନୀ। ଏହାର ବିଗ୍ ସ୍କୋୟାର୍ କୁହାଯାଉଥିବା ଛକ ପାଖାପାଖି ସଂଗ୍ରହାଳୟ ସମେତ କେତେକ ଦର୍ଶନୀୟ ସ୍ଥାନ ରହିଛି। ବ୍ରସେଲ୍

ସହରର ଅନ୍ୟ ସବୁ ସ୍ଥାନକୁ ଯିବା ପାଇଁ ସମୟର ଅସୁବିଧା ଥିଲା। ତେବେ ବିରାଟ ଛକର ପାଖାପାଖି "ଶିଶୁ (BABY)" ଦେଖିବା ପାଇଁ ଅନେକ ଲୋକ ଯାଉଥିବାରୁ ଆମ୍ଭେମାନେ ମଧ୍ୟ ଗଲୁ। ସେଠାରେ ପହଞ୍ଚି ଯାହା ଦେଖିଲୁ ତାହା ବିଶେଷ ଭାବରେ ଆମ ମନରେ ପ୍ରଭାବ ପକାଇଲା ନାହିଁ। ଦେଖିଲୁ ଯେ ଗୋଟିଏ ଗମ୍ବୁଜାକାର କଂକ୍ରିଟ ଖମ୍ବ ଉପରେ ଗୋଟିଏ ଶିଶୁର ମୂର୍ତ୍ତି ରହିଛି। ଚାରିଦିଗ ସରୁ ତାରରେ ଆବୃତ୍ତ କରାଯାଇଛି। ତେବେ ଗୋଟିଏ ପ୍ରବେଶ ଦ୍ୱାର ରହିଛି। ଶିଶୁ ମୂର୍ତ୍ତିର ମୂତ୍ରନଳୀରୁ ପାଣି ଅନବରତ ବହି ଚାଲିଛି। ଦେଖଣାହାରୀ ଲୋକମାନେ ଧାଡ଼ି ବାନ୍ଧି ପ୍ରବେଶ ଦ୍ୱାର ଦେଇ ମୂର୍ତ୍ତି ପାଖକୁ ଯାଉଛନ୍ତି ଏବଂ ଶିଶୁଟି ପିନ୍ଧିଥିବା ପୁରୁଣା ପୋଷାକ କାଢ଼ି ଦେଇ ସେମାନେ ଆଣିଥିବା ନୂତନ ପୋଷାକ ପିନ୍ଧାଉଛନ୍ତି। ଏପରି ପୋଷାକ ପରିବର୍ତ୍ତନ କରିବାର ବିଧି ରହିଛି ବୋଲି ଆମେମାନେ ଜାଣିଥିଲେ ମଧ୍ୟ ନୂତନ ଶିଶୁପୋଷାକ କିଣି ନଥିବାରୁ ଆମ୍ଭେମାନେ ଧାଡ଼ିରେ ଯାଇ ନଥିଲୁ। ଦୂରରୁ ଏ ଦୃଶ୍ୟଟି ଦେଖି ଫେରିଲି। ସମ୍ଭବତଃ ଏ ବିଧି ପଛରେ କିଛି କିମ୍ବଦନ୍ତୀ କିମ୍ବା କାହାଣୀ ରହିଥିବ ହୁଏତ। ଏ ବିଷୟରେ ଆମ୍ଭେମାନେ ବିଶେଷ ଅନୁସନ୍ଧାନ କରି ନଥିଲୁ।

## ଜର୍ମାନୀ ଓ ସ୍ୱେଡ଼େନ୍

ଜର୍ମାନୀ ପରିଭ୍ରମଣ କରିବାର ସୁଯୋଗ ମୋ ଭାଗ୍ୟରେ ଦୁଇ ଦୁଇଥର ଆସିଥିଲା। ବ୍ରସେଲ୍‌ରେ ଅନ୍ତର୍ଜାତୀୟ ମନୋବିଜ୍ଞାନ କଂଗ୍ରେସ ସରିବା ପରେ ଜର୍ମାନୀର ବର୍ଲିନଠାରେ ଆଉ ଗୋଟିଏ ସୁନ୍ଦର କାର୍ଯ୍ୟକ୍ରମ (ଅଗଷ୍ଟ ୧୯୯୨) ଅପେକ୍ଷା କରିଥିଲା। ଲିଏଜ୍ କଂଗ୍ରେସର ଆୟୋଜକ INTERNATIONAL ASSOCIATION FOR CROSS-CULTURAL PSYCHOLOGY/IACCP ବିକାଶମୁଖୀ ଦେଶମାନଙ୍କରେ କାର୍ଯ୍ୟ କରୁଥିବା ମନୋବିଜ୍ଞାନୀମାନଙ୍କ ପାଇଁ ଗୋଟିଏ କର୍ମଶାଳାର ଆୟୋଜନ କରିଥିଲେ। ଏଥିପାଇଁ ସେମାନେ ଆର୍ଥିକ ସହାୟତା ପ୍ରଦାନ କରିଥିଲେ। ପ୍ରତିଭାଗୀଙ୍କ ସଂଖ୍ୟା କୋଡ଼ିଏ ପଚିଶ ମଧ୍ୟରେ ସୀମିତ ଥିଲା। ପୂର୍ବରୁ ଏକ ଚୟନ ପ୍ରକ୍ରିୟାରେ ପ୍ରତିଭାଗୀଙ୍କୁ ମନୋନୀତ କରାଯାଇଥିଲା। ଆମ ଦେଶର ପ୍ରତିନିଧି ହିସାବରେ ଆଲାହାବାଦର ନିଶା ଧାୱନ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ମୁଁ ଏଥିରେ ସ୍ଥାନ ପାଇଥିଲୁ। ଭାରତ, ନେପାଳ, ଚୀନ୍, ଜାପାନ୍, ଭିଏତ୍‌ନାମ୍, ଥାଇଲାଣ୍ଡ ଏବଂ ଏହିପରି ଆଉ କେତୋଟି ଦେଶର ପ୍ରତିନିଧି ଥିଲେ। ଭାରତରେ ଜନ୍ମିତ କିନ୍ତୁ କାଲିଫର୍ଣ୍ଣିଆର ଏକ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରୁଥିବା ଅଧାପିକା ରେଣୁକା ସେଠୀ ଏଥିରେ ଯୋଗ ଦେବା ପାଇଁ ଆଗ୍ରହ ପ୍ରକାଶ କରିବାରୁ ତାଙ୍କୁ ମଧ୍ୟ ଏଥିରେ ସାମିଲ୍ କରାଗଲା।

ବର୍ଲିନ୍‌ର ଫ୍ରି ବିଶ୍ୱବିଦ୍ୟାଳୟ ଏଥିପାଇଁ ଆତିଥ୍ୟ ପ୍ରଦାନ କରିଥିଲେ। ଏହି ବିଶ୍ୱବିଦ୍ୟାଳୟର ପ୍ରଫେସର୍ ସୁ ମୁଖ୍ୟ ସଂଗଠକ ଥିଲେ। ବ୍ରସେଲ୍‌ରେ ଏକତ୍ରିତ

ହୋଇଥିବା ସମସ୍ତ ପ୍ରତିଭାଗୀଙ୍କୁ ନେଇ ସେ ରେଳ ଯୋଗେ ବର୍ଲିନ୍ ଆଣିଲେ। ବର୍ଲିନ୍‌ରେ ପ୍ରାୟ ଏକ ସପ୍ତାହର କର୍ମଶାଳା। ସ୍ୱତନ୍ତ୍ର ପ୍ରଶିକ୍ଷକ ରୂପେ ଆମେରିକାର କେତେକ ବିଶିଷ୍ଟ ମନୋବିଜ୍ଞାନୀଙ୍କୁ ଆମନ୍ତ୍ରିତ କରା ଯାଇଥିଲା। ଅତିଥି-ବକ୍ତାଗଣ ସେମାନଙ୍କ ବିଶେଷଜ୍ଞ ଅଭିଭାଷଣ ଦେଇ ଚାଲି ଯାଉଥିଲେ। କର୍ମଶାଳର ପ୍ରତିଭାଗୀ ସଂଖ୍ୟା ସୀମିତ ଥିବାରୁ ଭାବ‌ର ଆଦାନପ୍ରଦାନ ଖୁବ୍ ଉଚ୍ଚକୋଟୀର ହେଉଥିଲା।

ପେସାଗତ କାର୍ଯ୍ୟ ନିର୍ଘଣ୍ଟ ସତ୍ତ୍ୱେ ଆମର ବୁଲାବୁଲି ସୁଖପ୍ରଦ ଥିଲା। କର୍ମଶାଳାର କାର୍ଯ୍ୟକ୍ରମ ପାଞ୍ଚଟାରେ ସରିବା ପରେ ରାତି ଏଗାରଟା ପର୍ଯ୍ୟନ୍ତ ବୁଲାବୁଲି କରିବାରେ ବାଧା ନ ଥିଲା। ଗୋଟିଏ ଦିନ କାର୍ଯ୍ୟକ୍ରମ ମଧ୍ୟାହ୍ନ ଭୋଜନ ପରେ ବାତିଲ୍ କରି ସେମାନେ ମୁଖ୍ୟ ବିପଣୀକୁ ପଠାଇଲେ। କର୍ମଶାଳାର ଅବଧି ମଧ୍ୟରେ ଦୁଇଟି ଦିନ ପୂରାପୂରି ଛୁଟୀ ରହିଥିଲା (ରବିବାର ସମେତ)।

ଗୋଟିଏ ଦିନ କର୍ମଶାଳା ସଂଗଠକମାନେ ଆମକୁ କେତେକ ସ୍ୱେଚ୍ଛାସେବୀଙ୍କ ସହିତ ବର୍ଲିନ ମିଉଜିୟମ୍ (ସଂଗ୍ରହାଳୟ) ଓ ଅନ୍ୟ ଦର୍ଶନୀୟ ସ୍ଥାନସବୁକୁ ପଠାଇଲେ। ବର୍ଲିନ୍ ସଂଗ୍ରହାଳୟ ଖୁବ୍ ଚମତ୍କାର। ପ୍ରକାଣ୍ଡ ସଂଗ୍ରହାଳୟ ମଧ୍ୟରେ ମିଶର ଓ ଭାରତ ପାଇଁ ଯେତିକି ସ୍ଥାନ ଛାଡ଼ି ଦିଆ ଯାଇଛି ସେତିକି ସ୍ଥାନ ଠିକ୍ ରୂପରେ ବୁଲା ବୁଲି କଲେ ପୂରାଦିନଟି ଚାଲିଯିବ। ସୁତରାଂ ଆମ୍ଭେମାନେ କେବଳ ଭାରତ ଓ ମିଶର ଦେଶୀୟ ଅଂଶ ବିଶେଷଙ୍କ ବୁଲାବୁଲି କଲୁ। ବିଶେଷତଃ ବହୁ ପ୍ରାଚୀନ ମିଶର ଦେଶୀୟ ମମି ଏତେ ଆକର୍ଷଣୀୟ ଥିଲା ଯେ ସେ ସ୍ଥାନଟି ଛାଡ଼ି ଦେଇ ଆଗକୁ ଚାଲି ପାରୁ ନଥିଲୁ। ଭାରତୀୟ ଅଂଶଟିରେ ମଧ୍ୟ ଏତେ ପ୍ରାଚୀନ ଜିନିଷସବୁ ରହିଛି ଯେ ସେପରି ବସ୍ତୁ ଆମ ଦେଶରେ ଅନ୍ୟତ୍ର ଦେଖି ପାରିବା ସମ୍ଭବ କି ନୁହେଁ, ତାହା ଏକ ବିରାଟ ପ୍ରଶ୍ନ।

ଦ୍ୱିତୀୟ ଦିନଟିରେ ବର୍ଲିନ୍ ଫ୍ରି ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ନେତୃତ୍ୱ ନେଇ ଆମକୁ ବୁଲାଇ ନେଲେ। ଗଲାବେଳେ ସେ ଜର୍ମାନୀର ଇତିହାସର ସଂକ୍ଷିପ୍ତ ସୂଚନା ଦେଇ ପୂର୍ବ ଜର୍ମାନୀ ଓ ପଶ୍ଚିମ ଜର୍ମାନୀର ଏକତ୍ରୀକରଣ ଘଟଣା ବର୍ଣ୍ଣନା କଲେ।

ବର୍ଲିନ୍‌ର କେଉଁ ଅଂଶଟି ପୂର୍ବ ଜର୍ମାନୀରେ ରହିଥିଲା ଏବଂ କେଉଁ ଅଂଶଟି ପଶ୍ଚିମ ଜର୍ମାନୀରେ ରହିଥିଲା, ତାହାର ସୂଚନା ଦେଲେ। ଦୁଇ ଜର୍ମାନୀକୁ ଅଲଗା କରି ରଖିଥିବା ଏବଂ ଏକତ୍ରୀକରଣ ସମୟରେ ଭାଙ୍ଗି ଦିଆ ଯାଇଥିବା ପାଚେରୀ ପାଖରେ ଆମେ ସବୁ ଠିଆ ହେଲୁ। ପୂର୍ବ ସ୍ମୃତି ସମ୍ପର୍କରେ ସଚେତନ ରହିବା ପାଇଁ ସେହି ବିରାଟ ପ୍ରାଚୀରର ଛୋଟିଆ ଅଂଶଟି ରଖା ଯାଇଛି। ଅନ୍ୟ ଅଂଶ ମାଟିରେ ମିଶି ଯାଇଛି। ଆମେ ସେହି ଆବେଗମୟ ଅଂଶଟି ପାଖରେ ଠିଆ ହୋଇ ଛବି ତୋଳିଲୁ।

ତା'ପରେ ଆମ୍ଭେମାନେ ଯେଉଁ ଏକ ବିରାଟ ଛକକୁ ଗଲୁ, ତାହାର ନାମ ଆଲେକ୍‌ଜାଣ୍ଡର୍ ଛକ। ଏକତ୍ରୀକରଣ ସମୟରେ ଏହି ସ୍ଥାନଟି ମୁଖ୍ୟ କେନ୍ଦ୍ର ଥିଲା। କମ୍ୟୁନିଷ୍ଟ ସରକାରଙ୍କ ପ୍ରେସ୍ ଓ ପତାକାକୁ ଏଠାରେ ଖସାଇ ଦିଆ ଯାଇଥିଲା। ଏହି ଛକରେ ଅନେକ ଥର ଯୁବ ସମାବେଶ ହୋଇଛି ବୋଲି ଶୁଣିବାକୁ ପାଇଲୁ। ବ୍ରସେଲ୍‌ର ବିଗ୍ ସ୍କୋୟାର୍ ପରି ଏଇଟି ମଧ୍ୟ ମନୋରମ ଦୃଶ୍ୟରେ ପରିପୂର୍ଣ୍ଣ। ଆଖପାଖର ବିପଣୀମାଳା ଏହାକୁ ଖୁବ୍ ସକ୍ରିୟ କରି ରଖିଛି। କର୍ମଶାଳାଟିର ସମସ୍ତ ପ୍ରତିଭାଗୀ ସେଠାରେ ଉପସ୍ଥିତ ଥିଲେ। ପୂରା ଦିନଟି ସେଠାରେ ଉପଭୋଗ କରି ସନ୍ଧ୍ୟାରେ ଫେରି ଆସିଲୁ। ବର୍ଲିନ୍‌ର କର୍ମଶାଳାଟି ମଧ୍ୟ ବହୁ ଦିଗରୁ ଉପଯୋଗୀ ଥିଲା। ଚୀନ୍, ଜାପାନ୍ ଏବଂ ଭିଏତ୍‌ନାମ ପରି ବିକାଶମୁଖୀ ଦେଶରେ ମନୋବିଜ୍ଞାନର ସ୍ଥିତି ସମ୍ପର୍କରେ କିଛି ଜ୍ଞାନ ଲାଭ କରିବାର ସୁଯୋଗ ମିଳିଲା।

ପ୍ରାୟ ଏକ ବର୍ଷ ପରେ ଜର୍ମାନୀ ପରିଭ୍ରମଣର ଆଉ ଏକ ସୁଯୋଗ ଆସିଲା। ମୁଁ କୌଣସି ଏକ ସୂତ୍ରରୁ ଜାଣିବାକୁ ପାଇଥିଲି ଯେ ସ୍ୱେଡ଼େନ୍‌ର ଜୁରିକ୍ ସହରରେ ମୁଖ୍ୟ କାର୍ଯ୍ୟାଳୟ ରହିଥିବା JOHN JACOBS FOUNDATION ଏକ ପ୍ରସିଦ୍ଧ ଗବେଷଣା ସହାୟକ ସଂସ୍ଥା। ଏମାନେ ଯୁବ ସମସ୍ୟା ସମ୍ପର୍କରେ ଗବେଷଣା କରିବା ପାଇଁ ପ୍ରୋତ୍ସାହନ ଦିଅନ୍ତି ଏବଂ ସମୟ ସମୟରେ ଉପଯୋଗୀ କର୍ମଶାଳା ଆୟୋଜନ କରନ୍ତି। ସେହି କ୍ରମରେ ମଧ୍ୟ ଜାଣିବାକୁ ପାଇଲି ଯେ ୧୯୯୨ ମସିହାର ନଭେମ୍ବର ପ୍ରଥମ ସପ୍ତାହରେ ଷ୍ଟାନ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ମନୋବିଜ୍ଞାନୀ ପ୍ରଫେସର୍ ଆଲବର୍ଟ ବାନ୍ଦୁରାଙ୍କ ନେତୃତ୍ୱରେ ଏହି FOUNDATION ଗୋଟିଏ କର୍ମଶାଳାର ଆୟୋଜନ କରୁଛି। କର୍ମଶାଳାଟି ବାନ୍ଦୁରାଙ୍କର ପ୍ରକାଶମୁଖୀ ପୁସ୍ତକ "ଆତ୍ମସାମର୍ଥ୍ୟବୋଧ" ଉପରେ ଆଧାରିତ ରହିବ। ଏଠାରେ ଉଲ୍ଲେଖ କରିପାରେ ଯେ ସମସାମୟିକ ମାନ୍ୟତା ତାଲିକାରେ ଷ୍ଟାନଫୋର୍ଡ଼ ସ୍ଥାନ ହେଉଛି ପ୍ରଥମ। ସେହିପରି ଜୀବିତ ଥିବା ମନୋବିଜ୍ଞାନୀଙ୍କ ମଧ୍ୟରେ ବାନ୍ଦୁରାଙ୍କ ସ୍ଥାନ ମଧ୍ୟ ପ୍ରଥମ। ଏପରି ଏକ ସମ୍ଭାବନାର ସୂଚନା ପାଇବା ପରେ ମୋର ଗବେଷଣାର ସୂଚନା ଦେଇ ପ୍ରଫେସର ବାନ୍ଦୁରାଙ୍କୁ ପତ୍ର ଲେଖିଲି। ସେତେବେଳେ ମୁଁ ଅସହାୟତାବୋଧ ସମ୍ପର୍କରେ ଗବେଷଣା କରୁଥିଲି। ସୁତରାଂ ମୁଁ ଜଣାଇବାକୁ ଚାହିଁଲି ଯେ କର୍ମଶାଳାର ବିଷୟବସ୍ତୁ ସାମର୍ଥ୍ୟ ଏବଂ ମୋର ଗବେଷଣା ଏହି ସାମର୍ଥ୍ୟବୋଧର ବିପରୀତ ପରିକଳ୍ପନା ଉପରେ କେନ୍ଦ୍ରୀଭୂତ। ସୁତରାଂ ମୋର ଯୋଗଦାନଟି କର୍ମଶାଳା ପାଇଁ ଏବଂ ମୋ ପାଇଁ ଉପଯୋଗୀ ହେବ। ପ୍ରଫେସର୍ ବାନ୍ଦୁରା ଏଥିପାଇଁ ସବୁଜ ସଙ୍କେତ ଦେଲେ ଏବଂ ମୁଁ ନଭେମ୍ବର ପ୍ରଥମ ସପ୍ତାହରେ କର୍ମଶାଳାର କେନ୍ଦ୍ର ଜର୍ମାନୀର ମାର୍‌ବ୍ୟାକ୍ ସହରକୁ ଯାତ୍ରା କଲି।

ମାରବ୍ୟାକ୍ ସହରଟି ବଡ଼ ନୁହେଁ। ଏହା କନ୍‌ଷ୍ଟାନ୍‌ସା ହ୍ରଦ କୂଳରେ ଗୋଟିଏ ଛୋଟ ସହର। ମୁଁ କର୍ମଶାଳାର ଗୋଟିଏ ଦିନ ପୂର୍ବରୁ ଯାଇ ସ୍ୱେଡନ୍‌ର ଜୁରିକ୍ ସହରରେ ରହିଲି। କର୍ମଶାଳାର ସବୁ ପ୍ରତିଭାଗୀ ଓ ବିଶେଷଜ୍ଞମାନଙ୍କୁ ଜୁରିକ୍‌ରେ ଏକତ୍ରିତ ହେବା ପାଇଁ ପରାମର୍ଶ ଦିଆ ଯାଉଥିଲା। ଜୁରିକ୍ ସହର ଇଉରୋପ୍‌ର ଗୋଟିଏ ବିଶିଷ୍ଟ ବ୍ୟବସାୟ କେନ୍ଦ୍ର। ଅଳ୍ପ ସମୟ ହେଲେ ମଧ୍ୟ ଏକ ବିହଙ୍ଗମ ଦୃଷ୍ଟି ନେଇ ଜୁରିକ୍ ଦେଖିନେଲୁ।

ପରଦିନ ଆମେ ସମସ୍ତେ ବସ୍‌ରେ ମାରବାକ୍ ଗଲୁ। ବାଟରେ ସମ୍ଭବତଃ ଆମେ ରାଇନ୍ ନଦୀ ଅତିକ୍ରମ କଲୁ। ଜୁରିକ୍‌ର ଖୁବ୍ ଅଳ୍ପ ଦୂରରେ ଏ ସହରଟି ଅବସ୍ଥିତ। ଛୋଟ ହେଲେ ମଧ୍ୟ ନୈସର୍ଗିକ ଶୋଭାରେ ପରିପୂର୍ଣ୍ଣ। ବିଶେଷତଃ କନ୍‌ଷ୍ଟାନ୍‌ସା ହ୍ରଦ ଏହାକୁ ଅଧିକ ଶ୍ରୀମୟ କରିଥିଲା। ଶୀତର ପ୍ରକୋପ ନ ଥିଲେ ମଧ୍ୟ ଶୀତଋତୁ ଆରମ୍ଭ ହୋଇ ଥିବାରୁ ପୂରାପୂରି ବାହାରେ ଅଧିକ ସମୟ ବୁଲିବା ସମ୍ଭବ ହେଉ ନଥାଏ। କେତେକ ପୁରୁଣା କାଳିଆ କୋଠାଘର ଦେଖିଲୁ। ଜାଣିବାକୁ ପାଇଲୁ ଯେ ବିଶ୍ୱଯୁଦ୍ଧ ସମୟରେ ଏହି ଘରଗୁଡ଼ିକରେ ନାଜିମାନେ ଇହୁଦୀମାନଙ୍କୁ ବନ୍ଦୀ ରଖିଥିଲେ।

ବହୁ ଦୃଷ୍ଟିରୁ କର୍ମଶାଳାଟି ଫଳପ୍ରଦ ଥିଲା। ବିଶେଷତଃ ପ୍ରଫେସର୍ ବାନ୍ଦୁରାଙ୍କ ପରି ବିଶ୍ୱବିଖ୍ୟାତ ଗବେଷକ ଓ ମନୋବିଜ୍ଞାନୀଙ୍କ ସହିତ ଆଲୋଚନା କରିବାର ସୁଯୋଗ ଏକ ଅନନ୍ୟ ଧରଣର ସୌଭାଗ୍ୟ। ବାନ୍ଦୁରାଙ୍କ ବ୍ୟତୀତ ଅନ୍ୟ କେତେକ ବିଶେଷଜ୍ଞ ମଧ୍ୟ ସାମିଲ୍ ହୋଇଥିଲେ।

ବର୍ଲିନ୍‌ରେ ଗୋଟିଏ ବିଶ୍ୱବିଖ୍ୟାତ ଗବେଷଣା କେନ୍ଦ୍ର ହେଉଛି ମାକ୍‌ସ-ପ୍ଲାଙ୍କ୍ ଅନୁଷ୍ଠାନ। ଏହି ଅନୁଷ୍ଠାନର ଏକ ବିଭାଗ ହେଉଛି ମାନବୀୟ ବିକାଶର ଅନୁଧ୍ୟାନ ବିଭାଗ। ଏହି କେନ୍ଦ୍ରର ଅଧକ୍ଷ ପଲ୍ ବଲ୍‌ଟେସ୍ ମଧ୍ୟ ଉପସ୍ଥିତ ରହିଥିଲେ। କର୍ମଶାଳାର ବିଶେଷଜ୍ଞ ଓ ପ୍ରତିଭାଗୀଙ୍କ ସଂଖ୍ୟା ତିରିଶ ମଧ୍ୟରେ ସୀମିତ ଥିଲା। ତେଣୁ ପାରସ୍ପରିକ କ୍ରିୟା ଅନୁକ୍ରିୟା ଗଭୀର ଓ ଉପଯୋଗୀ ହୋଇ ପାରିଥିଲା। ବିଶେଷତଃ ଦିନର କାର୍ଯ୍ୟକ୍ରମ ଶେଷ ହେବା ପରେ ରାତି ଆଠଟାରେ ଯେଉଁ ସାନ୍ଧ୍ୟ ଭୋଜନ ଆରମ୍ଭ ହେଉଥିଲା ତାହା ଦୀର୍ଘ ସମୟ (ପ୍ରାୟ ରାତି ସାଢ଼େ ଦଶଟା ପର୍ଯ୍ୟନ୍ତ) ଚାଲୁଥିଲା। ଏହି ସମୟରେ କର୍ମଶାଳାର ଆଲୋଚିତ ସାମଗ୍ରୀକୁ ବାଦ୍‌ଦେଲେ ବିଭିନ୍ନ ଦେଶର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ବିଷୟ ଅଧିକ ଆଲୋଚନା ହେଉଥିଲା। ଏକ ଅନୌପଚାରିକ ପରିବେଶ ମଧ୍ୟରେ ମନଖୋଲା କଥୋପକଥନ ବେଶ୍ ଶିକ୍ଷଣୀୟ ଓ ପ୍ରୀତିପଦ ରହିଥିଲା।

## ସ୍ପେନ୍ ଓ ତୁର୍କୀ

ଇଉରୋପ ପରିକ୍ରମାର ଆଉ ଏକ ପର୍ଯ୍ୟାୟ ହେଉଛି ସ୍ପେନ୍ ଓ ତୁର୍କୀ। ୧୯୯୪ ମସିହାରେ ଅନ୍ତର୍ଜାତୀୟ ବହୁ-ସଂସ୍କୃତି ମନୋବିଜ୍ଞାନ ସଂଘର (INTER-

NATIONAL ASSOCIATION FOR CROSS-CULTURAL PSYCHOLOGY)ର୍ ବାର୍ଷିକ କଂଗ୍ରେସର ସ୍ଥଳ ଥିଲା ସ୍ପେନ୍‌ର ପାମ୍‌ଲୋନା ସହର। ଏହା ସ୍ପେନ୍‌ର ମୁଖ୍ୟ ନଗର ମାଡ୍ରିଦ୍‌ଠାରୁ କିଛି ଦୂରରେ ଅବସ୍ଥିତ। ଲିଏଜ୍ ପରେ ଏଠାରେ ମଧ୍ୟ ଗବେଷଣା ସନ୍ଦର୍ଭର ଉପସ୍ଥାପନା ପାଇଁ ଆବେଦନ କରିଥିଲି ଏବଂ ଲିଏଜ୍ ପରି ଏଠାରେ ଅଂଶ ଗ୍ରହଣ କରିବା ପାଇଁ ମନୋନୀତ ହୋଇଥିଲି। ପାମ୍‌ଲୋନା କଂଗ୍ରେସର ପରେ ପରେ ବିକାଶମୁଖୀ ଦେଶର ମନୋବିଜ୍ଞାନୀମାନଙ୍କ ପାଇଁ ତୁର୍କୀର ଇସ୍ତାନ୍‌ବୁଲ୍‌ରେ ଗୋଟିଏ କର୍ମଶାଳାର ଆୟୋଜନ କରା ଯାଇଥାଏ। ସେହି କର୍ମଶାଳା ପାଇଁ ମନୋନୀତ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମୁଁ ମଧ୍ୟ ସ୍ଥାନ ପାଇଥିଲି।

ମୁଁ ସ୍ପେନ୍ ଯିବା ପାଇଁ ନୂଆଦିଲ୍ଲୀରୁ ମାଡ୍ରିଦ୍ ଯାତ୍ରା କଲି। ପାମ୍‌ଲୋନ୍ କଂଗ୍ରେସରେ ଯୋଗ ଦେବା ପାଇଁ ଯାଉଥିବା ଦୁଇଜଣ ଭାରତୀୟ ମହିଳାଙ୍କ ସହିତ ପ୍ଲେନ୍‌ରେ ସାକ୍ଷାତ୍ ହେଲା। ଜଣେ ହେଉଛନ୍ତି ବରୋଦା ବିଶ୍ୱବିଦ୍ୟାଳୟର "ଶିଶୁ ବିକାଶ" (CHILD DEVELOPMENT) ବିଭାଗର ଅବସରପ୍ରାପ୍ତ ବରିଷ୍ଠ ପ୍ରଫେସର୍ ଟି. ସରସ୍ୱତୀ। ମୁଁ ତାଙ୍କୁ ପୂର୍ବରୁ ଚିହ୍ନିଥିଲି, କାରଣ ଅତୀତରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଆୟୋଜନ କରିଥିବା ଏକ ସମ୍ମିଳନୀରେ ମୁଁ ତାଙ୍କୁ ଅତିଥି ରୂପେ ଆମନ୍ତ୍ରଣ କରିଥିଲି। ଅନ୍ୟ ଜଣେ ହେଉଛନ୍ତି ସେହି ବିଭାଗର ଅପେକ୍ଷାକୃତ କନିଷ୍ଠ ଅଧ୍ୟାପକ ଶାଳିନୀ ଭରତ। ବୟସର ପାର୍ଥକ୍ୟ ସତ୍ତ୍ୱେ ଆମେ ତିନ ଜଣ ଏକତ୍ର ସମ୍ମିଳନୀ ସ୍ଥଳକୁ ଯାତ୍ରା କଲୁ। ମାଡ୍ରିଦ୍‌ରେ ପହଞ୍ଚି ବସ୍ ଯୋଗେ ପାମ୍‌ଲୋନା ଯାତ୍ରା କଲୁ। ପାମ୍‌ଲୋନା ବସ୍‌ଷ୍ଟାଣ୍ଡ୍‌ରେ ପହଞ୍ଚିବା ପରେ ଦେଖିଲୁ ଯେ ସମ୍ମିଳନୀର କେତେକ ସ୍ୱେଚ୍ଛାସେବୀ ଉପସ୍ଥିତ ରହିଛନ୍ତି। ସେମାନଙ୍କ ସହାୟତାରେ ଆମେ ଆମର ପୂର୍ବ ନିର୍ଦ୍ଧାରିତ ରହିବା ସ୍ଥାନରେ ପହଞ୍ଚିଲୁ। ସୌଭାଗ୍ୟକ୍ରମେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଆମ ତିନିଜଣଙ୍କ ନାମ ଉଲ୍ଲେଖ ଥିଲା। ସୁତରାଂ ତିନୋଟି କୋଠରୀରେ ଆମେ ରହିଲୁ। ଅନ୍ୟ କେତେକ ପ୍ରତିନିଧି ମଧ୍ୟ ରହିଥିଲେ। ସ୍ଥାନଟି ହୋଟେଲ୍ ନୁହେଁ। ଏହା ଏକପ୍ରକାର ଧର୍ମଶାଳା। ପୂର୍ବରୁ ଖ୍ରୀଷ୍ଟିଆନ୍ ମିଶନାରୀ ଦଳସବୁ ଧର୍ମ ପ୍ରଚାର ପାଇଁ ଯାତ୍ରା କରିବା ସମୟରେ ମଝିରେ ମଝିରେ ଏପରିସବୁ ଆଶ୍ରୟସ୍ଥଳ ନିର୍ମାଣ କରା ଯାଇଥିଲା। ଏଠାରେ ଖାଦ୍ୟପେୟର ବ୍ୟବସ୍ଥା ନ ଥିଲେ ମଧ୍ୟ ଖୁବ୍ ବାସୋପଯୋଗୀ ଏବଂ ସୁଖପ୍ରଦ। ଦୁର୍ଭାଗ୍ୟବଶତଃ ଆମେ ପହଞ୍ଚିବାର ପରଦିନ ପ୍ରଫେସର୍ ସରସ୍ୱତୀଙ୍କୁ ସାମାନ୍ୟ ଜ୍ୱର। ସେ ସମ୍ମିଳନୀର ଉଦ୍‌ଘାଟନୀ ଉତ୍ସବକୁ ଯାଇ ପାରିଲେ ନାହିଁ। ଶାଳିନୀ ଓ ମୁଁ ଆଖପାଖରୁ କିଛି କ୍ଷୀର ଯୋଗାଡ଼ କଲୁ। ସେ ଅଳ୍ପ କିଛି ଖାଇବା ପରେ ସେ ଦିନଟି ବିଶ୍ରାମ ନେଲେ। ପର ଦୁଇ ତିନି ଦିନ ସମସ୍ତଙ୍କ ଭଲରେ ଚାଲିଲା। ମୁଁ ନିର୍ଦ୍ଦିଷ୍ଟ ସମୟରେ ମୋର ଗବେଷଣା ସନ୍ଦର୍ଭ ଉପସ୍ଥାପନ କଲି।

ପାମ୍ପ୍ଲୋନା କଂଗ୍ରେସ ପରେ ପରେ ପୁନଶ୍ଚ ଆମେ ମାଦ୍ରିଦ୍ ଟ୍ରେନ୍ ଯୋଗେ ଯାତ୍ରା କଲୁ। ସେଠାରୁ ଆମର ପରଦିନ ତୁର୍କୀର ଇସ୍ତାନ୍‌ବୁଲ୍ ଯିବାର କାର୍ଯ୍ୟକ୍ରମ ରହିଥାଏ। ଆମେ ତିନି ଜଣ ମାଦ୍ରିଦ୍ ଷ୍ଟେସନ୍‌ର ପାଖାପାଖି ହୋଟେଲ୍ "ଇଉରୋପା"ରେ ବୁକିଂ କରିବା ପରେ ମାଦ୍ରିଦ୍ ବୁଲିବା ପାଇଁ ବାହାରିଗଲୁ। ହୋଟେଲ୍‌ର ମ୍ୟାନେଜର୍ ଆମକୁ ପରାମର୍ଶ ଦେଲେ ଅଧାଦିନିଆ ସିଟି ଟୁର୍‌ରେ ସୁଯୋଗ ନେବା ପାଇଁ। ଏହି ଅଳ୍ପ ସମୟ ମଧ୍ୟରେ ଟୁର୍ ପରିଚାଳକ ଆମକୁ ବେଶ୍ କିଛି ଦର୍ଶନୀୟ ସ୍ଥାନ ଦେଖାଇଲେ। ସହରର ମୁଖ୍ୟ ମୁଖ୍ୟ ରାସ୍ତା ଓ ପ୍ରାସାଦ ଦେଖିଲୁ। ସ୍ପେନ୍‌ର ସୁବିଖ୍ୟାତ "ଷଣ୍ଢ ଲଢ଼େଇର ଷ୍ଟାଡ଼ିୟମ୍" ଦେଖିଲୁ। ସବୁଠାରୁ ଅଧିକ ଆକର୍ଷଣୀୟ ହେଉଛି ଚିତ୍ରକଳାର ସଂଗ୍ରହାଳୟ। ଏହାକୁ ତନ୍ନ ତନ୍ନ କରି ଦେଖିବାର ସୁଯୋଗ ନ ଥିଲେ ମଧ୍ୟ ପିକାସୋଙ୍କ ଭଳି ବିଶ୍ୱବିଶ୍ରୁତ ଚିତ୍ରଶିଳ୍ପୀଙ୍କ ସୃଜନଶୀଳତାର ପରିପ୍ରକାଶ ଦେଖି ଅଭିଭୂତ ହୋଇ ପଡ଼ିଲୁ। ଜୀବନର ଏ ଅନୁଭୂତିଟି ଚିରସ୍ମରଣୀୟ ରହିବ।

ପରଦିନ ନିର୍ଦ୍ଧାରିତ ସମୟରେ ବିମାନଯୋଗେ ଇସ୍ତାନ୍‌ବୁଲ୍ ଯାତ୍ରା କଲୁ। ବିମାନରେ କେତେକ ଆଫ୍ରିକାର ମନୋବିଜ୍ଞାନୀଙ୍କ ସହିତ ସାକ୍ଷାତ୍ ହେଲା। ଏମାନଙ୍କ ମଧ୍ୟରୁ କେତେକଙ୍କ ସହିତ ପୂର୍ବ ପରିଚିତ ଥିଲା, କାରଣ ଏମାନେ ଏକାଧିକବାର ଅନ୍ତର୍ଜାତୀୟ ସମ୍ମିଳନୀରେ ଭାଗ ନେଇଛନ୍ତି। ଆମେ ସବୁ ଇସ୍ତାନ୍‌ବୁଲ୍‌ରେ ପହଞ୍ଚିବା ପରେ ପ୍ରଥମେ ବିମାନବନ୍ଦରରେ ବୈଦେଶିକ ମୁଦ୍ରା ବିନିମୟ କେନ୍ଦ୍ରକୁ ଗଲୁ। ଆମେରିକାନ୍ ଡଲାର୍ ବଦଳାଇ ତୁର୍କୀର ମୁଦ୍ରା "ଲିରା" ସଂଗ୍ରହ କରିବାକୁ ହେବ। ଲିରାର ବିନିମୟ ହାର ବିଚିତ୍ର। ଗୋଟିଏ ଡଲାର୍ ବିନିମୟରେ ଶହ ଶହ ଲିରା ମିଳିଥାଏ। ସମସ୍ତେ ବିନିମୟ କେନ୍ଦ୍ରରେ କାମ ଶେଷ କଲା ପରେ ମୁଁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲି। କହିଲି: "ଆପଣମାନେ ଲିରାର ପରିମାଣ ପରଖି ନେଇ ପାରନ୍ତି। ବର୍ତ୍ତମାନ ଆପଣମାନେ କୋଟିପତି। ସମ୍ଭବତଃ କୋଟିରୁ ଅଧିକ ପରିମାଣର ଲିରା ଆପଣଙ୍କ ପାଖରେ ରହିଛି। ନିଜ ଦେଶରେ ନିଜ ଦେଶର ମୁଦ୍ରା ଅନୁଯାୟୀ ଆପଣ ଏ ସୌଭାଗ୍ୟ ପାଇବେ ନାହିଁ। ବର୍ତ୍ତମାନ ନିଜକୁ କୋଟିପତି ଭାବି ସୁନିଦ୍ରାର ସୁଯୋଗ ନିଅନ୍ତୁ।" ସମସ୍ତେ ହସି ଉଠିଲେ।

ପ୍ରକୃତରେ ଲିରାର ବିନିମୟ ହାର ବିଚିତ୍ର। ବିକ୍ରେତାମାନେ ରୁମାଲଟି ବିକିଲା ବେଳେ "ପାଞ୍ଚ" "ପାଞ୍ଚ" କହି ଡାକଦିଅନ୍ତି। କିଣିବା ସମୟରେ ଜଣାପଡ଼େ ଯେ ରୁମାଲ୍‌ର ଦାମ୍ ପାଞ୍ଚ ହଜାର ଲିରା। ସେହିପରି ପାଣି ବୋତଲ ବିକୁଥିବା ଲୋକ "ବାର" କହି ଡାକିବା ସମୟରେ ପାଖକୁ ଗଲେ ଜଣାଯାଏ ଯେ ପାଣିବୋତଲର ଦାମ୍ ହେଉଛି ବାର ହଜାର ଲିରା। ଏହାର ଅର୍ଥ ନୁହେଁ ଯେ ସବୁ ଜିନିଷ ମହଙ୍ଗା। ମାତ୍ର ଲୋକମାନେ ଲକ୍ଷ ଲକ୍ଷ ଲିରା ରୋଜଗାର କରନ୍ତି ଏବଂ ଦରସବୁ ଏହିପରି।

ଇସ୍ତାନ୍‌ବୁଲ୍‌ରେ କର୍ମଶାଳାଟି ଆୟୋଜିତ ହୋଇଥିଲା । ବୋଗାଜିସ୍ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗ ଏହାର ଆୟୋଜକ । ଏହା ଏକ ପାହାଡ଼ ଉପରେ ଅବସ୍ଥିତ । ବୋଗାଜିସ୍ ଶବ୍ଦଟି ବସ୍‌ଫସ୍‌ରୁ ଆସିଛି । ବସ୍‌ଫସ୍ ହେଉଛି ଇଂରାଜୀ ନାମ ଏବଂ ଏହାର ତୁର୍କୀ ଭାଷାର ଅନୁବାଦ ହେଉଛି ବୋଗାଜିସ୍ । ବୋଗାଜିସ୍ ଅବସ୍ଥିତ ଥିବା ପାହାଡ଼ର ନିମ୍ନ ଭାଗରେ ବସ୍‌ଫସ୍ ନାମକ ଏକ ବିରାଟ କେନାଲ୍ ପ୍ରକାଣ୍ଡ ତୁର୍କୀ ହ୍ରଦ ଓ ପ୍ରଶାନ୍ତ ମହାସାଗରକୁ ସଂଯୁକ୍ତ କରୁଛି । ବସ୍‌ଫସ୍ ଖୁବ୍ ଦୀର୍ଘ ନୁହେଁ, ମାତ୍ର ଗଭୀର ଓ ଓସାରିଆ । ଏହା ମଧ୍ୟ ଦେଇ ଜଳ ଜାହାଜ ପ୍ରଶାନ୍ତ ମହାସାଗରକୁ ଗତି କରୁଥିବାର ଦୃଶ୍ୟ ସହଜରେ ଆଖିରେ ପଡ଼େ । ବହୁ ପୂର୍ବରୁ ଏହି ବୋଗାଜିସ୍ ବିଶ୍ୱବିଦ୍ୟାଳୟ ଆମେରିକାନ୍ ବିଶ୍ୱ ବିଦ୍ୟାଳୟ ହୋଇ ରହିଥିଲା । ମାତ୍ର ପରେ ଏହା ବୋଗାଜିସ୍ ବିଶ୍ୱବିଦ୍ୟାଳୟ ନାମରେ ନାମିତ ହେଲା ।

ଆମେ ମଧ୍ୟାହ୍ନରେ ବିଶ୍ୱବିଦ୍ୟାଳୟରେ ପହଞ୍ଚିଲୁ । ପାହାଡ଼ ଉପରେ ସୁନ୍ଦର ସ୍ଥାପତ୍ୟ ସହ ବିଶ୍ୱବିଦ୍ୟାଳୟଟି ଅବସ୍ଥିତ । ମଧ୍ୟାହ୍ନ ଭୋଜନ ସାରିବା ପରେ ଅପରାହ୍ନଟି ବୁଲାବୁଲି କରି କଟାଇବାକୁ ଚାହିଁଲୁ । ପରଦିନ କର୍ମଶାଳା ଉଦ୍‌ଘାଟିତ ହେବାର ସ୍ଥିର ହୋଇଥାଏ । ଲକ୍ଷ୍ୟ କଲୁ ଯେ ପାହାଡ଼ର ତଳ ଦେଶରେ ବସ୍‌ଫସ୍ ନାମକ ଯେଉଁ ବିରାଟ କେନାଲ ପ୍ରଶାନ୍ତ ମହାସାଗର ଏବଂ ତୁର୍କୀ ହ୍ରଦକୁ ସଂଯୁକ୍ତ କରୁଛି । ପାହାଡ଼ର ନିମ୍ନ ଦେଶର ଅଞ୍ଚଳଟିର ନାମ ବିବେକ ଟାଉନ୍‌ସିପ୍ । ବିଶ୍ୱବିଦ୍ୟାଳୟରୁ ଏକ କଂକ୍ରିଟ୍ ରୋଡ଼୍ ଏହି ବସ୍‌ଫସ୍ ଓ ବିବେକ ଟାଉନ୍ ଦିଗରେ ଗଡ଼ି ଯାଇଛି । ଆମେ ତଳକୁ ଯାଇ ଏହି ବସ୍‌ଫସ୍ ଓ ପ୍ରଶାନ୍ତ ମହାସାଗରର ଶୋଭା ଅନୁଭବ କରିବାକୁ ସ୍ଥିର କଲୁ । ଆୟୋଜକମାନେ କହିଲେ ଯେ କାର୍ ଡ୍ରାଇଭ୍ କରି ସେମାନେ ତଳକୁ ଯାଆନ୍ତି, ପାଦରେ ଚାଲି ଚାଲି ଯିବାର ଅଭ୍ୟାସ ନାହିଁ । ଆମେ କାଳ ବିଳମ୍ବ ନ କରି ସେହି ରାସ୍ତାରେ ଚାଲି ଚାଲି ବିବେକ ଟାଉନ୍ ଦିଗରେ ଗଡ଼ି ଚାଲିଲୁ । ବସ୍‌ଫସ୍‌ରେ ଯାଉଥିବା ଜାହାଜ ସବୁ ଦେଖିଲୁ । ପ୍ରଶାନ୍ତ ମହାସାଗରର ଗଭୀରତା ଓ ସୌନ୍ଦର୍ଯ୍ୟ ଦେଖି ଖୁବ୍ ଖୁସୀ ଲାଗିଲା ।

କର୍ମଶାଳାଟି ଖୁବ୍ ଉପଯୋଗୀ ଥିଲା । ଏସିଆ ଓ ଆଫ୍ରିକାର ବିକାଶମୁଖୀ ଦେଶରେ ମନୋବିଜ୍ଞାନରେ କିପରି ଗବେଷଣାତ୍ମକ ଆତ୍ମଶୀଳନ କରା ଯାଉଛି, ତା'ର ସୁବିସ୍ତୃତ ଚର୍ଚ୍ଚା ହେଲା । ସାମାଜିକ ସ୍ତରରେ ପୂର୍ବରୁ ପରିଚୟ ଥିବା ଦୁଇ ତିନି ଜଣଙ୍କ ସହିତ ପ୍ରୀତିପଦ ଆଦାନପ୍ରଦାନ ଘଟିଲା । ଆଫ୍ରିକାର କାମେରୁନ୍‌ରେ କାର୍ଯ୍ୟରତ ଅଧ୍ୟାପକ ବାମିଙ୍କ ସହ ଅନ୍ତରଙ୍ଗ ଆଳାପ ହେଲା । ବାମି ଏକ ଶ୍ରଦ୍ଧାସ୍ପଦ ବ୍ୟକ୍ତିତ୍ୱ । ସମ୍ବଳର ଅଭାବ ଥିବା ସତ୍ତ୍ୱେ ଉନ୍ନତ ଗବେଷଣା ପାଇଁ କିପରି ନିଷ୍ଠାପର ପ୍ରୟାସ କରାଯାଇପାରେ, ବାମି ତାହାର ଏକ ସମୁଜ୍ଜ୍ୱଳ ଉଦାହରଣ । କାନାଡ଼ାରେ ମୋର

ପ୍ରଫେସର୍ ଜନ୍ ବେରୀଙ୍କ ପାଖରେ ଆଫ୍ରିକାର ନାଇଜେରିଆର ଅଧ୍ୟାପକ ଆମେଚି (ଯେଉଁ ବ୍ୟକ୍ତି ମୋ ସହିତ ସେ ସମୟରେ ପି.ଏଚ୍.ଡ଼ି. କରୁଥିଲେ) ସହିତ ମଧ୍ୟ ଦୀର୍ଘ ଦିନ ପରେ ପୁନଶ୍ଚ ଆଳାପ ହେଲା।

ଆମର ଅବସ୍ଥାନ କାଳରେ ଆୟୋଜକମାନେ ଇସ୍ତାନବୁଲାର ଇଉରୋପୀୟ ଭୂଖଣ୍ଡ ଓ ଏସିଆ ଭୂଖଣ୍ଡ ବୁଲାଇ ନେଲେ। ଦୀର୍ଘ ଚାରି ପାଞ୍ଚ ଘଣ୍ଟା ଧରି ତୁର୍କୀ ହ୍ରଦରେ ସନ୍ଧ୍ୟାକାଳୀନ ନୌବିହାର ଓ ରାତ୍ରୀଭୋଜନ ଅତ୍ୟନ୍ତ ଆମୋଦଦାୟକ ଥିଲା। ଜ୍ଞାନଲୋଭ ଓ ଆନନ୍ଦର ପରିତୃପ୍ତି ଦୃଷ୍ଟିରୁ ଇସ୍ତାନ୍‌ବୁଲ୍‌ରେ ପରିଭ୍ରମଣ ଏକ ଚମତ୍କାର ଅନୁଭୂତି।

❖

(୩୫)

# ଋଣାନୁବନ୍ଧନ

ମଣିଷ ହୁଏତ ଏକ ବନ୍ଧନମୁକ୍ତ ଜୀବନ ଚାହେଁ; କିନ୍ତୁ ଏହା ସମ୍ଭବପର ହୋଇ ନଥାଏ। ପ୍ରତିଟି ଜୀବନ ଅନ୍ୟମାନଙ୍କର ଜୀବନ ସହ ସଂଶ୍ଳିଷ୍ଟ। କେବଳ ମଣିଷ କାହିଁକି, ଯେ କୌଣସି ବ୍ୟକ୍ତିର ଜୀବନ ବୃହତ୍ତର ଦୃଷ୍ଟିକୋଣରୁ ଉଦ୍ଭିଦ ଓ ପ୍ରାଣୀଜଗତ ମଧ୍ୟ ସମ୍ପୃକ୍ତ। ସୁତରାଂ କେହି ଋଣମୁକ୍ତ ନୁହଁନ୍ତି। ବ୍ୟାଙ୍କ୍‌ର ଋଣ ହୁଏତ କଷ୍ଟେମଷ୍ଟେ ପରିଶୋଧ କରା ଯାଇପାରେ, ମାତ୍ର ଜୀବନ ନିର୍ବାହର ଋଣ ଅଶୁଝା ରହିଯାଏ। ତଥାପି ସେହି ଋଣ ସମ୍ପର୍କରେ ସ୍ୱୀକାରୋକ୍ତି ଓ ସଚେତନତା ଅହଂକେନ୍ଦ୍ରୀ ମନକୁ ନରମ କରେ, କୃତଜ୍ଞତାର ପୁଟ ଦେଇ ଗତିପଥକୁ ସହଜ କରେ।

ଏବେ ଠିକ୍ ତିନିବର୍ଷ ପୂରିଥିବା ମୋର ନାତୁଣୀ 'ତିଥି' ଜିଦି ଧରି କାନ୍ଦୁଥିବା ସମୟରେ କିମ୍ବା ଖାଇବା ସମୟରେ ଅସ୍ଥିର ହେଉଥିବା ବେଳେ ମୋର ଝିଅ ପଲ୍ଲୀ ଗଭୀର ଧୈର୍ଯ୍ୟ ସହିତ ତାକୁ ସାନ୍ତ୍ୱନା ଦିଏ। ଦୀର୍ଘ ସମୟ ଧରି ଅଭୁକ୍ତ ଅନିଦ୍ରା ରହି ତା'ର କଥା ବୁଝେ। ଏ ସବୁର ଦୃଶ୍ୟ ମନେପକାଇଦିଏ ମୋର ମାତୃଋଣ। ମୁଁ ମୋର ବୋଉକୁ(ଦୁର୍ଗା ଦେବୀ) ଏମିତି କଷ୍ଟ ଦେଇଥିବି ନିଶ୍ଚୟ। ଏ ଋଣାନୁବନ୍ଧନ ଜନ୍ମ ପୂର୍ବରୁ ଆରମ୍ଭ ହୋଇଥିବ। ମାତୃ ଗର୍ଭରେ ଥାଇ ମୁଁ ତା' ଖାଦ୍ୟରେ ଭାଗ ବସାଇଥିବି। ତା' ଜୀବନକୁ ସକ୍ରିୟ ରଖିଥିବା ପାଣି ପବନରୁ ମଧ୍ୟ ଭାଗ ନେଇଥିବି। ମୋର ଜନ୍ମ ପରେ ତା'ର କେତେ ଝଞ୍ଜାଳ, କେତେ ଦାୟିତ। ଜନ୍ମ ସମୟରୁ ଆରମ୍ଭ କରି ମୋତେ ଛ'ବର୍ଷ ଓ ମୋର ସାନଭାଇ ଅଚ୍ୟୁତକୁ ଚାରି ବର୍ଷ ହେଲା ପର୍ଯ୍ୟନ୍ତି ସଂଘର୍ଷର ଅନ୍ତ ନ ଥିବ। ଅଭାବ ଅନାଟନ ମଧ୍ୟରେ ଆମ ଦୁଇଭାଇଙ୍କୁ ମଣିଷ କରିବାର ସଂଗ୍ରାମର ସେ ମୁଖ୍ୟ ସଞ୍ଚାଳିକା। ମାତୃଋଣ କେହି ପରିଶୋଧ କରି ପାରନ୍ତି ନାହିଁ। କିନ୍ତୁ ଆମ ଦୁଇ ଭାଇଙ୍କ କ୍ଷେତ୍ରରେ କିୟତ୍ କାଳ ପାଇଁ ସେପରି ସୁଯୋଗର ମଧ୍ୟ ଅବକାଶ ନ ଥିଲା। ଅତି ଅଚାନକ ଭାବରେ ତା'ର ଦେହାନ୍ତ ଘଟିଲା।

ବାପା ପଦ୍ମନାଭ ସାହୁ ମଧ୍ୟ କମ୍ କଷ୍ଟ ସ୍ୱୀକାର କରି ନାହାଁନ୍ତି। ବିଶେଷତଃ ବୋଉର ମୃତ୍ୟୁ ପରେ ତାଙ୍କର ବୋଝ ଉପରେ ଆଉ ଗୋଟିଏ ବୋଝ ଲଦି ହୋଇଗଲା। ତାଙ୍କର ସ୍ୱଳ୍ପ ବେତନ ପରିବାର ପାଇଁ ଖୁବ୍ କମ୍। ପ୍ରଥମେ ପ୍ରଥମେ ମୁଁ ବୁଝି ପାରିନଥିଲି। ମାତ୍ର ଧୀରେ ଧୀରେ ଅନୁଭବ କଲି ଯେ ବାପା ଆମ ପାଇଁ ମାତ୍ରାଧିକ କଷ୍ଟ ସହ୍ୟ କରୁଛନ୍ତି। ସେ ଗୋଟିଏ ବିସ୍କୁଟ୍ କାରଖାନାର ବିକ୍ରୟ ମ୍ୟାନେଜର୍ ରୂପେ ଇଞ୍ଜେନ୍ସ ଓ ବିସ୍କୁଟ୍ ଗାଡ଼ିରେ ନେଇ ଛୋଟ ଛୋଟ ସହରକୁ

(ଯଥା:- ଢେଙ୍କାନାଳ, କେନ୍ଦ୍ରାପଡ଼ା, ଖୋର୍ଦ୍ଧା ଇତ୍ୟାଦି) ଯାଆନ୍ତି। ସେଠାରେ କିଛିଦିନ ରହିବା ପାଇଁ ତାକୁ କାରଖାନାର ଦୈନିକ ଭତ୍ତା ମିଳେ। ମାତ୍ର ରହିବା ଉପଯୋଗୀ ହୋଟେଲ୍‌ରେ ନ ରହି ଯେ ଯେନତେନ ପ୍ରକାରଣେ ନିଜର ରହିବା ଖାଇବାର ବନ୍ଦୋବସ୍ତ କରନ୍ତି। ବଳକା ପଇସା ଆମ ପାଇଁ ଖର୍ଚ୍ଚ କରନ୍ତି। କହିବା ଅନାବଶ୍ୟକ ଏପରି ଜୀବନଧାରଣ ତାଙ୍କ ବ୍ୟକ୍ତିଗତ ସ୍ୱାସ୍ଥ୍ୟକୁ କ୍ଷତିଗ୍ରସ୍ତ କଲା। କୌଣସି ଶାରୀରିକ ସମସ୍ୟାର ସମାଧାନ ପାଇଁ ସେ ଡାକ୍ତରଙ୍କ ଦ୍ୱାରସ୍ଥ ହେଲେ ନାହିଁ। ପରିଣାମ ସହଜରେ ଅନୁମେୟ। ମୋତେ ଷୋହଳ ସତର ବର୍ଷ ହୋଇଥିବା ସମୟରେ ତାଙ୍କର ମଧ୍ୟ ଅଚାନକ ଦେହାନ୍ତ ଘଟିଲା। ବୋଉ କୋଳର ଆରାମର ଆଶା ଛାଡ଼ିବା ପରେ ବାପାଙ୍କ ଭୁଜବଳର ସାମର୍ଥ୍ୟ ଉପରେ ଯେଉଁ ଭରସା ଥିଲା, ତାହା ମଧ୍ୟ ଭୁଶୁଡ଼ି ପଡ଼ିଲା। ତାଙ୍କର ତ୍ୟାଗ ତାଙ୍କର ସଂଗ୍ରାମର ଛବି ମନକୁ ଆସିଲେ ମୁଣ୍ଡଟି ନଇଁଯାଏ।

ଦୁର୍ଦ୍ଦିନର ଅନ୍ଧକାର ମଧ୍ୟରେ ଯେଉଁ ସରୁ ଆଲୋକରଶ୍ମି ଦୁଇଟି ଗତିପଥକୁ ସକ୍ରିୟ ରଖିଥିଲା, ସେମାନେ ହେଉଛନ୍ତି ମୋର ଜେଜେମା' (ଯାହାକୁ ମୁଁ ମା' ବୋଲି ଡାକେ) ମୌନାବତୀ ଦେବୀ ଓ ମୋର ପିଉସୀ ପାର୍ବତୀ ଦେବୀ। ମୋର ଜେଜେମା' ଦୀର୍ଘଜୀବୀ ଥିଲେ ଏବଂ ପ୍ରାୟ ନବେ ବର୍ଷ ବୟସରେ (୧୯୮୧ ମସିହାରେ) ପରଲୋକ ଗମନ କଲେ। ବାପାଙ୍କର ଦେହାନ୍ତ ହେବା ପରେ ମୁଁ ପିଉସୀ ଘରେ କାଠଗଡ଼ା ସାହିରେ ରହୁଥିଲି ଏବଂ ମୋର ଜେଜେମା' ଓ ସାନଭାଇ ଅଚ୍ୟୁତ ଚାଉଳିଆଗଞ୍ଜରେ ରହୁଥିଲେ। ଷଷ୍ଠ ଦଶକର ମଧ୍ୟଭାଗ ବେଳକୁ ଜେଜେମା'ର ଶରୀର ପୂରାପୂରି ନଇଁ ଗଲାଣି, ସିଧା ହୋଇ ଚାଲିବାର ସାମର୍ଥ୍ୟ ସେ ହରାଇ ବସିଥିଲା। ଆଖିରେ ପରଳ ପଡ଼ି ଦୃଷ୍ଟି ଶକ୍ତି ମଧ୍ୟ ବିପନ୍ନ। ମୁଁ ସାଧାରଣତଃ ଶନିବାର (ଶନିବାର ଦିନ ସ୍କୁଲ ଅଧା ସମୟ ହୋଇଥାଏ) ଦିନ ସ୍କୁଲ୍ ଛୁଟି ପରେ ଚାଉଳିଆଗଂଜ ଚାଲିଆସେ ଏବଂ ରବିବାର ଦିନ ଅପରାହ୍ଣରେ ଫେରିଯାଏ। ମୁଁ ଆସି ପହଞ୍ଚିବା ମାତ୍ରେ ମୋର ଜେଜେମା' ତା'ର ସେଇ ଭଗ୍ନ ସ୍ୱାସ୍ଥ୍ୟ ନେଇ ଦୁଇ ପଇସାର ଗରମ ମୁଢ଼ି ଓ ଦୁଇ ପଇସାର ଛୋଟ ଛୋଟ ଚାରୋଟି ପିଆଜି ନେଇ ଆସିବ। ତା'କୁ ଖାଇବା ସମୟରେ କେମିତି ଏକ ଆନନ୍ଦ ଲାଗେ। ସେ ମୁଢ଼ି ତ ଖାଲି ମୁଢ଼ି ନୁହେଁ, ସ୍ନେହଶ୍ରଦ୍ଧାର ଅମୃତ ସ୍ପର୍ଶ।

ମୋର ଜେଜେମା' ସମ୍ପର୍କରେ ଦୁଇଟି କଥା ଏବେ ବି ଆଲୋଡ଼ନ ସୃଷ୍ଟି କରେ। ପ୍ରଥମ ହେଉଛି ସେ କେବଳ ଗୌରବର୍ଣ୍ଣ ସମ୍ପନ୍ନ ନ ଥିଲା, ତା' ଦେହରେ ଏକ କମନୀୟ କାନ୍ତି ମୃତ୍ୟୁ ପର୍ଯ୍ୟନ୍ତ ଅମଳିନ ଥିଲା। ଆମେ ସବୁ ବେଳେବେଳେ ଥଟ୍ଟା କରି କହୁ: "ଏ ଇଉରୋପୀୟ ଜିନ୍ କେମିତି ପଶି ଆସିଛି।" ଦ୍ୱିତୀୟତଃ ତା'

ମୁଖରେ ଥିଲା ଏକ ଅଦ୍ଭୁତ ଧରଣର ବାକ୍‌ସଂଯମ। କୌଣସି ଏକ ମୁହୂର୍ତ୍ତରେ ଆମେ ତା'ମୁଖରୁ ଖରାପ କଥା, ଅଶାଳୀନ ମନ୍ତବ୍ୟ ଶୁଣି ନାହୁଁ। ସେ ସମସ୍ତଙ୍କ କଥା ଶୁଣେ, ଧୈର୍ଯ୍ୟର ସହିତ ଦୀର୍ଘ ସମୟ ଶୁଣେ। ଅଥଚ ସ୍ମିତ ହସି ସଂକ୍ଷିପ୍ତ ଉତ୍ତରଟି ଦିଏ। କୌଣସି ପାରମ୍ପାରିକ ଆଭିଜାତ୍ୟ ନ ଥାଇ ରୁଚିପୂର୍ଣ୍ଣ ବାକ୍‌ସଂଯମ ଆସିଲା କେଉଁଠୁ? ଏ ବିଷୟରେ ମୁଁ ଯେତେ ଅଧିକ ଭାବେ, ତା'ର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ସେତିକି ନତମସ୍ତକ ହୁଏ।

ଜେଜେମା'ର ଗୋଟିଏ ପୁତ୍ର ଦୁଇଟି କନ୍ୟା। ମୋର ବାପା ହେଉଛନ୍ତି ପୁତ୍ର, ଅବଶ୍ୟ ମୋର ଜେଜେମା ପରି ବାପାଙ୍କର ବାକ୍‌ସଂଯମ ନ ଥିଲା। ରାଗି ଗଲେ ସେ ଟାଣ କଥା କହୁଥିଲେ। ମାତ୍ର ମୋର ବଡ଼ ପିଉସୀ ଠିକ୍ ଜେଜେମା' ପରି। ମାପଚୁପ୍ କଥା। ଜୋର୍‌ରେ କଥା କହିବା କିମ୍ବା ଗାଳିଗୁଲଜ କରିବା ତା' ଆଚରଣର ବହିର୍ଭୁକ୍ତ। ପିତାମାତାଙ୍କୁ ହରାଇବାର ଦାରୁଣ ଦୁଃଖ ଲାଘବ ହେବାର ଯଦି କିଛି ମଲମ ଥାଏ, ତାହା ହେଉଛି ମୋ ବଡ଼ ପିଉସୀଙ୍କ(ପାର୍ବତୀ ଦେବୀ) ସ୍ନେହ ଶ୍ରଦ୍ଧା। ଜନ୍ମଜନ୍ମାନ୍ତରରେ ମୋର ବିଶ୍ୱାସ ଅଛି କି ନାହିଁ, ସେ କଥା ଜୋର୍ ଦେଇ କହିପାରିବି ନାହିଁ। କିନ୍ତୁ ଏହା ସ୍ୱୀକାର କରିବି ଯେ ମୋ ପିଉସୀର ଋଣ ମୁଁ ଶତଜନ୍ମରେ ମଧ୍ୟ ସୁଝି ପାରିବି ନାହିଁ।

ପିଉସୀ ଘରେ ବଡ଼ ହେବା ସମୟରେ ମୁଁ ଆଉ ଗୋଟିଏ ଦୁଇଟି ଜିନିଷର ସ୍ପଷ୍ଟ ଅନୁଭବ ପାଇଛି। ସେ ସମୟରେ ଏକାନ୍ନବର୍ତ୍ତୀ ପରିବାରସବୁକୁ ଯେଉଁମାନେ ସଚଳ ରଖୁଥିଲେ ସେମାନେ ଏକ ବିଶେଷ ଧରଣର ଦକ୍ଷତାର ଅଧିକାରୀ ଥିଲେ। ମୋ ପିଉସୀର ଛ'ଟି ଝିଅ ଓ ଗୋଟିଏ ପୁଅ। ବଳରାମ ଭାଇଙ୍କଠାରୁ ବୟସରେ ବଡ଼ ହୋଇଥିବା ଦୁଇ ଭଉଣୀ ଓ ତାଙ୍କଠାରୁ ସାନ ବୟସର ଚାରି ଭଉଣୀ। ପରିବାରଟି ବଡ଼, ପୁଣି ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ। ପୁଣି ସେ ସମୟରେ ପରିବାରରେ ପୁତ୍ରର ପ୍ରାଧାନ୍ୟ ଏକ ସ୍ୱାଭାବିକ ଓ ନିତିଦିନିଆ ଘଟଣା। ଏହା ସତ୍ତ୍ୱେ ଘରେ ଭଲ ଜିନିଷଟି ରନ୍ଧା ହେଲେ ତାହା ଖାଇବାର ପ୍ରଥମ ସୁଯୋଗ ମୁଁ ପାଏ। ବଳରାମ ଭାଇ ପରେ ସେ ସୁଯୋଗ ପାଆନ୍ତି। ଏପରି ଘଟଣା ବାରମ୍ବାର ଘଟିଲେ ମୋତେ କଥାରେ ବୁଝାଇବାକୁ ପଡ଼ି ନଥାଏ ଯେ ମୋତେ ମୋର ପିଉସୀ କେତେ ଭଲ ପାଆନ୍ତି।

ପୂର୍ବରୁ ସୂଚନା ଦେଇଛି ଯେ ମୋ ପିଉସାପିଇସୀଙ୍କ ଘର ବ୍ୟତୀତ ସମାନ ପରିସର ମଧ୍ୟରେ ମୋ ପିଇସାଙ୍କର ଦୁଇ ଭାଇଙ୍କ ପରିବାର ରୁହନ୍ତି। ଏମାନେ ତିନି ଭାଇ ଗୋଟିଏ ବାପ ମା'ର ସନ୍ତାନ ନୁହଁନ୍ତି। ଏହି ତିନିଜଣଙ୍କର ବାପା ପରସ୍ପରର ଭାଇ ତଥାପି ଏହି ତିନି ପିଇସାଙ୍କ ମଧ୍ୟରେ ଅପୂର୍ବ ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟ ଥିଲା। ପ୍ରତ୍ୟେକ ପିଉସାଙ୍କର ପରିବାରଟି ବଡ଼। ନିତିଦିନିଆ ରୋଷାଇ ଅଲଗା ଅଲଗା।

ଲମ୍ବା କୁଟୀର ଘର ମଧ୍ୟରେ ତିନୋଟି ପରିବାରକୁ ପୃଥକ୍ ପୃଥକ୍ ଜାଗା ଦିଆଯାଇଛି। ଅଲଗା କରିବା ପାଇଁ ଘର ଭିତରେ କାନ୍ଥ ନାହିଁ ମାତ୍ର ତିନୋଟି ପରିବାରର ଭୌଗୋଳିକ ସୀମାରେଖା ସହଜରେ ଜାଣି ହେବ। ମାତ୍ର ଉତ୍ସବ ଓ ବିଶେଷ ଦିନମାନଙ୍କରେ ତିନି ପରିବାରର ସମସ୍ତେ ଏକଜୁଟ ହୋଇ କାରବାର କରନ୍ତି। ସବୁ ମିଶିଗଲେ ସଦସ୍ୟ ସଂଖ୍ୟା ପ୍ରାୟ ପଚାଶ ହେବ। ଘର ଭିତରେ ବଣଭୋଜିର ଆବାହାଓ୍ୱା ସୃଷ୍ଟି ହୁଏ।

ମୋର ନିଜ ପିଉସୀଙ୍କର ଆର୍ଥିକ ଅବସ୍ଥା ଖୁବ୍ ଖରାପ। ବିଶେଷତଃ ଗୋଟିଏ ଝିଅର ବିବାହ ବ୍ୟବସ୍ଥାରେ ସେ କରିଥିବା ଧାର କରଜ ଶୁଝିବା ପରେ ପୁଣି କରଜ କରିବାକୁ ପଡ଼ିଥାଏ। ପ୍ରଥମ ତିନି ଝିଅଙ୍କ ବିବାହ ସମୟକୁ ବଳରାମ ଭାଇ ରୋଜଗାରକ୍ଷମ ହୋଇ ନଥିଲେ। ସୁତରାଂ ପୂରା ବୋଝଟି ପିଉସା ପିଉସୀଙ୍କ ଉପରେ ନ୍ୟସ୍ତ ଥିଲା। ଏ ସମସ୍ତ ସତ୍ତ୍ୱେ ସେମାନଙ୍କର ସ୍ନେହ ଶ୍ରଦ୍ଧାର ପ୍ରାଚୁର୍ଯ୍ୟ ମୋ ପାଇଁ କମ୍ ନ ଥିଲା। ମଝି ପିଉସା ହେଉଛନ୍ତି ଇନ୍ଦ୍ରମଣି ସାହୁ। ତାଙ୍କର ଔପଚାରିକ ଶିକ୍ଷା ସୀମିତ ହେଲେ ମଧ୍ୟ ସେ ଥିଲେ ଉଦ୍ୟୋଗୀ, ପରିଶ୍ରମୀ ଏବଂ ଦୂରଦ୍ରଷ୍ଟା। ସେ ସମୟରେ ସେ ଅନ୍ୟମାନଙ୍କର କୋଠାବାଡ଼ି ନିର୍ମାଣର ଛୋଟକାଟିଆ କଣ୍ଟ୍ରାକ୍ଟର କାର୍ଯ୍ୟ କରୁଥିଲେ। ତାଙ୍କର ପତ୍ନୀ ହେଉଛନ୍ତି ସରୋଜିନୀ ଦେବୀ। ତାଙ୍କୁ ମୁଁ 'ସଜିମା' ବୋଲି ଡାକେ। ମୋର ନିଜ ପିଉସୀଙ୍କ ପରି ସେ ମଧ୍ୟ ବିଶାଳ ହୃଦୟର ଅଧିକାରୀ। ତାଙ୍କର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିବାରୁ ମୁଁ ତାଙ୍କଠାରୁ ଅନ୍ୟ ଏକ ସହାୟତା ପାଏ। ସ୍କୁଲରେ ପଢୁଥିବା ସମୟରେ ମୋର କେବେ କେମିତି ସାମାନ୍ୟ ପକେଟ୍ ଖର୍ଚ୍ଚ ଦରକାର ହେଲେ ମୁଁ ସଜିମା'ଙ୍କୁ ମାଗେ। ଏକ ଟଙ୍କା, ଦୁଇ ଟଙ୍କା କିମ୍ୱା ପାଞ୍ଚ ଟଙ୍କା। ତାଙ୍କୁ ଡାକି ନେଇ ଚୁପ୍ କରି ମୋର ଅନୁରୋଧ ଜଣାଏ। ମୋତେ ଧାର୍ ଦିଅନ୍ତୁ ବୋଲି କୁହେ ସିନା କିନ୍ତୁ ଫେରାଇବାର ମୁହୂର୍ତ୍ତ ମୋର ମନେନାହିଁ।

ମୋର ନିଜ ପିଉସୀଙ୍କ ପୁତ୍ର ବଳରାମ ଭାଇ। ତାଙ୍କର ତିରୋଧାନ (ଫେବୃଆରୀ ୧୧, ୨୦୧୭) ପର୍ଯ୍ୟନ୍ତ ସେ ମୋର ବଡ଼ଭାଇର ଭୂମିକା ନିର୍ବାହ କରୁଥିଲେ। ଭାଉଜ (ଯାହାଙ୍କୁ ମୁଁ ନୂଆବୋଉ ବୋଲି ଡାକେ) ମଧ୍ୟ ଶ୍ରଦ୍ଧାଶୀଳ ଥିଲେ। ଭାଇଙ୍କ ଦେହାନ୍ତ ହେବାର ଦୁଇତିନି ବର୍ଷ ପୂର୍ବରୁ ତାଙ୍କର ତିରୋଧାନ ଘଟିଥିଲା। ମୁଁ ପିଉସୀ ଘରକୁ ଆସି ହାଇସ୍କୁଲ ପାଠ ଆରମ୍ଭ କଲାବେଳକୁ ଭାଇ ଦୁଇଟି ଉପର କ୍ଲାସରେ ପଢୁଥିଲେ। ସାହିତ୍ୟରେ ସର୍ବୋଚ୍ଚ ନମ୍ବର ପାଇଥିବାର ପ୍ରଶଂସାପତ୍ରଟି ମୋ ଆଖିରେ ପଡ଼ିଥିଲା। ପ୍ରକୃତରେ ତାଙ୍କର ସାହିତ୍ୟ ରୁଚି ଓ ଭାଷା ପ୍ରୀତି ଅଧିକ ଥିଲା। ହାଇସ୍କୁଲର (ଦଶମ/ଏକାଦଶ ଶ୍ରେଣୀ) ଶେଷ ପର୍ଯ୍ୟାୟ ବେଳକୁ ସେ କେତେକ ନାଟକରେ ଅଂଶ ଗ୍ରହଣ କରିବା ବ୍ୟତୀତ ପରିଚାଳନା ମଧ୍ୟ କରିଥିଲେ।

ଉଲ୍ଲେଖଯୋଗ୍ୟ ଯେ ସେ ଦୁଇଟି ସୁନ୍ଦର ନାଟକ ମଧ୍ୟ ନିଜେ ଲେଖିଥିଲେ। ସେଗୁଡ଼ିକର ସଫଳ ଉପସ୍ଥାପନା କଟକର ପେସାଦାର ରଙ୍ଗମଞ୍ଚ ଅନ୍ନପୂର୍ଣ୍ଣା ଥିଏଟର ଓ ଜନତା ରଙ୍ଗମଞ୍ଚରେ ସଫଳତାର ସହ ହୋଇପାରିଥିଲା। ତାଙ୍କର ଏପରି କଳାକୃତି ପାଇଁ ମୋ ମନରେ ଗଭୀର ସମ୍ମାନ ଥିଲା। କଳାତ୍ମକ ପ୍ରଚେଷ୍ଟା ସବୁବେଳେ ପାରିବାରିକ ସ୍ୱୀକୃତି ଲାଭ କରି ନ ଥାଏ। ତେଣୁ ପିଉସା (ଭ୍ରମରବର ସାହୁ) ଭାଇଙ୍କ ଉପରେ କ୍ଷୁବ୍ଧ। ଏହା ପାଠପଢ଼ାରେ ଘୋର ବାଧକ। ଏହା କହି ସେ ଭାଇଙ୍କୁ ଗାଳିଗୁଲଜ କରୁଥିଲେ। ମୋତେ ଏ ସବୁ ଭଲ ଲାଗୁ ନଥିଲା। ହେଲେ ପ୍ରତିବାଦ କରିବାର ସାହସ ନ ଥିଲା।

ମୁଁ ନିୟମିତ ଭାବରେ ପଢ଼ାପଢ଼ି କରୁ ଥିବାରୁ ଏବଂ ବଳରାମ ଭାଇ ଅବହେଳା କରୁଥିବାରୁ ଭାଇ ଅଧିକ ଗାଳି ଶୁଣୁଥିଲେ। ବିଶେଷତଃ ପ୍ରତି ସନ୍ଧ୍ୟାରେ ପିଇସାମାନେ ଯେତେବେଳେ ଦେଖନ୍ତି ଯେ ମୁଁ ଲଣ୍ଠନ ଜାଳି ବହି ଧରି ପାଠ ପଢୁଛି ଅଥଚ ବଳରାମ ଭାଇ କିମ୍ବା ଦ୍ୱିତୀୟ ପିଇସାଙ୍କ ବଡ଼ପୁଅ ବଂଶୀ (ବଂଶୀଧର ସାହୁ) ଘରେ ଉପସ୍ଥିତ ନାହାଁନ୍ତି, ସେତେବେଳେ ସେମାନେ କ୍ରୋଧାନ୍ୱିତ ହୋଇ ପଡ଼ନ୍ତି। ମୋ ଉପରେ ଅଜସ୍ର ପ୍ରଶଂସା ଏବଂ ସେ ଦୁଇଜଣଙ୍କ ଉପରେ ଗାଳି ବର୍ଷଣ ହୁଏ।

ମୋର ପରମ ସୌଭାଗ୍ୟ ଯେ ବଳରାମ ଭାଇ ଏତେ ଗାଳି ଶୁଣିଲେ ମଧ୍ୟ (ଏବଂ ଏହାର କାରଣ ମୋର ସ୍କୁଲର ସଫଳତା) ତାଙ୍କର ମୋ ପ୍ରତି ଆଦୌ ଅସୂୟା ନ ଥିଲା। ବରଂ ସେ ପିଉସାଙ୍କୁ ମୋ ଅନୁପସ୍ଥିତିରେ କହୁଥିଲେ:- "ଫକୀର ସ୍କୁଲ ବ୍ୟତୀତ ଅନ୍ୟ ସବୁ ପ୍ରତିଯୋଗିତା ସ୍କୁଲକୁ ଯାଉଛି। ତା'ର ପୋଷାକପତ୍ରର ଯତ୍ନ ନେଉଥିବୁ। ତା'ର ଖାଇବା ପିଇବା ଭଲ ରୂପେ ଦେଖୁଥିବୁ।" ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ସ୍ନେହ ଶ୍ରଦ୍ଧାର ପ୍ରାଚୁର୍ଯ୍ୟ ମୁଁ ଅନୁଭବ କରୁଥିଲି। ସଜିମା'ଙ୍କ ବଡ଼ ପୁଅ ବଂଶୀ ମୋଠାରୁ ଅଳ୍ପ ସାନ। ସେ ମଧ୍ୟ ମୋ ପାଇଁ ଗାଳି ଶୁଣୁଥିଲା। ତଥାପି ତାହାର ଈର୍ଷା ଭାବ ମୁଁ ଆଦୌ ଦେଖି ନାହିଁ। ସେ ଅଧିକା ପକେଟ୍ ଖର୍ଚ୍ଚ ପାଇ ସିନେମା ବାହାରିଲେ ମୋତେ ଟାଣି ନେଉଥିଲା। ଈଶ୍ୱର ତାକୁ ଦୀର୍ଘାୟୁ ରଖନ୍ତୁ।

ମୋର ନିଜ ଭାଇ ହେଉଛି ଅଚ୍ୟୁତ (ଅଚ୍ୟୁତାନନ୍ଦ ସାହୁ)। ତା'ର ପତ୍ନୀ ହେଉଛି ସଉରୀ। ସେମାନଙ୍କର ତିନି ଝିଅ (କଞ୍ଚନା, ବନ୍ଦନା ଓ ଚନ୍ଦନା) ମୋର ଝିଅ ପଲ୍ଲୀଠାରୁ ବୟସରେ ବଡ଼। ସେମାନଙ୍କର ସାନପୁଅ ଲିଟୁ (ପ୍ରତ୍ୟୁଷ ସାହୁ) ପଲ୍ଲୀର ସମବୟସ। ଆମ ଦୁଇ ଭାଇଙ୍କ ବିବାହ ଅଳ୍ପ ମାସର ବ୍ୟବଧାନ ମଧ୍ୟରେ ଘଟିଥିଲା ଏବଂ ଅଚ୍ୟୁତର ବିବାହ ସମୟରେ ଆମ୍ଭେମାନେ କାନାଡ଼ାରେ ଥିଲୁ। ପରିବାର ବଢ଼ାଇବାର ନିଷ୍ପତ୍ତି ଆମେ ଇଚ୍ଛାକୃତ ଭାବରେ ବିଳମ୍ବରେ ନେଲୁ। ଏ ଦୃଷ୍ଟିରୁ କଞ୍ଚନା, ବନ୍ଦନା ଓ ଚନ୍ଦନା ଆମ ବୃହତ୍ତର ପରିବାରର ବଡ଼ ଝିଅ।

ଅଦୃଷ୍ଟର ଇଙ୍ଗିତରେ ମୁଁ କେତେକ ସୌଭାଗ୍ୟର ଅଧିକାରୀ ହେଲି। ମୋ ଜୀବନରେ ସଂଗ୍ରାମ ଥିଲେ ମଧ୍ୟ ସଫଳତା ମଧ୍ୟ ଥିଲା। ମୋର ସାନଭାଇର ସଂଗ୍ରାମ ଅପେକ୍ଷାକୃତ ଅଧିକ କଠିନ ଥିଲା। ମୁଁ ପିଉସୀ ଘରର ଛତା ତଳେ ବେଶ୍ କିଛି ପରିମାଣର ଝଡ଼ ବର୍ଷାକୁ ଏଡ଼ାଇ ପାରିଥିଲି। ଅଚ୍ୟୁତର ସେପରି ସୁଯୋଗ ନ ଥିଲା। ସେ ନିଜେ ଇଣ୍ଟରମିଡ଼ିଏଟ୍ ସାଇନ୍ସ ଶେଷ କରି ଆଗକୁ ବଢ଼ିପାରି ନଥିଲା। ହେଲେ ଆମ ପରିବାରର ତିନିଜଣ ଝିଅ ବେଶ୍ ଆଗେଇ ପାରିଛନ୍ତି। ବଡ଼ ଝିଅ କଳ୍ପନା ମନସ୍ତତ୍ତ୍ୱରେ ଏମ୍.ଏ. ପାଶ୍ କରି ଏବଂ ମୋ ତତ୍ତ୍ୱାବଧାନରେ ମନସ୍ତତ୍ତ୍ୱରେ ପି.ଏଚ୍.ଡ଼ି. କରି ବର୍ତ୍ତମାନ ଜାଭିୟର୍ ବିଶ୍ୱବିଦ୍ୟାଳୟରେ ସହକାରୀ ଅଧ୍ୟାପକ ରୂପେ କାର୍ଯ୍ୟରତ। ଏହା ପୂର୍ବରୁ ସେ ଏସିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟ ଏବଂ ଶ୍ରୀ ଶ୍ରୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ରୂପେ କାର୍ଯ୍ୟ କରୁଥିଲା। ସେ ଭୁବନେଶ୍ୱରର ଜଗନ୍ନାଥ ବିହାରରେ ରହୁଥିବାରୁ ତା' ସହିତ ସ୍ନେହ ସମ୍ପର୍କ ଖୁବ୍ ଗଭୀର। ତା'ର ଦୁଇପୁଅ ସୋନୁ ଓ ମନୁ ଆମର ଖୁବ୍ ପ୍ରିୟ। ଆମର ସୁବିଧା ଅସୁବିଧାରେ କଳ୍ପନା ଆସେ ଏବଂ ପରିବାରର ବଡ଼ ଝିଅ ହିସାବରେ ତା'ର ଯାହା କରିବାର କଥା ତା'ଠାରୁ ହୁଏତ ଅଧିକ କରିଥାଏ। ମୋର ପତ୍ନୀଙ୍କ ସହିତ କଳ୍ପନାର ଭାବଗତ ସମ୍ପର୍କ ଖୁବ୍ ଗଭୀର ଏବଂ ପ୍ରାୟ ପ୍ରତିଦିନ ଦୁହେଁ ଦୀର୍ଘ ସମୟ ଧରି ସାକ୍ଷାତରେ କିମ୍ୱା ଫୋନ୍ ମାଧ୍ୟମରେ ଭାବର ଆଦାନ ପ୍ରଦାନ କରି ଆନନ୍ଦ ଅନୁଭବ କରନ୍ତି। କଳ୍ପନା ପ୍ରତି ଆମ ଦୁହିଁଙ୍କର ଶୁଭାଶିଷ ଚିରଦିନ ଅମ୍ଳାନ ରହିବ।

ମୋର ସାନ ଭାଇ ଅଚ୍ୟୁତ ଦୀର୍ଘଦିନ ଚାଉଳିଆଗଂଜରେ ରହି ଆସିଛି। ସେ ଓ ସାନପୁଅ ଲିଟୁ ପୃଥକ୍ ପୃଥକ୍ ଛୋଟକାଟିଆ ବ୍ୟବସାୟ କରନ୍ତି। ଅଚ୍ୟୁତର ହୃଦୟବତ୍ତା ଓ ସହନଶୀଳତା ପାଇଁ ଆଖପାଖର ଲୋକମାନେ ତା'କୁ ଖୁବ୍ ଭଲ ପାଆନ୍ତି। ଆମ ଦୁଇଭାଇଙ୍କ ମଧ୍ୟରେ ସମ୍ପର୍କର ସେତୁ ସେମିତି ଦୃଢ଼ ଓ ଶକ୍ତିଶାଳୀ ଅଛି। ଅନେକ ସମୟରେ ଆମେ କଟକ ଗଲେ ସେଠାରେ ସମୟ କାଟୁ। ଲିଟୁ ମଧ୍ୟ ବ୍ୟାବହାରିକ ଜୀବନରେ ଖୁବ ଦକ୍ଷ ଓ କର୍ମଠ ହୋଇଛି। ଆମର ଦରକାର ବେଳେ ସେ ଭୁବନେଶ୍ୱର ଆସି କେତେକ କାମ ସମ୍ଭାଳିନିଏ। ବନ୍ଦନା ସ୍ୱୀକୃତିପ୍ରାପ୍ତ ସ୍କୁଲରେ ଶିକ୍ଷୟିତ୍ରୀ। ସେ ଓ ତା'ର ପତି ଜିତୁ ଭୁବନେଶ୍ୱରର ବରଗଡ଼ ଅଞ୍ଚଳରେ ରୁହନ୍ତି। ଅନ୍ୟତମ ଝିଅ ଚନ୍ଦନା ଷ୍ଟାଫ୍ ନର୍ସ। ସେ ଓ ତା'ର ପତି ସତ୍ୟ ନିଆଳୀରେ ରୁହନ୍ତି। ଶୁଭ ଅବସର ଦିନମାନଙ୍କରେ ଆମେ ଦୁଇ ଭାଇ ଏବଂ କଳ୍ପନା, ବନ୍ଦନା, ଚନ୍ଦନାର ପରିବାର ଏକାଠି ହୋଇ ଖୁସି ବାଣ୍ଟିଥାଉ। ଅବଶ୍ୟ ଲିଟୁ ସେ ସମାବେଶରେ ରହିଥାଏ ଏବଂ ସମ୍ଭବପର ହେଲେ ପତ୍ନୀ ମଧ୍ୟ ଯୋଗଦିଏ। ଅଚ୍ୟୁତର ମୋ ପ୍ରତି ସମ୍ମାନ ଓ ପିଲାମାନଙ୍କର ଆମ ପ୍ରତି ଆନୁଗତ୍ୟ ଅଠା ପରି ଆମକୁ ଏକାଠି କରି ଜଡ଼େଇ

ରହିଛି। ଭବିଷ୍ୟତରେ ମଧ୍ୟ ଏହା ଆମ ବ୍ୟକ୍ତିଗତ ସୁଖର କାରଣ ହୋଇ ରହିବ ବୋଲି ଭରସା ଅଛି।

ଏ ଜୀବନରୁ ମୁଁ କ'ଣ ଶିଖିଛି? ଏ ପ୍ରଶ୍ନର ସମ୍ମୁଖୀନ ହୋଇ ନିଜ ପାଖରେ ଉତ୍ତର ଗଠନ କରିବା ସମୟରେ ଦୁଇଜଣଙ୍କ କଥା ମୋ ମନରେ ପ୍ରବେଶ କରେ। ସେ ହେଉଛି ମୋ ସାନ ପିଉସୀର ଝିଅ ଓ ମୋର ଭଉଣୀ ଲତିକା ଏବଂ ତା'ର ଝିଅ (ମୋର ଭାଣିଜୀ) ମମୀ। ମୋର ବଡ଼ ପିଉସୀଙ୍କ (ପାର୍ବତୀ ଦେବୀ) ବିଷୟରେ ମୁଁ ପୂର୍ବରୁ କହିସାରିଛି। ମୋର ସାନ ପିଉସୀଙ୍କ (ହାରାମଣି ଦେବୀ) ଜୀବନ ବେଶ୍ ସଂଘର୍ଷପୂର୍ଣ୍ଣ ରହିଥିଲା। ସେ ମୋ ବାପାଙ୍କଠାରୁ ବୟସରେ ସାନ ଥିଲେ ଏବଂ ସେ କଟକର ଷ୍ଟେସନ ବଜାରରେ ରହୁଥିବା ଜଣେ ବ୍ୟବସାୟୀଙ୍କୁ ବିବାହ କରିଥିଲେ। ମୋ ବଡ଼ ପିଉସୀଙ୍କ ତୁଳନାରେ ତାଙ୍କର ପ୍ରକୃତି ଭିନ୍ନ ଥିଲା। ସେ ଆମ୍ଭମାନଙ୍କୁ ଗଭୀର ସ୍ନେହ କରୁଥିଲେ ସତ, ହେଲେ ସେ ଖୁବ୍ ସ୍ପଷ୍ଟବାଦୀ ଓ ମୁକାବିଲା କରିବା ପ୍ରକୃତିର ଲୋକ ଥିଲେ। ମୋର ମନେଅଛି ଯେ ଆମର ପିଲା ବୟସରେ କୌଣସି କାରଣରୁ ଆମେ ଷ୍ଟେସନ୍ ବଜାର ବାଟ ଦେଇ କଲେଜ ଛକ କିମ୍ବା ରାଣୀହାଟ ଯାଉଥିବାର ଖବର ପାଇଲେ ସେ ତୁରନ୍ତ ଷ୍ଟେସନ ବଜାରରେ ଆମର ରିକ୍ସା ପାଖକୁ ଦୌଡ଼ି ଆସିବେ। ସେଓ, ନାସ୍‌ପାତି ଓ କମଳାର ବ୍ୟାଗ୍ ଓ ଅନ୍ୟ ସବୁ ଲୋଭନୀୟ ଜଳଖିଆର ପ୍ୟାକେଟ୍ ଦେବେ। କୌଣସି କାରଣରୁ ତାଙ୍କର ପାରିବାରିକ ଜୀବନ ଅଶାନ୍ତ ଥିଲା। ସେ ତାଙ୍କର ଏକମାତ୍ର କନ୍ୟା ଲତିକାକୁ ନେଇ ସ୍ୱାମୀଗୃହ ପରିତ୍ୟାଗ କରି ଚାଲି ଆସିଲେ। ଚାଉଳିଆଗଞ୍ଜରେ ଜଣେ ବ୍ୟକ୍ତି ଶ୍ରୀ ବଟକୃଷ୍ଣ ସାହୁ ଦୟା ପରବଶ ହୋଇ ତାଙ୍କୁ ଗୋଟିଏ କୋଠରୀ ଛାଡ଼ି ଦେଇଥିଲେ। ସେ ସେଠାରେ ଲତିକା ନାନୀକୁ ନେଇ ରହୁଥିଲେ।

ମୋ ବାପାଙ୍କର ଇଚ୍ଛା ଥିଲା ଯେ ପିଉସୀ ପିଇସାଙ୍କ ସହିତ ଆପୋଷ ଆଲୋଚନା କରି ସମାଧାନର ବାଟ ବାହାର କରନ୍ତୁ। ମାତ୍ର ପିଉସୀ ନିଜର ଜିଦ୍‌ରେ ଅଟଳ ଥିଲେ। ଫଳରେ ଦାମ୍ପତ୍ୟ ବିବାଦର ସମାଧାନ ହେଲା ନାହିଁ। ବାପା ମଧ୍ୟ ଦୂରେଇଗଲେ। ବାପା ଓ ସାନ ପିଉସୀଙ୍କ ମଧ୍ୟରେ ବାପାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କଥାବାର୍ତ୍ତା ନ ଥିଲା। ଦୀର୍ଘ ଦିନର କୋର୍ଟ କଚେରୀ ପରେ ବିଚାରାଳୟର ନିର୍ଦ୍ଦେଶ ଅନୁଯାୟୀ ପିଉସୀ ମାସିକ ସତର ଟଙ୍କା କ୍ଷତିପୂରଣ ପାଉଥିଲେ। ଏ ଟଙ୍କା ମନିଅର୍ଡ଼ର ଯୋଗେ ଆସିଥାଏ। କହିବା ଅନାବଶ୍ୟକ ଯେ ଏହା ଖୁବ୍ ନଗଣ୍ୟ। ନିରାଶ୍ରୟ ଅବସ୍ଥାରେ ହାରି ନ ଯାଇ ଛୋଟକାଟିଆ କାମ କରି ଅଳ୍ପ କିଛି ଉପାର୍ଜନ କରେ। ମୁଁ ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ସମୟରେ ମୋର ପିଉସୀ ଓ ଲତିକା ନାନୀ ଅଭାବ ଅନାଟନ ବିରୁଦ୍ଧରେ ଯେଉଁ ସଂଗ୍ରାମ କରୁଥିଲେ ତାହାର ଚିତ୍ର କଳ୍ପନା

ପରଦାରେ ଥରେ ଅଧେ ଆସିଗଲେ ମୋର ଆଖିପତା ଓଦା ହୁଏ। କିନ୍ତୁ ପରକ୍ଷଣରେ ସେମାନଙ୍କର ସାହସ ଓ ସ୍ୱାଭିମାନ ପାଖରେ ନତମସ୍ତକ ମଧ୍ୟ ହୁଏ।

ମୁଁ ହାଇସ୍କୁଲରେ ପଢୁଥିବା ସମୟରେ ଆଉ ଗୋଟିଏ ଘଟଣା ଘଟିଲା। ମୋର ସାନ ପିଉସୀ ଓ ପିଉସାଙ୍କ ମଧ୍ୟରେ ଆଇନଗତ ଭାବରେ ବିବାହ ବିଚ୍ଛେଦ ଘଟିଥିଲେ ମଧ୍ୟ କୋର୍ଟର ନିର୍ଦ୍ଦେଶ ଅନୁଯାୟୀ ପିଉସା ଲତିକା ନାନୀର ବିବାହ ବ୍ୟବସ୍ଥା ଆୟୋଜନ କଲେ। ତରବରିଆ ଓ ବାଧ୍ୟବାଧକତାରେ ଘଟିଥିବା ଏ ଘଟଣାଟି ମଧ୍ୟ ଶୁଭଦାୟୀ ହୋଇ ନଥିଲା। ବାରଙ୍ଗର ଏକ ଯୁବକ ଭାଗବତ ସାହୁଙ୍କ ସହିତ ବିବାହ ଅନୁଷ୍ଠିତ ହେଲା। ପର ପର୍ଯ୍ୟାୟରେ "ମମୀ" ନାମଧେୟ କନ୍ୟା ସନ୍ତାନ ଜନ୍ମ ନେଲା। ମାତ୍ର ଲତିକା ନାନୀ ସୁଖୀ ହୋଇ ପାରିଲା ନାହିଁ। ତାର ଜୀବନ ସଂଗ୍ରାମ ଅବ୍ୟାହତ ରହିଲା।

"ମମୀ"ର ଭଲ ନାମ ହେମନ୍ତ ମଞ୍ଜରୀ। "ମମୀ" ଏବେ ସୁପ୍ରତିଷ୍ଠିତ। ତେବେ ଲୋକ ଗହଣରେ ବିରକ୍ତି ପ୍ରକାଶ କରି ବଡ଼ ପାଟିରେ କୁହେ ଯେ ମୁଁ ତା'ର ଏପରି ପୁରୁଣାକାଳିଆ ନାମଟା (ହେମନ୍ତ ମଞ୍ଜରୀ)ଦେଇଛି। ପ୍ରକୃତରେ ଦୋଷ ମୋର, ଏଥିରେ କହିବାର କିଛି ନାହିଁ। କିନ୍ତୁ ଲତିକା ନାନରା ସଂଗ୍ରାମ ପରି ମମୀର ମହାସଂଗ୍ରାମ ଯେଉଁମାନେ ଦେଖିଛନ୍ତି, ସେମାନେ ତାକୁ କେବଳ ଶ୍ରଦ୍ଧା ନୁହେଁ, ସମ୍ମାନ ମଧ୍ୟ କରିବେ। ସେ ବର୍ତ୍ତମାନ ଖୁବ୍ ସ୍ୱଚ୍ଛଳ। ତା'ର ପତି ଠୁକି (ତ୍ରିଲୋଚନ ସାହୁ) ବ୍ୟବସାୟିକ ସାମୁଦ୍ରିକ ଜାହାଜର କ୍ୟାପ୍‌ଟେନ୍। ତା'ର ମହାନଦୀ ବିହାର (କଟକ) ବାସଭବନଟି ଏପରି ସୁଦୃଶ୍ୟ ଯେ ମୋର ଗାଡ଼ିଚାଳକ ତା'ର ନିଜସ୍ୱ ଭାଷାରେ ତା'କୁ "ସୁଟିଂ କରିବାର ଘର" ବୋଲି କହିଥାଏ।

ଉତ୍କଟ ଦାରିଦ୍ର୍ୟରୁ ପ୍ରାଚୁର୍ଯ୍ୟକୁ ଯାତ୍ରା କରିବାର ଗତିପଥ ତା' ପାଇଁ ସହଜ ନ ଥିଲା। ବିନା ସମ୍ବଳରେ ସେ ପାଠ ପଢ଼ିଛି, ସଂଗ୍ରାମ କରିଛି। ଭୂଗୋଳ ଶାସ୍ତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କଲା। ଅବଶ୍ୟ ଶେଷ ପର୍ଯ୍ୟାୟ ବେଳକୁ ବଳରାମ ଭାଇ ରୋଜଗାର ଆରମ୍ଭ କରିଥିଲେ। ତେଣୁ ସେ ମମୀର ଅଭିଭାବକ ରୂପେ ଦାୟିତ୍ୱ ବୁଝିଲେ। ମୋର ଦାୟିତ୍ୱ ନେବା ସହିତ ମମୀର ମଧ୍ୟ ଦାୟିତ୍ୱ ନେଲେ। ତା'ର ବିବାହ ମଧ୍ୟ ଆୟୋଜନ କଲେ। ସବୁ ସତ୍ତ୍ୱେ ମମୀର ସାଧନାର ଯେଉଁ ଆତ୍ମା ଅଛି ତାକୁ ସମ୍ମାନ ନ ଦେଇ ରହିହେବ ନାହିଁ।

ଜାଗତିକ ପ୍ରଗତି ବ୍ୟତୀତ ମମୀ ଏବେ ଚିନ୍ମୟ ମିଶନର ଜଣେ ଅନୁରକ୍ତ ସେବିକା। ଆମ ସମସ୍ତଙ୍କର ପରମ ସୌଭାଗ୍ୟ ଯେ ମିଶନର ମୁଖ୍ୟ ପରମ ଆରାଧ୍ୟ ଶ୍ରୀ ତେଜୋମୟାନନ୍ଦ କଟକ ଆସିଲେ ସେ ଗୃହରେ ପାଦ ଦିଅନ୍ତି ଏବଂ ଅବସ୍ଥାନ କରନ୍ତି। ଆମେ ଦିବ୍ୟ ସଂସର୍ଗର ସୌଭାଗ୍ୟ ପାଇଥାଉ।

ମମୀର ସଂଗ୍ରାମଦୀପ୍ତ ଜୀବନରେ ଫଳଶ୍ରୁତି ହେଉଛି ତାହାର ପୁତ୍ର ଏବଂ ମୋର ପୌତ୍ରତୁଲ୍ୟ ଚିଣ୍ଟୁ (ଚିରଞ୍ଜିବ)। ସେ ସଫଳତାର ସହିତ ଓଡ଼ିଶାର ବିଶିଷ୍ଟ ଅଗ୍ରଣୀ ଇଞ୍ଜିନିୟରିଂ ଅନୁଷ୍ଠାନ ସିଲିକନ୍‌ରେ ବି.ଟେକ୍. ସମାପ୍ତ କରିଛି। ମାତ୍ର ମୂଷା ଦୌଡ଼ର ପ୍ରତିଯୋଗିତାରୁ ଓହରି ଯାଇ ସୁବାସ ଘାଇଙ୍କ SCRIPT WRITING ତାଲିମ ଅନୁଷ୍ଠାନରେ ପ୍ରଶିକ୍ଷଣ ନେଇଛି। ଏବେ ସେ ଏକ ସୃଜନାତ୍ମକ ଭୂମିକା ପାଇଁ ନିଯୁକ୍ତି ପାଇଛି। ଭୁବନେଶ୍ୱର ଚିନ୍ମୟ ମିଶନର ମୁଖ୍ୟ ଶ୍ରୀ ସଦାନନ୍ଦ ସରସ୍ୱତୀ ଥରେ ଥଟା କରି କହିଲେ- "ଚିଣ୍ଟୁ ଶରୀରରେ ତା' ଅଜାର ଲେଖାଲେଖି ଜିନ୍‌ଟା ଚାଲି ଆସିଛି।" ଏ ମନ୍ତବ୍ୟଟି ମୋ ପାଇଁ ନିଶ୍ଚୟ ସୁଖକର। ଲତିକା ନାନୀ ଓ ମମୀର ସଂଗ୍ରାମଶୀଳତା ପାଇଁ ମୁଁ ସେମାନଙ୍କୁ ଯେପରି ବଧେଇ ଜଣାଇବି ଚିଣ୍ଟୁର ସୃଜନଶୀଳ ପ୍ରତିଭାର ଉତ୍ତରୋତ୍ତର ଉନ୍ନତି ପାଇଁ ସେପରି ଆନ୍ତରିକ କାମନା ରଖିବି। ଚିଣ୍ଟୁର ସର୍ଜନଧର୍ମୀ ଯାତ୍ରା ସଫଳ ହେଉ।

ଯୌଥ ଜୀବନଯାତ୍ରାରେ ମୋ ପତ୍ନୀଙ୍କ ପରିବାରର ସ୍ନେହଶ୍ରଦ୍ଧା ଲାଭ କରିବାର ସୌଭାଗ୍ୟ ମୁଁ ପାଇପାରିଥିଲି। ଆମର ବିବାହିତ ଜୀବନରେ ଶାଶୁ ଶାନ୍ତିଲତା ଦତ୍ତଙ୍କ ସ୍ନେହଶ୍ରଦ୍ଧା ପାଇଁ ଆମେ ଦୁଇଜଣ କୃତଜ୍ଞ ରହିବୁ। ଶାଶୁ ଖୁବ୍ କଳାପ୍ରିୟ। ସେ ହୃଦୟସ୍ପର୍ଶୀ ଶୈଳୀରେ ବଂଶୀବାଦନ କରିପାରନ୍ତି ବୋଲି ଅଞ୍ଜୁ ମୁହଁରୁ ମୁଁ ବହୁବାର ଶୁଣିଛି ତେବେ ରୁଚିପୂର୍ଣ୍ଣ ଓଡ଼ିଆ ଓ ବଙ୍ଗଳା ସାହିତ୍ୟ ପଢ଼ିବା କ୍ଷେତ୍ରରେ ତାଙ୍କର ଏକାଗ୍ରତା ବେଶ୍ ପ୍ରେରଣାଦାୟକ। ସେ ତାଙ୍କର ଗ୍ରାମ ବାରଦାରେ (କଟକର ଓ.ଏମ୍.ପି. ଛକଠାରୁ ଦଶ ପନ୍ଦର କିଲୋମିଟର ଦୂରବର୍ତ୍ତୀ କନ୍ଦରପୁର ନିକଟସ୍ଥ ଗ୍ରାମ)ରହୁଥିବା ସମୟରେ କଟକରେ ରହୁଥିବା ମଝିଆଁ ପୁଅ ଅଶୋକ କୁମାର ଦତ୍ତଙ୍କ ଘରକୁ ଆସିଲେ ଆମ ପାଖକୁ ଆସନ୍ତି। ୧୯୯୧ ପରଠାରୁ ସେ ଆମ ପାଖରେ ଆମର ବାଣୀବିହାର ବାସଭବନରେ ରହିବାକୁ ଲାଗିଲେ। ଆମେ ସଦାସର୍ବଦା ତାଙ୍କର ଆଶୀର୍ବାଦ ପାଉଥିଲୁ। ଶେଷ ଚାରିବର୍ଷ ସେ ଶଯ୍ୟାଶାୟୀ ହୋଇ ପଡ଼ିଥିଲେ। ମୋର କନ୍ୟା ଭୂମିକା ଓ ଭାଇର ଝିଅ କଳ୍ପନାର ସେବାଯତ୍ନ ତାଙ୍କର ଜୀବନକୁ ଟିକେ ସହଜ କରି ପାରିଥିଲା। ସେ ୨୦୦୪ ମସିହା ସେପ୍ଟେମ୍ବର ମାସରେ ଶେଷ ନିଃଶ୍ୱାସ ତ୍ୟାଗ କଲେ।

ବଡ଼ ଶାଳକ ଶ୍ୟାମଳେନ୍ଦୁ ଦତ୍ତ ତାଙ୍କ ବୃତ୍ତି ନେଇ କେଉଁଝରର କଳିଙ୍ଗ ନଗରରେ ରହୁଥିଲେ। ସେ ସେବା ନିବୃତ୍ତ ହେବା ପରେ ଭୁବନେଶ୍ୱରର ଜଗନ୍ନାଥ ବିହାରରେ ବସବାସ ଆରମ୍ଭ କଲେ। ତାଙ୍କର ପଡ଼ୋଶୀ ରୂପେ ସାନ ଶାଳକ ଶେଖର କୁମାର ଦତ୍ତ (ବିଶିଷ୍ଟ ମଞ୍ଚ ଓ ଚଳଚ୍ଚିତ୍ର ଅଭିନେତା) ମଧ୍ୟ ସେଠାରେ ରହୁଥିଲେ। ଦତ୍ତ ପରିବାରର ଶିଳ୍ପୀ ମିଠୁ, ଜୟା, ବୁବାନ୍ ଓ ରୁମା ଆମର

ସନ୍ତାନପ୍ରତିମ। ଅଞ୍ଜୁ ସହିତ ଏମାନଙ୍କର ସ୍ନେହ ସମ୍ପର୍କ ଗଭୀର। ମେସ୍‌ଦା ଅଶୋକ କୁମାର ଦତ୍ତଙ୍କ କନ୍ୟା ଦେବାରତୀ (ଜୟା) ବର୍ତ୍ତମାନ ଗୌହାଟିରେ ଇଣ୍ଡିଆନ୍ ଅୟଲ୍ କର୍ପୋରେସନ୍(IOCL)ପରସର ପରିସର ମଧ୍ୟରେ ଅବସ୍ଥାନ କରୁଛି। ତାହାର ସ୍ୱାମୀ ରାହୁଲ ଥୁଲ୍ ଏହି କମ୍ପାନୀର ଜଣେ ପଦସ୍ଥ ଅଫିସର୍। ନିକଟ ଅତୀତରେ ପ୍ରାୟ ଗୋଟିଏ ସପ୍ତାହ ଅଞ୍ଜୁ ଓ ମୁଁ ସେଠାରେ ରହିଥିଲୁ। ଏହି ସମୟ ମଧ୍ୟରେ ଗୌହାଟୀ ଓ ଶିଲଂର ନୈସର୍ଗିକ ଶୋଭା ଯେପରି ଅବିସ୍ମରଣୀୟ ରହିବ, ଜୟା ଓ ରାହୁଲର ଆନ୍ତରିକତା ଏବଂ ସେମାନଙ୍କର ଆଦରଣୀୟ କନ୍ୟାଦ୍ୱୟ ଜିଗୀଷା ଓ ରୀତିଶାର ଆପଣାଇ ନେବାର ମନୋଭାବ ଅବିସ୍ମୃତ ରହିବ।

### ବଳୟ ମଧ୍ୟରେ ବଳୟ

ପିତାମାତା, ପିଉସାପିଇସୀ ଓ ଭାଇଭଉଣୀମାନଙ୍କୁ ନେଇ ଯେଉଁ ସାମାଜିକ ବଳୟରୁ ମୁଁ ଜୀବନିକା ସଂଗ୍ରହ କରିଛି, ସେ ବିଷୟରେ ମୋ ହୃଦୟର ଅଭିବ୍ୟକ୍ତି ପ୍ରକାଶ କରିଛି। କିନ୍ତୁ ସେହି ବଳୟ ମଧ୍ୟରେ ଆଉ ଗୋଟିଏ ବଳୟ ମଧ୍ୟରେ ଆତଯାତ ହେଉଥିବା ମୋର ପତ୍ନୀ ରୀତା(ଅଞ୍ଜୁ) ଓ କନ୍ୟା ପଲୀ(ଭୂମିକା) ସମ୍ପର୍କରେ ପଦେ ଦୁଇପଦ ନ ଲେଖିଲେ ମୋ ମନରେ ଅପରାଧବୋଧ ରହିଯିବ। ଅନିଚ୍ଛାକୃତ ଭାବରେ ମୁଁ ସେମାନଙ୍କୁ ଦୁଃଖ ଯନ୍ତ୍ରଣାର ଶରବ୍ୟ କରାଇଛି; ବହୁ ସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ କରିଛି। ତଥାପି ମୋ ସହିତ ଚାଲିବା ପ୍ରକ୍ରିୟାରେ ସେମାନେ ଯେପରି ଲହୁ ଲୁହାଣ ହୋଇଛନ୍ତି, ତାହାର ସ୍ମୃତିବୋଝ ମୋ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ ରହିଯିବ।

ପତି ପତ୍ନୀ ପରସ୍ପରର ନିକଟତମ ବନ୍ଧୁ। ସୁତରାଂ ଜଣଙ୍କ ପାଇଁ ଅନ୍ୟ ଜଣେ ସହ୍ୟ କରିବ ଏବଂ ସହାୟତା କରିବା ଏକ ସ୍ୱାଭାବିକ କଥା ବୋଲି ଅନେକ ଧାରଣା କରିବେ। କିନ୍ତୁ ଜୀବନର ଯେଉଁ କିଛି ବର୍ଷ (ବର୍ଷ ନୁହେଁ, କେତୋଟି ଦଶକ) ମୁଁ ଘଡ଼ିସନ୍ଧି ସମୟ ଦେଇ ଗତି କରିଛି, ସେ ସମୟରେ ଅଞ୍ଜୁ ଗୋଟିଏ ବିରାଟ କାନ୍ଥ ଭଳି ସବୁ ଆଘାତକୁ ନିଜ ଉପରକୁ ଟାଣି ନେଇଛି। ଦୀର୍ଘଦିନ ଧରି ମୁଁ ବାହାରକୁ ବାହାରି ପାରିନାହିଁ। ଆଖିରେ ଆଟ୍ରୋପିନ୍ ପକାଇ ଅନ୍ଧାର ଘରେ ମାସ ମାସ ବସିଛି। ଶୌଚାଳୟ ବ୍ୟବହାର କରିବାର ସାମର୍ଥ୍ୟ ହରାଇ ବସିଛି। ଏପରି ସମୟରେ ବଜାର କରିବା, ରୋଷାଇ କରିବା, ପଲୀକୁ ସ୍କୁଲକୁ ନେବା ଏବଂ ଡାକ୍ତର ପାଖକୁ ନେବା ପରି ସବୁ କାର୍ଯ୍ୟର ବୋଝ ନିଜ ଉପରକୁ ଟାଣି ନେଇଛି। ଶଙ୍କର ନେତ୍ରାଳୟକୁ ଯିବା ପାଇଁ ସୁଟ୍‌କେଶ୍ ବାନ୍ଧିବା ଓ ଖୋଲିବା ପରି ବିରକ୍ତିକର କାର୍ଯ୍ୟର ପୁନରାବୃତ୍ତି ସବୁବେଳେ ତା'ଉପରେ ଲଦି ହୋଇଯାଇଛି। ଅଧିକାଂଶ ଖରାବେଳେ ସେ ଆମ ଘର ବାରଣ୍ଡାର ବେଞ୍ଚ ଉପରେ ବସି ରହେ, କାରଣ

କୌଣସି ଲୋକ ଆମ ଘରର କବାଟରେ ଆଘାତ କରି ଯେପରି ମୋର ନିଦ ନ ଭାଙ୍ଗିବେ। ଏ କଥା ଦିନେ ଦୁଇଦିନ ପାଇଁ ନୁହେଁ, ଦୀର୍ଘ ଦୁଇତିନି ଦଶକ ପାଇଁ ଅଞ୍ଜୁର ଜୀବନ ଚର୍ଯ୍ୟାର ଅଂଶ ହୋଇପଡ଼ିଛି।

ପଲ୍ଲୀ ମଧ କମ୍ କଷ୍ଟ ସ୍ୱୀକାର କରିନାହିଁ। ପ୍ରତି ମାସେ ଦୁଇମାସରେ ତା'ର ଦୁର୍ବଳ ହାତରେ ଭାରି ସୁଟ୍‌କେଶ୍ ବୋହିଛି। ଚେନ୍ନାଇ ଯିବା ଆସିବା ସମୟରେ ସତର୍କତାର ସହିତ ମୋର ହାତ ଧରି ରାସ୍ତା ପାର୍ କରାଇବା, ଷ୍ଟେସନ୍‌ରେ ବାଟ କଢ଼ାଇବା ଏବଂ ଶଙ୍କର ନେତ୍ରାଳୟରେ ମୋତେ ଜଗି ରହିବାର ଦାୟିତ୍ୱ ତୁଲାଇଛି। ତା'ର ଶିକ୍ଷାଗତ ବିକାଶ ପାଇଁ କୋଚିଂ ସେଣ୍ଟରକୁ ନେବା ତ ଦୂରର କଥା, ମୁଁ ତା' ପାଇଁ ଭଲ ଖାଦ୍ୟ କି ଭଲ ପୋଷାକ ପାଇଁ ବଡ଼ ବଡ଼ ଷ୍ଟୋର୍‌କୁ ଯାଇପାରି ନାହିଁ। ମାଛ, ମାଂସ କ୍ରୟ କରିବାର ଆଶାକୁ ଜଳାଞ୍ଜଳି ଦେଇଛି। ପଲ୍ଲୀର ଶୈଶବ ଓ ବାଲ୍ୟ ଯେପରି ସୁଖମୟ ଓ ସ୍ୱଚ୍ଛନ୍ଦ୍ୟପୂର୍ଣ୍ଣ ହେବାର କଥା, ତାହା ମୋର ଭଗ୍ନ ସ୍ୱାସ୍ଥ୍ୟ ଯୋଗୁଁ ସମ୍ଭବ ହୋଇନି।

ଶାଶୁଙ୍କର ଏପରି ଅବସ୍ଥାରେ ତାଙ୍କର ସେବାଯତ୍ନର ଦାୟିତ୍ୱ ଗମ୍ଭୀର ଥିଲା। ଅଞ୍ଜୁର ଦାୟିତ୍ୱ ଖୁବ୍ ବଢ଼ିଗଲା। ଦିନବେଳା ଅଞ୍ଜୁ ବୁଝାବୁଝି କରୁଥିଲେ ମଧ ରାତିରେ କଳ୍ପନା ଓ ପଲ୍ଲୀ ବେଶୀ ଭାଗର ଦାୟିତ୍ୱ ନେଇଗଲେ। ଶାଶୁ ଶୋଇଥିବା କୋଠରୀରେ ସେ ଦୁଇଜଣ ଶୋଇଲେ ଏବଂ ତାଙ୍କର ମଳମୂତ୍ର ପରିଷ୍କାର କରିବାଠାରୁ ଆରମ୍ଭ କରି ଅନ୍ୟ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ କରି ଚାଲିଲେ। ଶାଶୁଙ୍କର ମସ୍ତିଷ୍କ ଆଉ ଠିକ୍ ରୂପେ କାମ କରୁ ନଥିବାରୁ ସେ ଅଧରାତିରେ ଟିଭି ଖୋଲିବାକୁ କୁହନ୍ତି, ମୁହଁରେ ଟର୍ଚ୍ଚର ଆଲୋକ ପକାନ୍ତି ଏବଂ ଏକାକୀତ୍ୱରୁ ରକ୍ଷା ପାଇବାକୁ ଶବ୍ଦ କରନ୍ତି। କଳ୍ପନା ଓ ପଲ୍ଲୀ ଯଥେଷ୍ଟ ସହନଶୀଳତା ଓ ଶାନ୍ତ ଭାବ ନେଇ ତାଙ୍କର ଶୁଶ୍ରୂଷା କରନ୍ତି। ଶାଶୁଙ୍କର ସେପ୍ଟେମ୍ବର ୯, ୨୦୦୪ ମସିହାରେ ଦେହାନ୍ତ ଘଟିଥିଲା। ସେ ପର୍ଯ୍ୟନ୍ତ ଅଞ୍ଜୁ, ପଲ୍ଲୀ ଓ କଳ୍ପନାର ସେବାଯତ୍ନ ଅବ୍ୟାହତ ରହିଥିଲା।

ଅତୀତ ଅତୀତ ହୋଇ ଯାଇଛି ସତ। ମାତ୍ର ନିରୋଳା ମୁହୂର୍ତ୍ତରେ ସ୍ମୃତି ରୋମନ୍ଥନ କଲାବେଳେ ଅଞ୍ଜୁ ଓ ପଲ୍ଲୀ କେତେ କଷ୍ଟ ପାଇଛନ୍ତି, ସେ କଥା ସ୍ମରଣ କରି ଅଶ୍ରୁଳ ହୋଇପଡ଼େ। ଜନ୍ମ ଜନ୍ମ ଧରି ସେମାନଙ୍କ ଋଣ ଶୁଝିବାର ସମ୍ଭବ ହେବ ନାହିଁ ବୋଲି ସ୍ଥିର ନିଶ୍ଚିତ। କଳ୍ପନା ମଧ କମ୍ ସହି ନାହିଁ।

ନିଜର ସ୍ୱାର୍ଥ ପାଇଁ କିଛିଟା ମଲମ ବ୍ୟବହାର କରେ ନାତୁଣୀ, ତନିସାକୁ (ଡାକ ନାମ ତିଥି) ନେଇ। ଏଇବର୍ଷ (୨୦୧୮) ମାର୍ଚ୍ଚ ୧୨ ତାରିଖରେ ତା'ର ତିନି ବର୍ଷ ପୂରଣ ହେଲା। ଏବେ ସେ ପ୍ଲେ ସ୍କୁଲକୁ ଯିବା ଆରମ୍ଭ କରିଛି। ତା'ର ଦରୋଟି ଭାଷା, 'ସଇ' ଓ 'ଦାଦୁନ୍' ଡାକ, ଚଞ୍ଚଳିଆ ହାବଭାବ ଏବଂ ସବୁବେଳେ

ଗୀତ ଗାଇବାର ପ୍ରବଣତା ଆମ ଦୁଇ ଜଣଙ୍କର ମନ ପ୍ରାଣକୁ ଆଚ୍ଛନ୍ନ କରେ। ମୋ ପରି ନିରସିଆ ଲୋକକୁ ଜୋର୍ ଜବରଦସ୍ତ ତା'ସହିତ ନାଚିବାର ଫାନ୍ଦରେ ପକାଇଦିଏ। ତା'ର ସ୍ମିତ ହସ ଓ ଚଞ୍ଚଳତା ଆମକୁ ଚିର ଆମୋଦ ଦେବ, ଏପରି କାମନା ଜୀବନ କାଟିବାର ଏକ ଅନ୍ତର୍ବଳ।

## ପରିବାର ବାହାରେ ପରିବାର

ନିଜର ଭାଇବନ୍ଧୁ କୁଟୁମ୍ବର ସ୍ନେହଡ଼ୋର ଯେଉଁ ପରିବାରର ବୋଧଜ୍ଞାନ ନିର୍ମାଣ କରିଥାଏ, ତାହାର ସୀମା ଜୀବନରେ ଅପରିବର୍ତ୍ତିତ ରୁହେ ନାହିଁ। ଜୀବନ ଯାତ୍ରାରେ ଆଗେଇବା ସମୟରେ ଆଉ କିଛି ଲୋକ ସୁଖଦୁଃଖର ସାଥୀ ହୋଇ ପଡ଼ନ୍ତି। ଏମାନଙ୍କ ବିନା ସାହାଯ୍ୟରେ ଜୀବନର ବହୁଦିଗ ଅସମ୍ପୂର୍ଣ୍ଣ; ଏମାନଙ୍କର ସହାୟତାକୁ ସ୍ମରଣ କରିବାର ଅର୍ଥ ହେଉଛି ସେମାନଙ୍କର ଅବଦାନକୁ ସ୍ୱୀକାର କରିବା ଏବଂ ସମ୍ମାନ ଜଣାଇବା।

ମାମୀ ଅପା ସେହି ଭଳି ଆମର ଜଣେ ସୁଖଦୁଃଖର ସାଥୀ। ସେ କଟକର ଝାଞ୍ଜିରମଙ୍ଗଳାର ବିଶିଷ୍ଟ ଆଡ୍‌ଭୋକେଟ୍ ଶ୍ରୀ ବ୍ରଜବନ୍ଧୁ ବିଶ୍ୱାଳଙ୍କ ଜ୍ୟେଷ୍ଠାକନ୍ୟା। ତାଙ୍କର ଭଲ ନାମ ଡକ୍ଟର ସ୍ନିଗ୍ଧା ବିଶ୍ୱାଳ। ସେ ସୁଲେଖିକା ଏବଂ ଓଡ଼ିଆ ଭାଷା ଓ ସାହିତ୍ୟରେ ପି.ଏଚ୍.ଡ଼ି. ଲାଭ କରିଛନ୍ତି। ତାଙ୍କର ଅନୁଜ ଡକ୍ଟର ଜୟନ୍ତ ବିଶ୍ୱାଳ ମଧ୍ୟ ଜଣେ ସୁଲେଖକ ଓ ସମାଜସେବୀ। ଆମର ଦୁର୍ଦ୍ଦିନ ସମୟରେ ଆମେ ଯେପରି ମାମୀ ଅପାଙ୍କ ଉପସ୍ଥିତି ଓ ସହାୟତା ଅନୁଭବ କରିଛୁ, ଖୁସିର ମୁହୂର୍ତ୍ତରେ ମଧ୍ୟ ତାଙ୍କର ସହାସ୍ୟ ଯୋଗଦାନର ଆନନ୍ଦ ଅନୁଭବ କରିଛୁ। ଏବେ ମଧ୍ୟ କୌଣସି ମୁହୂର୍ତ୍ତରେ ଶ୍ରୀ ବ୍ରଜବନ୍ଧୁ ବିଶ୍ୱାଳଙ୍କ ବାସଭବନରେ ପହଞ୍ଚିଗଲେ ମୁଁ ଓ ମୋର ପତ୍ନୀ ଅଞ୍ଜୁ ନବ ବିବାହିତ ଜାମାତା ଓ କନ୍ୟାର ଆଦର ପାଇଲା ଭଳି ଅନୁଭବ ଆସେ। ମଉସା ମାଉସୀଙ୍କ ସ୍ନେହର ପାଖୁଡ଼ା ଆମ ଉପରେ ଅଜାଡ଼ି ହୋଇପଡ଼େ। ମାମୀ ଅପାଙ୍କ ଶୁଭେଚ୍ଛା ସ୍ନେହସିକ୍ତ କରେ।

ସ୍କୁଲ ଜୀବନର ଆରମ୍ଭରୁ ଆଉ କେତେକ ପରିବାର ସହିତ ଏପରି ମିଶି ଯାଇଥିଲି ଯେ ସେପରି ବନ୍ଧନର ଡୋରଟି ଏବେ ମଧ୍ୟ ଶକ୍ତ ରହିଛି। ସେହିପରି ଜଣେ ବାଲ୍ୟବନ୍ଧୁ ହେଉଛି ତାପସ ଘୋଷ। ତାପସ, ମନୀ (ମଦନ ମୋହନ ଶତପଥୀ) ଓ ମୁଁ ଷଷ୍ଠ ଶ୍ରେଣୀରୁ ଆରମ୍ଭ କରି ଅନ୍ତରଙ୍ଗତାର ସୂତାରେ ବନ୍ଧା ହୋଇଥିଲୁ। ପରସ୍ପରର ଘରେ ଆମର ଗତି ଥିଲା ଅବାଧ। ତାପସ ସମ୍ପର୍କରେ ଏଠାରେ ପଦେ ଦୁଇପଦ ଲେଖିବା ଉଚିତ୍ ମନେ କରୁଛି। ଗତ ଶତକର ସପ୍ତମ ଓ ଅଷ୍ଟମ ଦଶକରେ ତାପସ ଜଣେ ଅନନ୍ୟ କଳାକାର ଥିଲା। ମୂକ ଅଭିନୟ ଓ ହାସ୍ୟରସର କଳାକାର ରୂପେ ତା'ର ଯଥେଷ୍ଟ ଖ୍ୟାତି ରହିଥିଲା। ଆମନ୍ତ୍ରିତ ହୋଇ

ସେ ହାଇଦ୍ରାବାଦ, ମୁମ୍ବାଇ ଓ ଦିଲ୍ଲୀ ନଗରରେ ମଧ୍ୟ ସେ ନିଜର କଳାକୃତି ପ୍ରଦର୍ଶନ କରି ପାରିଥିଲା। କଟକରେ ତତ୍‌କାଳୀନ ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ହବିବ୍ ଦଳର ଉପମୁଖ୍ୟ କଳାକାର ରୂପେ ତା'ର ସ୍ୱୀକୃତି ଥିଲା। ଗୋଟିଏ ସମୟରେ ତାପସର ଲୋକପ୍ରିୟତା ଶୀର୍ଷରେ ପହଞ୍ଚିଲା। ସେ ମଞ୍ଚକୁ ଆସିବା ମାତ୍ରେ ଲୋକମାନେ ହସିବାକୁ ଆରମ୍ଭ କରିଦେଲେ। ତା'ର ଦୁର୍ଭାଗ୍ୟ ଯେ ଗୋଟିଏ ମୋଟର ଦୁର୍ଘଟଣାରେ ହବିବ୍‌ର ମୃତ୍ୟୁ ପରେ ତା'ର ଜୟଯାତ୍ରାର ବିରାମ ଆସିଲା। ଏବେ ମଧ୍ୟ ତା' ମଧ୍ୟରେ କଳାର ସୃଜନୀଶକ୍ତି ପ୍ରକାଶ ପାଇଁ ବାଟ ଖୋଜୁଛି, କିନ୍ତୁ ରୁଦ୍ଧ କାରାଗାର ମଧ୍ୟରେ ଅଟକି ରହିବା ପରି ମନେହେଉଛି।

ମୋର ଅନ୍ୟତମ ବାଲ୍ୟବନ୍ଧୁ ମଦନ ମୋହନ ଶତପଥୀର (ମନୀ) ଘର ଭୌଗଳିକ ଦୃଷ୍ଟିକୋଣରୁ କଟକ କଳାସଂସ୍କୃତିର ନାଭିକେନ୍ଦ୍ରର ପାଖାପାଖି। ତା'ର ଘର କଟକର ଟାଉନ୍ ହଲ୍ ରୋଡ୍‌ରେ। ତା' ଘରର ମାତ୍ର କେତେ ଶହ ମିଟର ଦୂରରେ ଶ୍ରୀରାମ ଚନ୍ଦ୍ର ଭବନ ଓ ଟାଉନ୍‌ହଲ୍। ପ୍ରତିଦିନ ସଞ୍ଜ ସକାଳରେ ପାଖାପାଖି ବାତାବରଣ ସାହିତ୍ୟ, କଳା ଓ ସଂସ୍କୃତିର ସୁଗନ୍ଧରେ ମହିମାନ୍ୱିତ ହୋଇଉଠେ। ଷଷ୍ଠ ଶ୍ରେଣୀରେ ପଢ଼ିବା ସମୟରେ ମୁଁ ମନୀ ଘରକୁ ଯିବା ଆସିବା ଆରମ୍ଭ କଲି। ସେତେବେଳେ ମନୀର ବଡ଼ ଭଉଣୀ ଧୂନୀ ନାନୀ (ଶ୍ରୀମତୀ ଅନୁରାଧା ଶତପଥୀ) ରେଭେନ୍ସା କଲେଜରେ ଅର୍ଥନୀତିରେ ଏମ୍.ଏ. ପଢୁଥିଲେ। ସେ ଖୁବ୍ ସ୍ନେହୀ। ସବୁବେଳେ କିଛି ନା କିଛି ପଢୁଥିବେ। ଓଡ଼ିଆ ଓ ବଙ୍ଗଳା ଉପନ୍ୟାସ ପଢ଼ିବାର ଏତେ ନିଶା ଯେ ସେ ନିଶା ଧୀରେ ଧୀରେ ସଂକ୍ରମିତ ହେଲା। ପ୍ରକୃତରେ ପାଠ୍ୟ ପୁସ୍ତକ ବାହାରେ କିଛି ପଢ଼ିବାର ପ୍ରେରଣା ମୁଁ ଧୂନୀ ନାନୀଙ୍କଠାରୁ ପାଇଛି। ମଦନର ବାପ ମା' ଏବଂ ଭାଇ (ବାସୁଦେବ ଶତପଥୀ) ଓ ନୂଆବୋଉଙ୍କ ସ୍ନେହ ପାଶୋରିବା ସମ୍ଭବ ନୁହେଁ। ମନୀ ଓଡ଼ିଆ ସାହିତ୍ୟର ଅଧ୍ୟାପକ ରୂପେ ରାଇରଙ୍ଗପୁର କଲେଜରେ ଅଧ୍ୟାପନା ଆରମ୍ଭ କରିଥିଲା। ଶେଷ ପର୍ଯ୍ୟାୟରେ ଅଧ୍ୟକ୍ଷ ମଧ୍ୟ ହୋଇଥିଲା। ଆମର ବନ୍ଧୁତ୍ୱ ଗଭୀର ଓ ସୁଖଦ। ଅଳ୍ପ କିଛି ବର୍ଷ ପୂର୍ବେ ତା'ର ଆକସ୍ମିକ ବିୟୋଗ କିଛି ଗୋଟିଏ ବଡ଼ ଜିନିଷ ହରାଇବାର ଦୁଃଖଦ ଅନୁଭୂତି ଦେଲା।

ଦଳଗତ ଭାବେ ପଢ଼ାପଢ଼ି କରିବାରେ ଯେଉଁ ଆନନ୍ଦ ଥାଏ, ସେହି ଦଳର ଅଂଶୀଦାରମାନଙ୍କୁ ସହଜରେ ଭୁଲି ହୁଏ ନାହିଁ। ସେହି ଦଳର ଅଂଶୀଦାର ରୂପେ ଜଣେ ବନ୍ଧୁ ହେଉଛନ୍ତି ଅମୀୟ କୁମାର ନାୟକ। ଆଉ ଏକ ବିଚିତ୍ର ଧରଣର ବନ୍ଧୁ ହେଉଛନ୍ତି ଶ୍ରୀ କେଦାରନାଥ ଭଗତ। କେଦାର ଛାତ୍ର ଜୀବନରୁ ବିଳାସୀ ଓ ଖର୍ଚ୍ଚୀ। ତା'ର ପରିବାର ଖୁବ୍ ସ୍ୱଚ୍ଛଳ। ବାପମା'ଙ୍କଠାରୁ ପଇସା ନେଇ ସେ ହୋଟେଲ୍‌ରେ ଖାଏ ଏବଂ ଖୁଆଇବାର ବ୍ୟବସ୍ଥା କରେ। ସେହି କାରଣରୁ ମନୀ ଓ ତାପସ ତା'ର

ବେଶୀ ଅନୁଗତ ହୋଇ ପଡ଼ିଥିଲେ। ପଢ଼ାପଢ଼ି ସମୟରେ ମୁଁ ସାଙ୍ଗ ହେଉଥିଲେ ମଧ୍ୟ ମଉଜ ମଜଲିସ୍ ବ୍ୟବସ୍ଥାଠାରୁ ମୁଁ ନିଜକୁ ଦୂରେଇ ରଖେ। ପରବର୍ତ୍ତୀ ପର୍ଯ୍ୟାୟରେ କେଦାର ଜଣେ ବିଶିଷ୍ଟ ଉଦ୍ୟୋଗୀ ହୋଇ ପାରିଛି। M.C.A. ଏବଂ M.B.A. ଶିକ୍ଷା ବ୍ୟବସ୍ଥା ରହିଥିବା ଅଗ୍ରଣୀ ଅନୁଷ୍ଠାନ Bhubaneswar Institute & Management and Infomation Technology(BIMIT) ର ପ୍ରତିଷ୍ଠାତା ରୂପେ ସମ୍ମାନିତ ପଦବୀ ପାଇଛି। ଓଡ଼ିଶାରେ Telemedicine କାର୍ଯ୍ୟକ୍ରମ ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଆରମ୍ଭ କରିଛି। ସମୟ ସମୟରେ ଆମର ବନ୍ଧୁତ୍ୱପୂର୍ଣ୍ଣ ସାକ୍ଷାତ୍ ଘଟିଲେ ସେ କୁହେ: "ଆମର ଏକାଠି ବସି କଲିଜା ଭଜା ଖାଇବାର ଯୋଗ ନ ଥିଲା। ଏକାଠି ବସି ଭାତ ଡାଲମା ଖାଇବାର ଯୋଗ ଥିଲା।" ଆମେ ଦୁହେଁ ହସୁ (ଆମେ ଦୁହେଁ ଶାକାହାରୀ)। ସୌଭାଗ୍ୟକ୍ରମେ ଅଳ୍ପ କିଛି ବର୍ଷ ତଳେ କେଦାରର କନ୍ୟା ଅର୍ଚ୍ଚନା ଭଗତ ମୋ ତତ୍ତ୍ୱାବଧାନରେ ପରିଚାଳନା ବିଜ୍ଞାନରେ ପି.ଏଚ୍.ଡ଼ି. ଡିଗ୍ରୀ (ଉତ୍କଳ ବିଶ୍ୱବିଦ୍ୟାଳୟ) ଲାଭ କରିଛି।

ସ୍କୁଲ ଶିକ୍ଷା ସମାପ୍ତ ହେବା ପରେ ସମାଜ ପାଇଁ କିଛି କରିବାର ଯେଉଁ ମାନସିକତା ବଳବତୀ ହେଲା, ତା'ର ପରିପ୍ରକାଶ ହେଉଛି "ଯୁଗଶ୍ରୀ" ନାମକ ଅନୁଷ୍ଠାନର ଅଙ୍କୁରଣ ଓ ବିକାଶ। ଏହି ଆନୁଷ୍ଠାନିକ କର୍ମବନ୍ଧନ ଭିତରେ ଆଉ କେତେକ ଶୁଭେଚ୍ଛୁ ଆଉ କେତେକ ସମବୟସୀ ବନ୍ଧୁ ମିତ୍ରତାର ବଳୟ ମଧ୍ୟକୁ ଚାଲି ଆସିଲେ। ଅନୁଷ୍ଠାନର ଅଗ୍ରନେତା ହିସାବରେ ଶିକ୍ଷକ ଲକ୍ଷ୍ମଣ କୁମାର ସାହୁଙ୍କ ସ୍ମୃତି ଖୁବ୍ ପ୍ରେରଣାଦାୟକ। ଆମର ଆନୁଷ୍ଠାନିକ କାର୍ଯ୍ୟକଳାପ ଆରମ୍ଭ ସମୟରେ ସେ ଅବିବାହିତ ଥିଲେ। ମାରୱାଡ଼ି ହାଇସ୍କୁଲରେ ତାଙ୍କର ଶିକ୍ଷକତା ସମୟକୁ ବାଦ୍ ଦେଲେ ଅନ୍ୟ ସମୟତକ ପୂର୍ଣ୍ଣପ୍ରାଣରେ ଯୁଗଶ୍ରୀ ପାଇଁ ଦେଉଥିଲେ। ତାଙ୍କର ଉର୍ଜ୍ଜା ନମସ୍ୟ। ତାଙ୍କର ପ୍ରେରଣା ଫଳରେ ଆମେ ବହୁତ କିଛି କରି ପାରିଥିଲୁ। ଯୁଗଶ୍ରୀ କାର୍ଯ୍ୟ ଓ ଅନ୍ୟ କେତେକ ସାମାଜିକ ସେବା କାର୍ଯ୍ୟ ପରିପ୍ରେକ୍ଷୀରେ ଅଭିଜିତ ଘୋଷ ଓ ଅଂଶକୁମାର ମିତ୍ରଙ୍କ ସହିତ ବନ୍ଧୁତ୍ୱ ଦୃଢ଼ ହେଲା। ଶ୍ରୀ ଘୋଷ Indian Forest Service (IFS) ର ଜଣେ ବରିଷ୍ଠ ଅଫିସର୍ ରୂପେ ଅବସର ଗ୍ରହଣ କରିଛନ୍ତି। ଆମ ଦୁଇ ଜଣଙ୍କର ବନ୍ଧୁତ୍ୱ ପୂର୍ବପରି ସୁଦୃଢ଼ ରହିଛି। ଅଳ୍ପ କିଛି ବର୍ଷ ତଳେ ଲକ୍ଷ୍ମଣ କୁମାର ସାହୁଙ୍କର ହୃଦ୍‌ଘାତରେ ପରଲୋକ ଗମନ କରିଥିବାର ଆକସ୍ମିକ ଖବର ପାଇ ବେଶ୍ ଶୂନ୍ୟତା ଅନୁଭବ କରିଥିଲି।

**ଗବେଷଣାର ଗବାକ୍ଷ**

ଗବେଷଣାର ଗବାକ୍ଷ ଦେଇ ବାହାର ଜଗତକୁ ଚାହିଁଲେ କେତେକ ସହକର୍ମୀ ଗବେଷକ ଓ ଛାତ୍ରଛାତ୍ରୀମାନଙ୍କର ସାହାଯ୍ୟ ଓ ସହୃଦୟତା ଝଙ୍କାର ତୋଳି

ମନପ୍ରାଣକୁ ଶବାୟିତ କରେ। ଉତ୍କଳ ବିଶ୍ୱବିଦ୍ୟାଳୟର ଦୀର୍ଘ ତିନି ଦଶକରୁ ଅଧିକ କାଳ କର୍ମରତ ରହିବା ଫଳରେ ବହୁ ବ୍ୟକ୍ତିଙ୍କ ସାହାଯ୍ୟ ସହାନୁଭୂତି ପାଇବାର ସୌଭାଗ୍ୟ ନିଶ୍ଚିତ ଭାବରେ ସ୍ମରଣୀୟ। ମନୋବିଜ୍ଞାନ ଅଗ୍ରଶିକ୍ଷା କେନ୍ଦ୍ରର କର୍ଣ୍ଣଧାର ରୂପେ ପ୍ରଫେସର୍ ରାଧାନାଥ ରଥ ମୋର ଚିର ନମସ୍ୟ।

ଶିକ୍ଷକ ରୂପେ ପ୍ରଫେସର ସରୋଜ କୁମାର ମିଶ୍ରଙ୍କ ଅବଦାନ ନିଶ୍ଚୟ ମନେ ରହିବ। ମୋର ପ୍ରିୟ ସହକର୍ମୀ ଅଧିକାରୀ ଶ୍ରୀକାନ୍ତ ଦାଶ ବନମାଳୀ ମହାନ୍ତି ଓ ନାରାୟଣ ପତିଙ୍କ ଶ୍ରଦ୍ଧା ମୋତେ ସଦା ସଚେତନ ରଖୁଛି। ବାଣୀବିହାର ପରିସରର ବାହାରେ ଥାଇ ମଧ୍ୟ ପ୍ରଫେସର୍ ପ୍ରହ୍ଲାଦ ନନ୍ଦ ଓ ପ୍ରଫେସର୍ ବସନ୍ତ କୁମାର ଦାସଙ୍କ ଶ୍ରଦ୍ଧା ମୁଁ ସବୁବେଳେ ପାଇଛି। ବିଶେଷତଃ ପ୍ରହ୍ଲାଦ ବାବୁଙ୍କ ସାହିତ୍ୟ ପ୍ରୀତି ଓ ସାହିତ୍ୟ ଚର୍ଚ୍ଚା ମୋତେ ଯେତିକି ଆତ୍ମହରା କରେ ବସନ୍ତବାବୁଙ୍କ ଆଗ୍ରହର ଅନୁଭବ ମୋତେ ସେତିକି ସକ୍ରିୟ କରେ। ପ୍ରଫେସର ବିଶ୍ୱବନ୍ଧୁ ଚାଟାର୍ଜୀ ମାତ୍ର ଆଠ ନ' ବର୍ଷ ଧରି ଆମ ବିଭାଗରେ ପ୍ରଫେସର୍ ଥିଲେ। ସେଥିରୁ ଚାରି ପାଞ୍ଚ ବର୍ଷ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ନଥିଲି କାରଣ ସେ ସମୟରେ ମୁଁ କାନାଡ଼ାରେ ପି.ଏଚ୍.ଡ଼ି. କରୁଥିଲି। ମାତ୍ର ତାଙ୍କ ଜ୍ଞାନର ଗଭୀରତା, ରସିକତାର ମାର୍ମିକତା ଏବଂ ହୃଦୟବତ୍ତାର ବିଶାଳତା ଆମକୁ ମନ୍ତ୍ରମୁଗ୍ଧ କରି ରଖୁଥିଲା।

ବିଭିନ୍ନ ଗବେଷଣା ପ୍ରକଳ୍ପର ପରିଚାଳନା ମାଧ୍ୟମରେ ଯେଉଁ କେତେଜଣ ମୋ ରିସର୍ଚ୍ଚ ପରିବାର ଅନ୍ତରଙ୍ଗ ସଦସ୍ୟ ପର୍ଯ୍ୟାୟକୁ ଚାଲି ଆସିଥିଲେ। ସେମାନଙ୍କ ମଧ୍ୟରୁ ଡକ୍ଟର ପ୍ରଦୀପ କୁମାର ମହାପାତ୍ର ସନ୍ତାନତୁଲ୍ୟ ସ୍ନେହାସ୍ପଦ। ସେ ବର୍ତ୍ତମାନ ଅଗରତାଲାରେ କେନ୍ଦ୍ର ସରକାରଙ୍କ ଶ୍ରମ ବିଭାଗର ଏକ ପଦସ୍ଥ କର୍ମଚାରୀ। ସେ ଦୀର୍ଘଦିନ ଧରି ପଶ୍ଚିମବଙ୍ଗର ବାରାସତ୍ ଓ ସଲ୍ଟ ଲେକ୍‌ରେ କାର୍ଯ୍ୟ କରିବା ପରେ କିଛିମାସ ପୂର୍ବରୁ ନୂତନ ସ୍ଥାନକୁ ଯାଇଛି। ପ୍ରଦୀପ ମୋର ଏକାଧିକ ଗବେଷଣା ପ୍ରକଳ୍ପର ଗବେଷକ ସହାୟକଙ୍କର କାମ କରିଛି ଏବଂ ମୋର ତତ୍ତ୍ୱାବଧାନରେ ମନୋବିଜ୍ଞାନରେ ପି.ଏଚ୍.ଡ଼ି. କରିଛି। ମୋର ଘୋର ଦୁର୍ଦ୍ଦିନ ସମୟରେ ଆମ ଘରର ଅନେକ ଦାୟିତ୍ୱ ବୁଝିଛି। ଏହା ଅଦୃଷ୍ଟର ଆଶୀର୍ବାଦ ଯେ ୧୯୯୯ ମସିହା ଅକ୍ଟୋବର ଶେଷ ସପ୍ତାହରେ ଓଡ଼ିଶାର ମହାବାତ୍ୟା ସମୟରେ ସେ ଆମ ଘରେ ଉପସ୍ଥିତ ଥିଲା ଏବଂ ଆଉ ବାହାରି ପାରି ନଥିଲା। ବିରାଟ ସଙ୍କଟ ସହିତ ଯୁଝିବା ଯେଉଁ ହନୁମାନ୍ ଶକ୍ତିର ଆବଶ୍ୟକ ତା' କେବଳ ପ୍ରଦୀପ ହିଁ ଆମକୁ ଯୋଗାଇଥିଲା। ମୁଁ ସଦାସର୍ବଦା ତା'ର ଶୁଭ ଚିନ୍ତକ ହୋଇ ରହିଥିବି। ସେହି ସ୍ନେହ ସମ୍ପର୍କରେ ବନ୍ଧା ହୋଇ ଆମେ ଗତ ବର୍ଷ ତା'ର ପତ୍ନୀ ରିନୀ ଏବଂ ପୁତ୍ର ସହିତ ମିଳିମିଶି କିଛିଦିନ ଶାନ୍ତିନିକେତନରେ କଟାଇଥିଲୁ। ଶାନ୍ତିନିକେତନର ଶାନ୍ତ ବାତାବରଣ ମଧ୍ୟରେ ମୁଁ ପ୍ରଦୀପ ଓ ତା' ପରିବାରର ଉତ୍ତରୋତ୍ତର ଉନ୍ନତି କାମନା କରୁଥିଲି।

ଅନ୍ୟ କେତେକ ଗବେଷଣା ପ୍ରକଳ୍ପରେ ଭକ୍ତବନ୍ଧୁ ଦାସ, ବାଞ୍ଛାନିଧି ମଲ୍ଲିକ୍ ଓ ପବିତ୍ର ମାଝିଙ୍କ ସାହାଯ୍ୟ ମନେ ରହିବ। ବିଶେଷତଃ ୟୁଜିସିର ଏକ ସ୍ୱତନ୍ତ୍ର ପ୍ରକଳ୍ପ ଓ ପୁରସ୍କାରର ଅଧିକାରୀ ହୋଇଥିବା ସମୟରେ ମୁଁ ଚକ୍ଷୁ ସମସ୍ୟାର ଘୋର ଦୁର୍ଦ୍ଦିନ ମଧ୍ୟରେ ଗତି କରୁଥିଲି। ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ଅବନ୍ତିକା କର ଯେପରି ନିଷ୍ଠା ଓ ପରିଶ୍ରମର ସହ ଏ ପ୍ରକଳ୍ପଟିର ପରିଚାଳନା କରିଛି ତାହା ମୁଁ ଭୁଲି ପାରିବି ନାହିଁ। ଏବେ ମଧ୍ୟ ଆମ୍ଭେମାନେ ଅବନ୍ତିକାକୁ ଆମ ପରିବାରର ଜଣେ ସଦସ୍ୟ ହିସାବରେ ଗଣନା କରୁ। ସେ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି. ସାରିଛି ଏବଂ ବର୍ତ୍ତମାନ ବାଙ୍କୀ ସ୍ୱୟଂଶାସିତ କଲେଜରେ କାର୍ଯ୍ୟରତ ରହିଛି। ଅବନ୍ତିକା ବ୍ୟତୀତ ଡ. ମିହିରି କୁମାର ସାହୁ ଅନ୍ୟ ଏକ ପ୍ରକଳ୍ପରେ ସହାୟତା କରି ଆମ ରିସର୍ଚ୍ଚ ପରିବାରର ଶ୍ରୀବୃଦ୍ଧି ସାଧନ କରିଛନ୍ତି।

୧୯୮୩ ମସିହାରେ ଏସ୍.ଏମ୍.ଆଜ୍‌ଫର୍ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି. ଗବେଷଣା ଆରମ୍ଭ କଲେ ଏବଂ ୧୯୮୮ ମସିହାରେ ପି.ଏଚ୍.ଡ଼ି. ଲାଭ କଲେ। ସେ ମୋଠାରୁ ବୟସରେ ବଡ଼ ଥିଲେ। ଏହା ବ୍ୟତୀତ ସେ ମଧ୍ୟ ଅଭିଜ୍ଞ ଥିଲେ। ବାଙ୍କୀ କଲେଜର ଅଧ୍ୟକ୍ଷ ଦାୟିତ୍ୱ ତୁଲାଇଥିଲେ। ତା' ସତ୍ତ୍ୱେ ସେ ମୋ ପାଖରେ କାମ ଆରମ୍ଭ କଲେ। ମୁଁ ଭଲ ରୂପେ ଜାଣେ ଯେ ଏଥିପାଇଁ କେତେକ ବୟସ୍କ ବ୍ୟକ୍ତିଙ୍କ କଟୁ ସମାଲୋଚନାର ଶରବ୍ୟ ହୋଇଥିଲେ, ମାତ୍ର ଏହା ଭ୍ରୂକ୍ଷେପ ନ କରି ଆମ ପେସାଗତ ସମ୍ପର୍କକୁ ସୁନ୍ଦର ଓ ସାବଲୀଳ ରହିଥିଲେ। ଏହା ମଧ୍ୟରେ ତାଙ୍କର ତିରୋଧାନ ଘଟି ଯାଇଛି। ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ମୁଁ ନତ ମସ୍ତକ ରହିଛି ଏବଂ ରହିବି ମଧ୍ୟ।

ପି.ଏଚ୍.ଡ଼ି. ପାଇଁ ମୋ ପାଖରେ ଗବେଷଣା କରିଥିବା ଡକ୍ଟର ନିରଞ୍ଜନ ସିଂ (ବର୍ତ୍ତମାନ ନିମାପଡ଼ା କଲେଜରେ କାର୍ଯ୍ୟରତ) ସହିତ ସମ୍ପର୍କ ମୂଳରୁ ଯେପରି ଗଭୀର ଥିଲା ବର୍ତ୍ତମାନ ମଧ୍ୟ ସେପରି ସୁଦୃଢ଼ ରହିଛି। ଉତ୍କଳ ବିଶ୍ୱବିଦ୍ୟାଳୟ ମୁଁ କୋଡ଼ିଏରୁ ଅଧିକ ସମ୍ମାନ ଓ ସମ୍ମିଳନୀ ଆୟୋଜନ କରିଛି। ପ୍ରତିଟି କାର୍ଯ୍ୟକ୍ରମରେ ମୁଁ ନିରଞ୍ଜନର ସକ୍ରିୟ ସାହାଯ୍ୟ ନେଇଛି। ସେହିପରି ଆଉ ଗୋଟିଏ ପରିବାର ହେଉଛି ଡକ୍ଟର ଜୀତେନ୍ଦ୍ର ମହାନ୍ତି (ପ୍ରଫେସର, କିଟ୍‌ସ୍ ବିଶ୍ୱବିଦ୍ୟାଳୟ)ଏବଂ ତାଙ୍କର ପରିବାର। ଜୀତୁ ବାବୁ ଓ ତାଙ୍କର ପତ୍ନୀ ଜାହାନ୍ ବେଗମ୍ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି. ସାରିଛନ୍ତି। ଏହି ଦମ୍ପତି ଓ ଜୀତୁ ବାବୁଙ୍କ ଭଗ୍ନୀ ଡକ୍ଟର ନମିତା ମହାନ୍ତି (ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ) ମାନସିକ ସ୍ତରରେ ଆମ ପରିବାରର ଖୁବ୍ ନିକଟବର୍ତ୍ତୀ।

ଡକ୍ଟର ଶ୍ୱେତଲୀନା ବିଦ୍ୟାଧର ମୋ ରିସର୍ଚ୍ଚ ପରିବାରର ବୁଦ୍ଧିଦୀପ୍ତ ଗବେଷକ। ସେ ମୋ ତତ୍ତ୍ୱାବଧାନରେ ଏମ୍.ଏ. ସନ୍ଦର୍ଭ, ଏମ୍.ଫିଲ୍ ସନ୍ଦର୍ଭ ଓ ପି.ଏଚ୍.ଡ଼ି.

କରିଛି । ନିଜର ମେଧାଶକ୍ତି ବଳରେ ବର୍ତ୍ତମାନ ମୁମ୍ବାଇରେ TATA INTERACTIVE SYSTEM (TIS) ର ତାଲିମ ବିଭାଗର ଉପମୁଖ୍ୟ ପରିଚାଳକ । ତା'ର ପଦୋନ୍ନତି ମୁଁ ସବୁବେଳେ ଆନନ୍ଦ ଅନୁଭବ କରିଛି ଏବଂ ଆଶାୟୀ ହୋଇ ଚାହିଁ ରହିବି ।

ଅନ୍ୟମାନଙ୍କ ମଧ୍ୟରେ ଡ.ସଞ୍ଜୁତା ନନ୍ଦ (ଇନୁ), ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ରେଜିଷ୍ଟ୍ରାର ଡ.ବନାନୀ ମହାନ୍ତି, ଡ.ବିନୀତା ଆଚାର୍ଯ୍ୟ, ଡ.ବିନୀତା ନନ୍ଦ, ଡ.ଜୟଲକ୍ଷ୍ମୀ ଦାସ, ଡ.ପ୍ରବୀର ପଟ୍ଟନାୟକ, ଡ.ସଙ୍ଗୀତା ରଥ (ପ୍ରଫେସର୍ ରେଭେନ୍ସା ବିଶ୍ୱବିଦ୍ୟାଳୟ), ଡ.ଶୁଭ୍ରା ମିଶ୍ର ଏବଂ ଡ.ସତ୍ୟବ୍ରତ ତ୍ରିପାଠୀଙ୍କ ସହ ମୋର ସମ୍ପୃକ୍ତିକୁ ନେଇ ମୁଁ ଆନନ୍ଦ ଅନୁଭବ କରେ । ପି.ଏଚ୍.ଡ଼ି. ତତ୍ତ୍ୱାବଧାନ ମାଧ୍ୟମରେ ମୁଁ କେବଳ ସେମାନଙ୍କୁ ଦେଇ ନାହିଁ, ସେମାନଙ୍କଠାରୁ ମଧ୍ୟ ପାଇଛି । ମୋର ବନ୍ଧୁ କର୍ଣ୍ଣେଲ୍ ଡକ୍ଟର ସତ୍ୟ ରାୟ ଓ ମୋଏ ଏମ୍.ଏ. ଶ୍ରେଣୀର ସହପାଠିନୀ ଶେଫାଳିକା ସିହ୍ନା ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି. କରିଛନ୍ତି, କିନ୍ତୁ ତା'ଠାରୁ ବଡ଼ କଥା ହେଉଛି ସେମାନଙ୍କ ବନ୍ଧୁତ୍ୱପୂର୍ଣ୍ଣ ସମ୍ପୃକ୍ତି । ମୋ ପାଖରେ ଗବେଷଣା କରି ନଥିଲେ ମଧ୍ୟ ପ୍ରଫେସର୍ ନିବେଦିତା ଜେନା ଓ ପୁଷ୍ପଶ୍ରୀ ମିଶ୍ରଙ୍କ ଆନୁଗତ୍ୟ ମୁଁ ସଦା ସ୍ମରଣ କରିବି । ନିକଟ ଅତୀତରେ ଗବେଷଣା ପରିପ୍ରେକ୍ଷରରେ ନିବେଦିତା ଦାସ, ମଞ୍ଜୁ ରାୟ, ଆଦ୍ୟାଶା ମହାନ୍ତି ଓ ସୋମା ମହାପାତ୍ର ମୋ ରିସର୍ଚ୍ଚ ପରିବାର ଓ ଆମର ପରିବାରର ଖୁବ୍ ନିକଟବର୍ତ୍ତୀ ହୋଇ ପାରିଛନ୍ତି । ସେମାନଙ୍କ ପାଇଁ ଶୁଭକାମନା ସବୁବେଳେ ଅମଳିନ ରହିବ ।

## ବିଦେଶମାଟିର ବାସ୍ନା

ଜୀବନ ବିକାଶ ପାଇଁ ପାଣି ପବନ ଯେ କେଉଁ ଦିଗରୁ ପ୍ରବାହିତ ହେବ, ତାହାର କୌଣସି ନିଶ୍ଚିତତା ନାହିଁ । ୧୯୭୬ ମସିହାରେ କାନାଡ଼ା ଯିବା ପୂର୍ବରୁ ମନେ ହେଉଥିଲା ଯେ ମୁଁ କିଛିବର୍ଷ ପାଇଁ ବିଦେଶ ଯାଉଛି ଏବଂ ମୂଳ ଲକ୍ଷ୍ୟ (ପି.ଏଚ.ଡ଼ି.) ପୂରଣ ହୋଇ ଫେରି ଆସିବା ପରେ ପୁନଶ୍ଚ ମୋ ନିଜ ମାଟିରେ ମୁଁ ଗତାନୁଗତିକ ଜୀବନ ଆରମ୍ଭ କରିବି । ମାତ୍ର ଫେରିଲା ପରେ ଅନୁଭବ କଲି ଯେ ବେଶ୍ କିଛି ଲୋକଙ୍କ ସହିତ ମୋର ସଂସର୍ଗ ମୋତେ ଗଭୀର ଭାବେ ପ୍ରଭାବିତ କରିଛି । ସେମାନଙ୍କ ସହିତ କ୍ରିୟା ଅନୁକ୍ରିୟା ମାଧ୍ୟମରେ ମୁଁ ସେମାନଙ୍କ ଜୀବନ ଦର୍ଶନର କେତୋଟି କଥା ମୋ ଦୈନନ୍ଦିନ ଜୀବନରେ ଆତ୍ମ କଥନର ରୂପ ନେଇଛି । ଏପରି ଆତ୍ମସମୀକ୍ଷା ମୋତେ ସେମାନଙ୍କ ସହିତ ଋଣାନୁବନ୍ଧନରେ ବାନ୍ଧି ଦେଲା ।

କୁଇନ୍ସ ବିଶ୍ୱବିଦ୍ୟାଳୟର ସାରସ୍ୱତ ନୀଡ଼ରେ ମନୋବିଜ୍ଞାନ ବିଭାଗର ବହୁ ଅଧ୍ୟାପକ ଓ ସମଧର୍ମୀ ଗବେଷଣାରତ ଗ୍ରାଜୁଏଟ୍‌ଙ୍କ ବୌଦ୍ଧିକ ସାହାଯ୍ୟ ନିଶ୍ଚୟ ମନେରହିବ। ତେବେ ମୋର ପ୍ରଶିକ୍ଷକ ଓ ଦିଗ୍‌ଦର୍ଶକ ଜନ୍ ବେରୀ କେବଳ ଦକ୍ଷ ନ ଥିଲେ, ତାଙ୍କର ପରିଶ୍ରମଶୀଳତା. ବହୁ-ସଂସ୍କୃତି-ସମ୍ପନ୍ନ ଦୃଷ୍ଟିଭଙ୍ଗୀ ଏବଂ ପ୍ରଶସ୍ତ ସମନ୍ୱୟଶୀଳତା ମୋତେ ପ୍ରଭାବିତ କରିଥିଲା। କାନାଡ଼ାରେ ରାତି ଏଗାରଟାରୁ ସକାଳ ପାଞ୍ଚଟା ପର୍ଯ୍ୟନ୍ତ ମାତ୍ର ଛ'ଘଣ୍ଟା ଶୋଇବାର ଅଭ୍ୟାସ ଥିବା ଜନ୍ ବେରୀ ଆଫ୍ରିକାରେ ପିଗ୍‌ମୀ ପ୍ରକଳ୍ପରେ କାର୍ଯ୍ୟ କରୁଥିବା ସମୟରେ ପିଗ୍‌ମୀମାନଙ୍କ ସହିତ ସନ୍ଧ୍ୟାରୁ ସକାଳ ପର୍ଯ୍ୟନ୍ତ ଶୋଇ ପଡୁଥିଲେ। ଏହା ଦିନେ ଦୁଇଦିନ ନୁହେଁ, ଛ'ମାସର ପ୍ରକଳ୍ପ। ଏହା କିପରି ସମ୍ଭବ? ମାତ୍ର ଆମେ ଯାହାକୁ ଅବାସ୍ତବ ଭାବୁଛୁ, ସେ ସହଜ ସରଳ ରୀତିରେ ତାଙ୍କୁ ସ୍ୱାଭାବିକ ଗ୍ରହଣ କରି ଆନନ୍ଦ ଅନୁଭବ କରୁଥିଲେ।

ବିଶ୍ୱବିଦ୍ୟାଳୟର ଶିକ୍ଷାଗତ ବ୍ୟସ୍ତତା ସତ୍ତ୍ୱେ କିଙ୍ଗସ୍ଟନ୍‌ରେ ସାମାଜିକ ଜୀବନ ଅତ୍ୟନ୍ତ ଶାନ୍ତିପ୍ରଦ ଓ ଆନନ୍ଦପୂର୍ଣ୍ଣ ରହିଥିଲା। ପ୍ରଥମତଃ ବିରାଟ ଓଣ୍ଟାରିଓ ହ୍ରଦ କୂଳରେ ଅବସ୍ଥିତ ଏହି ସହରଟି ନିପୁଣ ଚିତ୍ରଶିଳ୍ପୀର ମନୋଜ୍ଞ ଚିତ୍ର ପରି ମନେହୁଏ। ଏହା ସହିତ ମିଶି ଥିଲା ମଧୁର ଲୋକସମ୍ପର୍କ। ବହୁ ଦଶକ ତଳେ ପଶ୍ଚିମ ଅଷ୍ଟ୍ରେଲିଆରେ ପି.ଏଚ୍.ଡ଼ି. (ମନସ୍ତତ୍ତ୍ୱ) ଶେଷ କରିଥିବା ଡକ୍ଟର ଅର୍ଜ୍ଜୁନ ପୁରୋହିତ ଏଠାରେ ସ୍ଥାୟୀ ଭାବେ ବସବାସ କରୁଥିଲେ। ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଏକ ମାନସିକ ଚିକିତ୍ସାଳୟରେ ସେ କାର୍ଯ୍ୟ କରୁଥିଲେ। କିଙ୍ଗସଟନ୍ ବାଟ ଦେଇ ବିରାଟ ସହର ମଣ୍ଟ୍ରିଅଲ୍ କିମ୍ୱା ଟରୋଣ୍ଟୋ ଯାଉଥିବା ଓଡ଼ିଆ ପରିବାର ଖୁସିରେ ଏଠାରେ ଅଟକି ରୁହନ୍ତି। ଆମେ ମଧ ସାମିଲ ହେଉ। ଅନ୍ୟ ଗୋଟିଏ ଓଡ଼ିଆ ପରିବାର ହେଉଛି ଇଞ୍ଜିନିୟର୍ ଡ. ମହେଶ୍ୱର ସାହୁ ଏବଂ ତାଙ୍କର ପତ୍ନୀ ମିନି ନାନୀ। କିଛି ବର୍ଷ ପାଇଁ ମହେଶ୍ୱରଙ୍କ ସାନ ଭାଇ ଡାକ୍ତର ଦିଲ୍ଲୀଶ୍ୱର ସାହୁ ସେଠାରେ ରହୁଥିଲେ। ଦିଲ୍ଲୁ ବାବୁଙ୍କର ହୃଦୟର ବ୍ୟାପ୍ତି ଆମ ମନରେ ଏକ ଅଭୁଲା ସମ୍ପଦ ହୋଇ ରହି ଯାଇଛି। ପ୍ରକୃତରେ ପୁରୋହିତ ଓ ସାହୁ ପରିବାରର ହାର୍ଦ୍ଦିକତା ଆମର ଓଡ଼ିଆ ସ୍ୱାଭିମାନକୁ ସଚଳ ରଖିଥିଲା।

ଯେଉଁ କେତୋଟି ବଙ୍ଗୀୟ ପରିବାର ଆମକୁ ଆପଣେଇ ନେଇଥିଲେ ସେମାନେ ହେଉଛନ୍ତି ଡ. ବିନୟ ମୁଖାର୍ଜୀ ଓ ତାଙ୍କର ସହଧର୍ମିଣୀ ରୁମାଦି, ଡ.ପରେଶ୍ ସେନ୍ ଓ ମାୟାଦି ଏବଂ ଡ.ହାଫିଜୁର୍ ରହେମାନ୍ ଓ ନାଜ୍‌ମାଦି। ବିନୁଦାଙ୍କର ବହୁବ୍ୟବହୃତ ଉକ୍ତି "ଭୟ ଓ ଭକ୍ତି ଏକତ୍ର ରହିପାରନ୍ତି ନାହିଁ" - ଏ କଥା ବହୁ ସମୟରେ କାନରେ ପ୍ରତିଧ୍ୱନିତ ହୁଏ। ସେନ୍‌ଦାଙ୍କର ମଜା ମଜା କଥା ମନେ ପଡ଼ିଲେ

ବିରସତା ଦୂରେଇଯାଏ। ହାଫଜ୍ ଭାଇଙ୍କ ସଂକ୍ଷିପ୍ତ ଅଥଚ ହାସ୍ୟକର ମନ୍ତବ୍ୟ ମନେ ପଡ଼ିଗଲେ ନିରୋଳା ମୁହୂର୍ତ୍ତଟା ଆଉ ନିରୋଳା ରହି ନଥାଏ। ଏମାନଙ୍କ ସହିତ ଆମେ ବହୁତ ନୂତନ ସ୍ଥାନସବୁ ବୁଲିଦେଖିଛୁ। ହାଫିଜ୍ ଭାଇଙ୍କ ସହିତ ତାଙ୍କର ଅନେକ ବନ୍ଧୁଙ୍କ ବାସଭବନକୁ ଯାଇଛୁ। ବିଶେଷତଃ ହାମିଲ୍‌ଟନ୍‌ରେ ବସବାସ କରୁଥିବା ତାଙ୍କର ବନ୍ଧୁ ଇସ୍‌ଲାମ୍ ଭାଇ ଓ ତାଙ୍କର ପତ୍ନୀ ଛାୟା ଅପାଙ୍କ ଘରର ସ୍ମୃତି ଖୁବ୍ ସଜଳ। ଭାଷା ଓ ଧର୍ମର ପାଚେରୀ ଭାଙ୍ଗି ମନ ଓ ହୃଦୟ କିପରି ମିଶି ଯାଇପାରେ, ତା'ର ଏକ ଅପୂର୍ବ ଅନୁଭବ ଆମେ ଏଇ ସଂସର୍ଗରୁ ପାଇ ପାରିଛୁ। ଏ ଋଣ ପରିଶୋଧ କରିବା ପାଇଁ କେବଳ କୃତଜ୍ଞତାର ଭାଷା ଯଥେଷ୍ଟ ନୁହେଁ।

ଏଇ ଅଳ୍ପ କିଛି ମାସ ପୂର୍ବରୁ (ନଭେମ୍ବର ୨୦୧୭) ଶ୍ରୀ ନିତ୍ୟାନନ୍ଦ ଉପାଧ୍ୟାୟ ଓ ତାଙ୍କର ପତ୍ନୀ ଛୋଟ୍ କୁନୀଙ୍କ ଦୁବାଇ ବାସଭବନରେ ଅତିଥି ହୋଇଥିଲୁ। ଛୋଟ୍ କୁନୀ ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ସ୍ୱନାମଧନ୍ୟ ଗଣିତ ପ୍ରଫେସର ରାମଶଙ୍କର ରଥଙ୍କ କନ୍ୟା। ନିତ୍ୟାନନ୍ଦ ବାବୁ ଓ ଛୋଟ୍ କୁନିଙ୍କ ଆତିଥ୍ୟ ଭୁଲିବାର ନୁହେଁ। ଦୁବାଇରେ ମୁଁ ଓ ଅଞ୍ଜୁ ଯେଉଁ ଅଖଣ୍ଡ ଆନନ୍ଦ ପାଇଛୁ, ତାହା କେବଳ ଏହି ଦମ୍ପତିଙ୍କ ସୌଜନ୍ୟ ଫଳରେ ସମ୍ଭବ ହୋଇଛି। ସେମାନଙ୍କ ସୁଖ ଓ ସ୍ୱାସ୍ଥ୍ୟ ପାଇଁ ଆମର ପ୍ରାର୍ଥନା ସବୁବେଳେ ସକ୍ରିୟ ରହିବ।

**ସାଇ ସମିତି ଓ ବ୍ରହ୍ମବିଦ୍ୟା ସମିତି**

ପେସାଗତ ଜୀବନର ଆନୁଷ୍ଠାନିକ ସମ୍ପୃକ୍ତିକୁ ବାଦ୍ ଦେଲେ ଆଉ ଗୋଟିଏ ବଳୟ ଆମ ମନପ୍ରାଣକୁ ଅଭିପ୍ରେରିତ କରିଛି। ତାହା ହେଉଛି ଶ୍ରୀ ସତ୍ୟସାଇ ସେବା ସମିତି। ୧୯୮୬ ମସିହାରୁ ଏହାର ଅଙ୍କୁରଣ ଘଟି ଏହା ବର୍ତ୍ତମାନର ପର୍ଯ୍ୟାୟରେ ପହଞ୍ଚିଛି।

୧୯୮୬ ମସିହାରେ ଶ୍ରୀ ସତ୍ୟସାଇ ସେବା ସମିତିର ପୂର୍ବତନ ସଭାପତି ପ୍ରଫେସର୍ ଆଇ, ଶ୍ରୀନିବାସଙ୍କ ଗୃହରେ ଯେଉଁ ସାପ୍ତାହିକ ସାଇ ଭଜନ ଅନୁଷ୍ଠିତ ହେଉଥିଲା ତାହା ହିଁ ଆମ ହୃଦୟରେ ଆଦିବୀଜ ବପନ କରିଥିଲା। ଅବଶ୍ୟ ସେ ସମୟରେ ରାଜ୍ୟ ସଭାପତି ଥିଲେ ସମ୍ମାନାସ୍ପଦ ଶ୍ରୀଯୁକ୍ତ ବ୍ରହ୍ମାନନ୍ଦ ପଣ୍ଡା। ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଫେସର୍ ରାଓ ଏ ଦାୟିତ୍ୱ ନେଲେ। ଏହା ମଧ୍ୟରେ ପ୍ରଫେସର୍ ରାଓଙ୍କର ତିରୋଧାନ ଘଟିଛି। ତତ୍କାଳୀନ ସଭାପତି ଶ୍ରୀଯୁକ୍ତ ବ୍ରହ୍ମାନନ୍ଦ ପଣ୍ଡାଙ୍କ ସହିତ ବ୍ୟକ୍ତିଗତ ସଂସର୍ଗ ଏବଂ ପ୍ରଫେସର ରାଓଙ୍କ ଉପସ୍ଥିତି ଓ ଉପଦେଶଟି ଅଙ୍କୁରଣର ବିଶିଷ୍ଟ କାରଣ।

କ୍ରମାଗତ ଭାବରେ ସାଇ ସେବା ମଧ୍ୟରେ କେତେଗୁଡ଼ିଏ ପରିବାରର ଗତାନୁଗତିକ ସୀମାରେଖା ମିଳାଇ ଯାଇ ବୃହତ୍ତର ସାଇ ପରିବାର ବିକଶିତ ଓ ପଲ୍ଲବିତ ହୋଇଛି।

ବହୁ ସମୟରେ ଆମେ ମିଳିମିଶି ରାଜ୍ୟସ୍ତରରେ ଓ ଜିଲ୍ଲା ସ୍ତରରେ କାର୍ଯ୍ୟ କଲେ ମଧ୍ୟ ବାଣୀବିହାରକୁ କେନ୍ଦ୍ର କରି ଗଢ଼ି ଉଠିଥିବା ବାଣୀବିହାର ସତ୍ୟସାଇ ସମିତିରେ ଏକତ୍ୱବୋଧ ଘନୀଭୂତ ହୋଇଛି। ଏ ପରିପ୍ରେକ୍ଷୀରେ ପ୍ରଫେସର୍ ରାଓଙ୍କ ବାଣୀବିହାର ବାସଭବନରେ ଅନୁଷ୍ଠିତ ସାପ୍ତାହିକ ସାଇଭଜନ ପ୍ରଫେସର୍ ବିଷ୍ଣୁ ପ୍ରସନ୍ନ ଆଚାର୍ଯ୍ୟଙ୍କ ଗୃହକୁ ସ୍ଥାନାନ୍ତରିତ ହୋଇଥିଲା। ଏହାପରେ ପ୍ରଫେସର୍ ଗୁରୁଚରଣ ପ୍ରଧାନ (ରସାୟନ ବିଭାଗର ପ୍ରାକ୍ତନ ପ୍ରଫେସର୍) ଏବଂ ପ୍ରଫେସର୍ ରମେଶ ଚନ୍ଦ୍ର ଦାସଙ୍କ (ଦର୍ଶନ ବିଭାଗର ପ୍ରଫେସର୍) ବାସଭବନକୁ ସ୍ଥାନାନ୍ତରିତ ହୋଇଥିଲା। ବର୍ତ୍ତମାନ ଏହା ଫାର୍ମାସୀ ବିଭାଗର ପ୍ରଫେସର୍ ସୁଶାନ୍ତ ସାହୁଙ୍କ ଘରେ ଅନୁଷ୍ଠିତ ହେଉଛି। ଭଜନ ଓ ଅନ୍ୟ ସବୁ ସେବାକାର୍ଯ୍ୟ ମାଧ୍ୟମରେ ମୋର ପରିବାର ବିଷ୍ଣୁ ବାବୁ, ଗୁରୁ ବାବୁ, ରମେଶ ବାବୁ ଓ ସୁଶାନ୍ତ ବାବୁଙ୍କ ପରିବାର ସହିତ ମିଶି ଯାଇଛି କହିଲେ ଚଳେ। ଏକତ୍ୱବୋଧ ଓ ଆନନ୍ଦାନୁଭବର ଏ ମହାପ୍ରବାଦ ମଧ୍ୟରେ ଗୋଟିଏ ବିରାଟ ଦୁଃଖର ଝଟକା ଆମକୁ କିଛିଟା ସ୍ଥାଣୁ କରିଛି। ତାହା ହେଉଛି ଦୁଇ ବର୍ଷ ତଳେ (ମାର୍ଚ୍ଚ ୨୦୧୬) ରମେଶ ଭାଇଙ୍କର ଆକସ୍ମିକ ବିୟୋଗ। ଏ କ୍ଷତର ଗ୍ଲାନି ସହଜରେ ଯିବ ନାହିଁ। ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଆମର ସାଇ ପ୍ରଣତି ସଦା ଉଚ୍ଚାରିତ ରହିବ। ରମେଶ ବାବୁଙ୍କ ପତ୍ନୀ କୈଳାସିନୀ ଏବଂ କିଶୋର ବୟସର ପୁତ୍ର ସାଇ ସ୍ୱରୂପକୁ ଈଶ୍ୱର ସଦା ସର୍ବଦା ସୁରକ୍ଷା ଓ ସମୃଦ୍ଧି ପ୍ରଦାନ କରନ୍ତୁ, ଏହା ଆମ ସାଇ ପରିବାରର ଐକାନ୍ତିକ ପ୍ରାର୍ଥନା।

ସାଇ ସେବା ଆମକୁ କେବଳ ବରିଷ୍ଠମାନଙ୍କ ଆଶିଷ ଓ ସମସାମୟିକ ସାଇସେବକମାନଙ୍କର ସଦିଚ୍ଛାର ଅଧିକାରୀ କରିନାହିଁ, କିଶୋର ଓ ତରୁଣମାନଙ୍କର ସମ୍ପ୍ରୀତିର ଅଧିକାରୀ କରିଛି। ଅଧ୍ୟାପକ ରମେଶ ଚନ୍ଦ୍ର ବେହେରା ଓ ତାଙ୍କ ପରିବାରର ସଦିଚ୍ଛା ପାଇଛି। ଡ଼. ଉମାକାନ୍ତ ସୁବୁଦ୍ଧି ଓ ରାଜଲକ୍ଷ୍ମୀର ସମ୍ମାନସୂଚକ ଅନ୍ତରଙ୍ଗତା ଲାଭ କରିଛି। ଉମା ଓ ରାଜଲକ୍ଷ୍ମୀର ସମର୍ପିତ ସାଇସେବାକୁ ଦେଖି ସବୁବେଳେ ସେମାନଙ୍କର ଓ ତାଙ୍କର ପୁତ୍ର ସାଇର ମଙ୍ଗଳ କାମନା କରିଛୁ। ବାଣୀବିହାର ସାଇ ସମିତିର ଛତା ତଳେ ଆମେ ସବୁ ଏକାଠି ଠିଆ ହୋଇ ପରସ୍ପରର ମଙ୍ଗଳ ପାଇଁ ପ୍ରାର୍ଥନା କରିଛୁ ଏବଂ କରିବୁ ମଧ୍ୟ। ଅଳ୍ପ କିଛି ବର୍ଷ ତଳେ ତରୁଣ ଓ ନିଷ୍ଠାପର ପ୍ରତାପ ପାଣିଗ୍ରାହୀ ଓ ତାଙ୍କର ପତ୍ନୀ ମୋନାଲିସାର ଯୋଗଦାନ ବାଣୀବିହାର ସମିତିକୁ ଅଧିକ କର୍ମଚଞ୍ଚଳ କରିଛି।

ସାଇ ସମିତି ବ୍ୟତୀତ ଆଉ ଗୋଟିଏ ଛାତ ଆଉ ଗୋଟିଏ କାନ୍ଥ ଉପରେ ମୁଁ ଏଇ କିଛି ବର୍ଷ ହେବ ଆଉଜି ପଡ଼ିଛି। ୨୦୦୮ ମସିହାରେ ମୁଁ ବିଶ୍ୱବିଦ୍ୟାଳୟ ଚାକିରୀରୁ ଅବସର ନେବାର ଅଳ୍ପ କିଛି ବର୍ଷ ପୂର୍ବରୁ ମୋର ଜଣେ ବ୍ୟକ୍ତିଙ୍କ ସହିତ ମିତ୍ରତା ହେଲା। ସେ ହେଉଛନ୍ତି ଶ୍ରୀ ବ୍ରଜ କୁମାର ଶତପଥୀ। ସେ ଦୀର୍ଘଦିନ ଷ୍ଟେଟ୍

ବ୍ୟାଙ୍କରେ କାର୍ଯ୍ୟ କରିବା ପରେ ଇଚ୍ଛାକୃତ ଅବସର ଗ୍ରହଣ କଲେ। ମାତ୍ର ଏହା ତାଙ୍କର ପରିଚୟ ନୁହେଁ। ମୁଁ ତାଙ୍କୁ ଆଧ୍ୟାତ୍ମିକ ପରିବ୍ରାଜକ ବୋଲି କହିଥାଏ। ସେ ବହୁ ଆଧ୍ୟାତ୍ମ ଅନୁଷ୍ଠାନ ସହ ସଂଶ୍ଳିଷ୍ଟ। ପରୋପକାର ପାଇଁ ତାଙ୍କ ଗୋଡ଼ରେ ଚକ ଲାଗିଥାଏ। ସେ ଦାଦା ଜେ.ପି. ବାସୱାନୀଙ୍କର ଅନେକ ପୁସ୍ତକ ଓଡ଼ିଆରେ ଅନୁବାଦ କରିଛନ୍ତି। ସେ ବହୁ ଆଧ୍ୟାତ୍ମିକ ଅନୁଷ୍ଠାନ ପାଇଁ କାର୍ଯ୍ୟ କରିଥିଲେ ମଧ୍ୟ ବର୍ତ୍ତମାନ ଔପଚାରିକ ଭାବେ ଉତ୍କଳ ବ୍ରହ୍ମବିଦ୍ୟା ସମିତିର କୋଷାଧ୍ୟକ୍ଷ ଅଛନ୍ତି। ସେ ମୋତେ ଓ ଆମ ପରିବାରକୁ ବହୁ ସମୟରେ ସହାୟତା କରିଛନ୍ତି। ଆତ୍ମିକ ଦୃଷ୍ଟିରୁ ମୁଁ ତାଙ୍କୁ ଆମ ପରିବାରର ଏକ ସଦସ୍ୟ ବୋଲି ବିଚାର କରେ।

ଶତପଥୀ ବାବୁଙ୍କ ସହିତ ମିତ୍ରତା ହେବା ପୂର୍ବରୁ ମୁଁ କେତେଥର ଉତ୍କଳ ବ୍ରହ୍ମ ବିଦ୍ୟା ସମିତିର ବାର୍ଷିକ ଉତ୍ସବରେ ଅତିଥି ହେବାର ସୌଭାଗ୍ୟ ଲାଭ କରିଥିଲି ଏବଂ ଏହାର ସଭାପତି ବିଶିଷ୍ଟ ସାହିତ୍ୟିକ ବିନୋଦ ବିହାରୀ ପଲାଇଙ୍କ ସହ ଏହି ସୂତ୍ରରେ ସଦ୍‌ଭାବ ଥିଲା। କିନ୍ତୁ ଶତପଥୀ ବାବୁଙ୍କ ସହ ବନ୍ଧୁତ୍ୱ ହେବା ପରେ ମୋର ସମ୍ପୃକ୍ତି ବୃଦ୍ଧି ପାଇଲା ଏବଂ ଆଉ କେତେକ ବିଶାଳ ହୃଦୟର ବ୍ୟକ୍ତିଙ୍କ ସହ ଯୋଗସୂତ୍ର ଗଭୀର ହେଲା। ଏ ଦୁଇଜଣ ହେଉଛନ୍ତି ଉତ୍କଳ ବ୍ରହ୍ମବିଦ୍ୟା ସମିତିର ଶ୍ରୀଯୁକ୍ତ ଅଶୋକ କୁମାର ମହାପାତ୍ର ଓ ଶ୍ରୀଯୁକ୍ତ ଆଶିଷ କର। ଅଶୋକ ବାବୁ ଜଣେ ନିଆରା ମଣିଷ। ସେ କେବଳ ଜଣେ ସୁଲେଖକ ନୁହଁନ୍ତି; ତାଙ୍କର ହୃଦୟବତ୍ତା ଓ ବିନମ୍ରତା ଯେ କୌଣସି ବ୍ୟକ୍ତିକୁ ମୁଗ୍ଧ କରିବ। ତାଙ୍କଠାରୁ ଶିଖିବାର ଅନେକ ଜିନିଷ ରହିଛି। ଶ୍ରୀଯୁକ୍ତ ଆଶିଷ କର କିଛି ବର୍ଷ ଧରି 'ଶାଶ୍ୱତ ଭାରତ'ର ସମ୍ପାଦକ ରୂପେ ଉଚ୍ଚତର ଭାଷା ଓ ଭାବନା ରାଜ୍ୟରେ ନିଜର ସ୍ୱାକ୍ଷର ଅଙ୍କନ କରିଛନ୍ତି। ଏପରି ନିଷ୍ଠା ଓ ମନନଶୀଳତା ସହିତ ସମ୍ପାଦିତ ପତ୍ରିକା ଅନ୍ତତଃ ବର୍ତ୍ତମାନ ପରିପ୍ରେକ୍ଷୀରେ ବିରଳ। ଓଡ଼ିଶାର ଏହି ସୁଯୋଗ୍ୟ ସନ୍ତାନମାନଙ୍କର ସାନ୍ନିଧ୍ୟ ପାଇଁ ମୁଁ ଧନ୍ୟ।

କୃତଜ୍ଞତା ପ୍ରକାଶ କରିବା ସମୟରେ ମୁଁ ଆଉ ଜଣେ ବ୍ୟକ୍ତିକୁ ମୋ ସମ୍ମୁଖ ଭାଗରେ ଦେଖୁଛି ସେ ହେଉଛନ୍ତି ପ୍ରଫେସର୍ ଆଦିତ୍ୟ କୁମାର ମହାନ୍ତି। ଉତ୍କଳ ବିଶ୍ୱ ବିଦ୍ୟାଳୟର ଦର୍ଶନ ବିଭାଗର ପୂର୍ବତନ ପ୍ରଫେସର୍ ରୂପେ ଛାତ୍ରଛାତ୍ରୀମାନଙ୍କର ଯେତିକି ପ୍ରିୟ ରେନେସାଁ ଇଣ୍ଟରନ୍ୟାସନାଲ୍‌ର ପ୍ରତିଷ୍ଠାତା ଓ ସଭାପତି ରୂପେ ସେ ସେତିକି ସମ୍ମାନିତ। ଦାର୍ଶନିକ ଚିନ୍ତାଧାରା ସମ୍ବଳିତ ବହୁ ପୁସ୍ତକ ରଚନା କରିଛନ୍ତି। ଓଡ଼ିଶାର ବିଭିନ୍ନ ସ୍ଥାନରେ ଅସହାୟ ପିଲାଙ୍କ ପାଇଁ Children's Home ର ସ୍ଥାପନ ଓ ପରିଚାଳନ କରିଛନ୍ତି ଏବଂ ଓଡ଼ିଶାରେ ବୌଦ୍ଧିକ ଚେତନାର ବିକାଶ ପାଇଁ ନିରନ୍ତର କାର୍ଯ୍ୟ କରିଛନ୍ତି। ମୁଁ ତାଙ୍କୁ ଯେତେ ଦେଖୁଛି ମୋ ଶିକ୍ଷାର ଅସମ୍ପୂର୍ଣ୍ଣତା ସେତେ ଅଧିକ ଉପଲବ୍ଧି କରିଛି।

ସ୍ମୃତିଚାରଣ ସମୟରେ ଜୀବନ ମନ୍ତ୍ରର ଶଙ୍ଖଧ୍ୱନି କରି ଆମ ପାଖରେ ବିଶ୍ୱ ଚେତନାର ଏକ ବିଶାଳ ପରମ୍ପରାକୁ ଛାଡ଼ି ଯାଇଥିବା ବ୍ୟକ୍ତିତ୍ୱ ହେଉଛନ୍ତି ଚିତ୍ତରଞ୍ଜନ ଦାସ- ଆମର ଅତି ଆଦରର ଚିତ୍ତ ଭାଇ। ସାତ ବର୍ଷ ତଳେ ତାଙ୍କର ପାର୍ଥିବ ଶରୀରର ଅନ୍ତ ଘଟିଛି। ମାତ୍ର ତାଙ୍କର ଅଗଣିତ ପୁସ୍ତକ, ମୌଳିକ ଚିନ୍ତାଧାରା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ଦାର୍ଶନିକ ସମୀକ୍ଷା ମୋ ପରି ବହୁ ଲୋକଙ୍କୁ ଋଣୀ ରଖିବ। ତାଙ୍କର "ଚୈରେବତି", "ପରିଭାଷା" ମୁଁ ଯେତେ ସ୍ମରଣ କରେ ମୋର ଋଣାନୁବନ୍ଧନର ଡୋର ସେତିକି ଦୂରକୁ ପ୍ରସାରିତ ହୁଏ।

❖

(୩୬)

# ମୁଁ ଚାଲିଛି, ପଥ ସରିନାହିଁ

ଜୀବନର ଗତିପଥରେ ଚାଲୁ ଚାଲୁ ଆଦୌ ଯେ କ୍ଲାନ୍ତି ଆସିନାହିଁ, ସେ କଥା ଆଦୌ କହିପାରିବି ନାହିଁ। ହରାଇବାର ବ୍ୟଥା, ଧକ୍କା ଖାଇବାର ଦୁଃଖ ସାମୟିକ ଭାବରେ ମୋତେ ଅବଶ କରିଛି, କିନ୍ତୁ ଗତିଶୀଳତାକୁ ପୂରାପୂରି ବନ୍ଦ କରିନାହିଁ। କେତେକ ପ୍ରାପ୍ତି ଓ ପରିତୃପ୍ତି ଆଗକୁ ମାଡ଼ି ଚାଲିବାର ଉତ୍ସାହ ଦେଇଛି। ସ୍ୱପ୍ନ ଦେଖିବାର ଓ କଳ୍ପନା କରିବାର ପ୍ରେରଣା ଦେଇଛି।

ପଛକୁ ଫେରି ଚାହିଁଲେ ମନେହୁଏ ଯେ ୧୯୭୬ ମସିହାରେ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭ କରି କାନାଡ଼ା ଯିବା ଏବଂ କୁଇନ୍ସ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ଶିକ୍ଷାଲାଭ କରିବା ଏକ ଅପ୍ରତ୍ୟାଶିତ ପ୍ରାପ୍ତି। ଏହା କେବଳ ମୋର ପେସାଗତ ଜୀବନକୁ ପୁନର୍ବଳନ ପ୍ରଦାନ କରି ନ ଥିଲା, ଜୀବନ ପ୍ରତି ଆନୁଗତ୍ୟ ଓ ପ୍ରତିବଦ୍ଧତା ତିଆରି କଲା। ମୁଁ ସେଠାରୁ ଫେରିବା ପରେ ମନସ୍ତତ୍ତ୍ୱର ଅଧ୍ୟୟନ ଓ ଗବେଷଣାକୁ ଅଧିକ ଭଲ ପାଇବାକୁ ଆରମ୍ଭ କଲି।

କାନାଡ଼ା ଯିବାର ଅବ୍ୟବହିତ ପୂର୍ବରୁ ମୋର ବିବାହ ମଧ୍ୟ ଜୀବନର ଏକ ଗତିସ୍ତମ୍ଭ। ମୋର ଜୀବନ ନକ୍ସା ଯେଉଁଠି ଯୋଡ଼ି ଦେବାର ସୁଯୋଗ ପାଇଲା, ତାହା ଏକ ଆକସ୍ମିକ ସଂଯୋଗ ନୁହେଁ। ଆମେ ଦୁହେଁ ପରସ୍ପରକୁ ଜାଣିଥିଲୁ। ପରସ୍ପରର ରୁଚି ଅରୁଚି ପ୍ରତି ସଚେତନ ଥିଲୁ। ବ୍ୟକ୍ତିତ୍ୱ ସ୍ତରରେ କିଛିଟା ପାର୍ଥକ୍ୟ ଥିଲା। କିନ୍ତୁ ପାରସ୍ପାରିକ ଶ୍ରଦ୍ଧା ଓ ସଂପ୍ରୀତି ବଳରେ ଦାମ୍ପତ୍ୟ ଜୀବନରେ ଦୁଃଖ ସମୟରେ ଯେପରି ଏକଜୁଟ୍ ହୋଇପାରିଛୁ ସୁଖ ସମୟରେ ସେପରି ଖୁସି ବାଣ୍ଟି ପାରିଛୁ। ଅଞ୍ଜୁ କେବଳ ଜଣେ ଗୃହିଣୀ ନୁହେଁ, ସେ ଗଭୀର ଭାବରେ କଳାପ୍ରିୟ ଓ ସଂଗୀତ ପ୍ରିୟ। ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାର ବିଭିନ୍ନ ଧରଣର ପୁସ୍ତକ ପଢ଼ିବାରେ ତା'ର ନିରବଚ୍ଛିନ୍ନ ଆଗ୍ରହ ଦୈନନ୍ଦିନ ଜୀବନର ବହୁ ଅପରିଚ୍ଛନ୍ନତା ଭିତରୁ ଆମକୁ ରକ୍ଷା କରି ପାରିଛି। ତା'ଛଡ଼ା ସାମାଜିକ ସମ୍ପର୍କକୁ ପ୍ରୀତିପଦ କରିବାରେ ସାହାଯ୍ୟ କରିଛି।

କାନାଡ଼ାରୁ ଫେରିବା ପରେ ଆମ ପରିବାରରେ ଜଣେ ନୂତନ ଅତିଥିଙ୍କ ଆବିର୍ଭାବ ଆମର ଭୂମିକା ଓ ଦାୟିତ୍ୱକୁ ନୂଆ ରୂପରେଖ ଦେଲା। ତାହା ହେଉଛି ୧୯୮୨ ମସିହା ଅକ୍ଟୋବର ମାସରେ କନ୍ୟା ଭୂମିକାର (ପଲ୍ଲୀ) ଜନ୍ମ। ପିତାମାତାର ଦାୟିତ୍ୱ ନେଇ ଆମେ ତାକୁ ଯଥୋଚିତ ଶିକ୍ଷାଦୀକ୍ଷା ଦେଇଛୁ। ପଲ୍ଲୀ ଭୁବନେଶ୍ୱରର ଡ଼ି.ଏମ୍. ସ୍କୁଲରେ ତା'ର ସ୍କୁଲ ଶିକ୍ଷା ସମାପ୍ତ କଲା। ପରେ କଟକର ଫୁଲନଖରା ନିକଟବର୍ତ୍ତୀ Eastern Academy of Science & Technologyରେ

(EAST) କମ୍ପ୍ୟୁଟର ବିଜ୍ଞାନରେ ଇଞ୍ଜିନିୟରିଂ ସ୍ନାତକ ଶେଷ କଲା। ତା'ପରେ Institute of Technological Education & Research(ITER)ରୁ ଆଇ.ଟି.ଓ କମ୍ପ୍ୟୁଟର ବିଜ୍ଞାନରେ ଏମ୍.ଟେକ୍. ମଧ୍ୟ ଶେଷ କଲା।

ଆମର ଏକ ପ୍ରାପ୍ତି ଯେ ୨୦୧୧ ମସିହା ଡିସେମ୍ବର ମାସରେ ପଲ୍ଲୀର ବିବାହ ସମ୍ପନ୍ନ ହୋଇଛି। ଜାମାତା ଶ୍ରୀ ତାପସ କୁମାର ଓଝା ଭାରତ ସରକାରଙ୍କ ବାୟୁସେନା ବିଭାଗର ଜଣେ ପଦସ୍ଥ ଅଫିସର୍। ସେ ବର୍ତ୍ତମାନ ନୂଆଦିଲ୍ଲୀରେ ଅବସ୍ଥାପିତ।

ଦୁଇବର୍ଷ ତଳେ ଆମ ଜୀବନରେ କଳରବ ସୃଷ୍ଟି କରି ନାତୁଣୀଟିଏ ଆସିଛି। ୨୦୧୫ ମାର୍ଚ୍ଚମାସ ୧୨ ତାରିଖରେ ପଲ୍ଲୀର କନ୍ୟା ତନିସା ଜନ୍ମ ନେଇଛି। ଆମେ ତାକୁ ତିଥି ବୋଲି ଡାକୁ। ତିଥିର ଜନ୍ମ ସହିଦନଗରସ୍ଥିତ ସ୍ପର୍ଶ ଚିକିତ୍ସାଳୟରେ। ଡାକ୍ତର ସୁଜିତ୍ ବେହେରାଙ୍କ ତତ୍ତ୍ୱାବଧାନରେ ତା'ର ଜନ୍ମ। ଜନ୍ମର ପରେ ପରେ ପ୍ରାୟ ତିନିମାସ ପର୍ଯ୍ୟନ୍ତ ରାତିରେ ନ ଶୋଇବା ଫଳରେ ତା'ର ଆଈ (ଅଞ୍ଜୁ) ହଇରାଣ ହୋଇଛି ସତ ତେବେ ତା'ର ଦରୋଟି ଭାଷା ଏବେ ମଲମ ପରି ସୁଖ ପ୍ରଲେପ ଦେଉଛି। ୨୦୧୮ ମାର୍ଚ୍ଚ ମାସରେ ତିଥିକୁ ତିନିବର୍ଷ ହେଲା।

ତିଥି ତା'ର ଆଈକୁ "ସଇ" ଏବଂ ମୋତେ "ଦାଦୁନ୍" ବୋଲି ତା'ର ଦରୋଟି ଭାଷାରେ ଡାକୁଛି। ଅଜା ଆଈ ହେବାର ସୁଖ ଆମେ ପ୍ରାଣ ଭରି ଉପଭୋଗ କରୁଛୁ। ପଲ୍ଲୀ ଓ ତିଥି ଭୁବନେଶ୍ୱର ଆସିଲେ ସମୟ ତିଥି ମେଳରେ କଟୁଛି। ଅନ୍ୟଥା ପ୍ରାୟ ପ୍ରତିଦିନ ଟାବ୍ (TAB)ମାଧ୍ୟମରେ ସଂଯୋଗ ଓ ସଂଳାପ ଚାଲିଛି। ସାମାଜିକ ଜୀବନର ପରିଧି ଭିତରେ ତିଥିର କଥା ଆଉ ସ୍ମିତହସ ଆମ ଜୀବନକୁ ଚାପମୁକ୍ତ କରିବାରେ ସହାୟକ ହୋଇଛି।

ପାଇବା ଏବଂ ଖୁସୀ ହେବାର ମୁହୂର୍ତ୍ତ ସତ୍ତ୍ୱେ ମଝିରେ ମଝିରେ କେତୋଟି ହରାଇବାର ଘଟଣା ଆମକୁ ଦୁଃଖୀ କରିଛି। ସାତ ଆଠବର୍ଷ ତଳେ ମୋର ପିଇସୀ ଚାଲିଗଲେ। ମୋର ବୋଉକୁ ସାତବର୍ଷ ଦିନୁ ହରାଇ ମୁଁ ବୋଉ ପାଇଥିଲି। ମୋର ପିଇସୀର (ପାର୍ବତୀ ଦେବୀ) ଋଣ ମୁଁ କଦାପି ପରିଶୋଧ କରିପାରିବି ନାହିଁ। ଭୌତିକ ସ୍ତରରେ ସେ କେବଳ ମୋର ଦାୟିତ୍ୱ ନେଇ ନ ଥିଲା। ତା'ର ମହନୀୟତା ଓ ହୃଦୟର ବିଶାଳତା ମୋତେ ଗଭୀର ଭାବେ ପ୍ରଭାବିତ କରିଥିଲା।

ପିଇସୀ ଘରେ (କାଠଗଡ଼ା ସାହି) ପିଇସୀଙ୍କ ବ୍ୟତୀତ ଘନିଷ୍ଠତମ ସମ୍ପର୍କ ହେଉଛି ପିଇସୀ ପୁଅ ବଳରାମ ଭାଇ ଓ ଭାଉଜ। ଏଇ ଅଳ୍ପ କେଇବର୍ଷ ପୂର୍ବରୁ ଭାଉଜଙ୍କର ଦେହାନ୍ତ ଘଟିଲା। ହରାଇବାର ଦୁଃଖକୁ ଅଧିକ ଗଭୀର କରି ବଳରାମ ଭାଇ ୨୦୧୭ ଫେବୃଆରୀରେ ଶେଷ ନିଃଶ୍ୱାସ ତ୍ୟାଗ କଲେ। କାଠଗଡ଼ା ସାହି ଘର ସହିତ ଯେଉଁ ଆତ୍ମିକ ସମ୍ପର୍କ ରହିଥିଲା ତାହା ଛିଡ଼ିଗଲା ପରି ମନେହେଲା।

ଭାଇଙ୍କ ତିନିପୁଅ ଓ ତିନିବୋହୂ ରହିଛନ୍ତି। ସେ ଘରକୁ ଗଲେ ଚା'ପାଣିର ଅଭାବ ହେବ ନାହିଁ। କିନ୍ତୁ ସମ୍ପର୍କର ସେଇ ନିବିଡ଼ତା ସମ୍ଭବତଃ ଅବ୍ୟାହତ ରହିବ ନାହିଁ।

ଆଉ ଗୋଟିଏ ଭାବଗତ ଧକ୍କା ହେଉଛି ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ପ୍ରାକ୍ତନ ପ୍ରଫେସର ରମେଶ ଚନ୍ଦ୍ର ଦାସ୍‌ଙ୍କ ବିୟୋଗ। ରମେଶ ବାବୁ ତାଙ୍କର ପତ୍ନୀ କୈଳାସିନୀ ଓ ପୁତ୍ର ସାଇ ସହିତ ମାତ୍ର ୧୯୯୯ରୁ ପରିଚିତ ଆରମ୍ଭ ହୋଇଥିଲେ ମଧ୍ୟ ସମ୍ପର୍କରେ ନିବିଡ଼ତା ଏଇ କେତେବର୍ଷ ଭିତରେ ଘନୀଭୂତ ହୋଇଥିଲା। ବିଶେଷତଃ ଶ୍ରୀ ସତ୍ୟସାଇ ସେବା ସମିତିର ମିଳିତ କାର୍ଯ୍ୟକ୍ରମ ମାଧ୍ୟମରେ ଏହା ଗଭୀର ହୋଇଥିଲା। ୨୦୧୭ ମାର୍ଚ୍ଚ ମାସରେ ରମେଶ ବାବୁଙ୍କ ଆକସ୍ମିକ ଓ ଅଚାନକ ବିୟୋଗ ଅକାଳ ବଜ୍ରପାତ ପରି ମନେହେଲା। ଏ ମାନସିକ ଶୂନ୍ୟତା ସହଜରେ ପୂରଣ ହେବାର ନୁହେଁ।

**ସ୍ୱପ୍ନ ଓ କଳ୍ପନା**

ଆଶା ନିରାଶାର ଟଣା ଓଟରା ମଧ୍ୟରେ ସ୍ୱପ୍ନ ବି ରହିଛି; କଳ୍ପନା ବି ରହିଛି। ବିଶେଷତଃ ଆମ ଜୀବନର ସାଇ ସଂଯୋଗଟି ସ୍ୱପ୍ନ ଦେଖିବାର ସୁଯୋଗ ଦେଇଛି, ଆମ ପାଇଁ କଳ୍ପନା କରିବାର ଆଶା ଦେଇଛି।

ଏଇ ସଂଯୋଗକୁ ଭିତ୍ତି କରି ଆମର ମୁଖ୍ୟ ବନ୍ଧୁବଳୟ ଗଠିତ ଓ ପରିବର୍ଦ୍ଧିତ ହୋଇଛି। ପେସାଗତ ଜୀବନର ବାହାରେ ଅଳ୍ପ କିଛି ସେବାମୂଳକ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ଏହା ଅନ୍ତର୍ପ୍ରେରଣା ସୃଷ୍ଟି କରିଛି। ପ୍ରଥମେ ପ୍ରଥମେ ସମ୍ବାଦ ପତ୍ର ଓ ପତ୍ରପତ୍ରିକାରେ ପ୍ରକାଶିତ ମୋର ଲେଖାର ସୂଚନାକୁ ମାଧ୍ୟମ କରି କେତେକ ବ୍ୟକ୍ତି ମନସ୍ତାତ୍ତ୍ୱିକ ଉପଦେଶ ନବା ପାଇଁ ମୋର ବାଣୀବିହାର ଓ ପରେ ଶୈଳଶ୍ରୀ ବିହାର ବାସଭବନକୁ ଆସୁଥିଲେ। ବ୍ୟକ୍ତିଗତ ଜୀବନର ମାନସିକ ସମସ୍ୟା, ଦାମ୍ପତ୍ୟ ଜୀବନର ମାନସିକ ଏବଂ ସେମାନଙ୍କ ପୁଅଝିଅର ସମସ୍ୟାର ସମାଧାନ ପାଇଁ ଉପଦେଶ (Counselling)ସେ ଲୋଡୁଥିଲେ। ମୁଁ ମୋର ଯଥାସାଧ୍ୟ ପରାମର୍ଶ ଦେଉଥିଲି।

ଶ୍ରୀ ସତ୍ୟସାଇ ସ୍ରୋତରେ ସାମିଲ ହେବା ପରେ ଏ ଲକ୍ଷ୍ୟଟିକୁ ଏକ ଶୃଙ୍ଖଳିତ ଓ ବୃହତ୍ତର ରୂପରେଖ ଦେବା ପାଇଁ ପ୍ରୟାସ କରୁଛି। ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟ ଭିତ୍ତିରେ ଲୋକମାନଙ୍କୁ ଉପଦେଶନ ଯୋଗାଇବା ପାଇଁ ଗୋଟିଏ ଉପଦେଶନ କେନ୍ଦ୍ରର ପରିକଳ୍ପନା ରହିଛି। ଏ ଦିଗରେ ପୂର୍ଣ୍ଣାଙ୍ଗ ଯୋଜନା ଓ ରୂପ ଦେଇ ପାରି ନଥିଲେ ମଧ୍ୟ ପ୍ରୟାସ ଆରମ୍ଭ କରିଛି। ଭଗବାନ ଯେଉଁ ବିଷୟରେ ମୋତେ କାର୍ଯ୍ୟକୌଶଳ ପ୍ରଦାନ କରିଛନ୍ତି, ତାହାର ହିତକାରୀ ପ୍ରୟୋଗ ମୋର ସ୍ୱପ୍ନ ଓ ପରିକଳ୍ପନା।

ସାମାଜିକ ସ୍ତରରେ କିଛି ଅର୍ଥପୂର୍ଣ୍ଣ କାର୍ଯ୍ୟ କରିବା ବ୍ୟତୀତ ମୋର ଆଉ ଗୋଟିଏ ସ୍ୱପ୍ନ ରହିଛି। ମୁଁ ଗଭୀର ଭାବରେ ଉପଲବ୍ଧି କରେ ଯେ ଆମେ ଭାରତୀୟ ହିସାବରେ ଏକ ବିଶାଳ ସମ୍ପଦ ଓ ପରମ୍ପରାର ଅଧିକାରୀ। ଶିରିଡ଼ର ସାଇବାବା, ଶ୍ରୀ ସତ୍ୟସାଇ ବାବା, ରାମକୃଷ୍ଣ ପରମହଂସ, ରମଣ ମହର୍ଷି, ଯୋଗୀ ଶ୍ରୀ ଅରବିନ୍ଦ, ଶିବାନନ୍ଦ, ଯୋଗାନନ୍ଦ, ବିବେକାନନ୍ଦ ଓ ଜୀଦୁ କୃଷ୍ଣମୂର୍ତ୍ତିଙ୍କ ପରି ବିଶ୍ୱଗୁରୁମାନେ ଭାରତବର୍ଷରେ ଜନ୍ମ ଗ୍ରହଣ କରି ଆମ ଜୀବନକୁ ଅମୃତତ୍ୱ ଆଣିବା ପାଇଁ ମହାନ ବାର୍ତ୍ତା ଦେଇ ଯାଇଛନ୍ତି।

ଅଧ୍ୟାତ୍ମ ଜଗତର ଉଚ୍ଚ ସ୍ତରରେ ଏସବୁ ବାର୍ତ୍ତା ଏବଂ ନିମ୍ନ ସ୍ତରରେ ରହିଥିବା ଭୌତିକ (ବା ଶାରୀରିକ) ସ୍ଥିତିର ମଝିରେ ଏକ ମଧ୍ୟବର୍ତ୍ତୀ ସ୍ଥାନ ରହିଚି। ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନେ ଅଧ୍ୟାତ୍ମ ଜଗତର ଏହି ଉଚ୍ଚତର ସ୍ଥାନକୁ ଯାଇ ନ ଥିଲେ ମଧ୍ୟ ମାନସିକ ସ୍ଥିତିକୁ ସଜାଡ଼ିବା ପାଇଁ କେତେକ ପ୍ରୟାସ କରିଛନ୍ତି। ସେମାନଙ୍କ ପ୍ରୟାସରେ ନିଷ୍ଠା ଓ ଶ୍ରଦ୍ଧା ରହିଛି। କେତେକ ଦୃଷ୍ଟିରୁ ମନସ୍ତତ୍ତ୍ୱକୁ ମୁଁ ଅଧ୍ୟାତ୍ମିକତାର ଏକ ପ୍ରୟୋଗାତ୍ମକ ଦିଗ ରୂପେ ବିଚାର କରିଛି। ସୁତରାଂ ଜୀବନକୁ ସତ୍ୟ, ଶିବ ଓ ସୁନ୍ଦର ଦିଗରେ ପରିଚାଳିତ କରିବା ପାଇଁ ମନୋବିଜ୍ଞାନରେ ଯେଉଁ ସବୁ ଉପାଦାନ ଓ ସାମଗ୍ରୀ ରହିଛି, ତାହାକୁ ଲେଖା ଓ ବକ୍ତବ୍ୟ ମାଧ୍ୟମରେ ଲୋକମାନଙ୍କ ପାଖରେ ପହଞ୍ଚାଇବା ମୋ ଜୀବନର ଏକ ସ୍ୱପ୍ନ। ମୋ ରଚନାର ଏକ ଅନ୍ତଃସ୍ରୋତ।

ଜୀବନରେ ସ୍ୱପ୍ନର ଅନ୍ତ ନାହିଁ କି କଳ୍ପନାର ଶେଷ ନାହିଁ। ମୁଁ ଜାଣେ ଯେ ସ୍ୱପ୍ନ ଓ କଳ୍ପନା ଧରି ବାଟ ଚାଲିବାରେ ବାଟ ସରେ ନାହିଁ। ଏ ପରିପ୍ରେକ୍ଷୀରେ ମୋର ଅନୁକରଣୀୟ ବ୍ୟକ୍ତିତ୍ୱ ଓଡ଼ିଶାର ସୁପରିଚିତ ଦାର୍ଶନିକ ଲେଖକ ଚିତ୍ତରଞ୍ଜନ ଦାସ ତାଙ୍କର "ରୋହିତର ଡାଏରୀ" ପୁସ୍ତକର ପ୍ରଥମ ଭାଗର ପ୍ରଥମାର୍ଦ୍ଧରେ ରୋହିତର ଯେଉଁ ଉପାଖ୍ୟାନ ଉଲ୍ଲେଖ କରିଛନ୍ତି, ତାହା ସ୍ମରଣ କରୁଛି। ଐତେରୀୟ ବ୍ରାହ୍ମଣରେ ଏ ଉପାଖ୍ୟାନଟିର ଉଲ୍ଲେଖ ରହିଛି। ଦେବତା ପାଖରେ କରିଥିବା ଏକ ଶପଥ ଅନୁଯାୟୀ ରୋହିତର ବାପା ରୋହିତକୁ ବଳି ଦେବାକୁ ଚାହିଁଥିଲେ। ଅମାନିଆ ରୋହିତ ଘର ଛାଡ଼ି ପଳାଇଲା। ସ୍ୱୟଂ ଇନ୍ଦ୍ର ବ୍ରାହ୍ମଣର ବେଶ ଧରି ତା'କୁ ଚାଲିବା ପାଇଁ ଉପଦେଶ ଦେଲେ। ଚାଲିଥିବା ପର୍ଯ୍ୟନ୍ତ ତା'ର ମୃତ୍ୟୁ ନାହିଁ। "ଚରୈବେତୀ" ମନ୍ତ୍ରରେ ଦୀକ୍ଷିତ ହୋଇ ରୋହିତ ବର୍ଷ ବର୍ଷ ଧରି ଚାଲିଥିଲା। ଏହି ଉଦ୍‌ବୋଧନ ମନ୍ତ୍ର ରୋହିତକୁ ସକ୍ରିୟ ରଖିଥିଲା।

ଏହି ଚରୈବେତୀ ମନ୍ତ୍ର ମୋର ଶିରା ପ୍ରଶିରାରେ ଧ୍ୱନିତ ହେଉ ବୋଲି ମୋର କାମନା। ହାଇସ୍କୁଲରେ ପଢ଼ିବା ସମୟରେ ଆମର ଇଂରାଜୀ ଶିକ୍ଷକ ଗୋପୀନାଥ ମହାପାତ୍ର ପଢ଼ାଉଥିବା ଇଂରାଜୀ କବିତାର ଓଡ଼ିଆ ଅନୁବାଦ କିଛି ଶ୍ରେଣୀରେ

ଶୁଣାଇବାର ଦାୟିତ୍ୱ ମୋତେ ଦେଇଥିଲେ। ବିଖ୍ୟାତ କବି ରବର୍ଟ ଫ୍ରଷ୍ଟଙ୍କ ବିଖ୍ୟାତ କବିତାର ଶେଷ ପଂକ୍ତିଟି ମୁଁ ଏହିପରି ଭାଷାନ୍ତର କରିଥିଲି।

"ଏ ସବୁଜ ବନଭୂଇଁ ମନୋହର ତାପସ ଗମ୍ଭୀର
ତଥାପି ରହିଛି ମୁହିଁ ମୋ ସଂକଳ୍ପେ ସ୍ଥିର।
ଆଗରେ ରହିଛି ପଥ ଦୂରପଥ ବହୁଦୂର ବ୍ୟାପି
ପଥିକ ଚାଲିଛି ମୁହିଁ, ଚାଲୁଥିବି ନ ପଡ଼ିଣ ଥକି।"

❖

# ରଚନା ସମ୍ଭାର

<u>ମନୋବୈଜ୍ଞାନିକ ରଚନା</u>

୧. ବିଚିତ୍ର ମନ (୧୯୮୮)
୨. ମାନସିକ ବିକୃତି (୧୯୯୮)
୩. ଜୀବନ ପ୍ରବାହରେ ମାନସିକ ବିକୃତି (୨୦୦୦)
୪. ମନର ମାନଚିତ୍ର (୨୦୦୧)
୫. ମନସ୍ତାତ୍ତ୍ୱିକ ବିକାଶର ଶୈଶବ ପର୍ବ (୨୦୦୨)
୬. ମନସ୍ତାତ୍ତ୍ୱିକ ବିକାଶର ଗୋଧୂଳି ପର୍ବ (୨୦୦୪)
୭. ବ୍ୟକ୍ତିତ୍ୱ ଓ ନେତୃତ୍ୱ (୨୦୦୪)
୮. ନାରୀ ମନସ୍ତତ୍ତ୍ୱ (୨୦୦୫), ଦ୍ୱିତୀୟ ମୁଦ୍ରଣ : ୨୦୧୩
୯. ଶିଶୁମନର ବିଜ୍ଞାନ (୨୦୦୬)
୧୦. ସଚିତ୍ର ମନ (୨୦୦୭)
୧୧. ସବଳ ମନ, ସଫଳ ଜୀବନ (୨୦୦୭)
୧୨. ମନସ୍ତାତ୍ତ୍ୱିକ ବିକାଶର ବାଲ୍ୟ ପର୍ବ (୨୦୦୯)
୧୩. ମନ ଦିଗନ୍ତ (୨୦୧୦)
୧୪. ତଲ୍ଲୀନତା (୨୦୧୦), ଦ୍ୱିତୀୟ ମୁଦ୍ରଣ : ୨୦୧୫
୧୫. ମାନସିକ ସମସ୍ୟା ଓ ସମାଧାନ (୨୦୧୦)
୧୬. ମନସ୍ତାତ୍ତ୍ୱିକ ବିକାଶର କୈଶୋର ପର୍ବ (୨୦୧୧)
୧୭. ମନର ରହସ୍ୟ (୨୦୧୨)
୧୮. ଶୈଶବରୁ ବାର୍ଦ୍ଧକ୍ୟ (୨୦୧୨)
୧୯. ଜୀବନ ଓ ମନସ୍ତତ୍ତ୍ୱ (୨୦୧୪)
୨୦. ସାକ୍ଷାତ୍କାର (୨୦୧୭)
୨୧. ଋଣମୁକ୍ତ ଜୀବନ (୨୦୧୭)
୨୨. ସାହିତ୍ୟ ଓ ମନସ୍ତତ୍ତ୍ୱ (୨୦୧୭)
୨୩. ସୁଖାନୁଭୂତିର ମର୍ମକଥା (୨୦୧୮)

**ପ୍ରକାଶମୁଖୀ ମନୋବୈଜ୍ଞାନିକ ରଚନା**

୨୪. ମନସ୍ତାତ୍ତ୍ୱିକ ବିକାଶର ଯୌବନ ପର୍ବ

୨୫. ମନର ବିଜ୍ଞାନ, ଜୀବନର କଳା

**ଆଧ୍ୟାତ୍ମିକ ରଚନା ଅନୁବାଦ:**

୨୬. ଶିରିଡ଼ିର ସାଇବାବା (ଶ୍ରୀ ସୁରେଶ ଚନ୍ଦ୍ର ପଣ୍ଡାଙ୍କ ସହ) (୧୯୯୭) ଦ୍ୱିତୀୟ ମୁଦ୍ରଣ : ୨୦୦୫, ତୃତୀୟ ମୁଦ୍ରଣ : ୨୦୦୯

୨୭. ଦିବ୍ୟ ସମ୍ଭାଷଣ (୪ର୍ଥ ଭାଗ) (୧୯୯୯) (ଶ୍ରୀ ସତ୍ୟସାଇ ବାବାଙ୍କ ଦିବ୍ୟସମ୍ଭାଷଣର ଭାଷାନ୍ତର)

୨୮. ଶିରିଡ଼ିରୁ ପୁଟପର୍ତ୍ତି (୨୦୦୦) (ଆର.ଟି.କାକଡ଼େଙ୍କ ଲିଖିତ ପୁସ୍ତକର ଭାଷାନ୍ତର)

୨୯. ଶ୍ରୀ ସାଇ ସତ୍‌ଚରିତ ଗାଥା (୨୦୦୨); ଦ୍ୱିତୀୟ ମୁଦ୍ରଣ: ୨୦୧୨

୩୦. ଦିବ୍ୟ ସମ୍ଭାଷଣ (ପଞ୍ଚମଭାଗ) ୨୦୦୪) (ଶ୍ରୀ ସତ୍ୟସାଇ ବାବାଙ୍କ ଦିବ୍ୟସମ୍ଭାଷଣ ଭାଷାନ୍ତର)

୩୧. ଚେତନାଦୀପ୍ତ ଜୀବନ (୨୦୦୮) ( ସ୍ୱାମୀ ଶ୍ରୀ ଶୁଦ୍ଧାନନ୍ଦଜୀଙ୍କ Conscious Living ର ଓଡିଆ ଭାଷାନ୍ତର)

୩୨. ସାଇ କଲ୍ଲୋଳ (୨୦୧୧)

୩୩. ବିବେକ ସଂପ୍ରୀତି (୨୦୧୨) (Rita Bruceଙ୍କ ଲିଖିତ Love of Conscienceର ଭାଷାନ୍ତର)

୩୪. ବ୍ରହ୍ମବିଦ୍ୟା-ଆଧାରିତ ବିଦ୍ୟାଳୟ ପ୍ରତିଷ୍ଠା (୨୦୧୫)

**ପ୍ରକାଶ ଅପେକ୍ଷାରେ**

୩୫. ଶ୍ରୀ ସାଇ ସତ୍‌ଚରିତ

୩୬. ଧ୍ୟାନଦୀପ୍ତ ଜୀବନ

୩୭. ଶ୍ରୀ ସତ୍ୟସାଇ ଚରିତ ଗାଥା

## Books

38. Cognitive Style and Interpersonal Behaviour (1987)

39. Affective Sensitivity and Cognitive Style (1987)

40. Psychology in Indian Context (Edited) (1988)
41. Environment and Behaviour (With P.K.Mishra & R.S.Pirta) (1988)
42. Dynamics of Helplessness (2002)
43. Sex Roles in Transihon (2004)
44. Behavioural Issues in Ageing (Edited) (2009)
45. Atlas of Mind (2006), Reprint : 2010
46. Mystery of Mind (2012)
47. Wonders of Mind (2013)
48. Splendors of Mind (2014)
49. Mind Management (2015)
50. Tools of Mind (2016)
51. Landscope of Mind (2017)
52. Plasticity of Mind (2018)

❖❖




ଗୁଣାଦୋଳ ଉ.ପ୍ରା. ସ୍କୁଲ୍ (ଚାଉଳିଆ ଗଞ୍ଜ, କଟକ): ଶିକ୍ଷାର୍ଥୀ ଜୀବନର ମୂଳଭିତ୍ତି



ରେଭେନ୍ସା ମାଟିର ବାସ୍ନା




ମନୋବିଜ୍ଞାନର ଅଗ୍ରଶିଖା କେନ୍ଦ୍ରକୁ ଅଙ୍ଗୀଭୂତ କରିଥିବା ଉତ୍କଳ ବିଶ୍ୱବିଦ୍ୟାଳୟ:
ଭବିଷ୍ୟତର ଜୀବନ ସହିତ ଜୀବିକାକୁ ଯୋଡ଼ିଥିବାର କାରଖାନା



କୁଇନ୍ସ ବିଶ୍ୱ ବିଦ୍ୟାଳୟର (କାନାଡ଼ା) ହମ୍ଫ୍ରି ହଲ୍। ମନୋବିଜ୍ଞାନ ବିଭାଗର ପରିସର।
ବିଶ୍ୱବିଖ୍ୟାତ ଭାବନା-ମନସ୍ତତ୍ତ୍ୱବିତ୍ ହମ୍ଫ୍ରି ଏ ବିଭାଗର ପ୍ରଥମ ବିଭାଗୀୟ ମୁଖ୍ୟ ଥିଲେ।



କାନାଡ଼ାର ଉଚ୍ଚ ମାନ୍ୟତାପ୍ରାପ୍ତ କୁଇନ୍ସ ବିଶ୍ୱବିଦ୍ୟାଳୟ: ଗବେଷଣା ଶୈଳୀ ଶିଖିବାର ସାଧନା ପୀଠ



ପ୍ରଖ୍ୟାତ ମନୋବିଜ୍ଞାନୀ ଏବଂ ଆନ୍ତର୍ଜାତିକ ବହୁ ସଂସ୍କୃତି ମନୋବିଜ୍ଞାନ ସଂଘର
ପୂର୍ବତନ ସଭାପତି ପ୍ରଫେସର ଜନ୍ ବେରୀ: ଗବେଷଣାର ମାର୍ଗଦର୍ଶକ



କାନାଡ଼ାରେ ଶୀତଋତୁ: ପତ୍ନୀଙ୍କ ସହିତ



କିଙ୍ଗଷ୍ଟନ୍‌ର ନୈସର୍ଗୀକ ସୌନ୍ଦର୍ଯ୍ୟ: ସହସ୍ର ଦ୍ୱୀପର ଆକର୍ଷଣ ଓ ଜଳଯାତ୍ରା



କାନାଡ଼ାର ଅନ୍ୟତମ ପ୍ରାକୃତିକ ବୈଭବ ଓ ମାନବୀୟ କଳାଚାତୁର୍ଯ୍ୟରେ ପରିପୂର୍ଣ୍ଣ କ୍ୟୁବେକ୍ ସହର



ପ୍ରକୃତିର ବିସ୍ମୟ ନାଏଗ୍ରା ଜଳପ୍ରପାତ



ପୁନଶ୍ଚ କାନାଡ଼ା: କନ୍ୟା ଭୂମିକା (ପଲୀ) ସହିତ




କାନାଡ଼ାର ରାଜଧାନୀ ଅଟୱାରେ ଅକ୍ଟୋବର ୨୦ (୧୯୯୦) ଦିନ ଶ୍ରୀ ସତ୍ୟସାଇ ବାବାଙ୍କ ଅବତାରିତ୍ୱ ନିର୍ଘୋଷଣର ସୁବର୍ଣ୍ଣ ଜୟନ୍ତୀ ପାଳନ: ଗହଣରେ ଅଷ୍ଟ୍ରେଲିଆର ବିଖ୍ୟାତ ସାଇ ପ୍ରବକ୍ତା ଶ୍ରୀ ଚାର୍ଲସ ପେନ୍ ଓ ଫେଥ୍ ପେନ୍




ପିଏଚ୍.ଡ଼ି ଗବେଷଣା କେନ୍ଦ୍ରରୁ (କୁଇନ୍ସ) ଯାତ୍ରା କରିଥିବା ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀର
ଅନ୍ୟତମ ବୌଦ୍ଧିକ ମେଳା, ମିଆମୀ ବିଶ୍ୱବିଦ୍ୟାଳୟ (ଓ୍ୱାହିଓ), ଯୁକ୍ତରାଷ୍ଟ୍ର ଆମେରିକା



ଆମେରିକା ଯୁକ୍ତରାଷ୍ଟ୍ରର ପ୍ରିନ୍ସଟନ୍‌ରେ ଅବସ୍ଥିତ ଶିକ୍ଷା ପରିମାପକ
(Educational Testing Service) ସଂସ୍ଥାର ଗବେଷକ ଫିଲିପ୍ ଓଲ୍ଟମ୍ୟାନ୍



ନିୟୁର୍କର ଅନତି ଦୂରରେ ଷ୍ଟାଚ୍ୟୁ ଅଫ୍ ଲିବର୍ଟି



ନିୟୁର୍କରୁ ଲିବର୍ଟି ଦ୍ୱୀପକୁ ଯାତ୍ରା: ଦୃଶ୍ୟ ବଳୟରେ ପୂର୍ବର ବିଶ୍ୱ ବାଣିଜ୍ୟ ସଂଗଠନର ପ୍ରାସାଦଦ୍ୱୟ




ହଲାଣ୍ଡର ଭାନ୍‌ଲିୟର୍ ପ୍ରତିଷ୍ଠାନର ସହାୟତାରେ ପରିଚାଳିତ ଗବେଷଣା ପ୍ରକଳ୍ପ ଆଦିବାସୀ ଶିଶୁ ଶିକ୍ଷାର ଶୁଭାରମ୍ଭ । ଉତ୍ସବରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଅଶୋକ ତ୍ରିପାଠୀ ଏବଂ ଓଡ଼ିଶା ସରକାରଙ୍କ ଶିଶୁ ଓ ନାରୀ କଲ୍ୟାଣ ମନ୍ତ୍ରୀ ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁଙ୍କ ସଦୟ ଉପସ୍ଥିତି



ଆଦିବାସୀ ଶିଶୁ ଶିକ୍ଷା ପ୍ରକଳ୍ପର ତଥ୍ୟସଂଗ୍ରହକାଳୀନ ଦୃଶ୍ୟପଟ୍ଟ




ବିଭାଗୀୟ ମୁଖ୍ୟ ରୂପେ ଭିନ୍ନକ୍ଷମ ଶିଶୁ ସମ୍ପର୍କିତ ଆଲୋଚନାଚକ୍ରରେ ଉଦ୍‌ବୋଧନ




ସୃଜନଶୀଳତା ସମ୍ପର୍କକୀୟ ଆଲୋଚନା ଚକ୍ର: ଅତିଥିମାନଙ୍କ ମଧ୍ୟରେ ମନୋବିଜ୍ଞାନ ବିଭାଗର ପ୍ରଫେସର ଶ୍ରୀକାନ୍ତ ଦାଶ, ପ୍ରଖ୍ୟାତ କବି ଶ୍ରୀ ସୀତାକାନ୍ତ ମହାପାତ୍ର, ମନୋବିଜ୍ଞାନ ବିଭାଗର ନିର୍ମାତା ଓ ପୂର୍ବତନ ମୁଖ୍ୟ ପ୍ରଫେସର ରାଧାନାଥ ରଥ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ଓଡ଼ିଶୀ ନୃତ୍ୟ ସାଧନାର ଅନୁପମ ଶିଳ୍ପୀ ଶ୍ରୀମତୀ କୁମ୍‌କୁମ୍ ମହାନ୍ତି



ଜାଭିଅର୍ ପରିଚାଳନା ବିଜ୍ଞାନ ସଂସ୍ଥା: ଜୀବନର ଦ୍ୱିତୀୟ ପାଳି ଖେଳିବାର ମୁକ୍ତ ପ୍ରାଙ୍ଗଣ



ଅଷ୍ଟ୍ରେଲିଆର ସିଡ଼ନୀରେ ଅନୁଷ୍ଠିତ ଆନ୍ତର୍ଜାତିକ ସମ୍ମିଳନୀରେ( ୨୦୧୩)
ଅଂଶଗ୍ରହଣ କରିବାର ପରବର୍ତ୍ତୀ ମୁହୂର୍ତ୍ତ: ବିଶ୍ୱବିଖ୍ୟାତ ନାଟ୍ୟଶାଳା



ଅଷ୍ଟ୍ରେଲିଆର ମେଲ୍‌ବୋର୍ଣ୍ଣ ସହରର କିଛି ଦୂରରେ ପେଙ୍ଗୁଇନ୍ ଦଳର ଶୋଭାଯାତ୍ରା



ଯୁକ୍ତରାଷ୍ଟ୍ର ଆମେରିକାର କାଲିଫର୍ଣ୍ଣିଆସ୍ଥିତ ରିଭରସାଇଡ୍ ବିଶ୍ୱବିଦ୍ୟାଳୟରେ ନେତୃତ୍ୱ ସମ୍ପର୍କୀୟ
ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଗବେଷଣା ନିବନ୍ଧର ଉପସ୍ଥାପନ



ଆବୁଧାବିରେ ଅନୁଷ୍ଠିତ ଆନ୍ତର୍ଜାତିକ ପରିଚଳନା ବିଜ୍ଞାନ ସମ୍ମିଳନୀର
ଶ୍ରେଷ୍ଠ ଗବେଷଣା ନିବନ୍ଧ ପୁରସ୍କାର ଗ୍ରହଣ



ଦୁବାଇର ବିସ୍ମୟ ଉଦ୍ୟାନ




ଜାଭିଅର୍ ବିଶ୍ୱବିଦ୍ୟାଳୟ(ଭୁବନେଶ୍ୱର): ଯେଉଁ ପ୍ରାନ୍ତରରେ ଚାଲିବା କାର୍ଯ୍ୟ ଅବ୍ୟାହତ ରହିଛି



ପ୍ରଜାତନ୍ତ୍ର ପ୍ରଚାର ସମିତିଦ୍ୱାରା ଆୟୋଜିତ ବିଷୁବ ମିଳନ(୨୦୧୫)ରେ ପ୍ରବନ୍ଧ ସାହିତ୍ୟ ପାଇଁ ଝଙ୍କାର ପୁରସ୍କାର ପ୍ରାପ୍ତି: ବିଶିଷ୍ଟ ଉପସ୍ଥିତି ବଳୟରେ ଝଙ୍କାରର ଅନ୍ୟତମ ସମ୍ପାଦକ ଶ୍ରୀ ସରୋଜ ରଂଜନ ମହାନ୍ତି, ପ୍ରଖ୍ୟାତ କବି ଶ୍ରୀ ରମାକାନ୍ତ ରଥ ଏବଂ ସାଂସଦ ଶ୍ରୀ ଭର୍ତ୍ତୃହରି ମହତାବ।



ଜୀବନର କଥା ଓ ସମୟର କଥା ଭିନ୍ନ ଓ ପୃଥକ୍ ନୁହେଁ। ଗୋଟିକରୁ ଅନ୍ୟଟି ବାହାର କରିନେବା ସହଜ ନୁହେଁ। ତଥାପି ନିଜ ଜୀବନର କଥା କହିବାକୁ ଆରମ୍ଭ କଲାବେଳେ ମନରେ ପ୍ରଶ୍ନ ଆସେ। କାହିଁକି ମୋ ଜୀବନର କଥା କହି ଅନ୍ୟକୁ ଭାରାକ୍ରାନ୍ତ କରିବି ? ଅନ୍ୟର ସମୟ ନଷ୍ଟ କରିବି ? ବ୍ୟକ୍ତି, ବସ୍ତୁ ଓ ଘଟଣା ପ୍ରତି ଲୋକଙ୍କର ମନୋଭାବ ଗଠନ କରିବାରେ କିମ୍ବା ପରିବର୍ତ୍ତନ କରିବାରେ କାହିଁକି ଇଚ୍ଛାକୃତ କିମ୍ବା ଅନିଚ୍ଛାକୃତ ପ୍ରୟାସ କରିବି ? ଏପରି ସବୁ ପ୍ରଶ୍ନରେ ଛନ୍ଦି ହେଉଥିବା ସମୟରେ ଭିତରୁ ଅନ୍ତଃସ୍ୱର ଶବ୍ଦାୟିତ ହୋଇଉଠେ। ଏହି ସ୍ୱରମାନଙ୍କ ମଧ୍ୟରୁ ଗୋଟିଏ ବଳିଷ୍ଠ ସ୍ୱର ହେଉଛି ଶ୍ରଦ୍ଧାଜ୍ଞାପନର ସ୍ୱର, କୃତଜ୍ଞତାର ସ୍ୱର। ମୋର ବର୍ତ୍ତମାନର ସ୍ଥିତି ଯାହା ହେଉନା କାହିଁକି ତାହା ପଛରେ ଅସଂଖ୍ୟ ବ୍ୟକ୍ତିବିଶେଷଙ୍କ ଅବଦାନ ରହିଛି।

X X X

ବଞ୍ଚି ରହିବା, ସଂସାରରେ ଚାଲିବା ଏବଂ ଦୌଡ଼ିବା ମୂଳରେ ବହୁ ଲୋକଙ୍କ ହାତତାଳି ନିଃଶବ୍ଦରେ ଶୁଣାଯାଏ। ସେମାନଙ୍କ ମଧ୍ୟରୁ ବହୁତ ଲୋକଙ୍କୁ ଔପଚାରିକ ଭାବରେ ମୋର କୃତଜ୍ଞତା ଓ ଅନ୍ତରରୁ ଶ୍ରଦ୍ଧା ଜଣାଇ ପାରିନାହିଁ। ସମ୍ଭବତଃ ଏ ବହିଟି ସେ କୃତଜ୍ଞତା ଜ୍ଞାପନର ଏକ ଅନୌପଚାରିକ ପତ୍ରଗୁଚ୍ଛ।

ISBN 818553179-X
9788185531793

Price: **Rs. 350/-**